# ଖୁରୁଧା ଇତିହାସ

ଖ୍ରୀଷ୍ଟାବ୍ଦ-୧୫୬୮-୧୮୧୭

ଲେଖକ :

**ଶ୍ରୀ କେଦାରନାଥ ମହାପାତ୍ର** ବି. ଏ. ( ଅନର୍ସ ) ଡି. ଇଡ଼.

ଓଡ଼ିଶା ସରକାରଙ୍କ ସାଂସ୍କୃତିକ ବ୍ୟାପାର ବିଭାଗ
ପ୍ରଦତ୍ତ ଅର୍ଥ ସାହାଯ୍ୟରେ
ଗ୍ରନ୍ଥକର୍ତ୍ତାଙ୍କ ଦ୍ୱାରା ପ୍ରକାଶିତ

୧ ୯ ୬ ୯

# ସୂଚୀପତ୍ର





# ଭୂ ମି କା

ଆଜକୁ ଚଉରାଳିଶ ବର୍ଷ ତଳର କଥା । ମୁଁ ଭୁବନେଶ୍ୱର ମାଇନର ସ୍କୁଲରୁ ପାଶ କରି ୧୯୨୫ରେ ଖୁରୁଧା ହାଇସ୍କୁଲର ତଳଶ୍ରେଣୀରେ ପାଠ ପଢୁଥାଏ । ସେହି ବର୍ଷ ଖୁରୁଧା ଇତିହାସ ବିଷୟକ ଶ୍ରେଷ୍ଠ ପ୍ରବନ୍ଧ ପାଇଁ ସ୍କୁଲ ତରଫରୁ ପୁରସ୍କାର ପ୍ରଦାନ ଘୋଷିତ ହୋଇଥିଲା । ସେ ସମୟରେ ମୋର ପିତୃକଳ୍ପ କଂଗ୍ରେସ କର୍ମୀ ସ୍ୱର୍ଗତଃ ରଘୁନାଥ ମହାପାତ୍ର ଖୁରୁଧା ଲୋକାଲ ବୋର୍ଡର ଚେୟାରମାନ ଥାନ୍ତି । ସେ ମୋତେ ଏହି ପ୍ରବନ୍ଧ ଲେଖିବା ପାଇଁ ଉତ୍ସାହିତ କଲେ ଏବଂ ନିଜେ ବହୁ ପରିଶ୍ରମ କରି ହଣ୍ଟର ସାହେବଙ୍କ ଦ୍ୱାରା ଇଂରେଜୀ ଭାଷାରେ ଲିଖିତ ଓଡ଼ିଶା ଇତିହାସ ଭଲ ଭାବରେ ବୁଝାଇ ଦେଲେ । ମୁଁ ପ୍ରବନ୍ଧ ପ୍ରତିଯୋଗିତାରେ ଯୋଗଦେଇ ପୁରସ୍କାର ପାଇ ପାରିଲି ନାହିଁ ସତ୍ୟ କିନ୍ତୁ ଖୁରୁଧାର ଗୌରବମୟ ଐତିହ୍ୟ ଦ୍ୱାରା ସେହି ଛାତ୍ରାବସ୍ଥାରୁ ଉଦ୍‌ବୁଦ୍ଧ ହୋଇ ଏହାର ଏକ ଇତିହାସ ଲେଖିବା ପାଇଁ ମନସ୍ଥ କଲି । କଲେଜରେ ଅଧ୍ୟୟନ କରୁଥିବା ସମୟରେ ଏ ଅଞ୍ଚଳର ଅନ୍ୟ ଜଣେ ବିଶିଷ୍ଟ କଂଗ୍ରେସ କର୍ମୀ **ଖୁରୁଧା-ଦର୍ପଣ** ପ୍ରଣେତା ସ୍ୱର୍ଗତଃ ଦିଗମ୍ବର ଶ୍ରୀଚନ୍ଦନ ଏହି ଗ୍ରନ୍ଥ ରଚନା ପାଇଁ ଅନେକ ତଥ୍ୟ ଯୋଗାଇ ମୋର ଉତ୍ସାହ ବୃଦ୍ଧି କରିଥିଲେ ।

ସୌଭାଗ୍ୟକ୍ରମେ ୧୯୪୩ରୁ ୧୯୫୦ ପର୍ଯ୍ୟନ୍ତ କଳାହାଣ୍ଡି ରାଜ୍ୟ ଶିକ୍ଷା ବିଭାଗର ଅଧକ୍ଷ ଭାବରେ ଏବଂ ୧୯୫୦ ରୁ ୧୯୬୩ ପର୍ଯ୍ୟନ୍ତ ରାଜ୍ୟ ସଂଗ୍ରହାଳୟର ସଂରକ୍ଷକ ଭାବରେ କାର୍ଯ୍ୟ କରିବାରୁ ଖୁରୁଧା ତଥା ଓଡ଼ିଶାର ଇତିହାସ ଗବେଷଣା ନିମିତ୍ତ ସମସ୍ତ ପ୍ରକାର ତଥ୍ୟ ସଂଗ୍ରହ ପାଇଁ ମୋତେ ବିଶେଷ ସୁବିଧା ଓ ସୁଯୋଗ ମିଳିଲା । ଗବେଷଣା କ୍ଷେତ୍ରରେ ମୋର ଗୁରୁ ସ୍ୱରୂପ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟଙ୍କଦ୍ୱାରା ପ୍ରୋତ୍ସାହିତ ହୋଇ ମୁଁ ଖୁରୁଧା ଇତିହାସର ବିଭିନ୍ନ ଅଧ୍ୟାୟ ପ୍ରଥମେ ଡ଼କ୍ଟର ଶ୍ରୀଯୁକ୍ତ ହରେକୃଷ୍ଣ ମହତାବଙ୍କ ଦ୍ୱାରା ସଂପାଦିତ 'ଝଙ୍କାର' ଏବଂ ଶ୍ରୀଯୁକ୍ତ ଚିନ୍ତାମଣି ମିଶ୍ରଙ୍କ ଦ୍ୱାରା ସମ୍ପାଦିତ 'ନବଜୀବନ' ମାସିକ ପତ୍ରିକା ଦୁଇଟିରେ ପ୍ରକାଶିତ କରିଥିଲି । ଏହି ପ୍ରବନ୍ଧଗୁଡ଼ିକ ପାଠକରି ଡ଼କ୍ଟର ମହତାବ ସ୍ୱୀୟ ଇଂରେଜୀ ଭାଷାରେ ଲିଖିତ 'ଓଡ଼ିଶା ଇତିହାସ'ର ମୁଖବନ୍ଧରେ ମୋତେ ପ୍ରଶଂସା କରିଥିଲେ ।

୧୯୬୫ ମସିହାରେ ଖୁରୁଧା ଇତିହାସର ପାଣ୍ଡୁଲିପି ଓଡ଼ିଶା ସାହିତ୍ୟ ଏକାଡ଼େମୀ ନିକଟରେ ପ୍ରକାଶ ପାଇଁ ଦାଖଲ କରାଯାଇଥିଲା । କିନ୍ତୁ ଅର୍ଥାଭାବ ଯୋଗୁଁ ଏହା ପ୍ରାୟ ଦୁଇ ବର୍ଷକାଳ ପ୍ରକାଶିତ ହୋଇ ନପାରିବାରୁ ରାଜ୍ୟ ସାଂସ୍କୃତିକ ବ୍ୟାପାର ବିଭାଗର

ବସାଇ ମୁକୁନ୍ଦ ହରିଚନ୍ଦନ ରାଜ୍ୟରେ ସର୍ବେସର୍ବା ହେଲେ । ଇତିମଧ୍ୟରେ ଜନାର୍ଦ୍ଦନ ଦକ୍ଷିଣରୁ ଆସି ପୁଣି ନଳଚକ୍ରବର୍ତ୍ତୀ ମଙ୍ଗଳାଯୋଡ଼ ଠାରେ ରହିଥିଲେ । ରାଜପଦ ଲିପ୍ସୁ ମୁକୁନ୍ଦ ହରିଚନ୍ଦନ ଭୋଇ ବଂଶର ସ୍ତମ୍ଭ ସ୍ୱରୂପ ଜନାର୍ଦ୍ଦନଙ୍କୁ ସିଂହାସନ ଲାଭ ପଥରେ ପ୍ରଧାନ କଣ୍ଟକ ବୋଲି ଭାବି ମଙ୍ଗଳାଯୋଡ଼ ଠାରୁ ତାଙ୍କୁ ବିଶ୍ୱାସରେ ଧରି ନେଇ ବିଶ୍ୱାସଘାତକତା ପୂର୍ବକ କଟକରେ ବନ୍ଦୀ କରିଥିଲେ । ଏହା-ପରେ ମୁକୁନ୍ଦ ରଘୁରାମଙ୍କୁ ହତ୍ୟା କରି ଓଡ଼ିଶା ସିଂହାସନ ଅଧିକାର କରିଥିଲେ । ଏକାଦିକ୍ରମେ ଭୋଇ ବଂଶୀୟ ଚାରିଜଣ ରାଜାଙ୍କର ମନ୍ତ୍ରୀ ଓ ସେନାପତି ରୂପେ ପ୍ରାୟ ୨୫ ବର୍ଷ କାଳ (୧୫୩୪-୧୫୫୯) କାର୍ଯ୍ୟ କରିଥିବା ଜନାର୍ଦ୍ଦନଙ୍କ କ୍ଷମତା ଓ ପ୍ରଭାବର ଅବସାନ ଘଟିଲା । ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଦନ୍ତୋଇ ବିଦ୍ୟାଧରପୁର ଶାସନ(୨) କେବଳ ଏ ପର୍ଯ୍ୟନ୍ତ ତାଙ୍କର ସ୍ମୃତି ରକ୍ଷା କରୁଅଛି ।

**ରାମଚନ୍ଦ୍ରଙ୍କ ରାଜ୍ୟ ପ୍ରତିଷ୍ଠା**—ମୁକୁନ୍ଦ ଦେବଙ୍କ ରାଜତ୍ୱ ପୂର୍ବରୁ ତଥା ତାଙ୍କ ରାଜତ୍ୱ କାଳରେ (୧୫୫୯-୧୫୬୮ ଖ୍ରୀଷ୍ଟାବ୍ଦ) ତାଙ୍କ ପ୍ରଧାନ ଶତ୍ରୁ ଜନାର୍ଦ୍ଦନ ବିଦ୍ୟାଧରଙ୍କ ପୁତ୍ର ରାମଚନ୍ଦ୍ର କପରି ଅବସ୍ଥାରେ ଥିଲେ ତାହା ଅଦ୍ୟାବଧି ଅଜ୍ଞାତ । ଶ୍ରୀ ସୁଧାକର ପଟ୍ଟନାୟକଙ୍କ ଦ୍ୱାରା ପ୍ରକାଶିତ ଚକଡ଼ା ପୋଥିରୁ ରାମଚନ୍ଦ୍ରଙ୍କ ରାଜ୍ୟ ପ୍ରତିଷ୍ଠାର ନିମ୍ନୋକ୍ତ ବିବରଣୀ ମିଳେ । ଯଥା—

"ଏ ସମୟରେ * ରାଜା ମହିନ୍ଦ୍ର ଗଡ଼ରେ ଓଡ଼ିଶା ପାଟ ବସାଇ ବିଦ୍ୟାଧରଙ୍କ ପୁଅ ରାମଚନ୍ଦ୍ର ରାଉତରାୟ ମହାପାତ୍ରଙ୍କୁ ଧରାଇଥିଲେ । ମୁକୁନ୍ଦ ଦେବ ଓ ତାଙ୍କ ପୁତୁରା ରଘୁ ଭଞ୍ଜ ଏ ଦୁହେଁ ଏକାଦିନକେ ଯୁଦ୍ଧ କରି ମଲେ । ଓଡ଼ିଶା ଅରାଜ୍ୟ ହୋଇଗଲା ଏବଂ ଦେବତା ଓ ବ୍ରାହ୍ମଣଙ୍କ ନାଶ ହେଲା ।

ତହିଁ ଉତ୍ତାରୁ ଦକ୍ଷିଣଦିଗ ଖଣ୍ଡାଇତେ ରାମଚନ୍ଦ୍ର ରାଉତରାୟ ମହାପାତ୍ରଙ୍କୁ ରାଜା କଲେ । ସେ ତିନିବର୍ଷ ପର୍ଯ୍ୟନ୍ତ ଗୋଟମା ଗଡ଼ରେ ରହିଲେ । ସେଠାରେ ତାଙ୍କୁ ଜଣେ ଖଣ୍ଡାଇତ ମଲକାସୁନକୁ ଧରି ଦେବାର ଶୁଣି ସେ ଖଣ୍ଡାଇତକୁ ମାରି ଓଡ଼ିଶା ରାଜ୍ୟକୁ ପଳାଇଗଲେ ।

ତାଙ୍କୁ ସେଠାରେ ତିନି ଲୋକ ସେବା କରିଥିଲେ । କୋକୋଲୋ ବାହୁ ପାତ୍ର, ଏ ଦାଣ ପାତ୍ରର ଭାଇ ଅଟେ । ଘୋଡ଼ାଡ଼ିଅଁ ଖାଡ଼ୁ ପଢ଼ିଆ ଓ ମଲ୍ଲୀପଡ଼ା ଶରଣୀ ପାତ୍ର । ଏ ଉତ୍ତାରୁ ରାଜାଙ୍କ ଗହଣରେ ତେର ଜଣ ସବାର ଥିଲେ । କଟକ

(୨) ଏହା ପୁରୀ ଜିଲ୍ଲାର ସତ୍ୟବାଦୀ ଥାନାରେ ଅବସ୍ଥିତ ।

* କଳାପାହାଡ଼ର ଓଡ଼ିଶା ଆକ୍ରମଣ ସମୟରେ ।

ପୁରୁଷୋତ୍ତମ ମଧ୍ୟସ୍ଥ ଖୋଲପଲ ଶୁଦ୍ଧଶୈଳୀର ବଳୀବନ୍ତମ ସିଂହର ଖୋରଧା ବେଳ ପଲ୍ଲୀ ଗୋଟିଏ ଥିଲ ତାହା ରାଜା ବନ୍ତମ ସିଂହଙ୍କୁ ମାଗି ତାହା ନାମ ଜଗନ୍ନାଥ ପୁର କଟକ ବୋଲି ଶୁଭ ଦେଲେ । ଯେ ବଳୀ ବନ୍ତମ ସିଂହର ମୁଣ୍ଡକାଟି ବଡ଼ ଅବକାଶ ଭଦ୍ର ଛନେ ପୋଛିଲେ ।"(୩)

ପୂର୍ବେ ବର୍ଣ୍ଣିତ ହୋଇଛି ଜନାର୍ଦ୍ଦନ ବିଦ୍ୟାଧର ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଓଡ଼ିଶାର ଦକ୍ଷିଣ ସୀମା ରକ୍ଷା କରିବା ପାଇଁ ସେଠାରେ ସେନାପତି ରୂପେ କାର୍ଯ୍ୟ କରୁଥିଲେ । ସମ୍ଭବତଃ ତାଙ୍କ ପୁତ୍ର ରାମଚନ୍ଦ୍ର ବଜ୍ରଚଗସ୍ପ ମହାପାତ୍ର ପିତାଙ୍କ ସହ ସେଠାରେ ସାମାନ୍ତ ରକ୍ଷା କାର୍ଯ୍ୟରେ ନିଯୁକ୍ତ ଥିଲେ । ସେ ସମୟରେ ଗୁଲୁକ୍ୟ ବଂଶୀୟ ଗଜପତି ମୁକୁନ୍ଦ ଦେବଙ୍କ ପୂର୍ବ ପୁରୁଷମାନେ ରାଜମହେନ୍ଦ୍ର ବା ଆଧୁନିକ ରାଜମହେନ୍ଦ୍ରୀ ଠାରେ ଓଡ଼ିଶା ଗଜପତିଙ୍କ ସାମନ୍ତ ରାଜା ରୂପେ ରାଜତ୍ୱ କରୁଥିଲେ । ତେଣୁ ମୁକୁନ୍ଦ ଦେବ ଉତ୍କଳ ସିଂହାସନ ଅଧିକାର କରିବା ପରେ ରାମଚନ୍ଦ୍ରଙ୍କୁ ରାଜମହେନ୍ଦ୍ରୀଠାରେ ବନ୍ଦୀ ଭାବରେ ରଖିଥିବା ସଂପୂର୍ଣ୍ଣ ସମ୍ଭବପର । ମୁକୁନ୍ଦଙ୍କ ମୃତ୍ୟୁ ପରେ ସେ ବନ୍ଦୀଶାଳାରୁ ମୁକ୍ତି ଲାଭ କରି ଓଡ଼ିଶାରେ ସ୍ୱୀୟ କ୍ଷମତା ବିସ୍ତାର କରିବା ପାଇଁ ଉଦ୍ୟମ କରିଥିଲେ । ଦକ୍ଷିଣ ଓଡ଼ିଶାର ଖଣ୍ଡାଇତେ (କେତେକ ସାମନ୍ତ ରାଜା) ତାଙ୍କୁ ଓଡ଼ିଶା ରାଜା ରୂପେ ସ୍ୱୀକାର କରିଥିଲେ । ସେ ପ୍ରଥମେ ତିନିବର୍ଷ କାଳ ଗୋଠମା ଗଡ଼ରେ ଥିଲେ ।

ଏ ସଂପର୍କରେ ମାଦଳାପାଞ୍ଜିର ବର୍ଣ୍ଣନା ମଧ୍ୟ ଉଲ୍ଲେଖଯୋଗ୍ୟ । "ଯଦୁବଂଶ ରାଜ ଏ ଏଣେ ଉଦିତ ହୋଇଲେ । ଦାନେଇ ବିଦ୍ୟାଧରଙ୍କ ପୁଅ 'ଡୋଟମୀଗଡ଼'ରେ ଥିଲେ । ରାମଚନ୍ଦ୍ର ଦେବ ରାଜା ହୋଇଲେ । ବଡ଼ ପ୍ରତାପୀ ରାଜା ହୋଇଲେ । ଖୁରୁଧା ନା ଆଦରେ ଜଗନ୍ନାଥପୁର କଟକ କରି ରହିଲେ, ବରୁଣାଇ ପର୍ବତ ତଳେ"(୪)

ତକଡ଼ାରେ ବର୍ଣ୍ଣିତ 'ଗୋଠମା ଗଡ଼' ଓ ମାଦଳାପାଞ୍ଜିରେ ଲିଖିତ 'ଡୋଟମୀ ଗଡ଼' ଏକ ଓ ଅଭିନ୍ନ ପରି ମନେହୁଏ । ଏହା ବର୍ତ୍ତମାନ ଅନ୍ଧ୍ର ରାଜ୍ୟର ବିଶାଖାପାଟଣା ଜିଲ୍ଲା ବୀରଗୋଠମ (Veergootum) ସହିତ ଚିହ୍ନିତ

---

(୩) 'ତକଡ଼ା ପୋଥି ଓ ତପୁନ୍ନା ତକଡ଼ା ।' ୧୯୫୯ରେ ପ୍ରକାଶିତ, ପୃଷ୍ଠା ୫ ଓ ୬ ।

(୪) ମାଦଳାପାଞ୍ଜି, ପ୍ରାଚୀ ସଂସ୍କରଣ, ପୃ ୭୨

ହୋଇ ପରେ ।(୪) ସେଠାରେ ସେ କାର୍ତ୍ତିକ ରହିଥିଲେ ତାହାର କାରଣ ଏ ପର୍ଯ୍ୟନ୍ତ ଅଜ୍ଞାତ ରହିଛି । ୧୫୭୧ ଖ୍ରୀଷ୍ଟାବ୍ଦରେ ଗୋଲକୁଣ୍ଡା ସୁଲତାନ ଇବ୍ରାହିମ କୁତବସାହ ପ୍ରବଳ ଭାବରେ ଆକ୍ରମଣ ଚଳାଇ ଗୋଦାବରୀ ଠାରୁ ଚିଲିକା ପର୍ଯ୍ୟନ୍ତ ବିସ୍ତୃତ ଓଡ଼ିଶାର ଦକ୍ଷିଣାଂଶ ଅଧିକାର କରିଥିବା ସାର୍ ଯଦୁନାଥ ସରକାରଙ୍କ ପ୍ରଣୀତ ଇତିହାସରୁ ଜଣାଯାଏ । (୬) ସେହି ସମୟରେ କୌଣସି ସାମନ୍ତ ରାଜା (ଜଣେ ଖଣ୍ଡାଇତ) ତାଙ୍କୁ ମୁସଲମାନ ସେନାପତିଙ୍କ (ମଲ୍ଲିକାଫର) ହସ୍ତରେ ବିଶ୍ୱାସଘାତକତା କରି ଧରାଇ ଦେବାର ଚେଷ୍ଟା କରିବାରୁ ସେ ତାଙ୍କୁ ମାରି ଖୁରୁଧା ଆଡ଼କୁ ପଳାଇ ଆସିଲେ । ଖୁରୁଧା ବା ଖୋରଧାରେ ନିଜର ରାଜଧାନୀ ପ୍ରତିଷ୍ଠା କରିବାରେ ତାଙ୍କୁ ତିନିଜଣ ପ୍ରଭାବଶାଳୀ ଲୋକ ସାହାଯ୍ୟ ଦେଇଥିଲେ । 'କୋକୋଲେ' ବା ଚିଲିକାର ପୂର୍ବ ଉପକୂଳବର୍ତ୍ତୀ କୋକଳ ଗଡ଼ର ଅଧିକାରୀ ବାଘୁ ରାୟ । ଏହା ଭାର୍ଗବୀ ନଦୀ ମୁହାଣ ନିକଟରେ ଅବସ୍ଥିତ ଏବଂ ସେ ଯୁଗରେ ଦକ୍ଷିଣ ଓଡ଼ିଶାରୁ ଚିଲିକା ପାର ହୋଇ ପୁରୀ ଆସିବା ପଥରେ ଏହାଏକ ପ୍ରଧାନ ବନ୍ଦର, ବାଣିଜ୍ୟସ୍ଥଳ ତଥା ସୈନ୍ୟ ନିବାସ ଥିଲା । ପଣ୍ଡିତ ବାସୁଦେବ ରଥ ସୋମ-ଯାଜୀଙ୍କ ଦ୍ୱାରା ୧୭୭୧ ଖ୍ରୀଷ୍ଟାବ୍ଦରେ ରଚିତ 'ଗଙ୍ଗବଂଶାନୁଚରିତମ୍ ଚମ୍ପୂ' କାବ୍ୟରେ

---

(୪) ଏହା କାସିମକୋଟା ନିକଟରେ ଅବସ୍ଥିତ ଓ ସେ ଯୁଗରେ ଏହା ଏକ ପ୍ରସିଦ୍ଧ ସ୍ଥାନ ଥିଲା ।ଗୋଲକୁଣ୍ଡା ସୁଲତାନଙ୍କ ସେନାପତି ସଦଫା ଅଶ୍ୱରାୟୁନଙ୍କ ଶ୍ରୀକୂର୍ମ ମନ୍ଦିର ଶିଳାଲିପିରେ 'ୱୀରଗୋଟାମୁ' ଦୁର୍ଗର ନାମ ମିଳେ ।

'ଶକବର୍ଷଂବୁଲୁ ୧୫୨୬ × × × ଅଶ୍ୱରାୟୁନଂଗାରୁ

× × କୋଟାମ୍ନ ୱୀରଗୋଠାମୁ'

( S. I. I. Vol V No. 1260 )

ଏହାର ସମୟ ହେଉଛି ୨୨-୯-୧୬୦୪ ଖ୍ରୀଷ୍ଟାବ୍ଦ

ଉକ୍ତ ସେନାପତିଙ୍କର ସିଂହାଚଳମ୍ ମନ୍ଦିରରେ ଥିବା ଅନ୍ୟ ଏକ ଶିଳାଲିପିରେ ମଧ୍ୟ ଏହି ଦୁର୍ଗର ଉଲ୍ଲେଖ ଦେଖାଯାଏ । ଯଥା—

"ଶକବର୍ଷଂବୁଲୁ ୧୫୨୬ - ଅଶ୍ୱରାୟୁନଂଗାରୁ × ×

କାଶିକୋଟାମୁ ୱୀରଗୋଠାମୁ × ×"

(S. I. I. Vol VI No 1184 & Vol. X No. 755)

ଏହାର ସମୟ ହେଉଛି ୧୪-୧୦-୧୬୦୪ ଖ୍ରୀଷ୍ଟାବ୍ଦ

Rise of the Mahomedan power in India Vol. III P. 424

(୬) History of Aurangzib Vol. I P. 191.

ଏହାର ଉଲ୍ଲେଖ ଦେଖାଯାଏ । ଏଥିରେ ଲିଖିତ ଘୋଡାଡ଼ଆଁ ଓ ମଲ୍ଲୀପଡ଼ା ଯଥାକ୍ରମେ ତେଲଙ୍ଗ ରେଲଷ୍ଟେସନ ନିକଟବର୍ତ୍ତୀ ଘୋଡଡଆ ଓ ଖୁରଧା ନିକଟବର୍ତ୍ତୀ ମଲପଡ଼ା ଗଡ଼ ସହିତ ନିଃସନ୍ଦେହରେ ଚିହ୍ନିତ ହୋଇପାରେ । ଉକ୍ତ ଚିନ୍ତଗଡ଼ର ଅଧିକାରୀଙ୍କ ସାହାଯ୍ୟରେ ଓ ଦକ୍ଷିଣ ଓଡ଼ିଶାର କେତେକ ସାମନ୍ତ ରାଜାଙ୍କ ସମର୍ଥନରେ ରାମଚନ୍ଦ୍ର ୧୫୭୧-୭୨ ଖ୍ରୀଷ୍ଟାବ୍ଦରେ ଖୁର୍ଦ୍ଧା ରାଜ୍ୟ ପ୍ରତିଷ୍ଠା କରିଥିଲେ । ସ୍ୱାଧୀନ ଓଡ଼ିଶା ରାଜ୍ୟର ଏକ ବିଶିଷ୍ଟ ଅଂଶ ତଥା ଧର୍ମପୀଠ ପୁରୀ ଓ ଭୁବନେଶ୍ୱରର ଚତୁଃପାର୍ଶ୍ୱବର୍ତ୍ତୀ ଅଞ୍ଚଳ କଳାପାହାଡ଼ର ଘୋର ଆତଙ୍କପ୍ରଦ ଓ ବୀଭତ୍ସ ଆକ୍ରମଣ ଜନିତ ଅରାଜକତାରୁ ସୁଦକ୍ଷ ମନ୍ତ୍ରୀ ଓ ସେନାପତି ଜନାର୍ଦ୍ଦନ ବିଦ୍ୟାଧରଙ୍କ ସୁଯୋଗ୍ୟ ପୁତ୍ର ବୀର ରାମଚନ୍ଦ୍ର ଦେବ ରକ୍ଷା କରିବା ପାଇଁ ସମର୍ଥ ହୋଇଥିଲେ ।

**ରାଜଗୁରୁ ବଂଶର ସମର୍ଥନ** - ଭୃଗୁଗୋତ୍ର କବଡ଼ିଣ୍ଡିମ ଶ୍ରୀକରଦେବାଚାର୍ଯ୍ୟ କୃତ 'ଭକ୍ତ ଭାଗବତ ମହାକାବ୍ୟମ୍'ରୁ ଜଣାଯାଏ ଯେ ତାଙ୍କ ପୂର୍ବପୁରୁଷମାନେ ସୋମବଂଶୀ, ଗଙ୍ଗବଂଶୀ ଓ ସୂର୍ଯ୍ୟବଂଶୀୟ ସମ୍ରାଟମାନଙ୍କର ପୁରୁଷାନୁକ୍ରମେ ରାଜଗୁରୁ ପଦବୀରେ ଅଧିଷ୍ଠିତ ଥିଲେ । ସ୍ୱୟଂ କବଡ଼ିଣ୍ଡିମ ଗଜପତି ପ୍ରତାପରୁଦ୍ରଙ୍କ ରାଜଗୁରୁ ଓ ବ୍ୟବର୍ତ୍ତୀ (ବେବର୍ତ୍ତା) ମହାପାତ୍ର ଭାବରେ ସେ ସମୟର ବିଶେଷ ଖ୍ୟାତି ଓ ପ୍ରତିପତ୍ତି ଲାଭ କରିଥିଲେ । ରାମଚନ୍ଦ୍ର ଦେବ ଖୁର୍ଦ୍ଧା ରାଜ୍ୟ ପ୍ରତିଷ୍ଠା ପରେ କବଡ଼ିଣ୍ଡିମଙ୍କ ପୁତ୍ର ଶ୍ରୀ ବର୍ଦ୍ଧନ ମହାପାତ୍ରଙ୍କୁ ରାଜଗୁରୁ ପଦବୀରେ ପ୍ରତିଷ୍ଠିତ କରିଥିବା ରାମଚନ୍ଦ୍ରଙ୍କ ନାମାଙ୍କିତ ଲିଖିତ ଓ ଶ୍ରୀ ବର୍ଦ୍ଧନ ମହାପାତ୍ରଙ୍କ ଦ୍ୱାରା ରଚିତ 'ଦୁର୍ଗୋତ୍ସବଚନ୍ଦ୍ରିକା' ଗ୍ରନ୍ଥର ଶେଷ ଶ୍ଳୋକରୁ ଜଣାଯାଏ (୭) ଯଥା—

"ଶ୍ରୀମାନ କବଡ଼ିଣ୍ଡିମୋ ନୃପଗୁରୁଃ ଭେଦେଶମାଦେଶିକ
ସ୍ତସ୍ୟାୟଂ ତନୟୋ ନୟୋତ୍ତମଧନଃ ଶ୍ରୀବର୍ଦ୍ଧନସ୍ତାଗ୍ରଣୀ
ସୋଽୟଂ ଭୂପୁରୁହୂତ ରାମନୃପତେ ରାଦେଶତଃ ଶୈଳଜା —
ପୂଜାକର୍ମକୃତେ ସମୁନ୍ନତଂଧିୟାଂ କାନ୍ତିତ୍ର କୃତିଂ ନର୍ମମେ ।"

ପରଂପରାକ୍ରମେ ରାଜଗୁରୁ ପଦବୀରେ ଅଧିଷ୍ଠିତ ପ୍ରତିପତ୍ତିଶାଳୀ କବଡ଼ିଣ୍ଡିମଙ୍କ ପୁତ୍ରଙ୍କୁ ରାଜଗୁରୁ ରୂପେ ଗ୍ରହଣ କରି ରାମଚନ୍ଦ୍ର ବୁଦ୍ଧିମତ୍ତା ଓ ଦୂରଦର୍ଶିତାର ପରିଚୟ

---

(୭) ଶ୍ରୀ ପରମାନନ୍ଦ ଆଚାର୍ଯ୍ୟଙ୍କ ଦ୍ୱାରା ପୂର୍ବତନ ମୟୂରଭଞ୍ଜ ରାଜ୍ୟରୁ ସଂଗୃହୀତ ଓ ମିଉଜିୟମରେ ରକ୍ଷିତ 'ଦୁର୍ଗୋତ୍ସବଚନ୍ଦ୍ରିକା'ର ଏକ ପ୍ରାଚୀନ ତାଳପତ୍ର ପୋଥି ଶେଷରେ ଉକ୍ତ ଐତିହାସିକ ଗୁରୁତ୍ୱପୂର୍ଣ୍ଣ ଶ୍ଳୋକ ଲିପିବଦ୍ଧ ହୋଇଅଛି ।

ଦେଇଥିଲେ । କାରଣ ଏହା ଫଳରେ ସେ ରକ୍ଷଣଶୀଳ ବ୍ରାହ୍ମଣ ସମାଜର ଆନୁଗତ୍ୟ ଲାଭ କରିଥିଲେ ।

**ସମ୍ବଲପୁର ରାଜ୍ୟ ପ୍ରତିଷ୍ଠାତାଙ୍କ ସାହାଯ୍ୟ—** ରାମଚନ୍ଦ୍ର ଦେବଙ୍କ ସମକାଳୀନ ପାଟଣାର ଚୌହାନ ବଂଶୀୟ ବଳରାମ ଦେବ ବିଶାଳ ସମ୍ବଲପୁର ରାଜ୍ୟର ପ୍ରତିଷ୍ଠାତା ଥିଲେ । ସେ ପବିତ୍ର ଉତ୍କଳଭୂମିକୁ 'ଯବନ ମ୍ଲେଚ୍ଛମଣ୍ଡଳ' ବା ମୁସଲମାନ ଆଧିପତ୍ୟରୁ ରକ୍ଷା କରିବା ପାଇଁ ରାମଚନ୍ଦ୍ର ଦେବଙ୍କୁ ସାହାଯ୍ୟ କରିଥିବା ସଂସ୍କୃତ ଭାଷାରେ ଲିଖିତ 'କୋଶଳାନନ୍ଦ' ନାମକ ଐତିହାସିକ ମହାକାବ୍ୟରୁ ଜଣାଯାଏ(୮) । ଯଥା —

"ଜଗନ୍ନାଥକ୍ଷେତ୍ରସ୍ୟ ସ ପାବନାମ୍ଭୁଧେ
ରମ୍ଯୁତ୍କଳଦେଶ ମଶେଷ ଶ୍ଚବକଂ
ରମ୍ଯସମାନାମନସ୍ଯତ୍ ଯମକ୍ଷସ୍ଯଂ
ମୁହା ସମାରୁହ୍ୟ ମହାରଥଂ ହ୍ୟଂ । ୬ ।
ବଧ ସୁ ମୈତ୍ରୀ ମଧୁଗତ୍ୟ ସାଦରଂ
ସୁରବ ମୂର୍ଦ୍ଧତଳ ଏବସୋଦରେ ଃ
ତ୍ରୁଣାପ୍ଯ ମଧ୍ୟେନ୍ୟ ମହୀଶସଂସ୍ଥିତଂ
କ୍ଷମାଭୁଜା ଯେନ ସ ରାମଭୂପତିଃ । ୭ ।"

ଏହାର ପ୍ରଣେତା ପୁରୀ ଅଞ୍ଚଳର ଅଧିବାସୀ କବି ଗଙ୍ଗାଧର ମିଶ୍ର ରାମଚନ୍ଦ୍ର ଦେବଙ୍କ ସମକାଳୀନ ଥିଲେ ଏବଂ ରାମଚନ୍ଦ୍ର ଦେବଙ୍କ ମୃତ୍ୟୁର ନଅ ଦଶ ବର୍ଷ ମଧ୍ୟରେ 'କଳୌକଳାଚଳ ଯୁଗ' ବା କଳିଯୁଗାବ୍ଦ ୪୭୧୭ ବା ୧୬୧୫ ଖ୍ରୀଷ୍ଟାବ୍ଦରେ ସମ୍ବଲପୁର ରାଜା ବଳୀୟାର ସିଂହଙ୍କ ସଭା କବି ଭାବରେ ଉକ୍ତ ଗ୍ରନ୍ଥ ରଚନା କରିଥିଲେ । ତେଣୁ ଉକ୍ତ ଗ୍ରନ୍ଥରେ ପ୍ରଦତ୍ତ ବିବରଣ ସର୍ବଥା ବିଶ୍ୱାସଯୋଗ୍ୟ ଓ ଗ୍ରାହ୍ୟ । ବିଶାଳ ସମ୍ବଲପୁର ରାଜ୍ୟର ପ୍ରତିଷ୍ଠାତା ଓ ଅଧିପତି ବଳରାମ ଦେବଙ୍କ ସାହାଯ୍ୟ ଓ ସମର୍ଥନ ଲାଭ ଫଳରେ ଓଡ଼ିଶାରେ ରାମଚନ୍ଦ୍ର ଦେବଙ୍କ ଖ୍ୟାତି, ପ୍ରଭାବ ଓ ପ୍ରତିପତ୍ତି ଯେ ଯଥେଷ୍ଟ ବୃଦ୍ଧି ଲାଭ କରିଥିବ ଏଥିରେ ସନ୍ଦେହ ନାହିଁ ।

**ଖୋର୍ଦ୍ଧା ଦୁର୍ଗ ପ୍ରତିଷ୍ଠା—** ଉଭୟ 'ମାଦଳା ପାଞ୍ଜି' ଓ 'ଚକଡ଼ା' ଗ୍ରନ୍ଥରୁ ଜଣାଯାଏ ଯେ ରାମଚନ୍ଦ୍ର ଦେବ ନବ ପ୍ରତିଷ୍ଠିତ ରାଜ୍ୟର ରାଜଧାନୀ ସ୍ୱରୂପ କଟକ

---

(୮) 'କୋଶଳାନନ୍ଦ ମହାକାବ୍ୟମ୍' ଅଷ୍ଟାଦଶ ସର୍ଗ । ଏହି ଗ୍ରନ୍ଥର ଦୁଇଟି ପାଣ୍ଡୁଲିପି ଭୁବନେଶ୍ୱର ମିଉଜିୟମରେ ସଂରକ୍ଷିତ ।

ଓ ପୁରୀ ମଧ୍ୟରେ ବାରୁଣୀ ବା ବରୁଣେଇ ପର୍ବତର ପାଦଦେଶରେ ଖୋଲପଲ୍ଲୀ ନିକଟସ୍ଥ ଖୁରଧା ନାମକ ପଲ୍ଲୀ ଗ୍ରାମରେ ଏକ ସୁଦୃଢ଼ ଦୁର୍ଗ ପ୍ରତିଷ୍ଠା କରିଥିଲେ । କାରଣ ଅନଙ୍ଗଭୀମଦେବଙ୍କ ରାଜତ୍ୱ ସମୟରୁ (୧୨୧୧-୧୨୩୮ ଖ୍ରୀଷ୍ଟାବ୍ଦ) ମୁକୁନ୍ଦ ଦେବଙ୍କ ମୃତ୍ୟୁ ପର୍ଯ୍ୟନ୍ତ (୧୫୬୮ ଖ୍ରୀ) ପ୍ରାୟ ସାର୍ଦ୍ଧ ତିନିଶତ ବର୍ଷ କାଳ ଓଡ଼ିଶାର ରାଜଧାନୀ ଥିବା କଟକର ବାରବାଟୀ ଦୁର୍ଗ ମୁସଲମାନ ରାଜତ୍ୱ ଆରମ୍ଭରୁ ସେମାନଙ୍କ ରାଜଧାନୀରେ ପରିଣତ ହେଲା । ତେଣୁ ରାମଚନ୍ଦ୍ର ଦେବ ବାରବାଟୀ ସ୍ଥାନରେ ନିଜର ଶକ୍ତି କ୍ଷୟ ନ କରି ପୁରୀ ଜିଲ୍ଲାର ଉତ୍ତମ ବରୁଣେଇ ପର୍ବତର ପାଦଦେଶରେ ଲୁକ୍କାୟିତ ଗଭୀର ଅରଣ୍ୟାନୀ ପରିବେଷ୍ଟିତ ଓ ଚତୁର୍ଦ୍ଦିଗରେ ଅନ୍ୟାନ୍ୟ କ୍ଷୁଦ୍ର କ୍ଷୁଦ୍ର ଦୁର୍ଗ ଦ୍ୱାରା ସୁରକ୍ଷିତ ଖୁରୁଧା ଦୁର୍ଗ ପ୍ରତିଷ୍ଠା କରି ନିଜର ରଣ କୌଶଳ ଓ ଦୂରଦୃଷ୍ଟିର ପରିଚୟ ଦେଇଥିଲେ । ମୋଗଲ ଓ ମରହଟ୍ଟା ରାଜତ୍ୱ କାଳରେ ବାହ୍ୟ ଶତ୍ରୁର ଆକ୍ରମଣ ପ୍ରତିହତ କରିବା ବିଷୟରେ ଏହା ପ୍ରମାଣିତ ହୋଇଥିଲା । ଏହାର ଅନ୍ୟ ନାମ 'ଜଗନ୍ନାଥପୁର କଟକ' ଭାର୍ଦ୍ଦିକ ହୋଇଥିଲା ତାହା ପରେ ଆଲୋଚିତ ହେବ । ଖୁରୁଧା ଦୁର୍ଗ ସମ୍ବନ୍ଧରେ ଶ୍ରୀଜଙ୍ଗ ଶିଳାଲିପି ଦ୍ୱୟ(୧) 'ଆକବର ନାମା' ପ୍ରଭୃତି ମୋଗଲ ରାଜତ୍ୱରେ ରଚିତ କେତେକ ଐତିହାସିକ ଗ୍ରନ୍ଥ ଓ କେତେକ ପ୍ରାଚୀନ ଓଡ଼ିଆ ପୁସ୍ତକରେ ବର୍ଣ୍ଣନା ମିଳେ । ସେ ଗୁଡ଼ିକର ଗୁରୁତ୍ୱ ଦୃଷ୍ଟିରୁ ନିମ୍ନରେ ଆବଶ୍ୟକୀୟ ଅଂଶ ଉଦ୍ଧାର କରାଗଲା ।

୧୫୧୭ ଶକାବ୍ଦ ବା ୧୫୯୫ ଖ୍ରୀଷ୍ଟାବ୍ଦର ଲିଖିତ ପ୍ରଥମ ଶ୍ରୀଜଙ୍ଗ ଶିଳାଲିପି 'ଗୁଲୁକା ମୁକୁନ୍ଦ ଦେବ ଅନ୍ତ ଅଂକ ବରଷ ୨୮ ଏକବର ପାତିସା ହୋ ରଜପୁତ ମାନସିଂହ ରଜା 'କଟକ ପଛିମେ ପରଙ୍ଗ ଖୁରୁଦାଥୀତ କଟକ' ସୃଦ୍ର ଗଜପତି ରାଜା ରାମଚନ୍ଦ୍ର ଦେବ ୩୪ ଅଙ୍କ ଶ୍ରାହ୍ମ ।"

× × ×

୧୫୨୦ ଶକାବ୍ଦ ବା ୧୫୯୮ ଖ୍ରୀଷ୍ଟାବ୍ଦର ଦ୍ୱିତୀୟ ଶ୍ରୀଜଙ୍ଗ ଶିଳାଲିପି :—
"ଚଲୁକ ମୁକୁନ୍ଦ ଦେବ ଅନ୍ତେ ଜବନ ଭୋଗ ବରଷ ୩୦ ଢିଲ୍ଲିପୁର ଏକବର ପାତିସା ହୋଇ ରଜପୁତ ମାନସିଂହ ରଜା ଆମଳ 'କଟକ ପଛିମେ ପରଙ୍ଗ ଖୁଣ୍ଟାଦାଥୀତ କଟକ ସୃଦ୍ର ବଜା' ଗଜପତି ରାମଚନ୍ଦ୍ର ଦେବ ୩୭ ଅଙ୍କ ।"

× × ×

(୧) Journal of the Orissa Academy, Vol. III, No. 1 P. 25.

ଖୁର୍ଦ୍ଧା ଦୁର୍ଗର ଅବସ୍ଥିତି ଓ ପ୍ରାଚୀନତା ନିର୍ଣ୍ଣୟ ଓ ଏହାର ପ୍ରତିଷ୍ଠାତା ଗଜପତି ରାମଚନ୍ଦ୍ରଙ୍କ ଅଙ୍କ ଗଣନା ପାଇଁ ଉକ୍ତ ଶିଳାଲେଖ ବହୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଉପରୋକ୍ତ ଆଧୁନିକ କଟକ ନଗର ପଶ୍ଚିମକୁ ପରଙ୍ଗ ବା ତତ୍କାଳୀନ ପରଙ୍ଗ ଦଣ୍ଡ-ପାଟରେ 'ଖୁର୍ଦ୍ଧା କଟକ' ଅବସ୍ଥିତ ଥିବାର ଲେଖାଯାଇଛି । ପ୍ରକୃତରେ ଖୁର୍ଦ୍ଧା କଟକର ଦକ୍ଷିଣ ପଶ୍ଚିମ ଦିଗରେ ଅବସ୍ଥିତ । ସେ କାଳରେ ଆଧୁନିକ ଭୌଗୋଳିକ ଜ୍ଞାନର ଅଭାବ ଯୋଗୁଁ ବାଲେଶ୍ୱର ଅଞ୍ଚଳର ଲିପିକାରଙ୍କ ପକ୍ଷରେ ଖୁର୍ଦ୍ଧା ଦୁର୍ଗର ଦିଗ୍ ନିର୍ଣ୍ଣୟରେ ଏହି ସାମାନ୍ୟ ଭ୍ରମ ଧର୍ତ୍ତବ୍ୟ ନୁହେଁ । ପରନ୍ତୁ ଓଡ଼ିଶାର ତତ୍କାଳୀନ ଇତିହାସ ଆଲୋଚନା ପାଇଁ ଏହି ଦୁଇଟି ଲେଖ ଅକାଟ୍ୟ ପ୍ରମାଣ ଯୋଗାଏ ।

ପ୍ରସିଦ୍ଧ ମୋଗଲ ସେନାପତି ମାନସିଂହଙ୍କ ୧୫୯୩ ଖ୍ରୀଷ୍ଟାବ୍ଦରେ ଖୁର୍ଦ୍ଧା ରାଜ୍ୟ ଆକ୍ରମଣ ପ୍ରସଙ୍ଗରେ ସୁଦୃଢ଼ ଖୁର୍ଦ୍ଧା ଦୁର୍ଗ ଓ ତନ୍ନିକଟବର୍ତ୍ତୀ କେତେକ ଦୁର୍ଗର ଉଲ୍ଲେଖ ଦେଖାଯାଏ ।

"At this time the home of Ramchand was plundered. He is one of the famous Zamindars of Orissa. × × Ramchand *entered the fort of Khurda which was the strongest of his fortresses*. × × The forts of Sahajpal, Khargarh, Kalupara, Kahnān, Longarh, Bhunmal and many populated places fell into possession." (୧୦)

ଉକ୍ତ ଅଂଶରୁ ଜଣାଯାଏ ଯେ ମାନସିଂହଙ୍କ ଖୁର୍ଦ୍ଧା ରାଜ୍ୟ ଆକ୍ରମଣ ସମୟରେ ଖୁର୍ଦ୍ଧା କଟକ ତାଙ୍କର ସୁଦୃଢ଼ତମ ଦୁର୍ଗ ରୂପେ ବିବେଚିତ ହେଉଥିଲା । ଏହାକୁ ରକ୍ଷା କରୁଥିବା ଦୁର୍ଗ ଗୁଡ଼ିକ ମଧ୍ୟରୁ ସହଜପାଳକୁ ଗଙ୍ଗ ବଂଶୀୟ କାଳରେ ପ୍ରତିଷ୍ଠିତ ଓଡ଼ିଶାର ନିକଟବର୍ତ୍ତୀ 'ସହଜପାଳ କଟକ' ସହିତ, ଖଡଗଡ଼କୁ କଟଣୀ ଷ୍ଟେସନ ନିକଟବର୍ତ୍ତୀ ଅଗଗଡ଼ ସହିତ, କାଳୁପଡ଼ାକୁ ମୋଟର ରେଳ ଷ୍ଟେସନ ଅଦୂରସ୍ଥ କାଳୁପଡ଼ା ସହିତ, ଲୋଙ୍ଗଗଡ଼କୁ ଲୁଣିନଈ କୂଳରେ ଥିବା ଲୁଣିଗଡ଼ ସହିତ ଓ ଭୂନମଲକୁ ଓଡ଼ିଶାର ନିକଟରେ ଅବସ୍ଥିତ ଭୂଇଁମୂଳ ଗଡ଼ ସହିତ ଚିହ୍ନିତ କରାଯାଇପାରେ । କେବଳ କହ୍ନାନର ଅବସ୍ଥିତି ନିର୍ଣ୍ଣୀତ ହୋଇ ପାରୁନାହିଁ ।

ଅଲ୍ ବଦୌନି (Al Badāoni) କୃତ 'ମନ୍ତଖାବୁତ ତୱାରିଖ' (Muntkhabu-'t-tawārīkh)ରେ ଖୁର୍ଦ୍ଧା ରାଜା ରାମଚନ୍ଦ୍ରଙ୍କ ଉଲ୍ଲେଖ ଦେଖା-

---

(୧୦) ଆକବର ନାମା ( ଇଂରେଜୀ ଅନୁବାଦ ) ତୃତୀୟ ଖଣ୍ଡ ପୃ ୯୬୨-୯୬୮ ।

ଯାଏ । ଯଥା Muhammad Sharīf, Sarmadi··· was sent to Bengal in 1591-92 and in the following year was fighting in Urīsā against Rām candra, Rājā of Khurda.' (୧୧)

ସପ୍ତଦଶ ଶତାବ୍ଦୀରେ ରଚିତ ମାଳସୁନ୍ଦର ଗୀତା'ରେ ଲେଖାଅଛି ଯେ ଯଦୁବଂଶର ପଞ୍ଚମ ପାଟ ବା ରାଜା ଖୋର୍ଧାରେ ରହିଥିଲେ । ଯଥା —

'କଳାସିଙ୍ଘ ଉପରେ ଚତୁଂ ପଳାଇବ
ଖୋରଧା କରିବ ସ୍ଥିତି ।
ପଞ୍ଚପାଟ ଯଦୁବଂଶ ଶେଷକୁ ଯେ
ନରେନ୍ଦ୍ର ଦେବ ନୃପତି' ।

ଉଦ୍ଧୃତ ପଦ୍ୟାଂଶରେ କଳାସିଙ୍ଘ, କଳାପାହାଡ଼ଙ୍କୁ ଓ ନରେନ୍ଦ୍ରଦେବ ରାମଚନ୍ଦ୍ରଦେବଙ୍କୁ ଲକ୍ଷ୍ୟ କରି ଲେଖାଯାଇଛି । ମାଦଳା ପାଞ୍ଜି ଅନୁସାରେ ଗୋବିନ୍ଦ ଦେବ, ଚକ୍ର ପ୍ରତାପ, ନରସିଂହ ଜେନା ଓ ରଘୁରାମ ଜେନା ଯଦୁବଂଶର ପ୍ରଥମ ଚତୁର୍ଥପାଟ ବା ରାଜା ଓ ରାମଚନ୍ଦ୍ର ଦେବ ପଞ୍ଚମ ପାଟ ।

ପ୍ରଥମ ଦିବ୍ୟସିଂହ ଦେବଙ୍କ ରାଜତ୍ୱ (୧୬୮୯ ୧୭୦୬)ରେ ଲିଖିତ ଯାନକୃଷ୍ଣ ଦାସଙ୍କ 'ରସବିନୋଦ' ଗ୍ରନ୍ଥରେ ଖୋର୍ଧା କଟକର ଉଲ୍ଲେଖ ଦେଖାଯାଏ । ଯଥା—

"ଯେତେବେଳେ ମାନସିଂହ ସାହି, ଆସିଲା ଉତ୍କଳକୁ ବାହି,
ସେତେବେଳେ ରାମଚନ୍ଦ୍ର ରାଜା ଶୁଭେ ପାଳନ୍ତି ଜନପ୍ରଜା,
ଖୋରଧା କଟକ ନଗର ରହିଣଥିଲେ ନୃପବର ।
ଅଣଚାଳିଶ ଅଙ୍କ ଭୋଗ କରି ହୋଇଲେ ମୃତ୍ୟୁ ଯୋଗ
ତାହାଙ୍କ ନନ୍ଦନର ନାମ ପୁରୁଷୋତ୍ତମ ନୃପ ଜାଣ
× × ×
ବଳଭଦ୍ର ଦେବ ନାମ ଖୋରଧା କଟକେ ବିଶ୍ରାମ ।"

ପ୍ରଥମ ବୀରକେଶରୀ ଦେବଙ୍କ ସମସାମୟିକ କବି ବିଶ୍ୱମ୍ଭର ଦାସ କୃତ 'ଚଉଦ ଭାରତ' ସଭା ପର୍ବରେ ଖୋର୍ଧାର ବର୍ଣ୍ଣନା ମିଳେ ।

---

(୧୧) ମନ୍ତଖାବୁ-ତ-ତଭ୍ୱାରିଖ, ତୃତୀୟ ଖଣ୍ଡ, ପୃ ୩୪୦

'ପୃଥ୍ୱୀମଣ୍ଡଳ ସାର ଭୂମି ଓଡ଼ିଶା
ଖୋରଧା ନାମେ ନଗର
ତହିଁରେ ନୃପତି ଶ୍ରୀ ଶ୍ରୀ ଗଜେଶ୍ୱର
ପ୍ରତାପରେ ବୀରବର ହେ ।
ମୁକୁନ୍ଦମଣି ଲକ୍ଷେ ରଜାର ହେ
ଦୟାବନ୍ତ ଆରତ ଲୋକର ହେ
ତହୁଁ ଶତ୍ରୁ ମିତ୍ର ଏକାକାର ହେ ।" ୨୧

ଅଷ୍ଟାଦଶ ଶତାବ୍ଦୀର ମଧ୍ୟ ଭାଗରେ ଆବିର୍ଭୂତ କବି ରାମ ଦାସ ସ୍ୱୀୟ 'ଦାର୍ଢ୍ୟତାଭକ୍ତି ରସାମୃତ'ର ବନ୍ଧୁ ମହାନ୍ତି ଉପାଖ୍ୟାନରେ ଖୋରଧା ନାମ ଲେଖିଛନ୍ତି ।

"ତତ୍‌କ୍ଷଣେ ଗରୁଡ଼ ଆରୋହୀ
ଗଗନ ମାର୍ଗେ ଉଡ଼ିଯାଇ
ବଜେ **ଖୋରଧା ରଥି ପୁରେ**, ପ୍ରତାପରୁଦ୍ରର ମନ୍ଦିରେ ।"

ଗଞ୍ଜାମ ଅଞ୍ଚଳର କବି ରାମ ଦାସ ଦୁଇଟି ସ୍ୱତନ୍ତ୍ର ଦୁର୍ଗ ଖୋରଧା ଓ ରଥିପୁରକୁ ଏକତ୍ର ମିଶାଇ ଭ୍ରମ କରିଛନ୍ତି । ମୋଗଲ, ମରହଟ୍ଟା ଓ ବ୍ରିଟିଶ ରାଜତ୍ୱ କାଳର ଅନେକ (Records) ବା ସରକାରୀ କାଗଜପତ୍ରରେ ମଧ୍ୟ ଖୁର୍ଦ୍ଧାର ନାମ ମିଳେ । କିନ୍ତୁ ଏଠାରେ ସେଗୁଡ଼ିକରୁ ଉଦ୍ଧୃତି ଦେବା ଅନାବଶ୍ୟକ । ଗଜପତି ରାମଚନ୍ଦ୍ର ଦେବଙ୍କ ଦ୍ୱାରା ୧୫୭୦ରୁ ୧୫୭୫ ଖ୍ରୀଷ୍ଟାବ୍ଦ ମଧ୍ୟରେ ପ୍ରତିଷ୍ଠିତ ଦୃଢ଼ ଖୁରୁଧା ଦୁର୍ଗ ପ୍ରାୟ ୧୭୦ ବର୍ଷ କାଳ ମୋଗଲମାନଙ୍କ ଘନ ଘନ ଆକ୍ରମଣର ପ୍ରତିରୋଧ କରି ଓଡ଼ିଶାର ଧର୍ମ ଓ ଜାତୀୟତା ରକ୍ଷାରେ ବିଶେଷ ସାହାଯ୍ୟ କରିଥିଲା । ବ୍ରିଟିଶ ଆକ୍ରମଣ ସମୟରେ (୧୮୦୪ ଧ୍ୱସ୍ତ ବିଧ୍ୱସ୍ତ ଏହି ଦୁର୍ଗର ଧ୍ୱଂସାବଶେଷ ଦର୍ଶନରେ ଜାତୀୟ ବୀର ରାମଚନ୍ଦ୍ରଙ୍କ ସ୍ମୃତି ଜାଗରୂକ ହୁଏ ।

**ପୁରୀରେ ଶ୍ରୀ ଜଗନ୍ନାଥଦେବଙ୍କ ପୁନଃ ପ୍ରତିଷ୍ଠା**:—କଳାପାହାଡ଼ର ଆକ୍ରମଣ ପୂର୍ବରୁ ସର୍ବ ପ୍ରଥମେ ହିନ୍ଦୁ ଧର୍ମଦ୍ୱେଷୀ ଦିଲ୍ଲୀ ସୁଲତାନ ଫିରୋଜ ତୋଗଲକ ୧୩୬୦ ଖ୍ରୀଷ୍ଟାବ୍ଦରେ ଜଗନ୍ନାଥ ମନ୍ଦିର ଧ୍ୱଂସ ଲକ୍ଷ୍ୟରେ କଟକ ପର୍ଯ୍ୟନ୍ତ ଆସିଥିଲେ । କିନ୍ତୁ ସେ ପୁରୀରେ ଜଗନ୍ନାଥ ମନ୍ଦିର ଆକ୍ରମଣ କରିଥିବା ଅଭ୍ରାନ୍ତ ଭାବରେ ପ୍ରମାଣିତ ହୋଇ ନାହିଁ । ଗଜପତି ପ୍ରତାପରୁଦ୍ରଙ୍କ ଦକ୍ଷିଣ ଅଭିଯାନ ସମୟରେ ବଙ୍ଗ ସୁଲତାନ ହୁସେନ ସାହ ୧୫୧୦ ଖ୍ରୀଷ୍ଟାବ୍ଦରେ ପୁରୀ ମନ୍ଦିର ଅତର୍କିତ ଭାବରେ ଆକ୍ରମଣ କରି ଅନେକ ଦେବ ପ୍ରତିମା ଭାଙ୍ଗି ପକାଇଥିଲେ । କିନ୍ତୁ ୧୫୬୮ରେ ଗଜପତି

ମୁକୁନ୍ଦ ଦେବଙ୍କ ମୃତ୍ୟୁ ପରେ ଉପଯୁକ୍ତ ପ୍ରତିରୋଧର ଅଭାବରୁ ବଙ୍ଗ ସୁଲତାନଙ୍କ ସେନାପତି କଳାପାହାଡ଼ଙ୍କ ଜଗନ୍ନାଥ ମନ୍ଦିର ଆକ୍ରମଣ ଅତ୍ୟନ୍ତ ପ୍ରବଳ, ଆତଙ୍କ ପ୍ରଦ ଓ କ୍ଷତିକାରକ ହୋଇଥିଲା । ତେଣୁ ଏହାର ଦୁଃଖଦ ସ୍ମୃତି ଏ ପର୍ଯ୍ୟନ୍ତ ଓଡ଼ିଆ ଜାତିର ମାନସପଟରେ ଅଙ୍କିତ ରହିଛି ।

ମାଦଳା ପାଞ୍ଜିରେ ବର୍ଣ୍ଣିତ ଉକ୍ତ ଆକ୍ରମଣ ବୃତ୍ତାନ୍ତ 'ମଖଜନ-ଇ-ଅଫଗାନ' ନାମକ ସମସାମୟିକ ମୁସଲମାନ ଇତିହାସ ଗ୍ରନ୍ଥରେ ବର୍ଣ୍ଣିତ ହୋଇଅଛି । (୧୨) ଏହାର ଅନ୍ୟ ଅନୁବାଦରୁ ଜଣାଯାଏ ଯେ ବଙ୍ଗ ନବାବ ସୁଲେମାନ କରରାନ, ଜଗନ୍ନାଥ ମନ୍ଦିର ଭାଙ୍ଗି ପକାଇଥିଲେ ଏବଂ ତାଙ୍କ ଆଦେଶରେ ଶ୍ରୀକୃଷ୍ଣଙ୍କ ବିଗ୍ରହ ଖଣ୍ଡ ବିଖଣ୍ଡ କରାଯାଇ ପାଣି ନାଳରେ ଫିଙ୍ଗା ଯାଇଥିଲା ।

"The largest temple of the Hindus × × is known by the name of Jagannatha. × × He pulled down the shrine and ordered the image of God Krishna + + to be broken in to fragments and cast into the gutter" (13)

ଐତିହାସିକ ଆବୁଲଫଜଲ କଳାପାହାଡ଼ ଦ୍ୱାରା ଜଗନ୍ନାଥ ମହାପ୍ରଭୁଙ୍କ ବିଗ୍ରହ ପୋଡ଼ା ହୋଇଥିବା ବିଷୟ ଉଲ୍ଲେଖ କରିଛନ୍ତି । ଯଥା —

"Kalapahara, the general of Sulayman Karani on his conquest of the country flung the image into fire and burnt it and afterwards cast it in to the sea" (14)

ଆକବରଙ୍କ ସମକାଳୀନ ଅନ୍ୟ ଏକ ଐତିହାସିକ ଅଲ୍ ବଦୌନି ମଧ୍ୟ ପୁରୀରେ ଇସଲାମର ଆଧିପତ୍ୟ ପ୍ରତିଷ୍ଠା ସମ୍ବନ୍ଧରେ ଲେଖିଛନ୍ତି । ଯଥା:—

"He (Sulaiman) had conquered the fort of Katak Banaras, the mine of unbelief and made Jagannath a home of Islam." (15)

---

(12) History of the Afgans by Dorn P. 181.

(13) Bengal Past and Present Vol LXXII, No. 135 P. 22

(14) Ain-i-Akbari ଦ୍ୱିତୀୟ ଭାଗ, ପୃ ୧୨୮

(୧୫) ମନ୍ତଖାବୁ-ତ-ତଭାରିଖ, ଦ୍ୱିତୀୟ ଭାଗ, ପୃ ୨୬୩

୧୫୬୮ ଖ୍ରୀଷ୍ଟାବ୍ଦରେ ମୁସଲମାନ ସେନା ଭାରତର ଏକ ପ୍ରଧାନ ହିନ୍ଦୁ ଧର୍ମପୀଠ ଜଗନ୍ନାଥ ମନ୍ଦିରରେ ପ୍ରବେଶ କରି ବିଗ୍ରହମାନଙ୍କୁ ଧ୍ୱଂସ କରିବାରୁ ସେମାନଙ୍କର ବହୁ ଦିନର ଅଭିଳାଷ ପୂର୍ଣ୍ଣ ହେଲା ଏବଂ ଏହା ଇସଲାମ୍ ଧର୍ମର ଏକ ବିପୁଳ ବିଜୟ ବୋଲି ମୁସଲମାନମାନେ ଗର୍ବ ଓ ଗୌରବ ଅନୁଭବ କଲେ କିନ୍ତୁ ହିନ୍ଦୁମାନେ ସେମାନଙ୍କର ପ୍ରସିଦ୍ଧ ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥ ବିଗ୍ରହର ଧ୍ୱଂସ ସାଧନରେ ଅତ୍ୟନ୍ତ ଦୁଃଖାଭିଭୂତ, ବ୍ୟଥିତ ଓ ନିରାଶ୍ରୟ ହୋଇପଡ଼ିଥିଲେ । ଏହା ଓଡ଼ିଶା ତଥା ସମଗ୍ର ଭାରତବର୍ଷରେ ଏକ ଚହଳ ପକାଇ ଦେଇଥିଲା । ହିନ୍ଦୁ ସମାଜର ଏହି ଘୋର ଦୁର୍ଦ୍ଦିନରେ ଧର୍ମପ୍ରାଣ ରାମଚନ୍ଦ୍ରଦେବ ପ୍ରଥମେ ଖୁରୁଧା ଚତୁଃପାର୍ଶ୍ୱ ବର୍ତ୍ତୀ ଅଞ୍ଚଳରେ ଏକ ଶକ୍ତିଶାଳୀ ରାଜ୍ୟ ପ୍ରତିଷ୍ଠା କରି ଧର୍ମସଂସ୍ଥାପନ ନିମିତ୍ତ ସ୍ୱପୀଠରେ ପ୍ରଭୁ ଜଗନ୍ନାଥଙ୍କ ପୁନଃ ପ୍ରତିଷ୍ଠାରେ ବ୍ରତୀ ହେଲେ ।

ଜଗନ୍ନାଥ ମହାପ୍ରଭୁ ପୁନର୍ବାର କେବେ ସ୍ୱପୀଠରେ ପ୍ରତିଷ୍ଠିତ ହେଲେ ସେ ସମ୍ବନ୍ଧରେ ମାଦଳାପାଞ୍ଜିରେ ପ୍ରଦତ୍ତ ବିବରଣ ବିଶ୍ୱାସଯୋଗ୍ୟ ମନେହୁଏ । ଯଥା—"ଅଙ୍କେ ରାଜା କୁଜଙ୍ଗ ଗଡ଼ରୁ ବ୍ରହ୍ମ ଅଣାଇଲେ । ଖୁରୁଧା କଟକେ ବିଜେଯାଗ କରି ସୁମୁହୂର୍ତ୍ତ କରାଇଲେ । ଅ ୧୧ ଙ୍କ ମକର ୧୮ ଦିନ ଶ୍ରାବଣ ଶୁକ୍ଳ ନବମୀ ଦିନ ଶ୍ରୀ ପୁରୁଷୋତ୍ତମ ବଡ଼ଦେଉଳେ ନୃସିଂହଦାସଙ୍କେ ବିଜେ କରାଇଲେ । ବ୍ରହ୍ମ ଆଣିଲା ବିଶର ମହାନ୍ତିଙ୍କ ପୋର ନାଏକ କଲେ । ଏ ଦାରୁବ୍ରହ୍ମ ଯେଣ ଅଇଲା ଏ ଜାତି ଭିତରେ ପଶିବ ବୋଲି ଶାଢ଼ି ଦେଲେ ।" (୧୬)

ଏ ସଂପର୍କରେ ଚକଡ଼ା ପୋଥିରେ ପ୍ରଦତ୍ତ ବିବରଣ ପରବର୍ତ୍ତୀ କାଳର ହେଲେ ମଧ୍ୟ ଏଠାରେ ଉଲ୍ଲେଖଯୋଗ୍ୟ । ଯଥା—"ସେହି ଖୋରଧା ଗଡ଼ର ଶୁଭ ଦେଲା ଦିନ ବୀର ରାମଚନ୍ଦ୍ରପୁର ବୋଲି ଏକ ଶାସନ କରିବେ ବୋଲି ରାଜ ସଭାରେ ପଚାରିଲେ ଓ ଶ୍ରୀପୁରୁଷୋତ୍ତମ ଦେଉଳରେ କେଉଁ ଦେବତା ବସାଇବାର ପରାମର୍ଶ ପ୍ରଶ୍ନ କଲେ । ମାତ୍ର କେହି କିଛି ଉତ୍ତର ନ ଦେଇ ବିସ୍ମିତ ହୋଇ ରହିଲେ । ରାତ୍ରରେ ରାଜାଙ୍କୁ ସ୍ୱପ୍ନରେ ଆଜ୍ଞା ହେଲା ଯେ, ଆମ୍ଭେ କୁଜଙ୍ଗଠାରେ ବିଜେ କରି ରହିଅଛୁଁ । ସେ ଶାଳଖାଲୁ ତୁ ନୂଆକରି ଦାରୁବ୍ରହ୍ମ ମୂର୍ତ୍ତି କରିବୁ । ଭିତର ପୋଟଳରେ ଆମ୍ଭଙ୍କୁ ବିଜେ କରାଇବୁ । ମହା ଅଣସରରେ କାଲି ନୃସିଂହଠାରୁ ଆମ୍ଭଙ୍କୁ ବିଜେ କରାଇ ନେଇ ଦେଉଳ ଭିତରେ ନୃସିଂହଦାସଙ୍କେ ଆମ୍ଭଙ୍କୁ ବିଜେ କରାଇବୁ ।"

---

(୧୬) ମାଦଳାପାଞ୍ଜି, ପ୍ରାଚୀ ସଂସ୍କରଣ, ପୃ ୬୨ ୬୩

"ଚଣ୍ଡୀ ଆରଦନ ରଜା ଶୁଦ୍ଧି ମନ୍ତ ଓ ମାର୍ଜିତ ହୋଇ ସମସ୍ତ ଭଟ୍ଟମିଶ୍ର, ସାମନ୍ତ, ଘଡ଼ଇ, ଘଡ଼ଚାଳ, ମାଲଜେଠୀ, ହୁଦାଯୂତ, ରାଉତଙ୍କୁ ଡକାଇଲେ । ମହାସଭା କରି ରାଜା ସ୍ୱପ୍ନ ବୃତ୍ତାନ୍ତ ସବୁ କହିଲେ । ସମସ୍ତେ ଶୁଣି ମସ୍ତକରେ ହାତ ଦେଇ ଜଣାଇଲେ, ଦେଓ, ଏବେ ଦେବତା ବ୍ରାହ୍ମଣଙ୍କ ଉଦୟ ହେବ । ଏହା କହିବାରୁ ରାଜା 'ବଡ଼ ପଦ୍ମନାଭ ପଟ୍ଟନାୟକଙ୍କୁ ଅଜ୍ଞା ଦେଲେ । ସେ ଯାଇ କୁଜଙ୍ଗଠାରୁ ମହାପ୍ରଭୁଙ୍କୁ ଆଣିଲେ । ମହାରାଜ ସ୍କନ୍ଦପୁରାଣ ବଧିରେ ଚନ୍ଦ୍ରରାଣୀ ଯବରେ ଦାରୁ ଶ୍ରୀମୂର୍ତ୍ତି କରି ଭିତର ପୋଟଳରେ ଶାଳଖା ବଜେ କରାଇ ଶ୍ରୀମୂର୍ତ୍ତି କଲେ ।

ଏହି ରାଜାଙ୍କ ୮ (ଆଠ) ଅଙ୍କ ମିଥୁନ ୧୮ ଦିନେ ଆଷାଢ଼ ଶୁକ୍ଳ ଦଶମୀ ଗୁରୁବାରେ ରଥ ନ ହୋଇ ଚଣ୍ଡଦୋଳରେ ବଜେ କରାଇ ଅଶ୍ୱମେଧ ଭାଣ୍ଡରେ ବଜେ କରାଇ ନୃସିଂହାସନେ ବଜେ କଲେ । ସେଠାରେ ପୁଣି ରାଜା ଛନ ଶାସନ ବସାଇବୁଁ ବୋଲି ସଂକଳ୍ପ କଲେ ।" (୧୭)

ଉଭୟ ବର୍ଣ୍ଣନାର ସାରମର୍ମ ସମାନ ହେଲେ ମଧ୍ୟ କେତେକ ଅସାମଞ୍ଜସ୍ୟ ଲକ୍ଷିତ ହୁଏ । ଯଥା—ମାଦଳାପାଞ୍ଜିରେ କୁଜଙ୍ଗରୁ ବ୍ରହ୍ମ ଆଣିବା ଲୋକର ନାମ ବଣର ମହାନ୍ତି, ଚକଡ଼ା ପୋଥିରେ ବଡ଼ ପଦ୍ମନାଭ ପଟ୍ଟନାୟକ ବୋଲି ଲେଖାଯାଇଛି । ବ୍ରହ୍ମ ଆଣିବା ସମୟ ସମ୍ବନ୍ଧରେ ମଧ୍ୟ ପାର୍ଥକ୍ୟ ଲକ୍ଷିତ ହୁଏ । ଚକଡ଼ା ପୋଥି ଅନୁସାରେ ଆଠ ଅଙ୍କରେ ମୂର୍ତ୍ତି ପ୍ରତିଷ୍ଠିତ ହୋଇଥିଲେ । କିନ୍ତୁ ପାଞ୍ଜି କହେ ଯେ ନଅ ଅଙ୍କରେ ବ୍ରହ୍ମ ଅଣାଯାଇ ୧୧ ଅଙ୍କରେ ପୁନଃ ସ୍ଥାପିତ ହେଲେ । ଚକଡ଼ାର ଦୁଇଟି ନୂତନ ତଥ୍ୟ ହେଉଛି ଯେ ସ୍କନ୍ଦପୁରାଣ ବଧିରେ ଚନ୍ଦ୍ରରାଣୀ ଯବରେ ଶ୍ରୀମୂର୍ତ୍ତି ନିର୍ମିତ ହୋଇଥିଲେ ଏବଂ ଏହି ପ୍ରସିଦ୍ଧ ଘଟଣାକୁ ସ୍ମରଣୀୟ କରିବା ପାଇଁ ରାମଚନ୍ଦ୍ର ଦେବ ଛଅଗୋଟି ବ୍ରାହ୍ମଣ ଶାସନ ପ୍ରତିଷ୍ଠା କରିଥିଲେ । ପାଞ୍ଜି ଅନୁସାରେ ଶ୍ରୀବିଗ୍ରହମାନ ପ୍ରଥମେ ଖୁରୁଧା କଟକରେ ନିର୍ମିତ ହୋଇ ପରେ ପୁରୀ ମନ୍ଦିରରେ ପୁନଃ ସ୍ଥାପିତ ହୋଇଥିଲେ ।

ଉଭୟରେ ପ୍ରଦତ୍ତ ରାଜାଙ୍କ ଅଙ୍କ ଜ୍ୟୋତିଷ ଗଣନା ଅନୁସାରେ ଅସିଦ୍ଧ ହେଉଥିବାରୁ ମାସ, ତିଥି, ବାର ପ୍ରଭୃତିକୁ ବିଚାର କରି ଏହି ପ୍ରସିଦ୍ଧ ଘଟଣାର କାଳ ନିରୂପଣ କରାଯାଉଛି । ଚକଡ଼ାରେ ଲେଖାଥିବା ମିଥୁନ ୧୮ ଦିନ, ଆଷାଢ଼ ଶୁକ୍ଳ ଦଶମୀ ଗୁରୁବାର ୧୬-୭-୧୫୭୫ ତାରିଖରେ ଓ ପାଞ୍ଜି ପ୍ରଦତ୍ତ କକଡ଼ା ୧୮ ଦିନ, ଶ୍ରାବଣ ଶୁକ୍ଳ ନବମୀ, ୧୭-୭-୧୫୭୫ ତାରିଖରେ ରାମଚନ୍ଦ୍ର ଦେବଙ୍କ ୧୦ ଅଙ୍କରେ

---

(୧୭) "ଚକଡ଼ା ପୋଥି ଓ ଚମ୍ପୁ ମୀ ଚକଡ଼ା", ପୃ ୭୭

ପଡ଼ିଥିଲା । ଏହି ଉଭୟ ତାରିଖ ମଧ୍ୟରୁ ପାଞ୍ଜିର ତାରିଖ ସମସାମୟିକ ଇତିହାସ ଦୃଷ୍ଟିରୁ ଗ୍ରହଣୀୟ ।

ବଙ୍ଗ ସୁଲତାନ ଓଡ଼ିଶା ଅଧିକାର କରି ପୁରୀକୁ କତ୍ଲୁଖାଁଙ୍କ ତତ୍ତ୍ୱାବଧାନରେ ରଖିଥିଲେ । କିନ୍ତୁ ବଙ୍ଗର ପରାକ୍ରମଶାଳୀ ସୁଲତାନ ଦାଉଦ ଖାଁ ତକରାଇ (ମୋଗଲ ମାରି) ଯୁଦ୍ଧରେ ମୋଗଲ ସମ୍ରାଟଙ୍କ ସେନାପତି ତୋଡ଼ର ମଲ୍ଲଙ୍କ ଦ୍ୱାରା ସଂପୂର୍ଣ୍ଣ ରୂପେ ପରାଜିତ ହୋଇ (୩-୩ ୧୫୭୫) 'କଟକସନ୍ଧି' ଦ୍ୱାରା (୧୨-୪ ୧୫୭୫) ମୋଗଲ ଆଧିପତ୍ୟ ସ୍ୱୀକାର କରିଥିଲେ । (୧୮) ଏହା ଫଳରେ ଓଡ଼ିଶାରୁ ଆଫଗାନ ଆଧିପତ୍ୟ ଲୁପ୍ତପ୍ରାୟ ହୋଇଥିଲା । ଏହି ଅପମାନ ଜନକ ସନ୍ଧି ପରେ ଦାଉଦ ଖାଁ ବଙ୍ଗ ଦେଶ ଅନ୍ତେ ମୋଗଲ ସେନା ସହିତ ସର୍ବଦା ଯୁଦ୍ଧରେ ବ୍ୟାପୃତ ରହି ଶେଷରେ ଜଣେ ମୋଗଲ ସେନାପତିଙ୍କ ହସ୍ତରେ ପ୍ରାଣ ହରାଇଥିଲେ (୧୨-୭ ୧୫୭୬) । ଦାଉଦଙ୍କ ଏହି ଘୋର ଦୁର୍ଦ୍ଦଶାର ସୁଯୋଗ ନେଇ ବିଚକ୍ଷଣ ରାଜନୀତିଜ୍ଞ ରାମଚନ୍ଦ୍ର ଦେବ ପୁରୀକୁ ଆଫଗାନ କର୍ତ୍ତୃତ୍ୱରୁ ମୁକ୍ତ କରି ସେଠାରେ ଶ୍ରୀ ଜଗନ୍ନାଥ ମୂର୍ତ୍ତି ପୁନଃ ପ୍ରତିଷ୍ଠା କରିଥିଲେ । ବୋଧହୁଏ ଦାଉଦଙ୍କ ପ୍ରଧାନ ଶତ୍ରୁ ରାଜପୁତ ସେନାପତି ତୋଡ଼ରମଲ୍ଲ ରାମଚନ୍ଦ୍ରଙ୍କୁ ଏହି ମହତ୍ କାର୍ଯ୍ୟରେ ସମର୍ଥନ କରିଥିଲେ ।

**ଅଭିନବ ଇନ୍ଦ୍ରଦ୍ୟୁମ୍ନ ଗଜପତି ରାମଚନ୍ଦ୍ର:** - ରାମଚନ୍ଦ୍ର ଦେବଙ୍କ ଧର୍ମସଂସ୍ଥାପନ ରୂପକ ଏହି ମହତ୍ କାର୍ଯ୍ୟ ଯୋଗୁଁ ସେ ସମୟରେ ସମଗ୍ର ଦେଶରେ ଗଭୀର ଆନନ୍ଦ, ଉତ୍ସାହ ଓ ଉତ୍ତେଜନାର ପ୍ରବଳ ଢେଉ ଖେଳି ଯାଇଥିଲା । ତାଙ୍କୁ ଜାତିର ମୁଖ୍ୟ ବ୍ୟକ୍ତିମାନେ ସ୍ୱତଃପ୍ରବୃତ୍ତ ହୋଇ ଗୌରବମୟ 'ଅଭିନବ ଇନ୍ଦ୍ରଦ୍ୟୁମ୍ନ' ବା 'ଦୁଷ୍ଟ ଇନ୍ଦ୍ରଦୁମନ' ପଦବୀ ପ୍ରଦାନ ଦ୍ୱାରା ସମ୍ମାନିତ କରିଥିଲେ । ଏ ସଂପର୍କରେ ମାଦଳାପାଞ୍ଜି ବର୍ଣ୍ଣିତ ବିଶ୍ୱାସଯୋଗ୍ୟ ବିବରଣୀ ହେବାରୁ ନିମ୍ନରେ ଉଦ୍ଧାର କରାଗଲା ।

"ପରମେଶ୍ୱର ୪ ମାସ ଯାଏ ଅନସଙ୍ଖୁଡ଼ି ମୋଣୋହି କରୁଥିଲେ । ଭୟରେ ରାଜା ସଙ୍ଖୁଡ଼ି ନ କରାଇଲେ । ବ୍ରାହ୍ମଣ ସାଆନ୍ତ ଭଟ୍ଟମିଶ୍ର ମାନଙ୍କୁ ସ୍ୱଦେଶୀ ପ୍ରଦେଶୀ ପଣ୍ଡିତମାନଙ୍କୁ ଘେନି ବସ୍ତ୍ର ପସ୍ତ୍ର ପରମେଶ୍ୱରଙ୍କ ଗହଣେ ଉପସ୍ଥିତ ହୋଇଲା । ସେ ସେବକମାନଙ୍କୁ ଘେନି ସଙ୍ଖୁଡ଼ି ଭୋଗ ମୋଣୋହି କରାଇଲେ । ସକାଳ ଧୂପ ମୋଣୋହି ବଢ଼ିଲା ଉତ୍ତାରେ ଖେଚଡ଼ି ମହାପ୍ରସାଦ କାଖରେ କରି ଶ୍ରୀ ରାମଚନ୍ଦ୍ର

---

(୧୮) History of Bengal, (Dacca University) ପ୍ରକାଶିତ ଦ୍ୱିତୀୟ ଭାଗ, ପୃ ୧୯୧-୧୯୨ ।

ଦେବ ମହାରାଜା ଜଏ ବଜଏ ଦ୍ୱାର କଳାପାହାଚ ଉପରେ ଜଗ ହୋଇ ସମସ୍ତ ଭଟ୍ଟମିଶ୍ରମାନେ ପଟୋଆର କରୁଥିଲେ । ସମସ୍ତଙ୍କୁ ଗୁହାଁଲେ । ରାମଚନ୍ଦ୍ର ଭଟ୍ଟ, ଗୋବର୍ଦ୍ଧନ ପ୍ରହରାଜେ, ମିଶ୍ର ଗୋସାଇଁ ଡକନେଲେ ରାଜାଙ୍କ ହାଥରୁ ଉଚ୍ଛୁଡ଼ ମହାପ୍ରସାଦ ସେବା କରି ମୁଣ୍ଡରେ ହାଥ ବୋଳଲେ । ହରି ଶବଦ କରି ସମସ୍ତ ସନ୍ନ୍ୟାସୀ ବ୍ରହ୍ମଚାରୀ, ଭଟ୍ଟମିଶ୍ରମାନେ ମହାପ୍ରସାଦ ପାଇଲେ । ସମସ୍ତ ସନ୍ୟାସୀ ବ୍ରହ୍ମଚାରୀମାନେ ବ୍ରାହ୍ମଣମାନେ ଶ୍ରୀ ରାମଚନ୍ଦ୍ର ଦେବ ମହାରାଜାଙ୍କୁ 'ଦୁଝା ଇନ୍ଦ୍ରଦୁମନ' ବୋଲି ଶାନ୍ତ୍ରୀ ଦେଲେ ।" (୧୯)

ଚକଡ଼ା ପୋଥିରେ ଏହା ସଂକ୍ଷିପ୍ତ ଭାବରେ ଲିଖିତ ହୋଇଛି । ଯଥା — "ସମସ୍ତ ବ୍ରାହ୍ମଣ ସାମନ୍ତ ଭଟ୍ଟ ସାମନ୍ତମାନେ ଆଶୀର୍ବାଦ କରି 'ନବୀନ ଇନ୍ଦ୍ରଦ୍ୟୁମ୍ନ' ବୋଲି ଶିରରେ ଦୁର୍ବାକ୍ଷତ ଦେଇ ଗୁହରୋଡ଼ି ଶାଧନ ମାଗିଲେ । ଶ୍ରୀ ରାମଚନ୍ଦ୍ର ଦେବ ବୋଲି ମହାପ୍ରଭୁଙ୍କ ପ୍ରସାଦ ଆଣି ଶିରରେ ବାନ୍ଧିଲେ ।" (୨୦)

ରାମଚନ୍ଦ୍ର ଦେବଙ୍କ ଏହି ଗୌରବମୟ ପଦବୀ ଲାଭ ବିଷୟ ଅନ୍ୟ କେତେକ ସମସାମୟିକ ସଂସ୍କୃତ ଓ ଓଡ଼ିଆ ଗ୍ରନ୍ଥରୁ ମଧ୍ୟ ଜଣାଯାଏ । ଜଗନ୍ନାଥ ମୂର୍ତ୍ତିର ପୁନଃ ପ୍ରତିଷ୍ଠା ଓ ମହାପ୍ରସାଦର ପୁନଃ ପ୍ରଚଳନ ପରେ ସେ ପ୍ରାୟ ଆଠ ବର୍ଷ ପର୍ଯ୍ୟନ୍ତ ବନ୍ଦ ହୋଇ ଯାଇଥିବା ଭାରତ ପ୍ରସିଦ୍ଧ ରଥଯାତ୍ରା ବା ଗୁଣ୍ଡିଚା ମହୋତ୍ସବ ମଧ୍ୟ ପୁନର୍ବାର ଆରମ୍ଭ କରିଥିଲେ । ଏହି ଘଟଣାଟି ରାମଚନ୍ଦ୍ର ଦେବ ବିରଚିତ 'ଶ୍ରୀକୃଷ୍ଣ ଭକ୍ତ ବାତ୍ସଲ୍ୟ ଚରିତମ୍' ନାମକ ଏକ ନାଟକରେ ଅତି ଚମତ୍କାର ଭାବରେ ବର୍ଣ୍ଣିତ ହୋଇଅଛି । ଯଥା—

> "ନାନ୍ଦ୍ୟନ୍ତେ ତତଃ ପ୍ରବିଶତି ସୂତ୍ରଧାରଃ
> ସୂତ୍ରଧାରଃ— × × କମଳନବ ର୍ଶେଷଚରଣକମଳଯ୍ୟ
> କମଳାମୁଖକମଳାଳୁଳମାଧ୍ୱ କମଧୁବ୍ରତସ୍ୟ ନୀଳଶୈଳଶିରୋମଣେଃ
> ଭଗବତଃ ଶ୍ରୀପୁରୁଷୋତ୍ତମସ୍ୟ କେନାପି କାରଣେନା ନବରସ-
> ପ୍ରଯୁକ୍ତହୃଦୟସ୍ୟ ସଂପ୍ରତ **ନଭିନବ ଇନ୍ଦ୍ରଦ୍ୟୁମ୍ନେ ଗଜପତୌ**
> ଶ୍ରୀରାମରମ୍ୟ-ଚରଣକମଳଦ୍ୱୈଳମ୍ବ **ରାମଚନ୍ଦ୍ର ଦେବ କୋଟି ଜନ୍ମାର୍ଜିତ**
> **ସୁକୃତପ୍ରଭାବତଃ** କୃପାବଶତଃ ପ୍ରକଟିତଦାରୁମୟମଧୁରମୂର୍ତ୍ତେଃ

---

(୧୯) ମାଦଳାପାଞ୍ଜି ପୃ ୬୩

(୨୦) ଚକଡ଼ା ପୋଥି ପୃ ୭

ପୁଣ୍ଡ୍ରୀକାକ୍ଷସ୍ୟ ଗୁଣ୍ଡିଚ୍ୟମହୋତ୍ସବୋଽୟଂ ଚଦନାନ୍ତରସଂସ୍ଥଂ
ଭଗବନ୍ତ ମନାଡ ମଧ୍ୟନ୍ତମନନ୍ତ ମାଲୋକ୍ୟ ଜନ୍ମ ସଫଳସ୍ୱାମି ।” (୨୧)

ଉକ୍ତ ନାଟକଟି ଗୁଣ୍ଡିଚା ମହୋତ୍ସବର ପୁନଃ ପ୍ରଚଳନ ସମୟରେ ପୁରୀରେ ଅଭିନୀତ ହୋଇଥିଲା ।

ରାମଚନ୍ଦ୍ର ଦେବଙ୍କ ସମସାମୟିକ ବୃନ୍ଦ କବିଙ୍କ ଏକ ଓଡ଼ିଆ ଗୀତରେ ଏହି ସ୍ମରଣୀୟ ଘଟଣାର ଚିତ୍ରଣ ମିଳେ ।

“ନବଦ୍ଧନ ଯାତ୍ରା ଶେଷେ ଜଗନ୍ନିବାସେ
ମାଳାଦ୍ରି ପ୍ରବେଶେ ରମା ମନ ଉଲ୍ଲାସେ
× × ×
**ଅଭିନବ ଇନ୍ଦ୍ରଦ୍ୟୁମ୍ନ ଅବତାର ।**
ଯୁଗେ ଯୁଗେ ରହିଲେ ଏ କୀରତି ବିସ୍ତାର ।
**ରାମଚନ୍ଦ୍ର ନରପତି ଦୁର୍ଲ୍ଲଭ କୀର୍ତ୍ତି ଏ**
ବୃନ୍ଦ ଭଣେ ଇହ ପର ଲୋକେ ଗତିଏ ।” (୨୨)

ରାମଚନ୍ଦ୍ର ଦେବଙ୍କ କିଞ୍ଚିତ୍ ପରବର୍ତ୍ତୀ ସେ ଯୁଗର ଜଣେ ପ୍ରସିଦ୍ଧ କବି ଓ ପଣ୍ଡିତ ସ୍ୱୀୟ ‘ବସନ୍ତୋତ୍ସବ ମହାକାବ୍ୟମ୍’ର ପ୍ରଥମ ସର୍ଗରେ ରାମଚନ୍ଦ୍ର ଦେବଙ୍କୁ ‘ନବ ଇନ୍ଦ୍ରଦ୍ୟୁମ୍ନ’ ରୂପେ ବର୍ଣ୍ଣନା କରିଛନ୍ତି । ଯଥା—

“ପୁରା କଲ ଧରାତଳେଽଖିଳବିପକ୍ଷକକ୍ଷାନଳୋ,
ନରେନ୍ଦ୍ରର ଧରାସୁର ପ୍ରକର ରକ୍ଷଣେ ଦକ୍ଷିଣଃ
ଦୟାନିଧି ରୁଦାୟୁଧୋଽଜନି ସ ରାମଚନ୍ଦ୍ରାଭିଧୋ,
ବିଧୋଃ ପଦସରୋରୁହଦ୍ୱିତୟ ଦତ୍ତଚିତ୍ତୋ ନୃପଃ । ୩ ।

× × ×

**ଦାରୁବ୍ରହ୍ମ** ପ୍ରବଳସୁକୃତାନ୍ନିର୍ଗତୋପାଧିଲବ୍ଧା
ବକ୍ଷ୍ୟୋରାଜ୍ଞାମପି ମମତନୁମଞ୍ଜସୋନ୍ମୀଳୟେତ

---

(୨୧) ଏହି ଅପ୍ରକାଶିତ ନାଟକର ପାଣ୍ଡୁଲିପି ପ୍ରାଦେଶିକ ମିଉଜିୟମ ପୋଥି ଭଣ୍ଡାରରେ ସଂରକ୍ଷିତ ।

(୨୨) ପ୍ରାଚୀ ସମିତି ପ୍ରକାଶିତ ‘ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ’ ପୃ ୧୧୮

ଇନ୍ଦ୍ରଦ୍ୟୁମ୍ନୋ ନବଇତ ଯଶଃ ପ୍ରାପ ଯୋ ଶ୍ୟାନ୍ତିଦବ୍ୟାଂ
ନବ୍ୟାଂ ଭବ୍ୟାଂ × × ନୀଳଶୈଳେ କବେଶଃ ।" ୫ । (୨୩)

ପଞ୍ଚମ ଶ୍ଳୋକରେ ନୀଳଶୈଳରେ ଦାରୁବ୍ରହ୍ମ ଜଗନ୍ନାଥଙ୍କ ପୁନଃ ପ୍ରତିଷ୍ଠା ବିଷୟ ସ୍ପଷ୍ଟ ଭାବରେ ବର୍ଣ୍ଣିତ ହୋଇଅଛି । ରାମଚନ୍ଦ୍ର ଦେବଙ୍କ ବଂଶଧରମାନେ ଇନ୍ଦ୍ରଦ୍ୟୁମ୍ନ-ବତାର ଉପାଧି ବ୍ୟବହାର କରୁଥିବା ପ୍ରଥମ ବୀରକେଶରୀ ଦେବଙ୍କ ଗୋଟିଏ ତାମ୍ରପତ୍ରରୁ ଜଣାଯାଏ ।

## ଷୋଳ ଶାସନର ଉତ୍ପତ୍ତି —

ଷୋଳ ଶାସନର ଉତ୍ପତ୍ତି ସମ୍ବନ୍ଧରେ ମୁଦ୍ରିତ ଓ ପ୍ରକାଶିତ 'ଚପୁଣା ଚକଡ଼ା' ଗ୍ରନ୍ଥରୁ ଏକ ନୂତନ ତଥ୍ୟ ମିଳୁଛି । 'ଅଭିନବ ବାରଣସୀ କଟକ' ବା ବର୍ତ୍ତମାନ କଟକରେ ଓଡ଼ିଶାର ରାଜଧାନୀ ଥିବା ସମୟରେ ଗଜପତି ପୁରୁଷୋତ୍ତମ ଦେବ ପ୍ରଥମେ ଷୋଳଟି ଶାସନ ପ୍ରତିଷ୍ଠାର କଳ୍ପନା କରିଥିଲେ । ପ୍ରଥମ ଶାସନଟି ନିଜ ନାମାନୁସାରେ ତାଙ୍କର ଅ ୫ ଙ୍କ କୁମ୍ଭ (ଫାଲ୍‌ଗୁନ) ଶୁକ୍ଳ ପଞ୍ଚମୀ ଭୃଗୁବାସର ଓ ରେବତୀ ନକ୍ଷତ୍ରରେ ଅର୍ଥାତ୍ ୧୬-୨-୧୪୬୯ ତାରିଖରେ ଅନୁକଳ୍ପ କରିଥିଲେ । ଏହାର ନାମ ପ୍ରସନ୍ନ ପୁରୁଷୋତ୍ତମପୁର ଓ ଏହା ୬୦୦ ଭାଗରେ ବିଭକ୍ତ ହୋଇଥିଲା । ଏହି ବଶାଳ ଶାସନର ମୁଖ୍ୟ ଦେବତା ଥିଲେ ଶ୍ରୀଗୋପାଳ । ଗଙ୍ଗାପୁର ବୋଧହୁଏ ଗଜପତିଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା । ତାଙ୍କର ପାଟରାଣୀ ପାଟପୁର ଓ ରାଣୀ ଶ୍ରୀ ଶ୍ରିୟା ଦେଈ ସିଂହମାପୁର ଶାସନ ବସାଇଥିଲେ । ତାଙ୍କର ଅନ୍ୟ ରାଣୀମାନେ ଯଥା — ଶ୍ରୀ ପଦ୍ମା ଦେଈ, ଶ୍ରୀ ବେଦନା ଦେଈ, ଶ୍ରୀ ମୋହନା ଦେଈ, ଶ୍ରୀ ଇଳା (ଏଲମା) ଦେଈ, ଶ୍ରୀ ହୀରା ଦେଈ, ଶ୍ରୀ ସତ୍ୟଭାମା ଦେଈ, ଶ୍ରୀ କୃଷ୍ଣା ଦେଈ ଯଥାକ୍ରମେ ନିଜ ନିଜ ନାମରେ ପଦ୍ମାପୁର, ବେଦନାପୁର, ମୋହନାପୁର, ଏଲମା ପୁର, ହୀରପୁର, ସତ୍ୟଭାମାପୁର, କୃଷ୍ଣାପୁର ଶାସନ ମାନ ବସାଇଥିଲେ ।

ମହାରାଜାଙ୍କ ପାତ୍ର ଶ୍ରୀ ଗୋପୀନାଥ ପ୍ରହରାଜ, ଶ୍ରୀ ବଶ୍ୱନାଥ ପ୍ରହରାଜ ଓ ଶ୍ରୀ ମାର୍କଣ୍ଡ ଆଚାର୍ଯ୍ୟ ନିଜ ନିଜ ନାମାନୁସାରେ ଯଥାକ୍ରମେ ଗୋପୀନାଥପୁର, ବଶ୍ୱ-ନାଥପୁର ଓ ମାର୍କଣ୍ଡପୁର ଶାସନ ସ୍ଥାପନ କରିଥିଲେ । ପାତ୍ର ଶ୍ରୀ ନିତ୍ୟାନନ୍ଦ ବଶିଷ୍ଠ ସ୍ୱ ଆରାଧ୍ୟ ଦେବତା ଶ୍ରୀ ଲକ୍ଷ୍ମୀନାରାୟଣଙ୍କ ନାମରେ ଲକ୍ଷ୍ମୀନାରାୟଣପୁର ଶାସନ

---

(୨୩) ଏହି ଅପ୍ରକାଶିତ ମହାକାବ୍ୟର ପୋଥି ପ୍ରାଦେଶିକ ମିଉଜିୟମ ପୋଥି ଭଣ୍ଡାରରେ ସଂରକ୍ଷିତ ।

ବସାଇଥିଲେ । ଗଙ୍ଗାରେ ଭୁଜାପୁରୁଷ ଦାନ କରି ଭୁଜାପୁରୁଷୋତ୍ତମପୁର ନାମକ ଶାସନ ବସାଇବା ପାଇଁ ପୁରୁଷୋତ୍ତମ ଦେବଙ୍କ କଳ୍ପନା ଥିଲା କିନ୍ତୁ ଏହି କଳ୍ପନା ପୂର୍ଣ୍ଣ ହୋଇ ନ ଥିଲା । ତଥାପି 'ଷୋଳ ଶାସନ' ଜନଶ୍ରୁତି ବ୍ୟାପିଗଲା । ଯଥା –'ଶାସନ ଷୋହଳର ମଧ୍ୟେ ଶ୍ରୀ ମହାଶ୍ରମ ନିଜ କୃଷ୍ଣ୍ୟ ଛନ ଶାସନ, ରାଣୀ ନଅ ଶାସନ, ପାଣିଗ୍ରାହୀ ଶାସନ ଘୁରି, ଏରୂପେ ଗାଏ ଷୋଳ ଶାସନ ।' (୧୪)

## ପୁରୀର ଷୋଳ ଶାସନ—

ମୁସଲମାନ ଅଧିକାର ପରେ କଟକ ସେମାନଙ୍କର ରାଜଧାନୀ ହେବାରୁ କଟକ ନିକଟବର୍ତ୍ତୀ ଷୋଳ ଶାସନ (ପ୍ରକୃତରେ ପନ୍ଦର)ର ଖ୍ୟାତି ଓ ପ୍ରତିପତ୍ତି କମିଗଲା । ତେଣୁ ହିନ୍ଦୁ ଧର୍ମର ପୁନରୁଦ୍ଧାର କଳ୍ପେ ଗଜପତି ରାମଚନ୍ଦ୍ର ଦେବ ତାଙ୍କ ଅଧିକାରଭୁକ୍ତ ପୁରୀ ଅଞ୍ଚଳରେ ଷୋଳ ଶାସନ ପ୍ରତିଷ୍ଠାର କଳ୍ପନା କରିଥିଲେ । କିନ୍ତୁ ଏହି ଲକ୍ଷ୍ୟ ପୂର୍ଣ୍ଣ କରିବା ପାଇଁ ତାଙ୍କର ଶକ୍ତି ଓ ସାମର୍ଥ୍ୟ ନ ଥିବାରୁ ତାଙ୍କ ଦ୍ୱାରା ପ୍ରତିଷ୍ଠିତ ବୀର ରାମଚନ୍ଦ୍ରପୁର (୪ ଖଣ୍ଡି) ଶ୍ରୀରାମଚନ୍ଦ୍ରପୁର (୨ ଖଣ୍ଡି), ପ୍ରତାପ ରାମଚନ୍ଦ୍ରପୁର (୨ ଖଣ୍ଡି), ବିଜୟ ରାମଚନ୍ଦ୍ରପୁର (୧ ଖଣ୍ଡି) ଓ ଉଭୟମୁଖୀ ରାମଚନ୍ଦ୍ରପୁର (୩ ଖଣ୍ଡି) * ଏହି ପାଞ୍ଚ ଶାସନର ୧୨ ଖଣ୍ଡି ବା ଅଂଶକୁ ବାରଟି ଶାସନ ରୂପେ ଗଣନା କରାଯାଇଥିଲା । ତାଙ୍କ ପୂର୍ବପୁରୁଷ ବୀର ଗୋବିନ୍ଦ ଦେବ (ଗୋବିନ୍ଦ ବିଦ୍ୟାଧର) ଓ ତାଙ୍କ ପୁଅ ଚକ୍ର ପ୍ରତାପଙ୍କ ଦ୍ୱାରା ଯଥାକ୍ରମେ ପ୍ରତିଷ୍ଠିତ ବୀର ଗୋବିନ୍ଦପୁର ଓ ବୀର ପ୍ରତାପପୁର ଶାସନ ପ୍ରତ୍ୟେକର ୨ଖଣ୍ଡିକୁ ଗୋଟିଏ ଲେଖାଏ ଶାସନରୂପେ କଳ୍ପିତ ହେଇ ଷୋଳ ଶାସନ ସଂଖ୍ୟା ପୂର୍ଣ୍ଣ କରାଗଲା । ପରବର୍ତ୍ତୀ କାଳରେ ରାମଚନ୍ଦ୍ରଙ୍କ ବଂଶଧରମାନଙ୍କ ଦ୍ୱାରା ନୂତନ ନୂତନ ଶାସନ ପ୍ରତିଷ୍ଠିତ ହେବାରୁ ଉକ୍ତ 'ଷୋଳ ଶାସନ' ଗଣନା କ୍ରମଶଃ ସଂଶୋଧିତ ହୋଇ ନୂଆ ଶାସନ ଗୁଡ଼ିକ ଉକ୍ତ ପର୍ଯ୍ୟାୟର ଅନ୍ତର୍ଭୁକ୍ତ କରାଗଲା । (୧୫)

---

(୧୪) ତଳଣ୍ଡା ପୋଥି ଓ ତମ୍ବୁମା ତଳଣ୍ଡା । ପୃ ୧୪-୩୪

* ଗାଈ ବାଛୁରୀ ଜନ୍ମ କରିବା ସମୟରେ ଶୁଭଲଗ୍ନରେ ଗାଈର ଏକ ମୁଖ ଓ ବାଛୁରୀର ଏକ ମୁଖ ଏହି ଉଭୟ ମୁଖକୁ ଲକ୍ଷ୍ୟ କରି ଉକ୍ତ ଶାସନ ପ୍ରତିଷ୍ଠିତ ହୋଇଥିବାରୁ ଏହାର ଏପରି ନାମକରଣ ହୋଇଥିବାର କିମ୍ବଦନ୍ତୀ ପ୍ରଚଳିତ ।

(୧୫) ଷୋଳ ଶାସନ ସମ୍ବନ୍ଧୀୟ ତଥ୍ୟ ସ୍ୱର୍ଗତଃ ଉତ୍କଳର ପଣ୍ଡିତ ନୀଳକଣ୍ଠ ଦାସଙ୍କ ଠାରୁ ସଂଗୃହୀତ ।

## ମୁକ୍ତି ମଣ୍ଡପ—

ତ୍ରୟୋଦଶ ବା ଚତୁର୍ଦ୍ଦଶ ଶତାବ୍ଦୀରେ ରଚିତ କାଶୀମହାତ୍ମ୍ୟ ପ୍ରକୃତିକ 'କାଶୀଖଣ୍ଡ' ନାମକ ସଂସ୍କୃତ ଗ୍ରନ୍ଥରେ ପ୍ରଥମ କାଶୀସ୍ଥିତ 'ମୁକ୍ତିମଣ୍ଡପର' ଉଲ୍ଲେଖ ଦେଖାଯାଏ । ଏହାର ଅନୁକରଣରେ ପୁରୀ ଜଗନ୍ନାଥ ମନ୍ଦିର ବେଢ଼ା ମଧ୍ୟରେ ଏକ ମୁକ୍ତିମଣ୍ଡପ ପ୍ରତିଷ୍ଠିତ ହୋଇଥିଲା । କିନ୍ତୁ ଏହାର ପ୍ରତିଷ୍ଠା କାଳ ଏପର୍ଯ୍ୟନ୍ତ ଅଜ୍ଞାତ । ପ୍ରସିଦ୍ଧ ଭକ୍ତକବି ପଞ୍ଚସଖାଙ୍କ ମଧ୍ୟରେ ବୟୋଜ୍ୟେଷ୍ଠ ଭକ୍ତକବି ବଳରାମ ଦାସଙ୍କ 'ବେଦାନ୍ତସାର ଗୁପ୍ତଗୀତା'ରେ ଏହାର ପ୍ରଥମ ବିଶ୍ୱାସଯୋଗ୍ୟ ବିବରଣ ମିଳେ ।

"ଉତ୍କଳବାସ୍ତୁରେ ନୀଳଗିରି — ସର୍ବ୍ବ ବିଜୟେ ନରହରି ।
ଜଗତ ଈଶ୍ୱର ଠାକୁର — ଲୀଳାୟେ ନାନା ଅବତାର ।
ରୁଦ୍ର ଅଂଶରେ ଗଜପତି — ପ୍ରତାପରୁଦ୍ର ସେ ନୃପତି ।
ତାହାର ସପ୍ତଦଶ ଅଙ୍କ — ମକର ମାସ ଶୁକ୍ଳ ପକ୍ଷ ।
ଶ୍ରୀ ଏକାଦଶୀ ଗୁରୁବାର — ମୁକୁତି ମଣ୍ଡପ ମଧ୍ୟର ।
ବିପ୍ର ଯେ ଜପ ସ୍ତୁତି ସାର — ବସିଲେ ବେଦାନ୍ତ ବିଗ୍ରହ ।
ସେ ବଳଭଦ୍ର ରାଜଗୁରୁ — ସମସ୍ତ ବିଦ୍ୟାରେ ସେ ଗୁରୁ ।
ଶ୍ରୀ ପୁରନ୍ଦର ପୁରୋହିତ — ବିଦ୍ୟା ବିବାଦେ ବଡ଼ ରତ ।(୨୬)

ଉଦ୍ଧୃତାଂଶରେ ପ୍ରଦତ୍ତ ଅଙ୍କ, ମାସ, ଦିନ, ବାର, ତିଥି ପ୍ରଭୃତି ସବୁ ୧୫୧୧ ମସିହା ଜାନୁୟାରୀ ୯ ତାରିଖ ଦିନ ମିଳିଯାଉଛି ।(୨୭) ପ୍ରତାପରୁଦ୍ରଙ୍କ ଅ ୧୭ ଙ୍କ ୧୬-୮-୧୫୧୦ରୁ ୪-୯-୧୫୧୧ ପର୍ଯ୍ୟନ୍ତ ଚାଲିଥିଲା । ଏଥିରେ ବର୍ଣ୍ଣିତ ବଳଭଦ୍ର ରାଜଗୁରୁ ସେ ସମୟର ପ୍ରସିଦ୍ଧ ପଣ୍ଡିତ ଥିଲେ (୨୮) । ଉକ୍ତ ବିବରଣୀରୁ ନିଃସନ୍ଦେହରେ ଜଣାଯାଏ ଯେ ୧୫୧୧ ଖ୍ରୀଷ୍ଟାବ୍ଦ ବେଳକୁ ପୁରୀର ମୁକ୍ତିମଣ୍ଡପ ପଣ୍ଡିତ ସଭା ସୁପ୍ରତିଷ୍ଠିତ ଥିଲା ।

---

(୨୬) ବେଦାନ୍ତସାର ଗୁପ୍ତଗୀତା, ପ୍ରଥମ ଅଧ୍ୟାୟ, ପ୍ରଥମ ପୃଷ୍ଠା।

(୨୭) An Indian Ephemeris, Vol. V, P. 224.

(୨୮) ଏହାଙ୍କ ବିବରଣ ପାଇଁ ନିମ୍ନ ମୁଖବନ୍ଧ ଦ୍ରଷ୍ଟବ୍ୟ—

'A Descriptive Catalogue of Sanskrit Manuscripts', Vol. I. Smṛti Manuscripts by Sri K. N. Mahapatra, Preface P. 22.

ଷୋଡ଼ଶ ଶତାବ୍ଦୀର ମଧ୍ୟ ଭାଗରେ ରଚିତ କବି ଦେବଦୁର୍ଲ୍ଲଭ ଦାସଙ୍କ 'ରହସ୍ୟମଞ୍ଜରୀ' କାବ୍ୟର ପ୍ରଥମ ଛାନ୍ଦରେ ଜଗନ୍ନାଥଙ୍କ ବନ୍ଦନାରେ ଏହାର ଉଲ୍ଲେଖ ଦେଖାଯାଏ ।

କଳପ ମହୀରୁହ ନିକଟେ ।
'ମୁକ୍ତିମଣ୍ଡପ' ବିଚିତ୍ର ଆନ ଘଟେ । ଶ୍ରୀ ଜଗନ୍ନାଥ ।"

ମାଦଳାପାଞ୍ଜିରୁ ଜଣାଯାଏ ଯେ ବର୍ତ୍ତମାନ ମୁକ୍ତିମଣ୍ଡପ ଗୃହ ମାନସିଂହଙ୍କ ଭାର୍ଯ୍ୟା ଗୌର ରାଣୀ ଗଢ଼ାଇଥିଲେ । ଗୌର ଦେବୀ ମାନସିଂହଙ୍କ ପାଟରାଣୀ ଥିବା ଶ୍ରୀ ପରମାନନ୍ଦ ଆଚାର୍ଯ୍ୟ 'ବହାରିସ୍ତାନ-ଇ-ଘାଇବି' ନାମକ ପାର୍ସୀ ଭାଷାରେ ଲିଖିତ ଇତିହାସ ପୁସ୍ତକରୁ ଉକ୍ତି ଉଦ୍ଧାର କରି ପ୍ରମାଣ କରିଛନ୍ତି । (୨୯) ମାନସିଂହ ୧୫୯୨ରେ ଜଗନ୍ନାଥ ମନ୍ଦିରକୁ ଦର୍ଶନ କରିବା ପାଇଁ ଆସିଥିଲେ । ଏହାର ସ୍ମୃତି-ରକ୍ଷା ନିମିତ୍ତ ଗୌରରାଣୀ ବର୍ତ୍ତମାନ ମୁକ୍ତିମଣ୍ଡପ ନିର୍ମାଣ କରିଥିଲେ ।

## ସାକ୍ଷୀଗୋପାଳ ବିଗ୍ରହ ପ୍ରତିଷ୍ଠା—

ଗଜପତି ପୁରୁଷୋତ୍ତମ ଦେବ (୧୪୬୭-୧୪୯୭) ବିଦ୍ୟାନଗର ବା ବିଜୟନଗର ମହାରାଜାଙ୍କୁ ପରାସ୍ତ କରି ବିଜୟର ଚିହ୍ନ ସ୍ୱରୂପ ରତ୍ନ ସିଂହାସନ, ସାକ୍ଷୀଗୋପାଳ ମୂର୍ତ୍ତି ଓ ଗଣେଶ ବିଗ୍ରହ ପ୍ରଭୃତି ଆଣିଥିବା କିମ୍ବଦନ୍ତୀ ଉତ୍କଳରେ ସର୍ବତ୍ର ପ୍ରଚଳିତ । ସାକ୍ଷୀଗୋପାଳ ମୂର୍ତ୍ତିକୁ ସେ କଟକରେ ସ୍ଥାପନ କରିଥିବା ଶ୍ରୀ ଶ୍ରୀ ଚୈତନ୍ୟ ଚରିତାମୃତ ଗ୍ରନ୍ଥରୁ ଜଣାଯାଏ । ଯଥା—

"ଏଇମତେ ବିଦ୍ୟାନଗରେ ସାକ୍ଷୀଗୋପାଳ
ସେବା ଅଙ୍ଗୀକାର କରିଆଛେ ଚିରକାଳ ।
ଉତ୍କଳେର ରାଜା ପୁରୁଷୋତ୍ତମ ନାମ
ସେଇ ଦେଶ ଜିନିଲେକ କରିୟା ସଂଗ୍ରାମ ।
× × ×
ଗୋପାଲ ଲଇୟା ରାଜା କଟକ ଆଇଲ
× × ×
କଟକେ ଗୋପାଲ ସେବା କରିଲ ସ୍ଥାପନ ।" (୩୦)

---

(29) Proceedings of the Indian Historical Records Commission Vol. XXII, P. 87.

(୩୦) ଶ୍ରୀ ଶ୍ରୀ ଚୈତନ୍ୟ ଚରିତାମୃତ, ପଣ୍ଡିତ ସୀତାପତି ଭଟ୍ଟାଚାର୍ଯ୍ୟ ସଂପାଦିତ ମଧ୍ୟଲୀଳା ପୃ ୧୫୨ ।

ଗଜପତି ପୁରୁଷୋତ୍ତମ ଦେବଙ୍କ ପୂଷ୍ପ ଜଗନ୍ନାଥ ମନ୍ଦିରସ୍ଥ ଏକ ଶିଳାଲିପିରୁ ଜଣାଯାଏ ଯେ କଟକରେ ଗୋପାଳ ବିଗ୍ରହ ଥିବା ସ୍ଥାନର ନାମ ଥିଲା ଗୋପାଳ-ପ୍ରିୟ ଜଗତି "ବାରାଣସୀ କଟକେ ଶ୍ରୀନଅର ଗୋପାଳପ୍ରିୟ ଜଗତୀର ଦକ୍ଷିଣ ମେଡ଼ରେ କଣ୍ଡ ଅଙ୍କାଶେ" (୩୧) ଶ୍ରୀ ଚୈତନ୍ୟ ଦେବ ୧୫୧୦ରେ କଟକରେ ପଦାର୍ପଣ କରି ଶ୍ରୀଗୋପାଳ ମୂର୍ତ୍ତିକୁ ଦର୍ଶନ କରିଥିବା ଶ୍ରୀ ଶ୍ରୀ ଚୈତନ୍ୟ-ଚରିତାମୃତରୁ ଜଣାଯାଏ । ୧୫୬୮ରେ କଳାପାହାଡ଼ କଟକ ଅଧିକାର କରି ଗୋପାଳ ମନ୍ଦିର ଧ୍ୱଂସ କରିବା ପୂର୍ବରୁ ଶ୍ରୀଗୋପାଳ ବିଗ୍ରହଙ୍କୁ ଗୁପ୍ତ ଭାବରେ ସ୍ଥାନାନ୍ତରିତ କରାଯାଇଥିଲା । ରାମଚନ୍ଦ୍ର ଦେବ ଖୋର୍ଦ୍ଧା ଦୁର୍ଗ ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ଶ୍ରୀ ଗୋପାଳ ବିଗ୍ରହଙ୍କ ପାଇଁ ଖୋର୍ଦ୍ଧାରେ ଏକ ମନ୍ଦିର ନିର୍ମାଣ କରିଥିଲେ । ପରବର୍ତ୍ତୀ କାଳରେ ମୋଗଲ ସେନା ଖୋର୍ଦ୍ଧା ଦୁର୍ଗ ଆକ୍ରମଣ କରିବାରୁ ଜଟଣୀ ନିକଟବର୍ତ୍ତୀ ରଥିପୁର ଗଡ଼ରେ ସାକ୍ଷୀଗୋପାଳଙ୍କ ପାଇଁ ଏକ ମନ୍ଦିର ନିର୍ମିତ ହୋଇଥିଲା । ମୋଗଲ ସୁବେଦାର ତକି ଖାଁ ରଥିପୁର ମନ୍ଦିର ଆକ୍ରମଣ କରିବାରୁ ସାକ୍ଷୀଗୋପାଳ ବିଗ୍ରହଙ୍କୁ ନିକଟବର୍ତ୍ତୀ କାନ୍ତକବାଙ୍କ ନାମକ ସ୍ଥାନକୁ ନିଆଯାଇ ସେଠାରେ ତାଙ୍କ ପାଇଁ ଏକ ମନ୍ଦିର ନିର୍ମିତ ହେଲା । ମରହଟ୍ଟା ରାଜତ୍ୱରେ ବର୍ତ୍ତମାନ ସତ୍ୟବାଦୀ ମନ୍ଦିର ନିର୍ମିତ ହୋଇ ଅଦ୍ୟାବଧି ସେଠାରେ ଶ୍ରୀ ସାକ୍ଷୀଗୋପାଳ ବିଗ୍ରହ ପୂଜିତ ହେଉଛନ୍ତି ।

## ଗୋଲକୁଣ୍ଡା ସୁଲତାନଙ୍କ ସହିତ ସଂଘର୍ଷ –

ଗଜପତି ରାମଚନ୍ଦ୍ର ଦେବଙ୍କ ରାଜତ୍ୱର ପ୍ରଥମ ପନ୍ଦର ବର୍ଷ ସୁଖ ଶାନ୍ତିରେ କଟି ଥିବାରୁ ସେ ଖୋର୍ଦ୍ଧା ରାଜ୍ୟ ପ୍ରତିଷ୍ଠା କରି ପୂର୍ବ ବର୍ଣ୍ଣିତ ମହତ୍ କାର୍ଯ୍ୟମାନ ସାଧନ କରିବା ପାଇଁ ସମର୍ଥ ହୋଇଥିଲେ । ଦକ୍ଷିଣରେ ଗୋଲକୁଣ୍ଡାର ଶକ୍ତିଶାଳୀ ସୁଲତାନ ଇବ୍ରାହିମ କୁତବଶାହ ୧୫୬୧ରେ ଚିଲିକା ପର୍ଯ୍ୟନ୍ତ ନିଜର ଅଧିକାର ବିସ୍ତାର କରିଥିଲେ । କିନ୍ତୁ ଶ୍ରୀକାକୁଲମ୍‌ର ଉତ୍ତରକୁ ତାଙ୍କର ଅଧିକାର ସୁଦୃଢ଼ ନ ଥିଲା । ଇବ୍ରାହିମଙ୍କ ମୃତ୍ୟୁପରେ ତାଙ୍କ ପୁଅ ମହମ୍ମଦ କୁଲିକୁତବ ସାହ ଗୋଲକୁଣ୍ଡାର ସୁଲତାନ ହୋଇଥିଲା । ତାଙ୍କ ସେନାପତି ସୟଦ ବଂଶୀୟ ସାହ ସୁବତିଲ ୧୫୧୨ ଶକାବ୍ଦ ବା ୧୫୯୦ ଖ୍ରୀଷ୍ଟାବ୍ଦରେ ଟେକିକୋଟ, ଆଠଗଡ଼, ଟେକ୍କଳି, ମନ୍ଦାସାକୋଟ ରାଜ୍ୟ ଜୟ କରି ଆଠଗଡ଼ ରାଜ୍ୟସ୍ଥ ଯାଜପୁରକଟକଣୀ ଦୁର୍ଗର ନିକଟରେ 'ସାହାବାଦ' ନାମକ ଏକ ବିରାଟ ଜଳାଶୟ ଖୋଳାଇଥିବା ତାଙ୍କର

(31) J. A. S. B. 1893. ପୃ ୧୦୦, ଗଣନା ଅନୁସାରେ ଏହି ଲିପିର ଠିକ୍ ସମୟ ହେଉଛି ୨୨-୮-୧୪୮୨ ମସିହା ।

ଆଠଗଡ଼ ପବର୍ତଲେଖରୁ ଜଣାଯାଏ । ତାଙ୍କ ଅଧୀନରେ ସ୍ବଳ୍ପକାଂୟ ବଂଶୀୟ ନରସିଂହ ବାହୁବଳେନ୍ଦ୍ର ନିଜକୁ ଜଗନ୍ନାଥଙ୍କ ସିଂହାସନର ପ୍ରକୃତ ଅଧିକାରୀ ରୂପେ ଘୋଷଣା କରି ଗଜପତି ପଦବୀ ଧାରଣ କରିଥିଲେ । (୩୨) ସେ ଉତ୍କଳର ଶେଷ ସ୍ୱାଧୀନ ଗଜପତି ମୁକୁନ୍ଦ ଦେବଙ୍କ ଭାଇ (ଜ୍ୟେଷ୍ଠତାତ ପୁତ୍ର) ଥିଲେ ଓ ରାଜମହେନ୍ଦ୍ର ଓ କଳିଙ୍ଗ ଦଣ୍ଡପାଟର ଶାସକ ରୂପେ ଗୋଲକୁଣ୍ଡା ସୁଲତାନଙ୍କ ଦ୍ୱାରା ନିଯୁକ୍ତ ହୋଇଥିଲେ । ସେ ଦକ୍ଷିଣରେ ଗଜପତି ରାମଚନ୍ଦ୍ର ଦେବଙ୍କ କ୍ଷମତାକୁ ସ୍ୱୀକାର କରି ନ ଥିଲେ । କିନ୍ତୁ ତାଙ୍କ ସହିତ ରାମଚନ୍ଦ୍ର ଦେବଙ୍କ ସଂଘର୍ଷ ହୋଇଥିବାର ଏ ପର୍ଯ୍ୟନ୍ତ ଜଣାଯାଇ ନାହିଁ ।

ତାଙ୍କ ପରବର୍ତ୍ତୀ ମୁକୁନ୍ଦ ରାଜ ଗୋଲକୁଣ୍ଡା ସୁଲତାନଙ୍କ ବିରୁଦ୍ଧରେ ବିଦ୍ରୋହ କରିଥିଲେ । ତେଣୁ ତାଙ୍କର ସେନାପତି ଅମୀନ ଉଲ୍ ମୁଲ୍କ୍ ମୁକୁନ୍ଦରାଜଙ୍କୁ ପରାସ୍ତ କରିବାକୁ ଚେଷ୍ଟା କରିବାରୁ ସେ ଆତ୍ମରକ୍ଷା ନିମିତ୍ତ ଗଜପତି ରାମଚନ୍ଦ୍ର ଦେବଙ୍କ ଶରଣ ପନ୍ନ ହୋଇଥିଲେ । ଏହା ଫଳରେ ଗୋଲକୁଣ୍ଡା ସେନାପତି ଖୁରୁଧା ରାଜ୍ୟ ଆକ୍ରମଣ କରିଥିବାର ଫେରିସ୍ତାଙ୍କ ରଚିତ ଇତିହାସରୁ ଜଣାଯାଏ । ଯଥା—

"The Mahomedans gave him no rest, and compelled him to seek an asylum with *Ramchundur Raj, a prince of*

---

(୩୨) J. B. O. R. Society Vol. XV, P. 195-200 ସ୍ୱର୍ଗତଃ ରାଜା ବାହାଦୂର ଲକ୍ଷ୍ମୀନାରାୟଣ ହରିଚନ୍ଦନ ଜଗଦେବଙ୍କ ଦ୍ୱାରା ପ୍ରଥମେ ପଠିତ ଓ ଶ୍ରୀ ସତ୍ୟନାରାୟଣ ରାଜଗୁରୁଙ୍କ ଦ୍ୱାରା ସଂଶୋଧିତ । O. H. R. J. Vol. VI, P. 23-28

ଗଜପତି ହରିପୀଠାତ୍ ସାମ୍ୟତେ ସାର୍ବଭୌମଃ
ସମରବିଜୟଦକ୍ଷଃ ସ୍ୱାଲ୍ପଚନ୍ଦ୍ରାନ୍ୱୟେନଃ ।
ସକଳଗୁଣବିଶେଷଃ ସର୍ବଲୋକାଶ୍ରୟେଣଃ
ଗଜପତି ନରସିଂହୋ ଦେବୋ ବିଦ୍ୟାଜିତାରିଃ । ୩ ।

ଶ୍ରୀମତ୍ ବାହୁବଳେନ୍ଦ୍ରଚନ୍ଦ୍ରକୁଳକୋ ଶ୍ରୀ ସିଂହଭୂପାଳକୋ
ପୂଜ୍ୟ ରାଜମହେନ୍ଦ୍ର ମୁଖ୍ୟଧରଣୀ କଳିଙ୍ଗସୌରାଷ୍ଟ୍ରକୈଃ
ସାମ୍ରାଜ୍ୟୋତ୍କଳ ଭୂଭୁଜୋ ଗଜପତେଃ ସିଂହାସନଂ ଚାଳିତ
ଶ୍ରୁତେ ଭଙ୍ଗଳବେଣୀ ପଶ୍ଚିମତଟେ ସ୍ଥିତ୍ୱା ଚଟାକୋତ୍ତମ (ମ୍)

ଏହି ଲେଖର ତାରିଖ ହେଉଛି ୫-୧୨-୧୫୯୦ ଖ୍ରୀଷ୍ଟାବ୍ଦ, ୧୫୧୨ ଶକାବ୍ଦ, ବିରୋଧି ସମ୍ବତ୍ସର, ଚୈତ୍ର ଆଦ୍ୟପକ୍ଷ, ଦଶମୀ, ଗୁରୁବାର ।

*great power and fame in those parts.* Ramchundur, in order to repel the invaders, wrote letters to Madhoo Sing, a Raja whose country bordered on Bengal, and who with a large army of Rajpoots, was in the service of Akbur Padshah of Dehly. Madhoo Sing at the request of Ramchundur marched to his assistance, while Ameen-ool-Moolk pursued the fugitive in to that Raja's dominions, levying contributions on the towns, devastating the villages, and pillaging the open country. Madhoo Sing, finding that no advantage was to be gained in the war, withdrew to Bengal, leaving Ramchundur to the alternative of becoming a tributary to the King of Golcoonda Mukoond Raj, unable to secure a retreat in that country, was obliged to fly and seek protection in Bengal." (33)

ଉପରେ ଉଦ୍ଧୃତ ହୋଇଥିବା ଅନୁଚ୍ଛେଦରୁ ଜଣାଯାଏ ରାମଚନ୍ଦ୍ର ଦେବ ଅତ୍ୟନ୍ତ ଶକ୍ତିଶାଳୀ ଥିଲେ ଏବଂ ତାଙ୍କର ଯଶଃ ଚତୁର୍ଦ୍ଦିଗରେ ବ୍ୟାପି ଯାଇଥିଲା । ଶତ୍ରୁ ବଂଶୀୟ ହେଲେ ମଧ୍ୟ ଆଶ୍ରିତ ମୁକୁନ୍ଦରାଜଙ୍କୁ ରକ୍ଷା କରିବା ପାଇଁ ରାମଚନ୍ଦ୍ର ପ୍ରବଳ ପରାକ୍ରାନ୍ତ ଗୋଲକୁଣ୍ଡା ସେନାପତିଙ୍କ ଆକ୍ରମଣର ପ୍ରତିରୋଧ କରିଥିଲେ । ତାଙ୍କ ଅନୁରୋଧରେ ବଙ୍ଗ ସୀମାନ୍ତରେ ରାଜତ୍ୱ କରୁଥିବା ରାଜା ମଧୁ ସିଂହ ବହୁ ରାଜପୁତ ସୈନ୍ୟ ସହ ରାମଚନ୍ଦ୍ର ଦେବଙ୍କୁ ସାହାଯ୍ୟ କରିଥିଲେ । କିନ୍ତୁ ମଧୁସିଂହ ଯୁଦ୍ଧରେ କୌଣସି ଲାଭର ଆଶା ନ ଦେଖି ବଙ୍ଗଳାକୁ ଫେରିଯାଇଥିଲେ । ଏହି ଆକ୍ରମଣ ସମୟରେ ଗୋଲକୁଣ୍ଡା ସେନାପତି ନଗର ଗୁଡ଼ିକରୁ ଅର୍ଥ ଆଦାୟ, ଗ୍ରାମଗୁଡ଼ିକ ଧ୍ୱଂସ ଓ ସମତଳ ଅଞ୍ଚଳ ଲୁଟଖାର କରିଥିଲେ । ଏହା ଫଳରେ ରାମଚନ୍ଦ୍ର ଦେବ ଗୋଲକୁଣ୍ଡା ସୁଲତାନଙ୍କ କରଦ ରାଜା ହେଲେ ଏବଂ ମୁକୁନ୍ଦରାଜ ଏଠାରେ ଆଶ୍ରୟ ନ ପାଇ ଆତ୍ମ ରକ୍ଷା ପାଇଁ ବଙ୍ଗ ଦେଶକୁ ପଳାଇଗଲେ ।

ମୁସଲମାନ ଐତିହାସିକ ଫେରିସ୍ତାଙ୍କ ଏହି ବର୍ଣ୍ଣନା ଅତିରଞ୍ଜିତ ଓ ପ୍ରଶସ୍ତି ମୂଳକ । ରାମଚନ୍ଦ୍ର ଦେବ ଗୋଲକୁଣ୍ଡା ସୁଲତାନଙ୍କ କରଦ ରାଜା ହୋଇଥିବା ଅନ୍ୟ ଅକାଟ୍ୟ ପ୍ରମାଣ ଦ୍ୱାରା ସମର୍ଥିତ ହେଉନାହିଁ । ବରନ୍ତୁ ରାମଚନ୍ଦ୍ର ଦେବଙ୍କ ସାହାଯ୍ୟରେ

(33) 'History of the Rise of the Mahomedan power in India' by Kasim Ferishta, translated by John Briggs. Vol. III, P. 466.

ମୁକୁନ୍ଦରାଜ ବାହୁବଳେନ୍ଦ୍ର ନିଜ ରାଜ୍ୟ ଅଧିକାର କରି ପୁନର୍ବାର ଗୋଲକୁଣ୍ଡା ସେନା ସହିତ ଭୀଷଣ ଯୁଦ୍ଧ ଚଳାଇଥିଲେ ଏବଂ ପୁଣି ପରାସ୍ତ ହୋଇ ରାମଚନ୍ଦ୍ରଙ୍କ ରାଜ୍ୟରେ ଆଶ୍ରୟ ନେଲେ । ଯଥା –

"Meer Zein-ool-Abideen detached a considerab'e army against Mukoond Raj Bhaybulundur, who occupied Julmoor. × × × The Hindus were defeated, and Mukound Raj fled to Ju'moor, whence also flying × × sought shelter in the Bengal provinces." (34)

ମୁକୁନ୍ଦରାଜ ସ୍ୱୀୟ ରାଜ୍ୟ ଅଧିକାର କରି ବଂଶଧାର ନଦୀ କୂଳରେ ବ୍ରାହ୍ମଣ ଓ ଶ୍ରୀ ବୈଷ୍ଣବମାନଙ୍କୁ ୧୫୧୭ ଶକାବ୍ଦ ବା ୧୫୯୫ ଖ୍ରୀଷ୍ଟାବ୍ଦରେ ଗୋଟିଏ ଗ୍ରାମଦାନ କରିଥିବା ତାଙ୍କର ଗୋଟିଏ ତାମ୍ରପଟ୍ଟରୁ ଜଣାଯାଏ । (୩୫) ଏ ସମସ୍ତ ବିବରଣ ପାଠକଲେ ସ୍ପଷ୍ଟ ଜଣାଯାଏ ଯେ ରାମଚନ୍ଦ୍ର ଦେବ ଗୋଲକୁଣ୍ଡା ସେନାର ବାରମ୍ବାର ଆକ୍ରମଣ ସଫଳତାର ସହିତ ପ୍ରତିରୋଧ କରିପାରିଥିଲେ । ତେଣୁ ତାଙ୍କ ସମ୍ବନ୍ଧରେ ଫେରିସ୍ତାଙ୍କ ମତ ଗ୍ରହଣୀୟ ନୁହେଁ ।

## ଗଜପତି ରାମଚନ୍ଦ୍ର ଦେବ ଓ ରାଜା ମାନସିଂହ –

ରାଜା ମାନସିଂହଙ୍କ ପୂର୍ବରୁ ସମ୍ରାଟ୍ ଆକବରଙ୍କ ରାଜପୁତ ସେନାପତି ତୋଡରମଲ୍ଲ ୧୫୭୫ ଖ୍ରୀଷ୍ଟାବ୍ଦରେ ଦାଉଦଙ୍କୁ ପରାସ୍ତ କରି କଟକରେ ଅବସ୍ଥାନ କରିଥିଲେ । ସେ ସମୟରେ ବୋଧହୁଏ ସେ ପୁରୀ ଜଗନ୍ନାଥ ଦେବଙ୍କ ଦର୍ଶନ କରିଥିଲେ । ତେଣୁ ମାଦଳାପାଞ୍ଜିରେ ତାଙ୍କ ଆଗମନର ଉଲ୍ଲେଖ ମିଳେ । 'ଏ ରାଜାଙ୍କ ଅଙ୍କ ପାତଶାଙ୍କ ତୋଡରମଲ୍ଲ ଅଇଲେ । କିନ୍ତୁ ପାଞ୍ଜି ଅଙ୍କ ଠିକ୍ ନୁହେଁ । ଓଡ଼ିଶା କମିସନର ଷ୍ଟାର୍ଲିଙ୍ଗ ସାହେବ ପାର୍ସୀରେ ଲେଖାହୋଇଥିବା ପ୍ରାଚୀନ ନଥିପତ୍ର ସବୁରୁ ତଥ୍ୟ ସଂଗ୍ରହ କରି ଲେଖିଛନ୍ତି ଯେ ତୋଡରମଲ୍ଲ ୧୫୮୦ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ଏକ

---

(୩୪) ଫେରିସ୍ତାଙ୍କ ଇତିହାସ ପୃ ୩୭୨ । ଏଠାରେ ଚିଲିକାର ଉତ୍ତରକୁ ଥିବା ଓଡ଼ିଶାର ଅଂଶ ବଙ୍ଗଳା ବୋଲି ଲେଖାଯାଇଛି ।

(୩୫) ତେଲେଙ୍ଗୀ ଭାଷାରେ ଲିଖିତ ଏହି ଗୁରୁତ୍ୱପୂର୍ଣ୍ଣ ତାମ୍ରପଟ୍ଟଟି ମାନ୍ଦ୍ରାଜ ମିଉଜିୟମରେ ସଂରକ୍ଷିତ ଓ ଶ୍ରୀ ସତ୍ୟନାରାୟଣ ରାଜଗୁରୁଙ୍କ ଦ୍ୱାରା ପ୍ରକାଶିତ ।
O. H. R. J. Vol. VI, Pt. 1, P. 38-42

ଜମି ଜମା ବନ୍ଦୋବସ୍ତ କରିଥିଲେ । ତାହା ମାନସିଂହଙ୍କ ସମୟରେ ପକ୍କା ହୋଇଥିଲା । (୩୬)

## ସାରଙ୍ଗଗଡ଼ ଆକ୍ରମଣ : –

ରାଜା ମାନସିଂହ ବିଦ୍ରୋହୀ ଆଫଗାନ ସର୍ଦ୍ଦାରମାନଙ୍କ ବିରୁଦ୍ଧରେ ଯୁଦ୍ଧ ଚଳାଇବା ଉଦ୍ଦେଶ୍ୟରେ ୧୫୯୨ ଖ୍ରୀଷ୍ଟାବ୍ଦରେ ପ୍ରଥମେ ଭଦ୍ରକଠାରୁ କଟକକୁ ଆସିଥିଲେ । ଗଜପତି ରାମଚନ୍ଦ୍ର ଦେବ ଆଫଗାନ ସର୍ଦ୍ଦାରମାନଙ୍କୁ ନିଜ ରାଜ୍ୟରେ ଅବସ୍ଥିତ ସାରଙ୍ଗଗଡ଼ ଠାରେ ଆଶ୍ରୟ ଦେବାରୁ ମାନସିଂହଙ୍କ ସହିତ ତାଙ୍କର ସଂଘର୍ଷ ଆରମ୍ଭ ହୋଇଥିଲା । ଏ ସଂପର୍କରେ 'ଆକବର ନାମା'ର ବିବରଣ ଉଲ୍ଲେଖଯୋଗ୍ୟ । ଯଥା—

'In the town of Bhadrak, news was received that the sons of Qutlū and Khwāja Sulaimān, Dilāwar Khan, Jalāl Khan, Bahādur Kūrūh, Ulugh Khan, Abdul-l-Ghafūr, Malik Haibat, Malik Dāūd, Kaham Karn, Rajah Mānū. Malik Sikandar and Purukhotam had collected in the fort of Cuttack with 300 elephants. That fort is at the end of the country and on the sea shore. It belonged to Rajah Rām Cand, who was a great land holder in that country. It was called Sārangarh. Rajah Mān Singh left Sujan Singh × × and went off to attack the fort and the Afgans took refuge in the forest near the sea. The fort was taken without a contest.'' (37)

ଉକ୍ତ ବିବରଣରୁ ଜଣାଯାଏ ଯେ କୁତ୍ଲୁ ଖାଁଙ୍କ ପୁତ୍ରମାନେ, ଖ୍ୱାଜା ସୁଲେମାନ, ଦିଲୱାର ଖାଁ, ଜଲାଲ ଖାଁ, ବାହାଦୁର କୁରୁ, ଉଲୁଘ ଖାଁ, ଅବଦୁଲ ଗଫୁର, ମାଲିକ ହାଇବତ, ମାଲିକ ଦାଉଦ, କହମ କରନ, ରାଜା ମାନୁ, ମାଲିକ ସିକନ୍ଦର ପ୍ରଭୃତି ବିଦ୍ରୋହୀ ଆଫଗାନ ସର୍ଦ୍ଦାରଗଣ ଓ ପୁରୁଷୋତ୍ତମ ସାରଙ୍ଗଗଡ଼ ଠାରେ ଏକତ୍ର ହୋଇ ମୋଗଲ ସେନାର ପ୍ରତିରୋଧ କରିଥିଲେ । ଏଥିରେ ବର୍ଣ୍ଣିତ

---

(36) Stirling's Orissa P. 44-45.

(37) Akbarnamā translated by Beveridge, Vol. III, P. 941.

ପୁରୁଷୋତ୍ତମ ହୋଇଛନ୍ତି । ଗଜପତି ରାମଚନ୍ଦ୍ର ଦେବଙ୍କ ପୁତ୍ର ଓ ଉତ୍ତରାଧିକାରୀ ପୁରୁଷୋତ୍ତମ ଦେବ । ସେମାନଙ୍କ ଅଧିକାରରେ ୩୦୦ ହାତୀ ଥିଲେ । ଏହି ଦୁର୍ଗ ଓଡ଼ିଶାର ଜଣେ ପ୍ରସିଦ୍ଧ ଜମିଦାର ରାଜା (ରାମଚନ୍ଦ୍ର) ରାମଚନ୍ଦ୍ରଙ୍କ ରାଜ୍ୟର ସୀମାରେ ଅବସ୍ଥିତ ଥିଲା । ରାଜା ମାନସିଂହ ଏହି ଦୁର୍ଗ ଆକ୍ରମଣ କରିବାରୁ ବିଦ୍ରୋହୀ ଅଫଗାନ ସର୍ଦ୍ଦାରଗଣ ଜଙ୍ଗଲ ମଧ୍ୟରେ ଲୁଚିଗଲେ ଏବଂ ବିନା ପ୍ରତିରୋଧରେ ଉକ୍ତ ଦୁର୍ଗ ମୋଗଲ ସେନାଙ୍କ ହସ୍ତଗତ ହେଲା ।

"Rajah Rām Cand admitted those who had taken protection to Sarangarh. When Rajah Mān Singh came to Cuttack he left Yūsaf Khan XX and others, to guard it, and went off to pay his devotions at Jagannāth. His idea was that he would be nearer to Rajah Rām Cand, and that when an opportunity occurred he could lay hold of him. When his thought had been realised he returned and took up his quarters near Sali Everyday active men went forth and inflicted chastisement. In consequence of counsels he (Rajah Rām Cand) became obedient, and sent his son Birbal (Harmal) with presents. The Rajah returned to Cuttack and established the foot of conquest near the fort of Sarangarh ' (28)

ଏହି ଆକ୍ରମଣ ଫଳରେ ବିଦ୍ରୋହୀ ଅଫଗାନ ସର୍ଦ୍ଦାରମାନଙ୍କୁ ରାଜା ମାନସିଂହ ଦମନ କରିବାକୁ ଅସମର୍ଥ ହୋଇଥିଲେ । ରାମଚନ୍ଦ୍ର ଦେବ ମୋଗଲ ଆକ୍ରମଣ ପ୍ରତି ଭ୍ରୂକ୍ଷେପ ନ କରି ପୁନର୍ବାର ସେମାନଙ୍କୁ ଆଶ୍ରୟ ଦେଇଥିଲେ । ତେଣୁ ରାଜା ମାନସିଂହ ଇସୁଫ ଖାଁ ପ୍ରଭୃତିଙ୍କ ହସ୍ତରେ କଟକ ରକ୍ଷାର ଭାର ଅର୍ପଣ କରି ଛଳନା କରି ଜଗନ୍ନାଥ ଦର୍ଶନ କରିବାକୁ ଗଲେ । କିନ୍ତୁ ପ୍ରକୃତରେ ସେ ରାମଚନ୍ଦ୍ରଙ୍କୁ ଶାସ୍ତି ଦେବା ନିମିତ୍ତ ସିରିଲି ଠାରେ ମୋଗଲ ସୈନ୍ୟ ସମାବେଶ କରି ସେଠାରୁ ଖୁର୍ଦ୍ଧା ରାଜ୍ୟ ଆକ୍ରମଣ କଲେ । ଏଥିରେ ରାମଚନ୍ଦ୍ରଙ୍କ ସୁବୁଦ୍ଧି ଜାତ ହେଲା ଏବଂ ସେ ବଶ୍ୟତା ସ୍ୱୀକାର କରି ନିଜ ପୁତ୍ର ବୀରବଲଙ୍କ ହସ୍ତରେ ମାନସିଂହଙ୍କ ନିକଟକୁ ଉପହାର ପଠାଇଥିଲେ । ଏହାପରେ ମାନସିଂହ କଟକ ଫେରି ଆସିଲେ ଏବଂ ସାରଙ୍ଗଗଡ଼ରେ ମୋଗଲ ଆଧିପତ୍ୟ ପ୍ରତିଷ୍ଠିତ ହେଲା ।

---

(୨୮) ଆକବର ନାମା ତୃତୀୟ ଭାଗ, ପୃ ୯୭୧ ।

ଉପର ଉକ୍ତ ଦୁଇଟି ବର୍ଣ୍ଣନାକୁ ସୂକ୍ଷ୍ମ ଦୃଷ୍ଟିରେ ବିଚାର କଲେ ଜଣାଯାଏ ଯେ ମାନସିଂହ ୧୫୯୨ରେ ଖୁର୍ଦ୍ଧା ରାଜ୍ୟ ଆକ୍ରମଣ କରିବା ପୂର୍ବରୁ ରାମଚନ୍ଦ୍ର ଦେବ ସ୍ୱୀୟ ବାହୁବଳରେ ଉତ୍ତରରେ ସାରଙ୍ଗଗଡ଼ ସୀମାରେ ଥିବା କୂଆଖାଇ ନଦୀଠାରୁ ଦକ୍ଷିଣରେ ପୁରୀ ଓ ପୂର୍ବରେ ପିପିଲି ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କରି ସାରିଥିଲେ ଏବଂ ପୁରୀ ବଡ଼ ଦେଉଳରେ ଜଗନ୍ନାଥଙ୍କ ପୁନଃ ପ୍ରତିଷ୍ଠା କରି ଅକ୍ଷୟ ଯଶଃ ଓ ଗୌରବ ଲାଭ କରିଥିଲେ । ରାମଚନ୍ଦ୍ରଙ୍କ ବଳ ଓ ପରାକ୍ରମ ଦେଖି ଭାରତ ସମ୍ରାଟ ଆକବରଙ୍କ ବିରୁଦ୍ଧରେ ବିଦ୍ରୋହ ଚଳାଇଥିବା ଆଫଗାନ ସର୍ଦ୍ଦାରମାନେ ତାଙ୍କର ଶରଣାପନ୍ନ ହୋଇଥିଲେ । ଭାରତ ପ୍ରସିଦ୍ଧ ସେନାପତି ରାଜା ମାନସିଂହ ଦୁଇଥର ଖୁର୍ଦ୍ଧା ଆକ୍ରମଣ କରି କେବଳ ସାରଙ୍ଗଗଡ଼ ଜୟ କରିବା ପାଇଁ ସମର୍ଥ ହୋଇଥିଲେ । ରାମଚନ୍ଦ୍ର ମୋଗଲ ସେନାପତିଙ୍କ ବଶ୍ୟତା ସ୍ୱୀକାର ପୂର୍ବକ ତାଙ୍କ ପୁତ୍ର ବୀରବଲ (ହରମଲ)ଙ୍କ ହସ୍ତରେ ମାନସିଂହଙ୍କ ନିକଟକୁ ଉପହାର ପଠାଇ-ଥିଲେ । କିନ୍ତୁ ବୀରବଲ ବା ହରମଲ ଓଡ଼ିଆ ନାମ ପରି ଜଣାଯାଉନାହିଁ । ମୋଗଲ ଦରବାର ଐତିହାସିକଙ୍କ ଉପରୋକ୍ତ ବର୍ଣ୍ଣନା ପ୍ରଶସ୍ତି ମୂଳକ ମନେହୁଏ ।

## ଖୁର୍ଦ୍ଧା ରାଜ୍ୟ ଆକ୍ରମଣ—

ଏହି ଦୁଇଟି ଆକ୍ରମଣରେ ରାମଚନ୍ଦ୍ର ଦେବଙ୍କ କ୍ଷମତା ଖର୍ବ କରି ନ ପାରି ରାଜା ମାନସିଂହ ୧୫୯୩ ଜାନୁୟାରୀ ମାସରେ ଖୁର୍ଦ୍ଧା ଆକ୍ରମଣ ପାଇଁ ପୁନର୍ବାର ବିରାଟ ଆୟୋଜନ କରିଥିଲେ । ଏ ସଂପର୍କରେ 'ଆକବର ନାମା'ର ବର୍ଣ୍ଣନା ଉଲ୍ଲେଖଯୋଗ୍ୟ । ଯଥା—

"At this time the home of Rām Cand was plundered. He is one of the famous Zamīndārs of Orissa, and by the glory of H. M's star he became obedient, and sent his son to do service. Rajah Mān Singh summoned him and he objected. The Rajah from inappreciativeness consigned his goodness to oblivion and sent Jagat Singh, Mīr Sharif Sarmandi, Mir Qāsim Badakhshi, Bar*kh*ūrdar, Abul Baqā, Mahmūd Beg Shāmlu, Shibābu-d-din Diwāna and others to wage war on him. A commotion arose Rām Cand entered the fort of Khurdah which was the strongest of his fortresses. The imperialists took up their quarters close by and proceeded to attack the country. The forts Sahajpal (?), Khārgarh, Kālupāra, Kahnan, Longarh, Bhūnmal, and many populated places fell

in to possession. On hearing of this, H M.-who appreciates dignities-became angry, and issued censures The Rajah recalled his troops and apologised, Rām cand, on seeing the graciousness of H. M., took the thought of paying his respects On 21 Bahman he visited the Rajah (Mān Singh), and was treated with much respect." (39)

ଏହି ସମୟରେ (୧୫୯୩ ଜାନୁୟାରୀ) ରାଜା ମାନସିଂହ ଓଡ଼ିଶାର ଜଣେ ପ୍ରସିଦ୍ଧ ଜମିଦାର ରାମଚନ୍ଦ୍ରଙ୍କ ରାଜ୍ୟରେ ଲୁଣ୍ଠନ ଆରମ୍ଭ କରାଇଥିଲେ । ମହାନୁଭବ ଆକବରଙ୍କ ସୌଭାଗ୍ୟକୁ ରାମଚନ୍ଦ୍ର ବଶ୍ୟତା ସ୍ୱୀକାର କରି ନିଜ ପୁଅକୁ ମୋଗଲ ସେନାପତିଙ୍କୁ ସମ୍ମାନ ପ୍ରଦର୍ଶନ ନିମିତ୍ତ ପଠାଇଥିଲେ । କିନ୍ତୁ ରାଜା ମାନସିଂହ ରାମଚନ୍ଦ୍ରଙ୍କୁ ନିଜେ ଆସି ଭେଟିବାକୁ ଆଦେଶ ଦେବାରୁ ସେ ସେଥିରେ ଆପତ୍ତି କରିଥିଲେ । ମାନସିଂହ ରାମଚନ୍ଦ୍ରଙ୍କ ଏପରି ଔଦ୍ଧତ୍ୟ ପ୍ରକାଶରେ ଉତ୍‌କ୍ଷିପ୍ତ ହୋଇ ତାଙ୍କ ବିରୁଦ୍ଧରେ ଯୁଦ୍ଧ କରିବା ପାଇଁ ଜଗତ ସିଂହ, ମୀର ସରୀଫ ଅହମଦ, ମୀର କ୍ୱାସିମ ବଦକ୍ଷୀ, ବଖ୍ତିୟାରଦାର, ଅବ୍ଦୁଲ୍ ବକ୍ସା, ମହମୁଦ ବେଗ ସାମ୍‌ଲୁ, ସିହାବୁଦ୍ଦିନ୍ ଖଣ୍ଡାନୀ ପ୍ରଭୃତି ସେନାପତିମାନଙ୍କୁ ପଠାଇଥିଲେ । ଏହେତୁରୁ ଏ ସୁଦକ୍ଷ ମୋଗଲ ସେନାପତିଙ୍କ ପ୍ରବଳ ଆକ୍ରମଣ ଯୋଗୁଁ ସମଗ୍ର ରାଜ୍ୟରେ ଚହଳ ପଡ଼ିଗଲା । ରାମଚନ୍ଦ୍ର ତାଙ୍କର ସୁଦୃଢ଼ତମ ଖୁର୍ଦ୍ଧା ଦୁର୍ଗରେ ଆଶ୍ରୟ ନେଇ ଯୁଦ୍ଧ ଚଳାଇଲେ । ବାଦସାହଙ୍କ ସୈନ୍ୟମାନେ ଏହାର ଅଳ୍ପ ଦୂରରେ ଛାଉଣି ପକାଇ ଖୁର୍ଦ୍ଧା ରାଜ୍ୟର ଆକ୍ରମଣ ଚଳାଇଲେ । ଅଳ୍ପ ଦିନ ମଧ୍ୟରେ (ତେଲଙ୍ଗ ନିକଟବର୍ତ୍ତୀ) ମହଜପୁର କଟକ, କାଳୁପଡ଼ା, ଭୂଇଁମୂଳ, ଲୁଣଗଡ଼ ଓ (ଜଟଣୀ ନିକଟବର୍ତ୍ତୀ) ଅରଗଡ଼ ଓ କହମାନ୍ ? ପ୍ରଭୃତି 'ବହୁ ଜନବସତି ପୂର୍ଣ୍ଣ ସ୍ଥାନ ମୋଗଲ ସେନା ଦ୍ୱାରା ଅଧିକୃତ ହେଲା । ଏହି ଭୀଷଣ ଯୁଦ୍ଧର ସଂବାଦ ଶ୍ରବଣ କରି ମହାମହିମ ଆକବର - (ଯେ କି ସାଧୁଙ୍କ ପ୍ରତି ଉପଯୁକ୍ତ ସମ୍ମାନ ଓ ଆଦର ପ୍ରଦର୍ଶନ କରନ୍ତି) ବିରକ୍ତ ହୋଇ ମାନସିଂହଙ୍କ କାର୍ଯ୍ୟର ନିନ୍ଦାବାଦ କରିଥିଲେ । ସେ ଖୁର୍ଦ୍ଧା ରାଜ୍ୟର ଆକ୍ରମଣକାରୀ ଫୌଜକୁ ଫେରାଇ ଆଣି ସମ୍ରାଟଙ୍କ ନିକଟରେ କ୍ଷମା ଭିକ୍ଷା କରିଥିଲେ । ରାମଚନ୍ଦ୍ର ସମ୍ରାଟ ଆକବରଙ୍କ ଉଦାରତା ଓ ଦୟା ପ୍ରଦର୍ଶନରେ ମୁଗ୍ଧ ହୋଇ ମାନସିଂହଙ୍କୁ ନିଜେ ଭେଟିବା ପାଇଁ ସ୍ଥିର କଲେ । 'ବହମାନ' ମାସର ୨୧ ରେ ସେ ମାନସିଂହଙ୍କୁ ଭେଟି ତାଙ୍କ ଦ୍ୱାରା ସସମ୍ମାନ ଅଭ୍ୟର୍ଥିତ ହୋଇଥିଲେ ।"

ଆକବରଙ୍କ ସଭାପଣ୍ଡିତଙ୍କ ଉଦ୍ଧୃତ ବର୍ଣ୍ଣନା ବିଚାର କଲେ ସ୍ପଷ୍ଟ ପ୍ରମାଣିତ ହୁଏ ଯେ ରାମଚନ୍ଦ୍ର ଦେବ ସେ ସମୟରେ ଅତ୍ୟନ୍ତ ଶକ୍ତିଶାଳୀ ଥିବାରୁ ତାଙ୍କ

---

(୩୯) 'ଆକବର ନାମା' ତୃତୀୟ ଭାଗ, ପୃ ୯୬୭-୯୬୮ ।

ରାଜ୍ୟ ଆକ୍ରମଣ କରିବା ପାଇଁ ସ୍ମରଣୀୟ ହଳଦୀଘାଟ ଯୁଦ୍ଧରେ ଭାରତ ବିଖ୍ୟାତ ରାଣା ପ୍ରତାପସିଂହଙ୍କୁ ପରାସ୍ତ କରିଥିବା ଶ୍ରେଷ୍ଠ ମୋଗଲ ସେନାପତି ରାଜା ମାନସିଂହ, ତାଙ୍କ ପୁତ୍ର ସୁଦକ୍ଷ ସେନାପତି ଜଗତ୍‌ସିଂହ, ସେ ସମୟର ଅନ୍ୟ ଜଣେ ପ୍ରସିଦ୍ଧ ମୋଗଲ ସେନାପତି ମୀର ସରାଫ ସରମଦ ଏବଂ ଅନ୍ୟ ପାଞ୍ଚଜଣ ନିପୁଣ ମୋଗଲ ସେନାଧ୍ୟକ୍ଷ ସୈନ୍ୟଚାଳନା କରିଥିଲେ । ଖୋର୍ଦ୍ଧାର ଦୁର୍ଦ୍ଧର୍ଷ ପାଇକମାନେ ଏମନ୍ତ ପ୍ରବଳ ଆକ୍ରମଣର ସମ୍ମୁଖୀନ ହୋଇ ମଧ୍ୟ ପ୍ରାଣମୂର୍ଚ୍ଛା ପ୍ରତିଆକ୍ରମଣ ଚଳାଇ ମୋଗଲ ସେନାକୁ ଅସ୍ତବ୍ୟସ୍ତ କରି ପକାଇଥିଲେ । ଏହି ଯୁଦ୍ଧରେ ଭୀଷଣ କ୍ଷତି ହେଉଥିବାର ସମ୍ବାଦରେ ବାଦସାହ ଆକବର ମାନସିଂହଙ୍କ ଉପରେ ବିରକ୍ତି ପ୍ରକାଶ କରିବାରୁ ମାନସିଂହ କ୍ଷମାପ୍ରାର୍ଥନା କରି ଯୁଦ୍ଧ ବନ୍ଦ କରିଥିଲେ । ଏହାପରେ ଉଭୟଙ୍କ ମଧ୍ୟରେ ସନ୍ଧି ହେଲା । ରାମଚନ୍ଦ୍ର ମାନସିଂହଙ୍କ ଦ୍ୱାରା ସସମ୍ମାନ ଅଭ୍ୟର୍ଥିତ ହୋଇ ମୋଗଲ ବାଦସାହଙ୍କ ଅଧୀନତା ସ୍ୱୀକାର କରିଥିଲେ ।

ଭାଣପୁର ଆକ୍ରମଣ :—

ଏହାର କିଛିଦିନ ପରେ ମୋଗଲ ସେନା ଓଡ଼ିଶା ଓ ତେଲିଙ୍ଗାନା (ଯେ ସମୟକୁ ଚଳିବା ପର୍ଯ୍ୟନ୍ତ ରାଜ୍ୟ ଗୋଲକୁଣ୍ଡା ସୁଲତାନଙ୍କ ଅଧିକାରଭୁକ୍ତ ହୋଇ ତେଲିଙ୍ଗାନା ନାମରେ ପରିଚିତ ହେଲା) ସୀମାରେ ଥିବା ମାନପୁର (ଭାଣପୁର) ଦୁର୍ଗ ଆକ୍ରମଣ ଓ ଅଧିକାର କରିଥିଲେ । ରାଜା ମାନସିଂହ ଏହା ରାମଚନ୍ଦ୍ରଙ୍କ ହସ୍ତରେ ଅର୍ପଣ କରିଥିଲେ । ଯଥା —

"At this time the fort of Mānpur was taken. It lies between Orissa and Telingānā. An army marched against it and took it without much trouble. Rajah Mān Singh gave it to Rām Cand." (40)

ମୋଗଲସେନା କାହିଁକି ଭାଣପୁର ଆକ୍ରମଣ କରିଥିଲେ ତାହା ଜଣାଯାଏ ନାହିଁ । ସମ୍ଭବତଃ ଦକ୍ଷିଣରୁ ଗୋଲକୁଣ୍ଡା ସୁଲତାନଙ୍କ ଅଗ୍ରଗତିର ପ୍ରତିରୋଧ ପାଇଁ ଏହି ଅଭିଯାନ ପରିଚାଳିତ ହୋଇଥିଲା । ଖୋର୍ଦ୍ଧା ରାଜା ଗଜପତି ରାମଚନ୍ଦ୍ର ଦେବଙ୍କ ସହିତ ମିତ୍ରତା ସ୍ଥାପିତ ହେବା ପରେ ରାଜା ମାନସିଂହ ଦିଲ୍ଲୀ ଫେରିଯାଇଥିଲେ । ସେଠାକୁ ଯିବା ସମୟରେ ତାଙ୍କ ସଙ୍ଗରେ ଖୋର୍ଦ୍ଧାରୁ ଗଜପତିଙ୍କ ପୁତ୍ର ପୁରୁଷୋତ୍ତମ ଦେବ ଓ କାଶୀ ପରିଜା ସଙ୍ଗରେ ଯାଇଥିଲେ । ମାନସିଂହ ୧୫୯୪

(୪୦) ଆକବରନାମା, ତୃତୀୟ ଖଣ୍ଡ, ପୃ ୯୬୨ ।

ଖ୍ରୀଷ୍ଟାବ୍ଦ ଫେବୃୟାରୀ ୨୩ ତାରିଖରେ ସେ ଦୁହିଁଙ୍କୁ ଆକବରଙ୍କ ଦରବାରରେ ପରିଚିତ କରାଇଥିଲେ । (୪୧)

ମାଦଳାପାଞ୍ଜିରେ ମାନସିଂହଙ୍କ ପୁରୀ ଆଗମନ ସମ୍ବନ୍ଧରେ ନିମ୍ନୋକ୍ତ ବିବରଣ ମିଳେ । ଯଥା—"ଏ ମହାରାଜାଙ୍କ ଅ ୧୨ ଙ୍କେ ତେଲେଙ୍ଗା ମୁକୁନ୍ଦଦେବଙ୍କ ପୁଅ ଭଲ ପାତଶା ହଜୁରେ ଫେରାଦ ହୋଇଲେ । ପାତଶା ରାଜା ମାନସିଂହକୁ ଓଡ଼ିଶାକୁ ପଠାଇଲେ । କହିଲେ ଓଡ଼ିଶାକୁ ଯେ ନାୟକ ହୋଇବ ତାହାକୁ ରାଜା କରିବ । ରାଜା ମାନସିଂହେ ଅଇଲେ । ଏହାଙ୍କ ସଙ୍ଗେ ମୁକୁନ୍ଦ ଦେବଙ୍କ ପୁଅ ଥିଲେ । ସେ ପୁରୁଷୋତ୍ତମ ବୋଲି ଅଇଲେ । ତାହାଙ୍କୁ ରାମଚନ୍ଦ୍ର ଦେବ ଭେଟିଲେ । ଏ ଭଗରୁ ଚନ୍ଦନ ଯାତ୍ରା ହୋଇଲେ । ଖଡ଼ ପ୍ରସାଦ କାହାକୁ ଦେବୁ ଏମନ୍ତ ବୋଲି ସେବକେ ମାନସିଂହଙ୍କୁ ପଚାରିଲେ । ମାନସିଂହଙ୍କ ସଙ୍ଗେ ରାମଚନ୍ଦ୍ର ଦେବ ଥିଲେ, ମୁକୁନ୍ଦ ଦେବଙ୍କ ପୁଅ ଥିଲେ । ମାନସିଂହେ ପଚ୍ଛକୁ ଏ ଦୁହିଁଙ୍କି ଗୁହିଁଲେ । ସେବକଙ୍କୁ ବୋଇଲେ ଖଡ଼ ପ୍ରସାଦ ଆଣ । ସେବକେ ଖଡ଼ ପ୍ରସାଦ ଆଣିଲେ । ସମସ୍ତଙ୍କ ଆଗେ ରାଜା ମାନସିଂହେ ରାମଚନ୍ଦ୍ର ଦେବଙ୍କୁ ଖଡ଼ ପ୍ରସାଦ ଲାଗି କରାଇଲେ; ଓଡ଼ିଶା ରାଜ୍ୟରେ ରାଜା କଲେ । ମୁକୁନ୍ଦ ଦେବଙ୍କ ପୁଅକୁ ଆଳରେ ରଖାଇ ଦେଲେ । ଏ ରୂପେ ରାଜ୍ୟ ବାଣ୍ଟି ଦେଲେ ।"(୪୨)

ମାଦଳାପାଞ୍ଜିର ଉକ୍ତ ବିବରଣ ସମସାମୟିକ ମୁସଲମାନ ଇତିହାସରେ ଲିଖିତ ନ ହୋଇଥିଲେ ମଧ୍ୟ ଏଥିରେ ଐତିହାସିକ ସତ୍ୟ ନିହିତ ଅଛି । କାରଣ ମୁକୁନ୍ଦ ଦେବ ଓ ରାମଚନ୍ଦ୍ର ଦେବଙ୍କ ପରିବାର ମଧ୍ୟରେ ବହୁ ପୂର୍ବରୁ ଓଡ଼ିଶା ସିଂହାସନ ଲାଭ ପାଇଁ ଭୀଷଣ ଶତ୍ରୁତା ଥିବା ପୂର୍ବେ ବର୍ଣ୍ଣିତ ହୋଇଅଛି । ମୁକୁନ୍ଦ ଦେବଙ୍କ ଅନ୍ତେ ତାଙ୍କର ଜଣେ ଭାଇ ନରସିଂହ ବାହୁବଳେନ୍ଦ୍ର ଗୋଲକୁଣ୍ଡା ସୁଲତାନଙ୍କ ସାହାଯ୍ୟ ଓ ସମର୍ଥନରେ 'ଗଜପତି' ପଦବୀ ଧାରଣ କରି ନିଜକୁ ଉତ୍କଳ ସମ୍ରାଟଙ୍କ ଉତ୍ତରାଧିକାରୀ ରୂପେ ୧୫୯୦ରେ ଆଠଗଡ଼ ଶିଳାଲେଖରେ ଘୋଷଣା କରିଥିଲେ । ସେହିପରି ମୁକୁନ୍ଦ ଦେବଙ୍କ ପୁଅ ଆକବରଙ୍କ ଦରବାରରେ ଓଡ଼ିଶାର ରାଜପଦ ଦାବୀ କରିଥିବା ସର୍ବଥା ସମ୍ଭବପର । କିନ୍ତୁ ଭୂମୁକ ସଂଗ୍ରାମ ପରେ ଆକବରଙ୍କ ନିର୍ଦ୍ଦେଶରେ ୧୫୯୩ରେ ମାନସିଂହ ଖୁର୍ଦ୍ଧା ରାଜ୍ୟରେ ରାମଚନ୍ଦ୍ର ଦେବଙ୍କ ଆଧିପତ୍ୟ ସ୍ୱୀକାର କରି ସାରିଥିଲେ । ଶ୍ରୀ ଜଗନ୍ନାଥଙ୍କ ବେଢ଼ା

---

(41) History of Bengal, published by the Dacca University. Vol II, P. 210.

(୪୨) ମାଦଳାପାଞ୍ଜି ପୃ ୬୩ ୬୪ ।

ମଧ୍ୟରେ ରାମଚନ୍ଦ୍ରଙ୍କୁ ଖଣ୍ଡା ପ୍ରସାଦ ପ୍ରଦାନ କରି ତାଙ୍କର ବାହୁବଳ ଅର୍ଜିତ ନ୍ୟାୟସଙ୍ଗତ ରାଜପଦ ଅଧିକାର ପ୍ରତି ଓଡ଼ିଶାର ପ୍ରଭୁ ଜଗନ୍ନାଥଙ୍କ ପୃଷ୍ଠ ସମର୍ଥନ ଥିବା ମାନସିଂହ ଅତି ବିଚକ୍ଷଣ ଭାବରେ ପ୍ରତିପାଦନ କରିଥିଲେ । ଏହା ଫଳରେ ଓଡ଼ିଶାର ପରମ୍ପରା ରକ୍ଷା * ସରଳ ଓ ଧର୍ମପ୍ରାଣ ପ୍ରଜା ସାଧାରଣଙ୍କ ସନ୍ତୋଷ ବିଧାନ ଓ ରାଜାନୁଗତ୍ୟ ବୃଦ୍ଧି ଏବଂ ରାମଚନ୍ଦ୍ରଙ୍କ ଆଧିପତ୍ୟର ସୁଦୃଢ଼ୀକରଣ ସାଧିତ ହୋଇଥିଲା ।

## ଐତିହାସିକ ବାନାର୍ଜୀଙ୍କ ଭ୍ରାନ୍ତ ମତ ଖଣ୍ଡନ –

ଇଂରେଜୀ ଭାଷାରେ 'ଓଡ଼ିଶା ଇତିହାସ' ପ୍ରଣେତା ସ୍ୱର୍ଗତଃ ଐତିହାସିକ ରାଖାଲ ଦାସ ବାନାର୍ଜୀ ରାମଚନ୍ଦ୍ରଙ୍କ ରାଜପଦ ପ୍ରାପ୍ତି ସମ୍ବନ୍ଧରେ ଲେଖିଛନ୍ତି—

"In the north the Chiefs of Khurda were given the rank of Raja of Orissa by the Mughal Emperor Akbar at the intercession of Mān Singh whom Ramachandra Deva I of Khurda had succeeded in bribing more heavily than Rāmachandra, the son of Mukund Harichandana." (43)

ଅର୍ଥାତ୍ ମୁକୁନ୍ଦ ଦେବଙ୍କ ପୁତ୍ର ରାମଚନ୍ଦ୍ରଙ୍କ ଅପେକ୍ଷା ଖୋର୍ଦ୍ଧା ରାଜା ପ୍ରଥମ ରାମଚନ୍ଦ୍ର ଦେବ ମାନସିଂହଙ୍କୁ ଅଧିକ ଉତ୍କୋଚ ପ୍ରଦାନ ଦ୍ୱାରା ସନ୍ତୁଷ୍ଟ କରି ଦେବାରୁ ତାଙ୍କ ଚେଷ୍ଟାରୁ ମୋଗଲ ସମ୍ରାଟ୍ ଆକବର ଖୋର୍ଦ୍ଧା ରାଜାଙ୍କୁ ଓଡ଼ିଶା ରାଜ-ପଦରେ ଅଧିଷ୍ଠିତ କରିଥିଲେ ।"

କିନ୍ତୁ ପୂର୍ବେ କରାଯାଇଥିବା ଆଲୋଚନାରୁ ନିଃସନ୍ଦେହରେ ପ୍ରମାଣିତ ହୁଏ ଯେ ଓଡ଼ିଆଜାତିର ଏକ ଘୋର ଦୁର୍ଦ୍ଦିନରେ ଦୂରଦ୍ରଷ୍ଟା ମହାବୀର ରାମଚନ୍ଦ୍ର ଦେବ କାଠଯୋଡ଼ି ନଦୀ ଓ ଛତ୍ରଗଡ଼ ଘାଟି ମଧ୍ୟରେ କ୍ଷୁଦ୍ର ଅଥଚ ଶକ୍ତିଶାଳୀ ଖୋର୍ଦ୍ଧା ରାଜ୍ୟ ପ୍ରତିଷ୍ଠା କରି ଦକ୍ଷିଣରୁ ପ୍ରବଳ ବେଗରେ ମାଡି ଆସୁଥିବା ଗୋଲକୁଣ୍ଡା ବାହିନୀର

---

* ଗଙ୍ଗବଂଶୀୟ ପବିତ୍ର ରାଜା ଅନଙ୍ଗଭୀମଦେବଙ୍କ ସମୟରୁ ଓଡ଼ିଶାର ରାଜାମାନେ ନିଜ ନିଜକୁ ଜଗନ୍ନାଥଙ୍କ ପ୍ରତିନିଧି ରୂପେ ଘୋଷଣା କରୁଥିଲେ । କପିଳେନ୍ଦ୍ର ଦେବ ଓ ପୁରୁଷୋତ୍ତମ ଦେବ ଜଗନ୍ନାଥଙ୍କ ପ୍ରସାଦରୁ ଓଡ଼ିଶାର ସିଂହାସନ ଅଧିକାର କରିଥିବା ବିଷୟ କମ୍ବଦନ୍ତୀ, ତଥା ପ୍ରାଚୀନ ସାହିତ୍ୟରୁ ଜଣାଯାଏ ।

(43) History of Orissa by R. D. Banerjee, Vol. I, P. 348.

ପ୍ରବଳ ପ୍ରତିରୋଧ କରିବା ସଙ୍ଗେ ସଙ୍ଗେ ଆକବରଙ୍କ ଶତ୍ରୁ ବିଦ୍ରୋହୀ ଆଫଗାନ ସର୍ଦ୍ଦାରମାନଙ୍କୁ ଆଶ୍ରୟ ପ୍ରଦାନ ପୂର୍ବକ ଭାରତ ପ୍ରସିଦ୍ଧ ମୋଗଲ ସେନାପତି ମାନସିଂହଙ୍କ ସହିତ ଭୁମୁଳ ସଂଗ୍ରାମ ଚଳାଇ ଯାଉଥିଲେ। ମାନସିଂହ, ତାଙ୍କପୁତ୍ର ଜଗତସିଂହ ପ୍ରମୁଖ ସାତଜଣ ସୁଦକ୍ଷ ମୋଗଲ ସେନାପତି ତାଙ୍କ ବିରୁଦ୍ଧରେ ଯୁଦ୍ଧ ଚଳାଇଥିଲେ ହେଁ ମୋଗଲ ସେନା ଅସ୍ତବ୍ୟସ୍ତ ହୋଇ ପଡ଼ିଥିବାରୁ ସମ୍ରାଟ ଆକବରଙ୍କ ନିର୍ଦ୍ଦେଶରେ ଯୁଦ୍ଧ ବନ୍ଦ କରାଯାଇ ତାଙ୍କର ଅସାଧାରଣ ବୀରତ୍ୱ ଓ ସାହସର ପୁରସ୍କାର ସ୍ୱରୂପ ଖୋର୍ଦ୍ଧା ରାଜ୍ୟରେ ତାଙ୍କର ଆଧିପତ୍ୟ ମୋଗଲ ବାଦସାହଙ୍କ ଦ୍ୱାରା ସ୍ୱୀକୃତ ହୋଇଥିଲା। ୧୯୧୦ ମସିହାରେ ଇଂରେଜୀ ଭାଷାରେ ପ୍ରକାଶିତ 'ଆକବରି ନାମା'ରେ ରାମଚନ୍ଦ୍ରଙ୍କ ବୀରତ୍ୱର ଏପରି ଏକ ସୁନ୍ଦର ଚିତ୍ର ଥିବା ସତ୍ତ୍ୱେ ୧୯୩୦ ମସିହାରେ ବାନାର୍ଜ୍ଜୀ ମହାଶୟ ସ୍ୱଗ୍ରନ୍ଥରେ ଉକ୍ତୋକ୍ତ ପ୍ରଦାନ ଦ୍ୱାରା ରାମଚନ୍ଦ୍ରଙ୍କ ରାଜପଦ ପ୍ରାପ୍ତି ବିଷୟ କାଳ୍ପନିକ ଉତ୍ଥାପନ କରିଥିଲେ ତାହା ଏ ପର୍ଯ୍ୟନ୍ତ ଅବୋଧ୍ୟ ରହିଛି। ଆଲୋଚିତ ଏକାଧିକ ଅକାଟ୍ୟ ପ୍ରମାଣ ଦୃଷ୍ଟିରୁ ବାନାର୍ଜ୍ଜୀଙ୍କ ଉପରୋକ୍ତ ମତ ଏକାନ୍ତ ଭିତ୍ତିହୀନ ଓ ଅଭିସନ୍ଧିମୂଳକ, ତେଣୁ ସର୍ବଥା ଅଗ୍ରାହ୍ୟ। ଜାଣିଶୁଣି ରାମଚନ୍ଦ୍ରଙ୍କ ଚରିତ୍ରରେ ଏହି କଳଙ୍କ ଆରୋପ ତାଙ୍କର ଅସାଧାରଣ ବ୍ୟକ୍ତିତ୍ୱ ପ୍ରତି ଘୋର ଅପମାନ।

ବାନାର୍ଜ୍ଜୀ ମହାଶୟ ଅନ୍ୟତ୍ର ପୁରୀ ମନ୍ଦିରରେ ରାମଚନ୍ଦ୍ରଙ୍କୁ ଖଣ୍ଡ ପ୍ରସାଦ ଦେବା ବିଷୟ ବିକୃତ ଭାବରେ ଚିତ୍ର କରି ଓଡ଼ିଶାରେ ଅରାଜକତା ବିଷୟ ଉତ୍ଥାପନ କରିଛନ୍ତି। ଯଥା—

"In Northern Orissa the title of Gajapati remained in abeyance till 1592 for 24 years, when by a clever manipulation of religious opinion Man Singh managed to gain over the priests of Jagannātha in favour of Ramachandra I of Khurda against Telinga Ramachandra. For 24 years from 1568 to 1592 there was anarchy in Orissa." (44)

ଅର୍ଥାତ୍ ୧୫୬୮ ରୁ ୧୫୯୨ ପର୍ଯ୍ୟନ୍ତ ଓଡ଼ିଶାରେ ଅରାଜକତା ଯୋଗୁଁ ଗଜପତି ପଦ ଶୂନ୍ୟ ପଡ଼ିଥିଲା। ମାନସିଂହ ଧର୍ମବିଷୟର ରୂପ କୌଶଳ ପ୍ରୟୋଗ କରି ଜଗନ୍ନାଥଙ୍କ ସେବକ ସମ୍ପ୍ରଦାୟର ମତ ରାମଚନ୍ଦ୍ର ଦେବଙ୍କ ପ୍ରତି ଅନୁକୂଳ ଓ ତେଲେଙ୍ଗା ରାମଚନ୍ଦ୍ରଙ୍କ ପ୍ରତିକୂଳ ଥିବାର ସାବ୍ୟସ୍ତ କରିଥିଲେ।

---

(44) History of Orissa, Vol. I, by R. D. Banerjee, P. 350.

ବାନାର୍ଜି ମହାଶୟଙ୍କ ଦ୍ୱାରା ପ୍ରଦତ୍ତ ଉପରୋକ୍ତ ତଥ୍ୟ ଏବଂ ସ୍ଥାପିତ ପ୍ରମାଣ ଦ୍ୱାରା ଅସିଦ୍ଧ ହେଉଥିବାରୁ ଅଗ୍ରାହ୍ୟ । ମୁକୁନ୍ଦ ଦେବଙ୍କ ମୃତ୍ୟୁର ଅଳ୍ପ ଦିନ ମଧ୍ୟରେ ଉତ୍ତର ଦିଗରୁ ବଙ୍ଗ ସୁଲତାନ ଓ ଦକ୍ଷିଣ ଆଡ଼୍ର ଗୋଲକୁଣ୍ଡା ସୁଲତାନ ପ୍ରବଳ ବେଗରେ ଓଡ଼ିଶାରେ ରାଜ୍ୟ ବିସ୍ତାର କରୁଥିବା ଅବସରରେ ରାମଚନ୍ଦ୍ର ଦେବ ନିଜର ବାହୁବଳରେ କାଠଯୋଡ଼ି ଓ ଋଷିକୁଲ୍ୟା ମଧ୍ୟବର୍ତ୍ତୀ ଅଞ୍ଚଳରେ ରହି ଓଡ଼ିଶାର ହୃତପିଣ୍ଡ ସ୍ୱରୂପ ଶକ୍ତିଶାଳୀ ଖୋର୍ଦ୍ଧା ରାଜ୍ୟ ପ୍ରତିଷ୍ଠା କରିପାରିଥିଲେ । ଜଗନ୍ନାଥଙ୍କ ପୁନଃ ପ୍ରତିଷ୍ଠା ଉପଲକ୍ଷ୍ୟରେ ୧୫୭୫ ୭୬ ଖ୍ରୀଷ୍ଟାବ୍ଦରେ ଲିଖିତ 'ଶ୍ରୀକୃଷ୍ଣ ଭକ୍ତିବାହ୍ଲୀ ନାଟକମ୍'ରେ ରାମଚନ୍ଦ୍ରଙ୍କ 'ଗଜପତି' ଦେଖାଯାଇ ଦୃଷ୍ଟ ହୁଏ । ତେଣୁ ଗଜପତି ପଦ ୨୪ ବର୍ଷ କାଳ ଶୂନ୍ୟ ପଡ଼ିଥିବା ବିଷୟ ସତ୍ୟ ନୁହେଁ । ରାମଚନ୍ଦ୍ର ଦେବଙ୍କ ଅଧିକାର ବହିର୍ଭୂତ ସୁଦୂର ମେଦିନୀପୁର ସୀମାରେ ୧୫୮୭ ଖ୍ରୀଷ୍ଟାବ୍ଦରେ ଖୋଦିତ ଦାନ୍ତିଆଷୀ ଶିଳାଲିପିରେ ତାଙ୍କର ୨୪ ଅଙ୍କ ବ୍ୟବହୃତ ହୋଇଅଛି । ପରିଶିଷ୍ଟରେ ପ୍ରଦତ୍ତ ଅଙ୍କ ଗଣନା ପ୍ରତି ଦୃଷ୍ଟିପାତ କଲେ ଜଣାପଡ଼େ ଯେ ୧୫୬୮ରୁ ହିଁ ସମଗ୍ର ପ୍ରଦେଶରେ ରାମଚନ୍ଦ୍ରଙ୍କ ଅଙ୍କ ଗଣନା ପ୍ରଚଳିତ ହୋଇଥିଲା । ତେଣୁ ୧୫୬୮ରୁ ୧୫୯୨ ପର୍ଯ୍ୟନ୍ତ ଅରାଜକତା ବିଷୟ ସମସାମୟିକ ଇତିହାସ ଦ୍ୱାରା ଅପ୍ରମାଣିତ ହେଉଅଛି । ପୁରୀ ମନ୍ଦିର ମଧ୍ୟରେ ରାମଚନ୍ଦ୍ର ଦେବଙ୍କୁ ଖଣ୍ଡ ପ୍ରସାଦ ଦେଇ ମାନସିଂହ ଓଡ଼ିଶାର ପରଂପରା ରକ୍ଷା କରିଥିଲେ ଏବଂ ଏହା ତାଙ୍କର ବିଚକ୍ଷଣ ଶାସନ କୌଶଳର ପରିଚୟସୂଚକ ।

ଏହି ତଥାକଥିତ ଅରାଜକତା କାଳରେ ଗଜପତି ରାମଚନ୍ଦ୍ର ଦେବ ନୀଳାଚଳରେ ଶ୍ରୀ ଜଗନ୍ନାଥ ମୂର୍ତ୍ତି ପୁନଃ ପ୍ରତିଷ୍ଠା କରି ସମଗ୍ର ହିନ୍ଦୁ ସମାଜର ଭକ୍ତି ଆଦର ଓ କୃତଜ୍ଞତା ଭାଜନ ହୋଇ ପାରିଥିଲେ । ତେଣୁ ଏହି କାର୍ଯ୍ୟର ସାଲଙ୍କି ତଦାନୀନ୍ତନ ବିଶିଷ୍ଟ ବ୍ୟକ୍ତିଗଣ ଗୌରବୋକ୍ତୋଳ 'ଅଭିନବ ଇନ୍ଦ୍ରଦ୍ୟୁମ୍ନ' ପଦବୀରେ ମଣ୍ଡିତ କରିଥିଲେ । ମାନସିଂହ ଖୋର୍ଦ୍ଧା ରାଜ୍ୟରେ ତାଙ୍କୁ ରାଜପଦ ଦେବା ଦୂରେ ଥାଉ, ତାଙ୍କର ଅଧିପତ୍ୟକୁ ମୋଗଲ ଦରବାର ଦ୍ୱାରା ସ୍ୱୀକୃତ କରାଇ ଓଡ଼ିଶାରେ ଚିରସ୍ମରଣୀୟ ହୋଇଥିଲେ ଏବଂ ତାଙ୍କର ରାଣୀ ଗୌରୀ ଦେବୀ ବର୍ତ୍ତମାନ ପୁରୀ ମନ୍ଦିର ମଧ୍ୟରେ ଥିବା ମୁକ୍ତିମଣ୍ଡପର ପୁନ-ର୍ନିର୍ମାଣ କରି ଅକ୍ଷୟ ଯଶଃ ଲାଭ କରିଥିଲେ ।

ତେଣୁ ଏ ସଂପର୍କରେ ସ୍ୱର୍ଗତ ଐତିହାସିକ ରମାପ୍ରସାଦ ଚନ୍ଦଙ୍କ ସୁଚିନ୍ତିତ ଓ ଯୁକ୍ତିଯୁକ୍ତ ମତ ଗ୍ରହଣୀୟ । ଯଥା—

"Kalāpāhara's expedition to the Puri district of Orissa was a mere raid. Soon after he turned his back, Rāma

Chandra Deva carved out a kingdom in Southern Orissa with Khurda as its capital." (45)

ଅର୍ଥାତ୍ 'କଳାପାହାଡ଼ଙ୍କ ପୁରୀ ଜଗନ୍ନାଥଙ୍କୁ ଅଭିଯାନ ଏକ ଅତର୍କିତ ଆକ୍ରମଣ ମାତ୍ର । ସେ ଏଠାରୁ ଫେରିବାର ଅଳ୍ପଦିନ ମଧ୍ୟରେ ରାମଚନ୍ଦ୍ର ଦେବ ଦକ୍ଷିଣ ଓଡ଼ିଶାରେ (ପ୍ରକୃତରେ ମଧ୍ୟ ଓଡ଼ିଶାରେ) ଖୁର୍ଦ୍ଧା ଦୁର୍ଗକୁ ରାଜଧାନୀ କରି ଏକ ରାଜ୍ୟ ପ୍ରତିଷ୍ଠା କରି ପାରିଥିଲେ ।"

## ଗଜପତି ରାମଚନ୍ଦ୍ରଙ୍କ ରାଜ୍ୟ :—

ଓଡ଼ିଶା ସାମ୍ରାଜ୍ୟର ପତନ ପରେ ଏହାର ଉପକୂଳ ଅଞ୍ଚଳ ତିନୋଟି ଶାସନର ଅଧୀନ ହେଲା । ଗୋଦାବରୀ ନଦୀ ଠାରୁ ଇଚ୍ଛାପୁର ପର୍ଯ୍ୟନ୍ତ ଗୋଲକୁଣ୍ଡା ସୁଲତାନ, ପୁରୀ ଜିଲ୍ଲାର କୋଠଦେଶ ଅଞ୍ଚଳ ସମେତ କାଠଯୋଡ଼ି ଠାରୁ ହୁଗୁଳି ନଦୀ ପର୍ଯ୍ୟନ୍ତ ବିସ୍ତୃତ ଭୂଖଣ୍ଡ ପ୍ରଥମେ ଆଫଗାନ ଓ ପରେ ମୋଗଲମାନଙ୍କ ଶାସନାଧୀନ ହେଲା । ଅବଶିଷ୍ଟ ଉପକୂଳବର୍ତ୍ତୀ ଅଞ୍ଚଳ ଖୁର୍ଦ୍ଧା ରାଜାଙ୍କ ଅଧିକାରଭୁକ୍ତ ହେଲା । ରାଜା ମାନସିଂହଙ୍କ ୯୯୦ ଅମଲି ବା ୧୫୯୩ ଖ୍ରୀଷ୍ଟାବ୍ଦରେ ବନ୍ଦୋବସ୍ତ ହାରା ମୋଗଲ ବାଦସାହଙ୍କୁ ପେସକସ ଦେବା ସର୍ତ୍ତରେ ଉପଭୋଗ କରୁଥିବା ଜମିଦାରୀ ଗୁଡ଼ିକର ଯେଉଁ ସୀମା ନିର୍ଦ୍ଦେଶ କରାଯାଇଥିଲା ତାହାର ଏକ ବିଶଦ ଓ ବିଶ୍ୱାସଯୋଗ୍ୟ ବିବରଣ ଓଡ଼ିଶା କମିଶନରଙ୍କ ସେକ୍ରେଟାରୀ ଷ୍ଟାର୍ଲିଙ୍ଗ ସାହେବ ୧୮୨୨ ଖ୍ରୀଷ୍ଟାବ୍ଦରେ କଟକରେ ଥିବା ପାର୍ସୀ କାଗଜ-ପତ୍ରରୁ ସଂଗ୍ରହ କରି ସ୍ୱଗ୍ରନ୍ଥରେ ଲିପିବଦ୍ଧ କରିଛନ୍ତି । ସେଥି ମଧ୍ୟରୁ ଖୁର୍ଦ୍ଧା ସଂପର୍କୀୟ ବିବରଣର ଅନୁବାଦ ନିମ୍ନରେ ପ୍ରଦାନ କରାଗଲା ।

ଖୁର୍ଦ୍ଧା ରାଜା ୩୫୦୦ ସୈନ୍ୟର 'ମନସବଦାର' ଥିଲେ ଅର୍ଥାତ୍ ୩୫୦୦ ସୈନ୍ୟ ରଖିବା ପାଇଁ ତାଙ୍କର ଅଧିକାର ଥିଲା । ତାଙ୍କ ପ୍ରତ୍ୟକ୍ଷ ଶାସନରେ ଖୋରଧା ରାଜ୍ୟ ମଧ୍ୟରେ ୭୧ଟି କିଲ୍ଲା ବା ଗଡ଼ ଥିଲା । ଏତଦ୍‌ବ୍ୟତୀତ ଖୁର୍ଦ୍ଧା ରାଜାଙ୍କ ଅଧୀନସ୍ଥ ୩୧ଟି ଜମିଦାରୀରେ ୧୨୯ଟି କିଲ୍ଲା ବା ଗଡ଼ ଥିଲା ।

ଖୁର୍ଦ୍ଧା ରାଜ୍ୟ ମଧ୍ୟରେ ଥିବା ୭୧ଟି କିଲ୍ଲା ବା ଗଡର ନାମ ହେଉଛି । ୧) ଖୁର୍ଦ୍ଧା, ୨) ରଥିପୁର, ୩) ବରଗଡ଼, ୪) ଶିଶୁପାଳଗଡ଼, ୫) ଖାରପଡ଼ା, ୬) କପିଳ ପ୍ରସାଦ, ୭) ପାହପଡ଼ା, ୮) ନେଳାପୁର ?, ୯) ଜାମୁକୋଳି,

(45) 'Muhammadan conquest of Orissa', J. B. O. R. S. Vol. XIII, P. 23.

୧୦) ଛାପଙ୍ଗ, ୧୧) ଚଚରମା ?, ୧୨) ମଲସିଂହ ?, ୧୩) ଗଙ୍ଗପଡ଼ା, ୧୪) ମଳପଡ଼ା, ୧୫) ଡୁମୁଡୁମା, ୧୬) ପଲ୍ଲୀ, ୧୭) ରାମେଶ୍ୱର, ୧୮) ମଣିବନ୍ଧ, ୧୯) ମାଣିକଗୋଡ଼ା, ୨୦) ମଙ୍ଗୋଇ ?, ୨୧) କୋରମଟି ?, ୨୨) କଳାମାଟିଆ, ୨୩) କନ୍ଦଳ ଗଡ଼ ?, ୨୪) ମଙ୍ଗଳାଯୋଡ଼, ୨୫) ଜଳପଡ଼ା, ୨୬) ବେଡ଼ଙ୍ଗ, ୨୭) କରମ୍ ?, ୨୮) ମଳପଡ଼ା, ୨୯) ନରସିଂହପ୍ରସାଦ, ୩୦) ବରନଗଡ଼ (କାଉଙ୍ଗ ଗଡ଼) ୩୧) କେଉଙ୍ଗ, ୩୨) ମୃତ୍ୟୁଞ୍ଜୟ ଗଡ଼, ୩୩) କାଇମାଟିଆ, ୩୪) ଲୁସୁନା, ୩୫) ବରଣ୍ଡା (ବରପଦା ?), ୩୬) ବଳଭଦ୍ର ପ୍ରସାଦ, ୩୭) ନଉପଲ୍ଲ, (ନୂଆପଲ୍ଲ), ୩୮) ଋଷ୍ୟଗିରି, ୩୯) ଚରକାଇ, ୪୦) ସେରଣଗଡ଼, ୪୧) ମାଟିଆ-ପଡ଼ା, ୪୨) ବଙ୍ଗରେ ? ୪୩) ଭଙ୍ଗରେ, ୪୫) କୋକଳ ୪୬) କଲକ ? ୪୭ ୫୩ କେମ୍ବାଇରେ ଆଠଟି ଜଳ. ୫୪) ଅନ୍ଧାରୁଆ-ଦାରୁଠେଙ୍ଗ, ୫୫) କଳା-ପଥର, ୫୬-୬୮) ତେରଟି ସୌର ଖଣ୍ଡାୟତ ଗଡ଼, ୬୯) ଲକ୍ଷ୍ମୀକୋଟ, ୭୦) କାଳପଦର, ୭୧) କୋଲଗଡ଼, ୭୨) ଗଙ୍ଗପଡ଼ା, ୭୩) ମୁକନ୍ଦର ।

ଏଥି ମଧ୍ୟରେ ମଳପଡ଼ା ନାମ ଦୁଇଥର ଉଲ୍ଲେଖ ଅଛି । ରାଜାଙ୍କ ଅଧୀନରେ ଥିବା ଷ୍ୱାନ୍ ସରଦାରମାନଙ୍କ ଦ୍ୱାରା ଶାସିତ ୩୦ (ପ୍ରକୃତରେ ୨୯ଟି) ଜମିଦାରୀରେ ୧୨୯ଟି କଲ୍ଲ ବା ଗଡ଼ ଥିଲା ।

* ୧) ବାଙ୍କୀ, * ୨) ଡମପଡ଼ା ୩) ଅଟିର, ୪) କାଳୁପଡ଼ା, * ୫) ବଡ଼ମ୍ବା, * ୬) ତିଗିରିଆ, * ୭) ନରସିଂହପୁର, * ୮) ଅନୁଗୁଳ, * ୯) ତାଳଚେର, * ୧୦) ମୁଦ୍ରେଶ୍ୱର, * ୧୧) ଢେଙ୍କାନାଳ, * ୧୨) ଆଠଗଡ଼ * ସରଣ୍ଡା (ଏହା ପରବର୍ତ୍ତୀ କାଳରେ ବାଙ୍କୀ ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା) ୧୪) ଅନ୍ଧାରି, ୧୫) ବଜ୍ରକୋଟ, ୧୬) ଅଚଳକୋଟ, * ୧୭) ନୟାଗଡ଼, * ୧୮) ଖଣ୍ଡିଆ ପଡ଼ା (ଖଣ୍ଡପଡ଼ା) * ୧୯) ରଣପୁର, * ୨୦) ଦଶପଲ୍ଲା * ୨୧) ବାଣପୁର, (ସୋରଣ, ବେଡ଼େର, (କୁହୁଡ଼) ବଳଦର ? (ବଙ୍କାଡ଼) ବାଣପୁର, ଘାଟକୁଦ ଓ ଛତ୍ରଗଡ଼ ଏହାର ଅନ୍ତର୍ଭୁକ୍ତ ଥିଲା) । † ୨୨) ଘୁମୁସର, † ୨୩) ଖଲକୋଟ, † ୨୦) କୋଦଳା ଆଠଗଡ଼ † ୨୫) ଚଗଟି (ଚିକଟି) † ୨୬) ମନ୍ଦର † ୨୭) ସେରଗଡ଼, † ୨୮) ପାଲୁର † ୨୯) ଟିକାଲି ରଘୁନାଥପୁର ।

---

* ତାରକା ଚିହ୍ନିତ ଜମିଦାରୀ ଗୁଡ଼ିକ ପରବର୍ତ୍ତୀ କାଳରେ ଗୋଟିଏ ଗୋଟିଏ ସ୍ୱତନ୍ତ୍ର କରଦ ରାଜ୍ୟରେ ପରିଣତ ହୋଇଥିଲା । † ଚିହ୍ନିତ ୨୨ରୁ ୨୯ ସଂଖ୍ୟକ ୮ଟି ଜମିଦାରୀ ୧୭୩୦ରେ ନିଜାମଙ୍କ ଅଧିକାରଭୁକ୍ତ ହୋଇଗଲା ଏବଂ ଅଧରରେ ମୁଦ୍ରିତ ଜମିଦାରୀ ଗୁଡ଼ିକ ଖୁରୁଧା ରାଜ୍ୟରେ ପରେ ସାମିଲ ହୋଇଯାଇଥିଲା ।

ଉପରୋକ୍ତ ତାଲିକା (୪୬) ଦେଖିଲେ ଜଣାଯାଏ ଯେ ୧୫୯୩ ରେ ମାନସିଂହଙ୍କ ବନ୍ଦୋବସ୍ତ ସମୟରେ ଗଞ୍ଜାମର ୮ଟି ଜମିଦାରୀ ରାମଚନ୍ଦ୍ର ଦେବ ଅଧିକାର କରି ପାରିଥିଲେ । ତେଣୁ ୧୭୯୦ରୁ ୧୭୯୩ ମଧ୍ୟରେ ଗୋଲକୁଣ୍ଡା ସୁଲତାନଙ୍କ ସହିତ କୌଣସି ସନ୍ଧି ଅନୁଯାୟୀ ସେ ଏ ସମସ୍ତ ଅଞ୍ଚଳର ଅଧିକାର ପାଇଥିଲେ । କିନ୍ତୁ ଉକ୍ତ ସନ୍ଧି ଏ ପର୍ଯ୍ୟନ୍ତ ଅଜ୍ଞାତ ରହିଛି ।

ଷ୍ଟାର୍ଲିଂ ସାହେବଙ୍କ ଦ୍ୱାରା ସଂଗୃହୀତ ଉପରୋକ୍ତ ବିବରଣୀରୁ ଜଣାଯାଏ ଯେ ଆଧୁନିକ ପୁରୀ ଜିଲ୍ଲାର କୋଠଦେଶ ବ୍ୟତୀତ ସମସ୍ତ ଅଞ୍ଚଳ, ଗଞ୍ଜାମ ଜିଲ୍ଲାର କେତେକାଂଶ, କଟକ ଜିଲ୍ଲାର ବାଙ୍କୀ ଓ ଆଠଗଡ଼ ସବଡ଼ିଭିଜନ ଓ ଢେଙ୍କାନାଳ ଜିଲ୍ଲାର ଅଧିକାଂଶ ରାମଚନ୍ଦ୍ର ଦେବଙ୍କ ଅଧିକାରଭୁକ୍ତ ଥିଲା । ଏହାର ଆନୁମାନିକ କ୍ଷେତ୍ରଫଳ ପ୍ରାୟ ଦଶ ହଜାର ବର୍ଗ ମାଇଲ ବା ବର୍ତ୍ତମାନ ଓଡ଼ିଶାର ଏକ ଷଷ୍ଠାଂଶ । ମାନସିଂହ ସମୁଦ୍ର କୂଳବର୍ତ୍ତୀ ଅଞ୍ଚଳ ଖୋଦ ମୋଗଲ ଶାସନାଧୀନରେ ରଖି ନିମ୍ନଲିଖିତ ପ୍ରତ୍ୟେକ ସ୍ଥାନରେ ଗୋଟିଏ ଲେଖାଏଁ ଥାନା ବସାଇଥିଲେ । ଯଥା— ପିପିଲି ନହର, କଟକ, ତଳମାଳ, ପାତେରା, ଯାଜପୁର, ଭଦ୍ରକ, ସୋର, ରେମୁଣା ବସ୍ତା, ଜଳେଶ୍ୱର, ଫତିଆବାଦ, ନାରଣଗଡ଼ ଓ ମେଦିନୀପୁର । ଏହି ବନ୍ଦୋବସ୍ତ ଫଳରେ ଉତ୍ତର ଓଡ଼ିଶା ଗଡ଼ଜାତ ଓ ମୋଗଲବନ୍ଦୀ ଏପରି ଦୁଇ ଭାଗରେ ବିଭକ୍ତ ହୋଇଗଲା । ରାମଚନ୍ଦ୍ର ନିଜର ବାହୁ ବଳରେ ଓଡ଼ିଶାର ଏକ ବିଶିଷ୍ଟ ଅଂଶ ସ୍ୱାଧିକାରଭୁକ୍ତ କରିପାରିଥିଲେ ।

## ଗଜପତି ରାମଚନ୍ଦ୍ର ଦେବଙ୍କ ଅକ୍ଷର କୀର୍ତ୍ତି :—

ଆମମାନଙ୍କ ଆର୍ଷ ବାକ୍ୟ ହେଉଛି "କୀର୍ତ୍ତିରକ୍ଷରମାଳମା ସ୍ଥିରା ଭବତି ଭୂତଳେ ।" ଅର୍ଥାତ୍ ମାନବ ନିର୍ମିତ ମନ୍ଦିର, ଗୋପୁର, ପ୍ରାସାଦ, ମଠ ଓ ଗ୍ରାମ ପ୍ରଭୃତି କୀର୍ତ୍ତି ଭଙ୍ଗୁର ଓ ନଶ୍ୱର । କିନ୍ତୁ ମାନବ ପ୍ରତିଭା ପ୍ରସୂତ ଅକ୍ଷର ମାଳମା କୀର୍ତ୍ତି ବା ଉତ୍କୃଷ୍ଟ ରଚନାବଳୀ ସ୍ଥିତି ବା ଅମର । ଏ ଦୃଷ୍ଟିରୁ ବିଚାର କଲେ ରାମଚନ୍ଦ୍ର ମଧ୍ୟ ସ୍ମରଣୀୟ । ତାଙ୍କ ଦ୍ୱାରା ବା ତାଙ୍କ ପୃଷ୍ଠପୋଷକତାରେ ରଚିତ କୃତିଗୁଡ଼ିକ ମଧ୍ୟରୁ 'ଦୁର୍ଗୋତ୍ସବ ଚନ୍ଦ୍ରିକା' ଓ 'ଶ୍ରୀକୃଷ୍ଣ ଭକ୍ତବାତ୍ସଲ୍ୟ ଚରିତ ନାଟକମ୍' ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇଛି ।

'ଦୁର୍ଗୋତ୍ସବ ଚନ୍ଦ୍ରିକା' ଶରତ୍କାଳୀନ ପାର୍ବଣ ବିଧି ବା ଦୁର୍ଗାପୂଜା ସମ୍ବନ୍ଧରେ ଏକ ପ୍ରାମାଣ୍ୟ ଗ୍ରନ୍ଥ ରୂପେ ସମଗ୍ର ଉତ୍କଳରେ ବିବେଚିତ ହୁଏ । ଏହା ରାମଚନ୍ଦ୍ର ଦେବଙ୍କ

---

(46) Stirling's Orissa Pp. 44-45

ଦ୍ୱାରା ପ୍ରଣୀତ ହୋଇଥିବା ଗ୍ରନ୍ଥର ମଙ୍ଗଳାଚରଣର ପରବର୍ତ୍ତୀ ଶ୍ଳୋକ ଓ ଗ୍ରନ୍ଥ ଶେଷରେ ଥିବା ଦୁଇଟି ଶ୍ଳୋକରୁ ଜଣାଯାଏ । (୪୨) ଏହି ଗ୍ରନ୍ଥ ସମଗ୍ର ଉତ୍କଳରେ ବିଶେଷ ପ୍ରସାର ଲାଭ କରିଥିବାରୁ ଏହାର ବହୁ ଶତ ପୋଥି ସର୍ବାଞ୍ଚଳରେ ଉପଲବ୍ଧ ହୁଏ । ମୟୂରଭଞ୍ଜ ଅଞ୍ଚଳରୁ ପ୍ରାପ୍ତ ଏକ ପୋଥିର ଶେଷ ଶ୍ଳୋକରୁ ଜଣାଯାଏ ଯେ, (ଏହା ପୂର୍ବେ ଉଦ୍ଧୃତ ହୋଇଛି) ଗଜପତି ପ୍ରତାପରୁଦ୍ର ଦେବଙ୍କ ରାଜଗୁରୁ କବିଡ଼ିଣ୍ଡିମ ଜୀବଦେବାଚାର୍ଯ୍ୟଙ୍କ ପୁତ୍ର ଷଡ୍‌ଦର୍ଶନରେ ପଣ୍ଡିତ ଶ୍ରୀବର୍ଦ୍ଧନ ମହାପାତ୍ର ରାମଚନ୍ଦ୍ର ଦେବଙ୍କ ଆଦେଶରେ ଉକ୍ତ ଗ୍ରନ୍ଥ ପ୍ରଣୟନ କରିଥିଲେ । ଉକ୍ତ ଗ୍ରନ୍ଥରେ ରାମଚନ୍ଦ୍ର ଦେବଙ୍କ 'ଅଭିନବ ଇନ୍ଦ୍ରଦ୍ୟୁମ୍ନ' ପଦବୀ ପରିଦୃଷ୍ଟ ହେଉ ନ ଥିବାରୁ ଏହା ୧୫୬୮ରୁ ୧୫୭୬ ଖ୍ରୀଷ୍ଟାବ୍ଦ ମଧ୍ୟରେ ରଚିତ ହୋଇଥିବା ଆପାତତଃ ସ୍ଥିର କରାଯାଇପାରେ ।

ତାଙ୍କ କୃତ 'ଶ୍ରୀକୃଷ୍ଣ ଭକ୍ତବାତ୍ସଲ୍ୟଚରିତମ୍' ନାମକ ନାଟକ (ନୃପତି ତିଳକେନ ଶ୍ରୀରାମଚନ୍ଦ୍ରଦେବେନ କୃତଂ ଶ୍ରୀକୃଷ୍ଣ ଭକ୍ତବାତ୍ସଲ୍ୟଚରିତ ମଭିନେତବ୍ୟମ) ନୀଳାଚଳ ଧାମରେ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ପୁନଃ ପ୍ରତିଷ୍ଠା ପରେ ଗୁଣ୍ଡିଚା ମହୋତ୍ସବ ସମୟରେ ଅଭିନୀତ ହୋଇଥିଲା । ଏଥିରେ ତାଙ୍କର 'ଅଭିନବ ଇନ୍ଦ୍ରଦ୍ୟୁମ୍ନ' ପଦବୀ ପରିଦୃଷ୍ଟ ହେଉଥିବାରୁ ଏହା ୧୫୭୬ରେ ରଚିତ ହୋଇଥିବାର ନିର୍ଦ୍ଧାରଣ କରାଯାଇପାରେ । ଏହି କ୍ଷୁଦ୍ର ଗ୍ରନ୍ଥଟି ଏପର୍ଯ୍ୟନ୍ତ ଅପ୍ରକାଶିତ । ଏହାର ଏକ ପାଣ୍ଡୁଲିପି ରାଜ୍ୟ ସଂଗ୍ରହାଳୟ ପୋଥିଭଣ୍ଡାରରେ ସଂରକ୍ଷିତ । ମହାପ୍ରଭୁ ଶ୍ରୀକୃଷ୍ଣ ଭକ୍ତ ପାଣ୍ଡବ ମାନଙ୍କ ପ୍ରତି ଦୟା ପ୍ରଦର୍ଶନ କରି କପରି ସେମାନଙ୍କୁ ଦୁର୍ବାସାଙ୍କ ଶାପ ଜନିତ ଧ୍ୱଂସ ମୁଖରୁ ରକ୍ଷା କରିଥିଲେ ତାହା ଏହି ନାଟକରେ ବର୍ଣ୍ଣିତ ହୋଇଅଛି ।

---

(୪୨) ଏହି ଗ୍ରନ୍ଥ ସ୍ୱର୍ଗତଃ ଗୋବିନ୍ଦ ରଥଙ୍କ ଦ୍ୱାରା ୧୯୦୪ ଖ୍ରୀଷ୍ଟାବ୍ଦରେ ଓଡ଼ିଆ ଅକ୍ଷରରେ ପ୍ରକାଶିତ ହୋଇଥିଲା । ଶ୍ଳୋକଦ୍ୱୟ ସେଥିରୁ ଉଦ୍ଧୃତ :—

'ସକଳାଗମସାରତତ୍ତ୍ୱବେତ୍ତା
ସକଳାବାନବ ସର୍ବତୋଽନବଦ୍ୟଃ
ତନୁତେ ଭୁବ ରାମଚନ୍ଦ୍ରଦେବ
ସ୍ତନଣାମ୍ଭୋରୁହଭକ୍ତିମନ୍ତ୍ରିକାୟୁଃ ।'

ଶେଷ ଶ୍ଳୋକ—"ଉଦଗ୍ରୀବଃ ସତତଂ ବିଭବସୁଲଙ୍ଘୌ ହ୍ରସ୍ୱାନ୍ ଭୃଶଂଲୀପ୍ସତେ
ନତ୍ୟଂ ବାରିଧିବାରିବଦ୍ୟୁତ ଜଗତ୍ ଖ୍ୟାତୈକସୋତ୍ତୈକମ୍ଖତେ ।
ଶ୍ରୀରାମ କ୍ଷିତିପ ପ୍ରତାପ ମହସି ପ୍ରତ୍ୟର୍ଥି ସୀମନ୍ତନୀ
ନଶ୍ୱାସୈର୍ବିସରଲ୍ଭିନ୍ନ'ହିଜଗତି ସପ୍ୟନ୍ତ ତେଜାଂସ୍ୟହି ।"

## ରାମଚନ୍ଦ୍ରଙ୍କ ସମୟର ଅନ୍ୟାନ୍ୟ ସଂସ୍କୃତ କବି ଓ ପଣ୍ଡିତ –

**କବି ଚିନ୍ତାମଣି ମିଶ୍ର**– ଚିନ୍ତାମଣି ମିଶ୍ର ସେ ଯୁଗର ଜଣେ ପ୍ରସିଦ୍ଧ ପଣ୍ଡିତ ଥିଲେ । ସେ ପ୍ରଥମେ ଚକ୍ରପ୍ରତାପ ବା ଚକ୍ରେଶଙ୍କ ସଭା ପଣ୍ଡିତ ଥିଲେ ଏବଂ ତାଙ୍କ ଆଦେଶରେ 'ହିଣିଗ୍ୱବଧ ବ୍ୟାଯୋଗ' ନାମକ ନାଟକ ରଚନା କରି ଅଭିନୀତ କରାଇଥିଲେ । ସେ ୪୬୭୫ କଳି ଯୁଗାବ୍ଦ ବା ୧୫୭୪ ଖ୍ରୀଷ୍ଟାବ୍ଦରେ ରାମଚନ୍ଦ୍ର ଦେବଙ୍କ ରାଜତ୍ୱ କାଳରେ 'ବାଗ୍ଭୂଷଣ ବିବେକ' ନାମକ ଅଳଙ୍କାର ଗ୍ରନ୍ଥ ରଚନା କରିଥିଲେ । ଏତଦ୍‌ବ୍ୟତୀତ 'କାଦମ୍ବରୀ ସାର' ଓ 'ସମ୍ବରଣଚରିତ' ପ୍ରଭୃତି ତାଙ୍କ ଦ୍ୱାରା ରଚିତ ହୋଇଥିଲା । (୪୮)

**କବିଚନ୍ଦ୍ର ବିଶ୍ୱନାଥ ସାମନ୍ତରାୟ** :—କବିଚନ୍ଦ୍ରଙ୍କ ବଂଶ ପରିଚୟ ଓ କୃତିତ୍ୱର ବିବରଣ ତାଙ୍କ ସୁଯୋଗ୍ୟ ବଂଶଧର କବିଭୂଷଣ ଗୋବିନ୍ଦ ସାମନ୍ତରାୟଙ୍କୃତ 'ସ୍ମୃତିସର୍ବସ୍ୱମ୍' (୪୯) ଗ୍ରନ୍ଥ ଉତ୍ତରାର୍ଦ୍ଧର ଶେଷ ଅଧ୍ୟାୟରେ ପରିଦୃଷ୍ଟ ହୁଏ । ସେଥିରୁ ଜଣାଯାଏ ଯେ କବିଚନ୍ଦ୍ର ଭରଦ୍ୱାଜ ଗୋତ୍ରୀୟ ପଣ୍ଡିତ ଦୁର୍ଗା ଦାସଙ୍କ ପୁତ୍ର ଥିଲେ । ଦୁର୍ଗା ଦାସ ସ୍ୱନାମାନୁସାରେ ଦୁର୍ଗାଦାସପୁର ନାମକ ଏକ ବ୍ରାହ୍ମଣ ଶାସନ ପ୍ରତିଷ୍ଠା କରିଥିଲେ । ବିଶ୍ୱନାଥ ସ୍ୱୀୟ ପାଣ୍ଡିତ୍ୟ ଯୋଗୁଁ କବିଚନ୍ଦ୍ର ପଦବୀ ପ୍ରାପ୍ତ ହୋଇଥିଲେ । ରାଜା ମାନସିଂହ କବିଚନ୍ଦ୍ରଙ୍କ କୃତିତ୍ୱ ଓ ପାଣ୍ଡିତ୍ୟରେ ମୁଗ୍ଧ ହୋଇ ତାଙ୍କୁ ସମ୍ମାନ ପ୍ରଦର୍ଶନ ନିମିତ୍ତ ନିଜ ସାଙ୍ଗରେ ଆକବରଙ୍କ ଦରବାରକୁ ନେଇ ଯାଇଥିଲେ । ସେ ସଂପର୍କରେ କେତେକ ଶ୍ଳୋକ ନିମ୍ନରେ ଉଦ୍ଧାର କରାଗଲା ।

"ଯାନେ ପ୍ରବିଷ୍ଟଂ ନୃପ ମାନସିଂହଂ
ପାଣ୍ଡିତ୍ୟଭୂପୈଃ ସହ ବର୍ତ୍ତମାନଂ
ଅତୋଷୟତ୍ କାବ୍ୟରସୋପହାରୈ-
ର୍ଦିଲ୍ଲୀ ଶତ୍ରୁକ୍ଷିତ୍ୟକ୍ଷୁଲକନ୍ୟାକୈଃ । ୯ ।

---

(48) Proceedings of the twelfth A. I. Oriental Conference, 1946, P. 228ରେ ପ୍ରକାଶିତ ଡକ୍ଟର ଶ୍ରୀ କରୁଣାକର କରଙ୍କ ପ୍ରବନ୍ଧ ଦ୍ରଷ୍ଟବ୍ୟ ।

(୪୯) ଏହି ଗ୍ରନ୍ଥର ପ୍ରଥମାର୍ଦ୍ଧ କଲିକତା ଏସିଆଟିକ ସୋସାଇଟି ଦ୍ୱାରା ପ୍ରକାଶିତ । ଏହାର ଉତ୍ତରାର୍ଦ୍ଧ ଏପର୍ଯ୍ୟନ୍ତ ଅପ୍ରକାଶିତ । ଏହାର ଏକ ପୋଥି ମିତ୍ରକପୁରରେ ସଂରକ୍ଷିତ ।

ମାଲ୍ୟା ସହାମୁଂ ସ ନୃପଃ ସ୍ୱଦେଶଂ
ସମ୍ମେଳଯ୍ୟାମାସ ଚ ପଣ୍ଡିତାଦ୍ୟା
ପ୍ରାଜ୍ଞୈଃକବୀନ୍ଦ୍ରୈଃ ପରିପୂଜିତୋଽସୌ
କାଳଂ କଥଞ୍ଚିଂ ଚ ନିନାୟ ତତ୍ର । ୧୦
ତତୋ ଧନୈ ର୍ଭୂମିବିଭୂଷଣାଦ୍ୟୈଃ
ସୁସତ୍କୃତୋ ହାସ୍ତିନ ପାତ୍ତ ଶାହା
ସ୍ୱଦେଶ ମାଗାତ୍ ପ୍ରଥିତଃ ପ୍ରତିଷ୍ଠ
ସ୍ତି ଷ୍ଠନ୍ତି ଯତ୍ର ସ୍ୱଜନା ସ୍ତୁ ସର୍ବେ । ୧୧

× × ×

"ପ୍ରତାପପୂର୍ବ ନୃପ ରାମଚନ୍ଦ୍ର—
ପୁରଂ ପୁରା ଶାସନ ମଧ୍ୟବାସ ।
ସମ୍ବନ୍ଧିଭିଃ ସ୍ୱୀୟ ନିବାସି ବର୍ଗୈଃ
ସୁସତ୍କୃତୋଽସୌ କବିଚନ୍ଦ୍ର ନାମା ।"

ଉକ୍ତ ଶ୍ଳୋକ ଚତୁଷ୍ଟୟରୁ ଜଣାଯାଏ ଯେ, ପାଶ୍ଚାତ୍ୟ ନୃପମାନଙ୍କ ସହ ଓଡ଼ିଶାକୁ ଆସିଥିବା ରାଜା ମାନସିଂହଙ୍କୁ କବିଚନ୍ଦ୍ର 'ରତ୍ନହାର' ନାମକ ରସମୟ କାବ୍ୟ ଉପହାର ପ୍ରଦାନ କରି ସନ୍ତୁଷ୍ଟ କରିଥିଲେ । ମାନସିଂହ ତାଙ୍କ କବିତ୍ୱ ଓ ପାଣ୍ଡିତ୍ୟରେ ମୁଗ୍ଧ ହୋଇ ତାଙ୍କୁ ନିଜ ସହିତ ନେଇ 'ହାସ୍ତିନ ପାତ୍ତଶାହା' ବା ଦିଲ୍ଲୀ (ହସ୍ତିନାପୁର) ବାଦସାହଙ୍କ ସହିତ ପରିଚିତ କରାଇଥିଲେ । କବିଚନ୍ଦ୍ର ଦିଲ୍ଲୀ ବାଦସାହ (ଆକବର)ଙ୍କ ଦରବାରରେ ବହୁ ପ୍ରାଜ୍ଞ ଓ କବୀନ୍ଦ୍ରଙ୍କ ସହିତ ପରିଚିତ ହୋଇ କିଛିକାଳ ସେଠାରେ କଟାଇଥିଲେ । ଆକବର କବିଚନ୍ଦ୍ରଙ୍କ ପାଣ୍ଡିତ୍ୟରେ ମୁଗ୍ଧ ହୋଇ ବହୁ ଧନରତ୍ନ ବିଭୂଷଣ ଓ ଭୂମିଦାନ ଦ୍ୱାରା ତାଙ୍କୁ ଯଥୋଚିତ ସମ୍ମାନ ପ୍ରଦର୍ଶନ କରିଥିଲେ । ଦିଲ୍ଲୀ ଦରବାରରେ ଖ୍ୟାତି ଓ ପ୍ରତିଷ୍ଠା ପ୍ରାପ୍ତ (ପ୍ରଥିତ ପ୍ରତିଷ୍ଠ) କବିଚନ୍ଦ୍ର ସ୍ୱଦେଶକୁ ଫେରି ଆସି 'ପ୍ରତାପରାମଚନ୍ଦ୍ରପୁର' ଶାସନରେ ବାସ କରିଥିଲେ । ସେଠାରେ ତାଙ୍କ ବନ୍ଧୁବାନ୍ଧବମାନେ ତାଙ୍କୁ ଯଥୋଚିତ ସତ୍କାର କରିଥିଲେ । ଶେଷ କାଳ ସୁଖଶାନ୍ତିରେ ଯାପନ କରି ସେ ରୋଗାକ୍ରାନ୍ତ ହୋଇ ପ୍ରାଣ ବିସର୍ଜନ କରିଥିଲେ । ତାଙ୍କର ବିଧବା ଦ୍ୱିତୀୟା ଭାର୍ଯ୍ୟା ଉପନୀତ ମାତ୍ର ପୁତ୍ରଦ୍ୱୟଙ୍କୁ ତ୍ୟାଗ କରି ସ୍ୱାମୀଙ୍କ ଚିତାରୋହଣ ପୂର୍ବକ ଜୀବନ ବିସର୍ଜନ କରିଥିଲେ । ରାଜାଙ୍କ ଅମାତ୍ୟ ଦାସ ବିଦ୍ୟାଧର ପିତୃମାତୃହୀନ ଉପନୀତମାତ୍ର ବାଳକ ଦ୍ୱୟଙ୍କୁ ଆଶ୍ରୟ ପ୍ରଦାନ କରିଥିଲେ ।

କବିଚନ୍ଦ୍ର ବିଶ୍ୱନାଥ ୧୫୯୪ ଖ୍ରୀଷ୍ଟାବ୍ଦରେ ଦିଲ୍ଲୀ ଦରବାରରେ ପହଞ୍ଚି ଥିଲେ । (୫୦) ୧୫୯୭ରେ ପ୍ରଣୀତ 'ଆଇନ-ଆଇ-ଆକବରୀ' ନାମକ ପ୍ରସିଦ୍ଧ ଇତିହାସ ଗ୍ରନ୍ଥରେ ପ୍ରଦତ୍ତ ହିନ୍ଦୁ ପଣ୍ଡିତମାନଙ୍କ ତାଲିକାରେ ବିଶ୍ୱନାଥଙ୍କ ନାମ ମିଳେ । (୫୧) ରାମଚନ୍ଦ୍ର ଦେବଙ୍କ ଆନୁକୂଲ୍ୟରେ ଓ ରାଜା ମାନସିଂହଙ୍କ ସହାଯ୍ୟତାରେ ପ୍ରସିଦ୍ଧ ଉତ୍କଳୀୟ ପଣ୍ଡିତ କବିଚନ୍ଦ୍ର ବିଶ୍ୱନାଥ ଆକବରଙ୍କ ଦରବାରରେ ଯଥୋଚିତ ଆଦର ଓ ସମ୍ମାନ ଲାଭ କରିବା ପାଇଁ ସମର୍ଥ ହୋଇଥିଲେ ।

**ଓଡ଼ିଆ ସାହିତ୍ୟ ଚର୍ଚ୍ଚା—**

ତାଙ୍କ ରାଜତ୍ୱ କାଳରେ ଓଡ଼ିଆ ସାହିତ୍ୟର ମଧ୍ୟ ଉନ୍ନତି ସାଧିତ ହୋଇଥିଲା । ସେ ଯୁଗର କବିମାନଙ୍କ ମଧ୍ୟରେ କବି ବୃନ୍ଦ ଦାସ ଓ ପଣ୍ଡିତ ବିଷ୍ଣୁ ଦାସଙ୍କ ନାମ ନିର୍ଦ୍ଦିଷ୍ଟ ଭାବରେ ଜଣାଯାଏ । ବୃନ୍ଦ ଦାସଙ୍କ ଦ୍ୱାରା ରଚିତ କୃଷ୍ଣଲୀଳା ବିଷୟକ 'ଗୋପୀ ଚନ୍ଦନ' କାବ୍ୟ ଅଳ୍ପ କେତେ ଦିନ ପୂର୍ବେ ପଣ୍ଡିତ ଶ୍ରୀ ନୀଳମଣି ମିଶ୍ରଙ୍କ ଦ୍ୱାରା ସଂପାଦିତ ହୋଇ 'ଓଡ଼ିଶା ସାହିତ୍ୟ ଏକାଡେମୀ' ଦ୍ୱାରା ପ୍ରକାଶିତ ହୋଇଅଛି । ସେ କିଛି କାଳ ରାମଚନ୍ଦ୍ର ଦେବଙ୍କ ସଭାମଣ୍ଡନ କରିଥିବା ତାଙ୍କ ଦ୍ୱାରା ରଚିତ ସଂଗୀତରୁ ଜଣାଯାଏ । (୫୨)

ପଣ୍ଡିତ ବିଷ୍ଣୁ ଦାସ ପ୍ରଥମେ ରଣପୁର ରାଜା ପ୍ରସିଦ୍ଧ ପଦ୍ମନାଭ ନରେନ୍ଦ୍ରଙ୍କ ପୁତ୍ର ପାର୍ଥ ଶ୍ରୀଚନ୍ଦନ ଏବଂ ପରେ ବାଣପୁର ରାଜ ରଘୁନାଥ ରାଜ ହରିଚନ୍ଦନଙ୍କ ସଭା ମଣ୍ଡନ କରିଥିଲେ । ସେ ଷୋଡ଼ଶ ଶତାବ୍ଦୀର ଶେଷ ଭାଗରେ ଆବିର୍ଭୂତ ହୋଇ ସପ୍ତଦଶଶତାବ୍ଦୀର ପ୍ରଥମ ପାଦରେ ବିଶେଷ ଖ୍ୟାତି ଲାଭ କରିଥିଲେ । ସେ ନିରବଚ୍ଛିନ୍ନ ଭାବରେ ବାଣୀ ସାଧନାରେ ନିରତ ରହି ବହୁ ଚଉତିଶା ଓ କାବ୍ୟ ରଚନା ଦ୍ୱାରା ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ପୂର୍ଣ୍ଣ କରିଥିବା 'ଲୀଳାବତୀ' କାବ୍ୟ ପାଠରୁ ଜଣାଯାଏ । ଯଥା—

> 'ବିଷ୍ଣୁ ଦାସ ନାମରେ ଏକ କବି
> ସେହୁ ଗୀତେ ପୂରାଇଲା ପୃଥିବୀ ।'

କିନ୍ତୁ ଏପର୍ଯ୍ୟନ୍ତ ତାଙ୍କ ଦ୍ୱାରା ରଚିତ 'ସାବିତ୍ରୀ ଚରିତ', 'ପ୍ରେମଲୋଚନା', 'କଳାବତୀ' ଓ ଲୀଳାବତୀ' ନାମକ ଚାରୋଟି କାବ୍ୟ ଓ ପ୍ରାୟ ଦଶଟି ଚଉତିଶା

---

(୫୦) ଏହାଙ୍କ ସମ୍ବନ୍ଧରେ ବିସ୍ତୃତ ବିବରଣ ମୋର 'Two little known Sanskrit poets of Orissa' ପ୍ରବନ୍ଧରେ ପ୍ରକାଶିତ ହୋଇଛି । O. H R. J. Vol. I pp 52-56.

(51) Ain-i Akbari, Vol. I, p 661.

(୫୨) ପ୍ରାଚୀନ ଗଦ୍ୟ ପଦ୍ୟାଦର୍ଶ ପୃ ୧୧୭-୧୧୯

ଆବଷ୍କୃତ ହୋଇଅଛୁ । ଉକ୍ତ ଗ୍ରେଟି କାବ୍ୟ ମଧ୍ୟରୁ 'ପ୍ରେମଲୋଚନା' ଓ 'କଳାକଣ୍ଠ' ଓଡ଼ିଶା ରାଜ୍ୟ ମିଉଜିୟମ କର୍ମକର୍ତ୍ତାଙ୍କ ଦ୍ୱାରା ମୁଦ୍ରିତ ଓ ପ୍ରକାଶିତ ହୋଇଅଛି । ପଣ୍ଡିତ ବିଷ୍ଣୁଦାସ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଏକ ନୂତନ ରଚନା ଶୈଳୀର ପ୍ରବର୍ତ୍ତକ ରୂପେ ବିବେଚିତ ହୁଅନ୍ତି । ତାଙ୍କ ରଚନାରେ ପରବର୍ତ୍ତୀ କାବ୍ୟ-ଯୁଗ-ସୁଲଭ ଶବ୍ଦ-ବୈଭବ, ଅଳଙ୍କାରପ୍ରିୟତା, ଆଦିରସାତ୍ମକ ବର୍ଣ୍ଣନା ବାହୁଲ୍ୟ ପରିଦୃଷ୍ଟ ହୁଏ । (୫୩)

## ରାମଚନ୍ଦ୍ରଙ୍କ ସମୟର ବିଶିଷ୍ଟ ବ୍ୟକ୍ତିବୃନ୍ଦ—

ତାଙ୍କ ସମୟର ବିଶିଷ୍ଟ ବ୍ୟକ୍ତିବୃନ୍ଦଙ୍କ ମଧ୍ୟରେ ମନ୍ତ୍ରୀ ଦାସ ବିଦ୍ୟାଧରଙ୍କ ନାମ ପ୍ରଥମେ ଉଲ୍ଲେଖଯୋଗ୍ୟ । ସେ ପ୍ରସିଦ୍ଧ ବିଦ୍ୟାଧର ବଂଶସମ୍ଭୂତ ଥିଲେ । 'ମାଦଳାପାଞ୍ଜି' ଅନୁସାରେ ସେ ମାନସିଂହଙ୍କ ପ୍ରୀତିଭାଜନ ହୋଇଥିଲେ । 'ପୁରୁଷ-ସର୍ବସ୍ୱମ୍' ଗ୍ରନ୍ଥରୁ ତାଙ୍କ ସମ୍ବନ୍ଧରେ କେତେକ ବିବରଣ ମିଳେ । ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଦାସବିଦ୍ୟାଧରପୁର ଶାସନ ଅଦ୍ୟାପି ବିଦ୍ୟମାନ । ଚକ୍ର ବା ଚକ୍ରଧର ବିଦ୍ୟାଧର ବୋଧହୁଏ ତାଙ୍କର ଭାଇ ବିରାଦର ଥିଲେ । ଯେ ସମ୍ଭୁ ଚକ୍ରଧରପୁର ଶାସନ ପ୍ରତିଷ୍ଠା କରିଥିଲେ । ମାଦଳାପାଞ୍ଜିରେ ବର୍ଣ୍ଣିତ ରାମଚନ୍ଦ୍ର ଭଞ୍ଜ, ଗୋବର୍ଦ୍ଧନ ପ୍ରହରାଜ, ମିଶ୍ର ଗୋସାଇଁ—ଏ ତିନି ଲୋକଙ୍କ ସମ୍ବନ୍ଧରେ ଅନ୍ୟ କୌଣସି ସୂତ୍ରରୁ ଏ ପର୍ଯ୍ୟନ୍ତ ଜଣାଯାଇ ନାହିଁ । ପରୀକ୍ଷା ବଡ଼ଜେନା ମହାପାତ୍ର ମୁକୁନ୍ଦ ପଟ୍ଟନାୟକ ଜଗନ୍ନାଥ ମହାପ୍ରଭୁଙ୍କ ପାଇଁ ନାନାବିଧ ପ୍ରମାଣେ କୋଠ ଭୋଗ ଭିଆଣ କରିଥିଲେ । ତାଙ୍କ ପୁଅ ଦାମୋଦର ଚମ୍ପତିରାୟ କଳାପାହାଡ଼ ଭାଙ୍ଗି ପକାଇଥିବା ନୀଳଚକ୍ରକୁ ପୁନର୍ବାର ସୁଦୃଢ଼ ଓ ସିଧା ଭାବରେ ବସାଇଥିଲେ । ଏ ଦୁହିଁଙ୍କ ସମ୍ବନ୍ଧରେ ମଧ୍ୟ ବିଶେଷ ତଥ୍ୟ ମିଳୁନାହିଁ ।

## ଗଜପତି ରାମଚନ୍ଦ୍ର ଦେବଙ୍କ ଅଙ୍କ ଗଣନା :—

ମୁକୁନ୍ଦ ଦେବଙ୍କ ମୃତ୍ୟୁ ସମୟ ସମ୍ବନ୍ଧରେ ଏ ପର୍ଯ୍ୟନ୍ତ ପ୍ରତ୍ୟକ୍ଷ ପ୍ରମାଣ ମିଳୁନାହିଁ । କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ ପ୍ରଣୀତ ଭାରତ ଇତିହାସରୁ ଜଣାଯାଏ ଯେ, ଆକବର ବାଦସାହ ୨୩-୧୦-୧୫୬୭ ଠାରୁ ୨୩-୨-୧୫୬୮ ପର୍ଯ୍ୟନ୍ତ କଟକ ଚିତୋର ଯୁଦ୍ଧର ପରିଚାଳନା ଭାର ଗ୍ରହଣ କରିଥିଲେ । (୫୪) ଆକବର ଚିତୋର

---

(୫୩) କବି ବିଷ୍ଣୁଦାସଙ୍କ ସମ୍ବନ୍ଧରେ ଅଧିକ ବିବରଣ ଜାଣିବା ପାଇଁ ମୋ ଦ୍ୱାରା ସମ୍ପାଦିତ 'କଳାକଣ୍ଠ' ଓ 'ପ୍ରେମଲୋଚନା' କାବ୍ୟ ଦ୍ୱୟର ମୁଖବନ୍ଧ ଦ୍ରଷ୍ଟବ୍ୟ ।

(54) Cambridge History of India, Vol. IV, pp 93-99.

ଆକ୍ରମଣରେ ବ୍ୟସ୍ତ ରହିଥିବା ସମୟରେ ବଙ୍ଗ ସୁଲତାନ ସୁଲେମାନ ତାଙ୍କ ପୁଅ ବୟାଜିଦଙ୍କୁ ଓଡ଼ିଶା ଆକ୍ରମଣ କରିବା ପାଇଁ ପଠାଇଥିଲେ । "In the winter of 1567-68, while Akbar was engaged far away in the siege of Chitor, Sulaimān sent an expedition to Orissa under his son Bayazid". (55)

ଚକଡ଼ା ପୋଥି ଅନୁସାରେ ତେଲେଙ୍ଗା ମୁକୁନ୍ଦ ଦେବଙ୍କ ୧୧ ଅଙ୍କ ବସ୍ଥ ମାସରେ ଓଡ଼ିଶା ରାଜ୍ୟ ଭୁଡ଼୍କାଣ ହେଲା । (୫୬) ତାଙ୍କ ୧୧ ଅଙ୍କ ୧୬-୮-୧୫୬୭ରୁ ୩-୯-୧୫୬୮ ପର୍ଯ୍ୟନ୍ତ ଚାଲିଥିଲା ଏବଂ ୧୫୬୭ ନଭେମ୍ବର ମାସ ଗୋଟିକ ଯାକ ବସ୍ଥ ମାସରେ ପଡ଼ିଥିଲା । ସେ ସମୟରେ ମୁକୁନ୍ଦଦେବ ଗଙ୍ଗା କୂଳରେ ଥିଲେ । ଏହାର କେତେ ଦିନ ପରେ ସେ ଓଡ଼ିଶାକୁ ଫେରି ଆସି ମୃତ୍ୟୁ ମୁଖରେ ପଡ଼ିଥିଲେ । ତେଣୁ ୧୫୬୮ ଖ୍ରୀଷ୍ଟାବ୍ଦର ପ୍ରଥମ ଭାଗରେ ମୁକୁନ୍ଦ ଦେବଙ୍କ ମୃତ୍ୟୁ ଘଟିବାରୁ ୩-୯-୧୫୬୮ ତାରିଖରେ ପଡ଼ିଥିବା ସୁନିଆ ପୂର୍ବରୁ ଗଜପତି ରାମଚନ୍ଦ୍ର ଦେବଙ୍କ ଦୁଇଅଙ୍କ ଚାଲିଥିବା ସ୍ଥିର କରାଯାଇପାରେ । ତାଙ୍କର ଶେଷ ଅଙ୍କ ସମ୍ବନ୍ଧରେ ନିର୍ଦ୍ଦିଷ୍ଟ ତଥ୍ୟ ମିଳେ ନାହିଁ । ମାଦଳାପାଞ୍ଜି ଅନୁସାରେ ସେ ୩୮ ଅଙ୍କରେ ଆବାହନ ହୋଇଥିଲେ ଏବଂ ସମୁଦାୟ ୩୨ ବର୍ଷ ରାଜତ୍ୱ ଭୋଗ କଲେ । ଘନକୃଷ୍ଣ ଦାସଙ୍କ 'ରସବିନୋଦ'ରେ ସେ ଅଣଚାଳିଶ ଅଙ୍କ ଭୋଗ କରିଥିବା ଲେଖାଅଛି । ମିତ୍ରଜୟମରେ ସଂରକ୍ଷିତ 'ଶ୍ରାଦ୍ଧଦୀପ' ଗ୍ରନ୍ଥ ଶେଷରେ ଥିବା ଉଦ୍ଧୃତ ଶ୍ଳୋକରେ ସେ ୪୦ ବର୍ଷ ରାଜତ୍ୱ କରିଥିବାର ଲେଖାଅଛି । ଯଥା—

"ଶ୍ରୀରାମ ଦ୍ୱିବ୍ର ବଂଶାନ୍ ସୁତପୁରୁଷବର ସପ୍ତବଂଶାନ୍ ନୃସିଂହୋ
ଦ୍ୱାବିଂଶାନ୍ ଶ୍ରୀବଳାଖ୍ୟ ବଧୂଧରଣୀମିତାନ୍ ରାମବଦ୍ରଶ୍ରୀମୁକୁନ୍ଦଃ ।
ବେଦାଗ୍ନିନ୍ ବର୍ଯ୍ୟସିଂହୋ ଗଜପତିଷୁ ହରେକୃଷ୍ଣନାମ ନଗାଙ୍କାନ୍
ଗୋପୀନାଥ ଦଶାଙ୍କାନ୍ କୃତମନୁମିତାନ୍ ରାଜତେ ରାମଚନ୍ଦ୍ରଃ ।"

କେବଳ ମେଦନୀପୁର ଜିଲ୍ଲା କେସିଆଡ଼ିସ୍ଥ ସର୍ବମଙ୍ଗଳା ମନ୍ଦିର ଲିପିରେ ୧୫୨୬ ଶକାବ୍ଦରେ ୪୭ ଅଙ୍କ ପାଠ ଏ ସମସ୍ୟା ସମାଧାନରେ ପ୍ରଧାନ ପ୍ରତିବନ୍ଧକ ହେଉଛି । ଏଠାରେ ଲିପିକାରର ଅଜ୍ଞତା ବା ପାଠରେ ଭ୍ରମ ଥାଇପାରେ । (୫୭) ତାଙ୍କ ପୁତ୍ର

---

(55) History of Bengal ( Dacca University publication ) Vol. II, P. 83.

(୫୬) ଚକଡ଼ା ପୋଥି, ପୃ ୪

(57) Proceedings of the I.H.R. Commission, Vol. XXII, p. 89.

ପୁରୁଷୋତ୍ତମ ଦେବ ୨୭ ଅଙ୍କ ପର୍ଯ୍ୟନ୍ତ ରାଜତ୍ୱ କରିଥିବା ଏ ଦେଶର ଶାସନ ପାଞ୍ଜି'ରୁ ମିଳେ । ତାଙ୍କର ମୃତ୍ୟୁ ୧୬୨୨ ଖ୍ରୀଷ୍ଟାବ୍ଦରେ ହୋଇଥିବା ନିଶ୍ଚିତ ଭାବରେ ଜଣାଯାଏ । ତେଣୁ ପୁରୁଷୋତ୍ତମ ଦେବଙ୍କ ରାଜତ୍ୱ କାଳ ୨୨ ବର୍ଷ ହୋଇଥିବାରୁ ସେ ୧୬୦୦ ଖ୍ରୀଷ୍ଟାବ୍ଦରେ ସିଂହାସନ ଆରୋହଣ କରିଥିଲେ ଏବଂ ଉକ୍ତ ବର୍ଷ ରାମଚନ୍ଦ୍ର ଦେବଙ୍କ ମୃତ୍ୟୁ ଘଟିଥିବା ସ୍ଥିର କରାଯାଇପାରେ । ଏ ସମସ୍ତ ପ୍ରମାଣ ବଳରେ ଗଜପତି ରାମଚନ୍ଦ୍ର ଦେବଙ୍କ ଅଙ୍କ ଗଣନା ନିମ୍ନଲିଖିତ ମତେ କରା ଯାଉଅଛି ।

| ସୁନିଆର ତାରିଖ | | ରାଜତ୍ୱର ଅଙ୍କ | |
|---|---|---|---|
| ୩-୯-୧୫୬୮ | ସୁନିଆ ଦିନଠାରୁ | ୩ ଅଙ୍କ | |
| ୨୩-୮-୧୫୬୯ | ,, | ୪ ,, | |
| ୧୧-୯-୧୫୭୦ | ,, | ୫ ,, | |
| ୧-୯-୧୫୭୧ | ,, | ୬ ,, | |
| ୨୦-୮-୧୫୭୨ | ,, | ୮ ,, | |
| ୮-୯-୧୫୭୩ | ,, | ୯ ,, | |
| ୨୯-୮-୧୫୭୪ | ,, | ୧୦ ,, | |
| ୧୮-୮-୧୫୭୫ | ,, | ୧୧ ,, | |
| ୪-୯-୧୫୭୬ | ,, | ୧୨ ,, | |
| ୨୫-୮-୧୫୭୭ | ,, | ୧୩ ,, | |
| ୧୪-୮-୧୫୭୮ | ,, | ୧୪ ,, | |
| ୨-୯-୧୫୭୯ | ,, | ୧୫ ,, | |
| ୨୨-୮-୧୫୮୦ | ,, | ୧୭ ,, | |
| ୧୦-୯-୧୫୮୧ | ,, | ୧୮ ,, | |
| ୩୦-୮-୧୫୮୨ | ,, | ୧୯ ,, | |
| ୨୦-୮-୧୫୮୩ | ,, | ୨୧ ,, | |
| ୬-୯-୧୫୮୪ | ,, | ୨୨ ,, | |
| ୨୭-୮-୧୫୮୫ | ,, | ୨୩ ,, | |
| ୧୪-୮-୧୫୮୬ | ,, | ୨୪ ,, | ଡାଳପଡା ମିଉଡିପୁର ଶିଳାଲିପି |
| ୩-୯-୧୫୮୭ | ,, | ୨୫ ,, | |
| ୨୩-୮-୧୫୮୮ | ,, | ୨୭ ,, | |
| ୧୧-୯-୧୫୮୯ | ,, | ୨୮ ,, | |

| ସୁନିଆର ତାରିଖ | | ରାଜତ୍ୱର ଅଙ୍କ |
|---|---|---|
| ୧-୯-୧୮୯୦ | ସୁନିଆ ଦିନଠାରୁ | ୨୯ ଅଙ୍କ |
| ୨୦-୮-୧୮୯୧ | ,, | ୩୧ ,, |
| ୮-୯-୧୮୯୨ | ,, | ୩୨ ,, |
| ୨୮-୮-୧୮୯୩ | ,, | ୩୩ ,, |
| ୧୭-୮-୧୮୯୪ | ,, | ୩୪ ,, ଶ୍ରୀଜଙ୍ଗ ଶିଳାଲିପି |
| ୫-୯-୧୮୯୫ | ,, | ୩୫ ,, |
| ୨୪-୮-୧୮୯୬ | ,, | ୩୭ ,, |
| ୧୪-୮-୧୮୯୭ | ,, | ୩୮ ,, ଶ୍ରୀଜଙ୍ଗ ଶିଳାଲିପି |
| ୨-୯-୧୮୯୮ | ,, | ୩୯ ,, |
| ୨୩-୮-୧୮୯୯ | ,, | ୪୧ ,, |
| ୭-୯-୧୯୦୦ | ,, | ୪୨ ,, |



# ପରିଶିଷ୍ଟ

## ଗଜପତି ରାମଚନ୍ଦ୍ର ଦେବଙ୍କ ରାଜତ୍ବର ଶିଳାଲିପି

(ବାରପଦା ମିଉଜିୟମରେ ଥିବା ଦ୍ୱିଭାଷୀ ଶିଳାଲିପି)



### ହିନ୍ଦୀ ଲେଖ

୧ମ ଧାଡ଼ି ସଂବତ୍ ୧୬୨୫ ସାକେ ୧୫୦୯ ସନ ୯୯୪
୨ୟ „ ସମଏ ଜୈସଠ୍ ସୁଦି ପୂର୍ନିମା ୧୫ ଗୁରୁବାସରେ
୩ୟ ,, ଅମଲ ଶ୍ରୀ କୁତୁବସାହ ଫିରୋଜସା ନୋହାନ
୪ର୍ଥ ,, କୃତ ଶ୍ରୀ ରାଜା ବସଂତଜିଉ ମାନିକଚଂଦ ଗୋ—
୫ମ ,, ହଲେ ତମୁଲ ପରାଗ କଳୋକାଳେ କୁଆ ମା
୬ଷ୍ଠ ,, ଗୈହଠେ । ଯୋ ସହ୍ୱାରେ ସୋପେଷ୍ଟ ଉଦ୍ଧମ କୁଆ ଲଗାହେ
୭ମ ,, ଉହୁ ସୋହେ ଅଭର କମଇ ନ ଲଗାଵୈ ଦୁଖାକରତେକେ
୮ମ ,, ହ ସୋମଂଜହୈ ମୁସଲମାନ କହ ତ—
୯ମ ,, ଲକ ହୈ ହିନ୍ଦୁ କହ ଗୋ-ବ୍ରାହ୍ମନ ମାରହତ୍ୟା

### ଓଡ଼ିଆ ଲେଖ

୧ମ ଧାଡ଼ି ସଂବତ୍ ୧୬୨୫ ସାକେ ୧୫୦୯ ସନ ୯୯୪ ସମସ୍ତ ୨୪ ଅଙ୍କ
୨ୟ ,, ଶ୍ରୀହା ରାସଭ ଦ ୨୦ ସୁ ୧୫ ଗୁରୁବାରେ ଆମୂଲ ଶ୍ରୀ
୩ୟ ,, କୁତୁଗସାହା ଫିରୋଜ ଖାଁ ଲୋହାଣି କସ୍ତଂ
୪ର୍ଥ ,, କୂଆ ଶ୍ରୀରାଜା ବସନ୍ତଜୀଉ ମାଣିକଚନ୍ଦ ଗୋହୋଲେ
୫ମ ,, ତମୂଳ ପରାଗ କାଳେ କାଳେ ଦେ୍ବ କୂଅଂଗେ ଓନ୍ଧ
୬ଷ୍ଠ ,, ସେତ୍ତୁ ପ୍ରମାଣକୁ ଲଗ କରିବ ଜେବେ ଏହା ପ୍ରମାଣେ
୭ମ ,, ଲଂଘନ କରିବ ତେବେ ସମତ ମୁସଲମାନକୁ ତ—
୮ମ ,, ଲକ ହଏ ହିନ୍ଦୁକୁ ଗୋ ବ୍ରାହ୍ମଣ ହତଃ । (୫୮)

---

(58) O H.R. Journal, Vol. II, Nos 314 P. 98.

# ଟିପ୍ପଣୀ :—

ଏହି ଦ୍ୱିଭାଷୀ ଅଭିଲେଖ ଥିବା ପ୍ରସ୍ତର ଖଣ୍ଡଟି ସୁବର୍ଣ୍ଣରେଖା ନଦୀ ତୀରବର୍ତ୍ତୀ ରାଜଘାଟଠାରୁ ବାଲେଶ୍ୱର ଆଡ଼କୁ ଆସିଥିବା ଜଗନ୍ନାଥ ସଡ଼କ ନିକଟବର୍ତ୍ତୀ ଏବେ କମା ନାମକ ଗ୍ରାମରୁ ମିଳିଥିଲା । ଏହି ଗ୍ରାମଟି ବର୍ତ୍ତମାନ ମୟୂରଭଞ୍ଜ ଜିଲ୍ଲାରେ ଅବସ୍ଥିତ । ଏହାକୁ ଶ୍ରୀ ପରମାନନ୍ଦ ଆଚାର୍ଯ୍ୟ ସଂଗ୍ରହ କରିଥିଲେ । ଏହା ବର୍ତ୍ତମାନ ବାରିପଦା ମିଉଜିୟମରେ ସଂରକ୍ଷିତ । ଇତିହାସ ଦୃଷ୍ଟିରୁ ଏହାର ବିଶେଷ ଗୁରୁତ୍ୱ ରହିଛି । ଉକ୍ତ ସ୍ଥାନରେ ହିଜିରା ସମ୍ବତ୍, ଶାଳିବାହାନ ଶକାବ୍ଦ, ମୁସଲମାନୀ ସନ ବ୍ୟବହୃତ ହୋଇଛି । କିନ୍ତୁ ଓଡ଼ିଆ ଲେଖରେ **ସମସ୍ତ ୨୪ ଅଙ୍କ** ଶ୍ରାହୀ ଅଧିକ ଲେଖାଯାଇଛି । ଏହା ଗଜପତି ରାମଚନ୍ଦ୍ର ଦେବଙ୍କ ରାଜତ୍ୱର ଏ ପର୍ଯ୍ୟନ୍ତ ଆବିଷ୍କୃତ ଲେଖ ଗୁଡ଼ିକ ମଧ୍ୟରେ ସର୍ବ ପ୍ରଥମ । ଏଥିରୁ ଜଣାଯାଏ ଯେ ଏହା ଲେଖା ହେବା ବେଳକୁ ଅର୍ଥାତ୍ ୧୫୮୭ ଖ୍ରୀଷ୍ଟାବ୍ଦ ପୂର୍ବରୁ ପୁରୀରେ ଜଗନ୍ନାଥ ମୂର୍ତ୍ତି ପୁନଃ ପ୍ରତିଷ୍ଠିତ ହୋଇ ସାରିଥିଲେ । ପ୍ରାଚୀନ ଜଗନ୍ନାଥ ସଡ଼କରେ ପୁରୀକୁ ଆସୁଥିବା ଯାତ୍ରୀମାନଙ୍କ ନିମିତ୍ତ ଶ୍ରୀ ରାଜା ବସନ୍ତରାଜ ମାଣିକଚନ୍ଦ ନାମକ କୌଣସି ଧନୀ ବ୍ୟକ୍ତି ଫିରୋଜ ସାହ ଲୋହାଣୀଙ୍କ ରାଜତ୍ୱ କାଳରେ ସଡ଼କ ନିକଟରେ ଗୋଟିଏ କୂଅ ଖୋଳିଥିଲେ । ଏହାର ଶେଷ ଦୁଇ ଧାଡ଼ିରେ ଦାତା ମୁସଲମାନ ଓ ହିନ୍ଦୁମାନଙ୍କୁ କୂଅର କୌଣସି କ୍ଷତି ନ କରିବା ପାଇଁ ଅନୁରୋଧ କରିଛନ୍ତି । ଏହା ଲଂଘନ କଲେ ମୁସଲମାନ ଶୁକ୍ରପନ ଓ ହିନ୍ଦୁ ଗୋବ୍ରାହ୍ମଣ ହତ୍ୟା ପାପରେ ଭାଗୀ ହେବ ।

କୌଣସି ହିନ୍ଦୀଭାଷୀ ଲୋକ ଓଡ଼ିଆ ଲିପିଟି ଲେଖିଥିବାରୁ ଓଡ଼ିଆ ଚର୍ଚ୍ଚାମାରେ ହିନ୍ଦୀ ଭାଷାର ପ୍ରଭାବ ଅଲକ୍ଷିତରେ ପଡ଼ିଯାଇଛି । ଯଥା ଆମୁଲ ବା ଅମଳ (ରାଜତ୍ୱ କାଳ), କୂଆ-କୂଅ, ଓହି-ଏହି, ସମଚ-ବୁଝି ବା ଜାଣି, ହଏ-ହୁଏ, ଛମୂନ, ପିପରି, କୁଚାଗେଂ, ପ୍ରଭୃତି ଶବ୍ଦର ଅର୍ଥ ସ୍ପଷ୍ଟ ନୁହେଁ । ହିନ୍ଦୀ ଲେଖରେ ସମସ୍ତ ଗଣନା ଅପେକ୍ଷାକୃତ ନିର୍ଦ୍ଦୋଷ । ୧୫୮୮ ଖ୍ରୀଷ୍ଟାବ୍ଦରେ ମେ ମାସ ୩୦ ତାରିଖ ଦିନ ଜ୍ୟୈଷ୍ଠ ଶୁକ୍ଳ ୧୫, ପୂର୍ଣ୍ଣିମା, ଗୁରୁବାର ପଡ଼ିଥିଲା । କିନ୍ତୁ ଓଡ଼ିଆ ଲେଖରେ ଷମଭ (ବୃଷ) ୨୦ ଦିନ ଭୁଲରେ ଗଣା ଯାଇଛି । ଶ୍ରସଭକୁ ଜ୍ୟୈଷ୍ଠ ଅର୍ଥରେ ବ୍ୟବହାର କରିଥିଲେ ୩୦ ଦିନ ହେବ । ସେ ତାରିଖରେ ୨୪ ଅଙ୍କ ନ ହୋଇ ୨୫ ଅଙ୍କ ହେବ । ପଶ୍ଚିମା ଲୋକଙ୍କ ପକ୍ଷେ ଓଡ଼ିଶା ରାଜାଙ୍କ ଅଙ୍କ ଗଣନାରେ ବର୍ଷ କିମ୍ବା ଭୁଲ କରିଦେବା ସମ୍ଭବପର । ତଥାପି ଖୁର୍ଦ୍ଧା ରାଜା ରାମଚନ୍ଦ୍ର ଦେବଙ୍କ ଅଧିକାର ବହିର୍ଭୂତ ସୁଦୂର ମୟୂରଭଞ୍ଜ ସୀମାରେ ତାଙ୍କ ଅଙ୍କଶ୍ରାହୀକୁ ଯେ ସମ୍ମାନର ସହିତ ଗଣନା କରୁଥିଲେ ଏହାହିଁ ବିଶେଷ ଗୁରୁତ୍ୱପୂର୍ଣ୍ଣ ।

## ଆଠଗଡ଼ ପର୍ବତରେ ଥିବା ଦ୍ୱିଭାଷୀ ଶିଳାଲେଖ

୧ମ ଧାଡ଼ି—ଶ୍ରୀ ଗଣାଧିପତୟେ ନମଃ

୧ମ ଶ୍ଳୋକ — ଶ୍ରୀ ମନ୍ତଦାମଂଦ କୁକ୍ଷି କୁଦୁବା (୨) (ଧିପୂ୦) ଶ୍ରୀପାଦଣା ଶାସନେ
(ଅଂଧ୍ର) ତ୍ରିଲିଙ୍ଗ ମଧ୍ୟମେ ଷିତିତଳେ(୩) ଚୌଦ୍ଧିଣିଦୁର୍ଗାଧିପଃ
ତଦେ୍ଦାଗର୍ବ ଧୂରଂଧରଃ ପ୍ରପୂଢ଼ (ପ୍ରଗୌଢ଼) ଶୌର୍ଯ୍ୟା(୪) × ×
ସୈଦାନ୍ୱୟେ
ଜାତଃ (ଶା)ଦ (ସୂ)କରକ୍ଷି ମୋଦମ ପରତୋ (୫) ଆକ୍ରମ୍ୟ
ଧାତ୍ରୀତଳଂ ।

୨ୟ ଶ୍ଳୋକ — ଅତଃ ସିନ୍ଧୁତଟାନ୍ତମାଳଜାଙ୍ଗଳା ପର୍ବତଂ
(୬) ସର୍ବାକ୍ରାନ୍ତଂ ମହୀଂ ଚକ୍ରେ ଅସିନା ଶାଦଭୂପତିଃ ।

୩ୟ ଶ୍ଳୋକ — ଗଜପତି ଦରପୀଠା(୭) ହ୍ରାମ୍ୟଭେ ସାର୍ବଭୌମଃ
ସମରବଳଜୟଦକ୍ଷଃ ସାଲୁଚନ୍ଦ୍ରାନ୍ୱୟେଶଃ
(୮) ସକଳଗୁଣବଶେଷଃ ସର୍ବଲୋକାଶ୍ରୟେଶଃ
ଗଜପତି ନରସିଂହୋ ଦେବ ଦ(୯)ବ୍ୟାବତାରଃ ।

୪ର୍ଥ ଶ୍ଳୋକ — ଶ୍ରୀମତ୍ ବାହୁବଳେନ୍ଦ୍ର ଚନ୍ଦ୍ରକୁଳଜୋ ଶ୍ରୀ ସିଂଗଗ ଭୂପା(୧୦)ଲକୋ
ପୂଜ୍ୟ ଗଜମହେନ୍ଦ୍ର ମୁଖ୍ୟଧରଣୀ କାଂକଗ ସୌରାଷ୍ଟ୍ରକୈଃ
(୧୧) ସାମ୍ରାଜ୍ୟୋଜ୍ଜ୍ୱଳ ଭୂଭୁଜୋ ଗଜପତେଃ ସିଂହାସନଂ ପାଳିତ
ସ୍ତକ୍ଷେ ଲଙ୍ଗଳ(୧୨)ବେଣୀ ପଶ୍ଚିମତଟେ ସ୍ଥିତ୍ୱା ତଟାକୋତ୍ତମଂ ।

୫ମ ଶ୍ଳୋକ — ସିଂଗ ସାଗରନାମୋୟଂ ତଟାକୋ(୧୩) ଚନ୍ଦ୍ରତାରକଂ
ଆସିକା ଲଙ୍ଗଳବେଣ୍ୟାଚ ପଶ୍ଚ ମାଶାତଳେ ସ୍ଥିତଂ ।

୬ଷ୍ଠ ଶ୍ଳୋକ — ଶାଳବାଦ(୧୪)ନ ଭୂପସ୍ୟ ବଲିଖ୍ୟତେ ଶକ୍ତଧମାଃ
ସହସ୍ରୋର୍ଦ୍ଧଂ ପଞ୍ଚଶତଂ ତଦୋର୍ଦ୍ଧଂ(୧୫) ଦ୍ୱାଦଶଂ ଶରତ୍ ।

୭ମ ଶ୍ଳୋକ — ଦ୍ୱରେଧୌ ଚୈତ୍ରାବତସେ ଦଶମ୍ୟାଂ ଗୁରୁବାସରେ
ଚକ୍ରେ ଲଂଗଳ(୧୬)ବେଣ୍ୟାନ୍ତ ତଟାକଂ ଶାଦ ଭୂପତିଃ ।

୮ମ ଶ୍ଳୋକ — (୧୭) ଶାକେ ଚନ୍ଦ୍ରଦ୍ୱୟେସେୟ ଶର୍ଣ୍ଣି(୧୭)ନ ମୃପଗତେ
ଜାଧୁମାଭେ ଦ୍ୱାଦଶ୍ୟା
ମଦେବାରେଽସିତେଜ୍ଜେ ଧ(୧୮)କଳ ସୁଭଦଧେ କାର୍ତ୍ତିକେ
ମାସି ସ୍ୱାତ୍ର
ମୁଦ୍ରାମୁଦକୁକ୍ଷୀ ପାତପାକେ ସ୍ୱା (୧୯) ଧାତେ ସିଂହଭାନ
ସିତପତ୍ତଳକଃ କୁର୍ବନ୍ ନିର୍ମଳାମ୍ବୁଃ ଧଦ୍ଦସିଜକୁମୁ(୨୦)
ଦାଟମୋଦଭା ଲାଭ

୯ମ ଶ୍ଳୋକ   ଯୋଽସୌ ଲଙ୍କନବେଣୀ ଦୁର୍ଗ ମଦହରତ୍ ସଂଶୌ'(୬୧)ଧସ୍ତନ କର୍ଦମଂ
ଭସ୍ମନ୍ କୃତ୍ ଖଲକୋଟ ଦୁର୍ଗମଭଜଂ କ୍ୱାଦୃଷ୍ଟଭୂମି(୬୨)ପତିଂ

୧୦ମ ଶ୍ଳୋକ  ଯୋ ଗୃହ୍ଣାତି ବଲଜଞ ଦୁର୍ଗମଗନକୋଟ ଭୂତ (୬୩) ଦୁର୍ଗନ୍ତେ ।
ନବୈଂରଞ୍ଚ ସଦାତଦୋ ବିଜୟତେ କୁତ୍ଗନ୍ ସ ସାହାସରଃ ।

## ଓଡ଼ିଆ ଲିପି

ପନ୍ଦରସ ବାର ଉତ୍ତର ଶକରେ ମୁହାମୁଦ(୬୫)ଖୁଲ୍ଲୀ ପାତିସା ଘାନରେ
ବାହୁବଲେନ୍ଦ୍ରଙ୍କ ଷ(ଅ)ଷ୍ଟାଙ୍କରେ ସମସ୍ତ ଗ(୬୬)ଡ଼ମାନ ଜୟକର
ସାହା ସୁକୁରୁଲ୍ଲୀ ଏ ସରୋବର ଖୋଳଲେ ।

**ଟିପପଣୀ :—**

ଏହି ଅଭିଲେଖର ପ୍ରଥମ ୧୬ ଧାଡି ତେଲଙ୍ଗା ଅକ୍ଷରରେ ଓ ଶେଷ ଦଶ ଧାଡି ଓଡ଼ିଆ ଅକ୍ଷରରେ ଲେଖାହୋଇଛି । ଏହା ଆଠଗଡ଼ ଗଡ଼ ଓ ବୋଇଖଣୀ ମଧ୍ୟରେ ଥିବା ଗସ୍ତା ପାଖ ଗୋଟିଏ ମୁଣ୍ଡିଆ ଦେହରେ ଖୋଳାଯାଇଛି । ଏହାର ଭାଷ ରେ ବିଶେଷ ବ୍ୟାକରଣଗତ ଅଶୁଦ୍ଧି ଦେଖାଯାଏ । ଅକ୍ଷର ଗୁଡିକ ପାଣି ପବନ ଖାଇ ନଷ୍ଟ ହୋଇଯାଇଥିବାରୁ ସଂପୂର୍ଣ୍ଣ ପାଠୋଦ୍ଧାର ସମ୍ଭବ ନୁହେଁ । ପ୍ରଥମେ ଏହାଙ୍କୁ ଟିକଲି ରାଜାବାହାଦୁର ସ୍ୱର୍ଗତଃ ଲକ୍ଷ୍ମୀନାରାୟଣ ହରିଚନ୍ଦନ ଜଗଦ୍ଦେବ ପାଠ କରି ଏକ ପ୍ରବନ୍ଧରେ ପ୍ରକାଶ କରିଥିଲେ । (୫୯) ଅଳ୍ପଦିନ ପୂର୍ବେ ପଣ୍ଡିତ ଶ୍ରୀ ସତ୍ୟନାରାୟଣ ରାଜଗୁରୁ ଏହାକୁ ଯଥାସମ୍ଭବ ନିର୍ଭୁଲ ଭାବରେ ପାଠ କରି ନିଜର ଏକ ପ୍ରବନ୍ଧରେ ଦେଇଛନ୍ତି । (୬୦)

ଏଥିରୁ ଜଣାଯାଏ ଯେ ଆନ୍ଧ୍ର ଓ ତ୍ରୈଲିଙ୍ଗ (ତେଲଙ୍ଗାନା) ରାଜ୍ୟର ଚଉରାଶି ଦୁର୍ଗର ଅଧୀଶ୍ୱର ଗୋଲକୁଣ୍ଡା ସୁଲତାନ ମହମ୍ମଦ କୁଲି କୁତବସାହଙ୍କ ଶାସନ କାଳରେ ତାଙ୍କର ସେନାପତି ସୈୟଦ ବଂଶୀୟ ସାହା ସୁକ୍ରୁଲ ନିଜର ବାହୁବଳରେ ସମୁଦ୍ର ଉପକୂଳ, ମାଳ, ଜଙ୍ଗଲ ଓ ପର୍ବତପୂର୍ଣ୍ଣ ଏକ ବିଶାଳ ଭୂଖଣ୍ଡ ଅଧିକାର କରିଥିଲେ । ସେ ସମୟରେ ସାଳୁ (ଚାଲୁକ୍ୟ) କୁଳସମ୍ଭୂତ ଚନ୍ଦ୍ରବଂଶୀ ବାହୁବଳେନ୍ଦ୍ର ସଂଜ୍ଞାଧାରୀ ସମର କୁଶଳ ନରସିଂହ ଗଜପତି ବିଶେଷ କ୍ଷମତାଶାଳୀ ସାମନ୍ତ ରାଜା ଥିଲେ । ରାଜମହେନ୍ଦ୍ର ତାଙ୍କର ମୁଖ୍ୟ ରାଜ୍ୟ ଥିଲେ ମଧ୍ୟ ସମଗ୍ର କଳିଙ୍ଗ ଓ ସୌରାଷ୍ଟ୍ର ?

---

(59) J.B.O.R.S. Vol XV, Pp. 195-200.

(60) O H R.J. Vol. VI, Part I, pp. 11-50.

ଅଧିବାସୀଗଣ ତାଙ୍କ ଅଧୀନତା ସ୍ୱୀକାର କରିଥିଲେ । ସେ ଉତ୍କଳ ଗଜପତିଙ୍କ ସାମ୍ରାଜ୍ୟର ପାଳକରୂପେ ସିଂହାସନ ଆରୋହଣ କରି ଗଜପତି ପଦବୀ ଧାରଣ କରିଥିଲେ । ସେ ଲଙ୍ଗଳବେଣୀ ଦୁର୍ଗରେ ତହିଁ ଏକ ବିଶାଳ ଜଳାଶୟ ଖୋଳାଇ-ଥିଲେ । ଆସିକା ଓ ଲଙ୍ଗଳବେଣୀ ଦୁର୍ଗର ପଶ୍ଚିମକୁ ଥିବା ଏହି ସାହୁ-ସାଗର ଆକାଶରେ ଚନ୍ଦ୍ର ଓ ତାରା ଥିବା ପର୍ଯ୍ୟନ୍ତ ଅକ୍ଷୁର୍ଣ୍ଣ ରହିବ । ଶାଳୀବାହାନ ରାଜାଙ୍କ ୧୫୧୨ ଅବ୍ଦରେ ବିରୋଧୀ ସମ୍ବତ୍ସରରେ ଚୈତ୍ର ମାସର ଆଦ୍ୟ ପକ୍ଷରେ ଦଶମୀ ଗୁରୁବାର ଦିନ ଶାହା ଭୂପତି ଏହି ଜଳାଶୟ ନିର୍ମାଣ କରିଥିଲେ ।

୧୫୧୨ ଶକାବ୍ଦ ବିରୋଧି ସମ୍ବତ୍ସର କାର୍ତ୍ତିକ, କୃଷ୍ଣପକ୍ଷ ଶନିବାର ଦିନ ମହମ୍ମଦ କୁଲି ପାତସାଙ୍କ ଶୁଭାଗମନ ସମୟରେ କ୍ଷିତିପତି ତିଳକ ସିଂହ ପଦ୍ମକୁମୁଦ ଶୋଭିତ ଉକ୍ତ ନିର୍ମଳ ଜଳାଶୟ ପ୍ରତିଷ୍ଠା କରିଥିଲେ । ସୂର୍ଯ୍ୟ ପରି ତେଜସ୍ୱୀ ସେନାପତି ସାହା ଲଙ୍ଗଳବେଣୀ ଦୁର୍ଗ ଜୟ କରିଥିଲେ ଓ କଦମ୍ବ (ବୋଧହୁଏ କୌଣସି ଦୁର୍ଗର ନାମ) ସଂଶୋଧନ କରିଥିଲେ । ଖଲିକୋଟ ଦୁର୍ଗାଧୀଶ୍ୱର, ଭଞ୍ଜ-ନରେଶ, ଅଷ୍ଟଭୂମିପତି ବା ଅଷ୍ଟଦୁର୍ଗରାଜା, ବିରାଳ (ବିରୂଳ) ଅଧୀଶ୍ୱର ଓ ମଙ୍ଗଳକୋଟ ଦୁର୍ଗାଧୀଶଙ୍କ ବିଜେତା ଉକ୍ତ ସେନାପତି ସାହା ସର'ର ପ୍ରତିଷ୍ଠାତା । ଓଡ଼ିଆ ଶିଳାଲିପିରେ ସମଗ୍ର ସଂସ୍କୃତ ଲେଖର ସାରାଂଶ ଦିଆଯାଇଛି । ଯଥା—୧୫୧୨ ଶକାବ୍ଦ ବା ୧୫୯୦ ଖ୍ରୀଷ୍ଟାବ୍ଦରେ ଗୋଲକୁଣ୍ଡା ସୁଲତାନ ମହମ୍ମଦ କୁଲି କୁତବସାହଙ୍କ ରାଜତ୍ୱ କାଳରେ ନରସିଂହ ବାହୁବଳେନ୍ଦ୍ରଙ୍କ ଆଠ ଅଙ୍କରେ ସେନାପତି ସାହା ସ୍ୱକୁଳଲକ୍ଷ୍ମୀ ଉପରିଲିଖିତ ଗଡ଼ମାନ ଜୟ କରି ନିଜ ନାମାନୁସାରେ ସାହାସର' ଖୋଳାଇଥିଲେ ।

ଏହି ଶିଳାଲେଖଟି ଓଡ଼ିଶା ଇତିହାସ ଦୃଷ୍ଟିରୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଗଜପତି ମୁକୁନ୍ଦଦେବଙ୍କ ମୃତ୍ୟୁପରେ ଗୋଲକୁଣ୍ଡା ସୁଲତାନ ଇବ୍ରାହିମ କୁତବସାହ (୧୫୫୦ ୧୫୮୧) ଅନ୍ଧ୍ର ପ୍ରଦେଶର ୮୪ଟି ଦୁର୍ଗ ଜୟ କରି ନିଜ ସେନାପତିଙ୍କ ସାହାଯ୍ୟରେ ଗଜପତି ରାଜ୍ୟ ଅନ୍ତର୍ଗତ ରାଜମହେନ୍ଦ୍ରାଦି ବହୁ ଦୁର୍ଗ ଅଧିକାର କରି-ଥିବା ବିଷୟ ସୀତାରାମ ସ୍ୱାମୀ ମନ୍ଦିର ଲେଖରୁ ଜଣାଯାଏ । (୬୧) ତାଙ୍କ ପୁଅ

---

(୬୧) "ନିଜ ଭୁଜବଳ ସମାନୀତ ଚତୁରଶୀତି ଦୁର୍ଗାଧୀଶ୍ୱରୋନ୍ନତ ଗୋଲକୋଣ୍ଡ ସ୍ଥାନ ନବାସୁରତ୍ରାଣୁ × × ସେନାଧିପମ ହ ସାଧିତ ଗଜପତିରାଜ୍ୟ ରାଜ-ମହେନ୍ଦ୍ରାଦି ବହୁଦୁର୍ଗ ଦେଶଂ ଉଦ୍ଧୃ ନୁ × ×"
Sitaram Swami Temple inscription of the Guntur district, S. I. I. Vol. X, No 753.

ମହମଦ କୁଲି କୁତବସାହଙ୍କ ସେନାପତି ସାହା ସୁକୁରୁଲି ୧୫୯୦ ଖ୍ରୀଷ୍ଟାବ୍ଦରେ ଏ ସମସ୍ତ ଦୁର୍ଗ ଜୟ କରିଥିଲେ । ତାଙ୍କ ଅଧୀନସ୍ଥ ମୁକୁନ୍ଦଦେବଙ୍କ ବଂଶଧର ନରସିଂହ ବାହୁବଳେନ୍ଦ୍ର ଗଜପତି ପଦବୀ ଧାରଣ କରି ନିଜର ଅଙ୍କ ଚଳାଇଥିଲେ । ଏହି 'ସାହାସରି'ର ଖୋଦନ ସମୟ ହେଉଛି ୧୫୯୦ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସ ୫ ତାରିଖ । ନରସିଂହ ବାହୁବଳେନ୍ଦ୍ରଙ୍କ ପରବର୍ତ୍ତୀ ରାଜ ମୁକୁନ୍ଦରାଜ ସିଂହାସନ ଆରୋହଣ କରିବାମାତ୍ରେ ଗୋଲକୁଣ୍ଡା ସୁଲତାନଙ୍କ ସହିତ ତାଙ୍କର ସଂଘର୍ଷ ଉପସ୍ଥିତ ହୋଇଥିଲା । ଏହି ସୁଯୋଗରେ ରାମଚନ୍ଦ୍ରଦେବ, ଖଲିକୋଟ, ଆଠଗଡ ପ୍ରଭୃତି ଆଠଟି ରାଜ୍ୟ ଜୟ କରିଥିଲେ । ତେଣୁ ରାଜା ମାନସିଂହଙ୍କ ୧୫୯୩ ଖ୍ରୀଷ୍ଟାବ୍ଦର ବନ୍ଦୋବସ୍ତ କାଗଜ ପତ୍ରରେ ଗଞ୍ଜାମର ଉତ୍ତରାଂଶ ରାମଚନ୍ଦ୍ରଙ୍କ ରାଜ୍ୟଭୁକ୍ତ ଥିବାର ଉଲ୍ଲେଖ ଅଛି । ମୁକୁନ୍ଦରାଜ ବାରମ୍ବାର ଗୋଲକୁଣ୍ଡା ବାହିନୀ ଦ୍ୱାରା ଆକ୍ରାନ୍ତ ହୋଇ ଗଜପତି ରାମଚନ୍ଦ୍ରଦେବଙ୍କ ଶରଣାପନ୍ନ ହୋଇଥିବା ପୂର୍ବେ ବର୍ଣ୍ଣିତ ହୋଇଅଛି ।

## ଶ୍ରୀକଙ୍ଗ ପ୍ରସ୍ତର ସ୍ତମ୍ଭ ଲେଖ (୬୨ କ)

(ଏହି ଖମ୍ବଟି ଏ ପର୍ଯ୍ୟନ୍ତ ଶ୍ରୀକଙ୍ଗର ଗୋଟିଏ ପୋଖରୀ ହୁଡ଼ାରେ ରହିଛି ।
ଏହାର ଦୁଇ ପାଖରେ ଲେଖାଅଛି)

| | |
|---|---|
| ଶ୍ରୀଧର୍ମସରଣ | ବୃଲ୍ଲକା ମକୁନ୍ଦ |
| ଜଗାବ୍ଦ ୪୬୯୭ | ଦେବ ଅନ୍ଦ୍ରେ |
| ସାକାବ୍ଦ ୧୫୧୭ | ଜବନ ବରଷ ୨୮ |
| ଦଇତାରି ବସୁ | ଏକବର ପାଶ୍ଚାସା |
| ଆନ ସୁପୁତ୍ର | ହୈ ରଜପୁତ |
| ଅଚୂତ ବଳୀ | ମାନସୀହଂ ରଜା |
| ଆରି ସୀହଂ | କଟକ ପଶ୍ଚିମେ |
| ମହାପାତ୍ର | ପରଙ୍ଗ ଖୁସ୍ରାଦା |
| ପୁଷ୍କରଣୀ, . | ଥୀତ କଟକ |
| ଦେଲେ ସ | ସୂଦ୍ର ଗଜପତି |
| ଗ୍ୟାଂଅଚ୍ୟୁତସାଗ୍ର | ରାଜା ରାମ |
| ଏ ମଣ୍ଡଳେ ଏକା | ଚନ୍ଦ୍ର ଦେବ |
| ନାଏକେ | ୩୪ ଅଙ୍କ |
| | ଶ୍ରୀହ୍ମ |

(62 ଢ ଓ ଖ) Journal of Orissa Academy Vol. III, No. 1, pp 24-25.

## ଶ୍ରୀଜଙ୍ଗ ପ୍ରସ୍ତର ସ୍ତମ୍ଭ ଲେଖ (୭୨ ଖ)

(ସ୍ତମ୍ଭ ପାଦରେ ଲେଖା ହୋଇଛି । ଏହା ବର୍ତ୍ତମାନ ଓଡ଼ିଶା ରାଜ୍ୟ ମିଉଜିୟମରେ ସଂରକ୍ଷିତ)

| | | | |
|---|---|---|---|
| ଧର୍ମ ସରଣ | ରଣୀ ସ | କୁଳ ଚାଲୁକ | × × × |
| ଯୁଗାବ୍ଦ ୪୬୯୯ | ଗ୍ୟା ଅ | ମକୁନ୍ଦ | କଟକ ପଛୁ |
| ସାକାବ୍ଦ ୧୫୨୦ | ଚ୍ୟୁତଗ — | ଦେବ ଅନ୍ତେ | ମେ ପରଙ୍ଗ |
| ଦଇତାରି ବ | ଗାଂଏ | ଯବନ ଭୋଗ | ଖୁର୍ଦ୍ଦାଧୀ |
| ସୁଆନ ସୁ | ମଣ୍ଡଳେ | ବରସ ୩୦ | ତ କଟକ |
| ପୁତ୍ର ଅଚ୍ୟୁତ | ଏକାନା | ଢିଲ୍ଲୀଶ୍ୱର | ଶୁଦ୍ର ରଜା |
| ଜନୀଆତ ସି | ଏକ ଏ | ଏକବର ପା | ଗଜପ୍ତି ରା |
| ସଂସ୍କୃତ ପୁସ୍କ | | ତିସା ହୋଇ | ମଚନ୍ଦ୍ର ଦେ |
| | | ରଜପୁତ ମା | ବ ୩୭ ଅଙ୍କ |
| | | ନସିଂହ ରଜା | ଏ ଦନ ସରକ |
| | | ଅମଳ ଓଡ଼ୀସା | ଏ ପୁସ୍କରଣୀ |
| | | ରାଜ କରନ୍ତ | ଖୋଳା |

ଟିପ୍‌ପଣୀ :—

ଶ୍ରୀଜଙ୍ଗ ଶିଳାଲିପିଦ୍ୱୟ ପ୍ରଥମେ ଶ୍ରୀ ସୁଧାକର ପଟ୍ଟନାୟକ ପାଠ କରିଥିଲେ । ଏହି ଲେଖଦ୍ୱୟରୁ ଜଣାଯାଏ ଯେ ଦୈତ୍ୟାରି ବିଶ୍ୱାଳଙ୍କ ସୁଯୋଗ୍ୟ ପୁତ୍ର ଅଚ୍ୟୁତ ଜନୀସ୍ୱାତ ସିଂହ ମହାପାତ୍ର ୪୬୯୭ ଯୁଗାବ୍ଦ, ୧୫୧୭ ଶକାବ୍ଦ ବା ୧୫୯୫ ଖ୍ରୀଷ୍ଟାବ୍ଦରେ 'ଅଚ୍ୟୁତସାଗର' ଓ ୪୬୯୯ ଯୁଗାବ୍ଦ ୧୫୨୦ ଶକାବ୍ଦ ବା ୧୫୯୮ ଖ୍ରୀଷ୍ଟାବ୍ଦରେ 'ଅଚ୍ୟୁତଗଙ୍ଗା' ନାମକ ଦୁଇଟି ପୋଖରୀ ଖୋଳାଇଥିଲେ । ସେତେବେଳେ ଚାଲୁକ୍ୟ ବଂଶୀୟ ମୁକୁନ୍ଦ ଦେବଙ୍କ ମୃତ୍ୟୁ ପରେ ଯବନ ବା ମୁସଲମାନ ରାଜତ୍ୱ ଚାଲିଥିଲା ଏବଂ ଆକବର ପାତିସା ବା ବାଦସାହଙ୍କ ଅଧୀନରେ ରାଜପୁତ ରାଜା ମାନସିଂହ ଓଡ଼ିଶା ଶାସନ କରୁଥିଲେ । କିନ୍ତୁ କଟକର ପଶ୍ଚିମକୁ ଥିବା ପରଙ୍ଗ ଦଣ୍ଡପାଟରେ ଖୁର୍ଦ୍ଧା ବା ଖୁର୍ଦ୍ଦା କଟକରେ ଶୁଦ୍ରବଂଶୀୟ ଗଜପତି ରାଜା ରାମଚନ୍ଦ୍ର ଦେବ ରାଜତ୍ୱ କରୁଥିଲେ । ତାଙ୍କ ରାଜତ୍ୱର ୩୪ ଅଙ୍କ ଓ ୩୭ ଅଙ୍କରେ ଯଥାକ୍ରମେ ପୋଖରୀ ଦୁଇଟି ଖୋଳାଯାଇଥିଲା । ପୂର୍ବପ୍ରଦତ୍ତ ଅଙ୍କ ଗଣନା ସହିତ ଏ ଦୁଇଟି ଲିପିର ଅଙ୍କ ଠିକ୍ ମିଳିଯାଉଛି ।



## ଦ୍ୱିତୀୟ ଅଧ୍ୟାୟ

# ଗଜପତି ପୁରୁଷୋତ୍ତମଦେବ

(୧୬୦୦—୧୬୨୧ ଖ୍ରୀଷ୍ଟାବ୍ଦ)

ଭୋଇ ବଂଶର ପ୍ରତିଷ୍ଠାତା ଗଜପତି ରାମଚନ୍ଦ୍ର ଦେବଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ପୁରୁଷୋତ୍ତମ ଦେବ ଖୁର୍ଦ୍ଧା ସିଂହାସନ ଆରୋହଣ କରିଥିଲେ । ତାଙ୍କ ରାଜତ୍ୱ କେବେ ଆରମ୍ଭ ହେଲା ସେ ସଂପର୍କରେ ବିଭିନ୍ନ ତଥ୍ୟ ମିଳେ । ତେଣୁ ଏହା ପରିଶିଷ୍ଟରେ ଆଲୋଚିତ ହୋଇଅଛି । ସେ ଜଣେ ସାହସୀ ବୀର ପୁରୁଷ ଥିଲେ । ୧୫୯୨ ଖ୍ରୀଷ୍ଟାବ୍ଦରେ ରାଜା ମାନସିଂହ ସାରଙ୍ଗଗଡ଼ ଆକ୍ରମଣ କରିବା ସମୟରେ ସେ ଖୁର୍ଦ୍ଧା ରାଜ୍ୟରେ ଆଶ୍ରୟ ନେଇଥିବା ଆଫଗାନ ସର୍ଦ୍ଦାରମାନଙ୍କୁ ସମ୍ମିଳିତ କରି ମୋଗଲ ସେନାର ପ୍ରବଳ ପ୍ରତିରୋଧ କରିଥିବା ପୂର୍ବେ ଆଲୋଚିତ ହୋଇଅଛି । ଗଜପତି ରାମଚନ୍ଦ୍ରଙ୍କ ସହିତ ମିତ୍ରତା ସ୍ଥାପନ କରି ମାନସିଂହ ଦିଲ୍ଲୀ ଫେରିଲାବେଳେ ପୁରୁଷୋତ୍ତମ ଦେବ ଓ କାଶୀ ପରିଜାଙ୍କୁ ସଙ୍ଗରେ ନେଇ ୧୫୯୪ ଫେବୃୟାରୀ ୨୩ ତାରିଖରେ ଆକବରଙ୍କ ଦରବାରରେ ଉପସ୍ଥାପିତ କରିଥିଲେ । ତେଣୁ ମୋଗଲ ବାଦସାହଙ୍କ ପରାକ୍ରମ, ଐଶ୍ୱର୍ଯ୍ୟ ଓ ବିଭବ ସମ୍ବନ୍ଧରେ ଯୁବରାଜ ଅବସ୍ଥାରେ ତାଙ୍କର ପ୍ରତ୍ୟକ୍ଷ ଅନୁଭୂତି ଓ ସ୍ପଷ୍ଟ ଧାରଣା ଥିଲା । ତେଣୁ ସେ ବାଦ-ସାହଙ୍କ ସହିତ ବନ୍ଧୁତ୍ୱ ଅକ୍ଷୁର୍ଣ୍ଣ ରଖିବା ପାଇଁ ସର୍ବଦା ଚେଷ୍ଟିତ ଥିଲେ । କିନ୍ତୁ ଆକବରଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ଦିଲ୍ଲୀ ବାଦସାହ ଜାହାଙ୍ଗୀର ପିତାଙ୍କ ଦ୍ୱାରା ଅନୁସୃତ ସର୍ବ-ଧର୍ମ-ସମନ୍ୱୟ ନୀତି ପରିତ୍ୟାଗ କରିଥିଲେ । ପରିଣାମରେ ଭାରତର ଏକତମ ପ୍ରଧାନ ହିନ୍ଦୁ ଧର୍ମପୀଠ ଶ୍ରୀକ୍ଷେତ୍ରର ରକ୍ଷକ ହୋଇଥିବାରୁ ତାଙ୍କ ପ୍ରତି ବାଦସାହଙ୍କ ଶୁଭଦୃଷ୍ଟି ନ ଥିଲା ।

### ପ୍ରଥମ ମୋଗଲ ସୁବାଦାରଙ୍କ ପୁରୀ ମନ୍ଦିର ଆକ୍ରମଣ—(୧୬୦୯)

ଆକବରଙ୍କ ରାଜତ୍ୱ କାଳରେ ଓଡ଼ିଶା ବଙ୍ଗଳା ସୁବାର ଏକ ଅଂଶ ରୂପେ ଶାସିତ ହେଉଥିଲା । କିନ୍ତୁ ୧୬୦୭ରୁ ଓଡ଼ିଶା ଏକ ସ୍ୱତନ୍ତ୍ର ସୁବାରେ ପରିଣତ ହୋଇ କଟକ ମୋଗଲ ସୁବାଦାରମାନଙ୍କର ରାଜଧାନୀ ହେଲା । ତେଣୁ ପ୍ରତ୍ୟେକ ସୁବାଦାର

ଅର୍ଦ୍ଧ ସ୍ୱାଧୀନ ହିନ୍ଦୁ ରାଜ୍ୟ ଖୋର୍ଦ୍ଧା ଆକ୍ରମଣ କରି ଦିଲ୍ଲୀ ବାଦଶାହଙ୍କ ସନ୍ତୋଷ ବିଧାନ ଓ ଅନୁଗ୍ରହ ଲାଭ ପାଇଁ ଚେଷ୍ଟିତ ହେଉଥିଲେ । 'ବିକାନାଂ ସ୍ୱର୍ଣ୍ଣଲୋଭାନାଂ ଶପଥାଣାଂ ବାଗଭତ୍ତୟେ' ନ୍ୟାୟରେ କଟକରେ ସୁବାଦାରଙ୍କ ଅଧିଷ୍ଠାନ ନିକଟବର୍ତ୍ତୀ ଖୋର୍ଦ୍ଧା ରାଜ୍ୟ ପ୍ରତି ଚିର ବିପଦର କାରଣ ହେଲା । ପରିସ୍ଥିତି, ଧର୍ମନୀତି ଓ ଶାସନ ନୀତିରେ ପରିବର୍ତ୍ତନର କୁପରିଣାମ ପ୍ରଥମେ ଏଠା ଶାସକଙ୍କୁ ଭୋଗ କରିବାକୁ ପଡ଼ୁଥିଲା ।

ଗୌହାଟୀର ସୁବାଦାର ମିର୍ଜାନାଥନ୍ କୃତ 'ବହରିସ୍ଥାନ-ଇ-ଘାଇବି' ନାମକ ମୋଗଲ ଯୁଗର ଇତିହାସ ଗ୍ରନ୍ଥରୁ ଜଣାଯାଏ ଯେ କଟକର ପ୍ରଥମ ମୋଗଲ ସୁବାଦାର ହାସିମ ଖାଁ (୨୬ ୯ ୧୬୦୭ ରୁ ୨୪ ୫ ୧୬୧୧) ନିଯୁକ୍ତିର ଅଳ୍ପଦିନ ପରେ ଖୋର୍ଦ୍ଧା ଆକ୍ରମଣ ପାଇଁ ଯୋଜନା କଲେ । ସେ ସମୟରେ କେଶୋଦାସ ମାରୁ ନାମକ ଜଣେ ରାଜପୁତ କଟକ ନିକଟବର୍ତ୍ତୀ ଅଞ୍ଚଳର ଜାଗୀରଦାର ଥିଲେ । ସେ ହିନ୍ଦୁ ହୋଇ ମଧ୍ୟ ମୋଗଲ ବାଦଶାହଙ୍କ ତୁଷ୍ଟିବିଧାନ ନିମିତ୍ତ ବର୍ଷ ଋତୁ ଆରମ୍ଭରେ ଜଗନ୍ନାଥ ମହାପ୍ରଭୁଙ୍କ ଦର୍ଶନ କରିବା ଛଳନା କରି ମନ୍ଦିର ଆକ୍ରମଣ କରିଥିଲେ । ଦେବ ଦର୍ଶନ ପରେ ବହୁ ରାଜପୁତ ସୈନ୍ୟ ସହ ମନ୍ଦିର ଅଧିକାର କରି ସେ ଚରମ ବିଶ୍ୱାସଘାତକତାର ପରିଚୟ ଦେଇଥିଲେ । ସେ ପ୍ରାୟ ଦୁଇ ତିନ କୋଟି ଟଙ୍କା ମୂଲ୍ୟର ଧନରତ୍ନ ଲୁଣ୍ଠନ କରି ଅଧିକ ପାଇବା ପାଇଁ ବ୍ରାହ୍ମଣ ସେବକମାନଙ୍କ ଉପରେ ଅତ୍ୟାଚାର ଚଳାଇଥିଲେ । ଅତର୍କିତ ଭାବରେ ମନ୍ଦିର ଆକ୍ରମଣର ସମ୍ବାଦ ପାଇ ଗଜପତି ପୁରୁଷୋତ୍ତମ ଦେବ ଖୋର୍ଦ୍ଧାରୁ ଦଶ ହଜାର ଅଶ୍ୱାରୋହୀ, ୩/୪ ଲକ୍ଷ ପାଇକ ଓ ବହୁ ସଂଖ୍ୟକ ରଥ ନେଇ ପୁରୀ ଅଭିମୁଖରେ ଯାତ୍ରା କଲେ ଓ ମନ୍ଦିର ଅବରୋଧ କଲେ । ପ୍ରତି ରଥରେ ୫୦୦ ରୁ ୧୦୦୦ ପର୍ଯ୍ୟନ୍ତ ସୈନ୍ୟ ଥିଲେ ଏବଂ ପ୍ରତି ରଥକୁ ଶହ ଶହ ଲୋକ ଟାଣୁଥିଲେ । ମନ୍ଦିର ବେଢ଼ା ଚତୁପାଖେ ରଥ ଗୁଡ଼ିକ ସଜା ହୋଇ ରଖାଗଲା ।

ଓଡ଼ିଆ ସେନାର ପ୍ରବଳ ଆକ୍ରମଣ ଫଳରେ ବହୁ ରାଜପୁତ ସୈନ୍ୟ ପ୍ରାଣ ହରାଇଲେ । ଗଜପତିଙ୍କ ଆକ୍ରମଣ କ୍ରମଶଃ ପ୍ରବଳ ହେବାରୁ ଅବଶିଷ୍ଟ ରାଜପୁତ ସୈନ୍ୟ ଏକ କୌଶଳ ଅବଲମ୍ବନ କଲେ । ସେମାନେ ମନ୍ଦିର ମଧ୍ୟରେ ଥିବା ରୋଷଘରର ବାଉଁଶ ସବୁ ଓ ଠାକୁରଙ୍କ ଭଣ୍ଡାର ଘରେ ଥିବା ଘୃତ, ତୈଳ ଓ ଲୁଗା ପ୍ରଭୃତିକୁ ଠିକ ଠିକ କରି ପ୍ରତି ବାଉଁଶ ଅଗରେ ଗୁଡ଼ାଇଲେ । ତା'ପରେ କନା ଦେହରେ ଘିଅ ଓ ତେଲ ପ୍ରଭୃତି ଢାଳି ପ୍ରତ୍ୟେକରେ ନିଆଁ ଲଗାଇ ଦେଲେ । ସେମାନେ ନିଆଁ ହୁକା ଓ କନାଟି ଗୁଡ଼ିକ ରଥ ଉପରେ ଫିଙ୍ଗିବାରୁ ବହୁତ ଓଡ଼ିଆ ସୈନ୍ୟ ଜଳିପୋଡ଼ି ମଲେ । ଅବଶିଷ୍ଟ ସୈନ୍ୟ ପ୍ରାଣ ବିକଳରେ ପଚ୍ଛପ୍ରକୁ ମାଡ଼ିକୁଦି ପଳାଇଗଲେ । ରଥ ଗୁଡ଼ିକ ହୁ ହୁ ହୋଇ ଜଳି ଉଠିଲା । ତଥାପି ପୁରୁଷୋତ୍ତମଦେବ ଆକ୍ରମଣ ଚଳାଇଥିଲେ ।

କେଶୋଦାସ ଘୋର ବିପଦରେ ପଡ଼ିଥିବା ସମ୍ବାଦ ବଙ୍ଗ ସୁବାଦାର ଇସଲାମ ଖାଁଙ୍କ ନିକଟରେ ପହଞ୍ଚିବାରୁ ସେ ଖ୍ୱାଜା ତାହିର ମହମ୍ମଦ ବକ୍ସି ନାମକ ସେନାପତିଙ୍କୁ ଓଡ଼ିଶା ସୁବାଦାର ହାସିମ ଖାଁଙ୍କ ନିକଟକୁ ପଠାଇଲେ । ବକ୍ସି କଟକରେ ପହଞ୍ଚି ହାସିମ ଖାଁ ଓ ତାଙ୍କ କର୍ମଚାରୀମାନଙ୍କ ଉପରେ ଅତ୍ୟନ୍ତ ବିରକ୍ତ ହେଲେ । ହାସିମ ଖାଁ ଓ ବକ୍ସି ବହୁ ସୈନ୍ୟ ସହ କେଶୋଦାସଙ୍କୁ ସାହାଯ୍ୟ କରିବାକୁ ଗଲେ । ବଙ୍ଗ ଓ ଓଡ଼ିଶା ସୁବାଦାରଙ୍କ ମିଳିତ ସେନା ଦ୍ୱାରା ଆକ୍ରମଣର ଭୟାବହ ପରିଣାମ ଆଶଙ୍କା କରି ରାଜା ପୁରୁଷୋତ୍ତମ ଦେବ ବିଦ୍ୟାଧରଙ୍କ ପରାମର୍ଶରେ କେଶୋଦାସଙ୍କ ସହିତ ସନ୍ଧି କଲେ ।

ଏହି ସନ୍ଧିର ସର୍ତ୍ତ ରହିଲା ଯେ ପୁରୁଷୋତ୍ତମଦେବ ବାଦସାହଙ୍କ ନିକଟକୁ ନିଜ କନ୍ୟା ପଠାଇବେ, ତିନିଲକ୍ଷ ଟଙ୍କା ପେସକସ ସ୍ୱରୂପ ଦେବେ ଓ, ନିଜର ଭଉଣୀକୁ କେଶୋଦାସଙ୍କୁ ବିବାହ କରାଇବେ ଏବଂ କେଶୋଦାସ ଓ ତାଙ୍କ ଲୋକଙ୍କୁ ଲକ୍ଷେ ଟଙ୍କା ଦେବେ ।

ଏହି ସନ୍ଧି ପରେ କେଶୋଦାସ ନିଜର ଅବଶିଷ୍ଟ ଚାରିଶତ ସୈନ୍ୟ ସହ ପୁରୀ ମନ୍ଦିରରୁ ବାହାରକୁ ଆସିଲେ । ହାସିମ ଖାଁ ଓ ବକ୍ସି ସୈନ୍ୟ ନେଇ କେଶୋଦାସଙ୍କୁ ସାହାଯ୍ୟ କରିବା ପୂର୍ବରୁ ସେ ସନ୍ଧି ସର୍ତ୍ତ ଅନୁଯାୟୀ ୫୦ ଜଣ ଅଶ୍ୱାରୋହୀ ସୈନ୍ୟ ସହ ଖୁର୍ଦ୍ଧାରେ ପହଞ୍ଚି ପୁରୁଷୋତ୍ତମ ଦେବଙ୍କ ଭଗିନୀଙ୍କୁ ବିବାହ କରିଥିଲେ । ତାଙ୍କୁ ଯୌତୁକ ସ୍ୱରୂପ ଗୋଟିଏ ଅକର୍ମଣ୍ୟ ଓ ଦୁର୍ବଳ ହସ୍ତୀ ଦିଆଯାଇଥିବାରୁ ସେ ବଳ ଦୁର୍ଗର ସିଂହଦ୍ୱାର ନିକଟରେ ବନ୍ଧା ଯାଇଥିବା ଗୋଟିଏ ବଡ଼ ହାତୀ ଓ ପଞ୍ଚଟି ମାଈହାତୀ ଘେନ ହଠାତ୍ ଚାଲିଗଲେ । ସେ ତାଙ୍କ ନବ ବିବାହିତା ସ୍ତ୍ରୀଙ୍କୁ ପ୍ରଥମେ ଘୋଡ଼ାରେ ବସାଇ ପଠାଇ ଦେଲେ । ଏହି ଘଟଣାରେ ବିଶେଷ ଉତ୍ତ୍ୟକ୍ତ ହୋଇ ଓଡ଼ିଆ ସୈନ୍ୟମାନେ ତାଙ୍କୁ ଆକ୍ରମଣ କଲେ । କିନ୍ତୁ ସେ ସେମାନଙ୍କୁ ହତ୍ୟା କରି ଘାଟି କାଟି ପୁରୀ ଚାଲିଗଲେ । ପୁରୀରେ ପହଞ୍ଚି ସେ ସନ୍ଧି ସର୍ତ୍ତ ଅନୁଯାୟୀ ବାଦସାହଙ୍କ ପାଇଁ କନ୍ୟା ଓ ଧନରତ୍ନ ତୋଇବା ପାଇଁ ରାଜାଙ୍କ ନିକଟକୁ ଏକ ଧମକ ପୂର୍ଣ୍ଣ ପତ୍ର ଦେଲେ । ରାଜା ଭୟରେ ସେ ସମସ୍ତ ପଠାଇ ଦେଲେ । ଇତ୍ୟବସରରେ ତାହିର ମହମ୍ମଦ ଓ ହାସିମ୍ ଖାଁ ବହୁ ସୈନ୍ୟ ସହ କେଶୋଦାସଙ୍କ ନିକଟରେ ପୁରୀରେ ପହଞ୍ଚିଲେ । କେଶୋଦାସ ରାତରେ ସେମାନଙ୍କ ସହିତ ଦେଖା କଲେ ବାର୍ତ୍ତା ଓ ବହୁ ଅନୁନୟ ବିନୟ ପରେ ବକ୍ସିଙ୍କ ସହିତ କଥାବାର୍ତ୍ତା ହେଲେ । ସେ ନିଜର ଜୀବିତ ଥିବା ଚାରିଶତ ରାଜପୁତ ସୈନ୍ୟଙ୍କୁ ମଧ୍ୟ ସେମାନଙ୍କ ଖିଲୁତ ଯୋଗ୍ୟ କାର୍ଯ୍ୟରୁ ଛାଡ଼ ଦେଇଥିଲେ ।

ଏହାପରେ କେଶୋଦାସ ନଗରପଦରେ କଟକ ଫେରିଗଲେ । ଏହି କାର୍ଯ୍ୟର ପୁରସ୍କାର ସ୍ୱରୂପ ବାଦସାହ କେଶୋଦାସଙ୍କୁ ଚାରିହଜାର ଅଶ୍ୱାରୋହୀ ସୈନ୍ୟ

ରଖିବା ଅଧିକାର ଦେଲେ ଏବଂ ତାଙ୍କର ସମ୍ମାନବୃଦ୍ଧି ଓ ଅନ୍ୟମାନଙ୍କୁ ଏପରି କାର୍ଯ୍ୟ କରିବାକୁ ଉତ୍ସାହ ଦେବା ପାଇଁ ତାଙ୍କୁ ଏକ ପତାକା, ମୂଲ୍ୟବାନ ପୋଷାକ, ମଣିମୁକ୍ତା ଖଚିତ ଖଣ୍ଡା ଓ କମରବନ୍ଧି, ଗୋଟିଏ ଭଲ ଘୋଡ଼ା, ଚିତ୍ରିତ ଜିନ୍ ଓ ଲଗାମ ପ୍ରଦାନ କରିଗଲେ । (୧ କ)

ଜାହାଙ୍ଗୀରଙ୍କ ରାଜତ୍ୱ ଆରମ୍ଭରେ ମୁସଲମାନଙ୍କ ପୁରୀ ମନ୍ଦିର ଆକ୍ରମଣ ସମ୍ବନ୍ଧରେ ମାଦଳାପାଞ୍ଜିରେ ନିମ୍ନୋକ୍ତ ବିବରଣ ମିଳେ । "ଏ ମହାରାଜାଙ୍କ ଅ ୮ ଙ୍କେ ଖୁରୁମ୍ ଅଇଲା । ପରମେଶ୍ୱରଙ୍କୁ ଚନ୍ଦନ ହୁଡ଼ାର ଚନ୍ଦ୍ରଦୋଳ ବିଜେ କରାଇ କପିଳେଶ୍ୱରପୁର ଶାସନ ପଞ୍ଚମୁଖୀ ଗୋସାମଣୀଙ୍କ ପାଏ ଗଲେ । ସେଠାରେ ଦୋଳଯାତ୍ରା ହୋଇ ବାହୁଡ଼ା ବିଜେ କଲେ ।" କିନ୍ତୁ ଖୁରୁମଙ୍କ ପୁରୀ ଆଗମନ ସମ୍ବନ୍ଧରେ ଏ ପର୍ଯ୍ୟନ୍ତ ଅନ୍ୟ କୌଣସି ସୂତ୍ରରୁ ଜଣାଯାଇ ନାହିଁ । ତାଙ୍କୁ ବଙ୍ଗ ସୁବାଦାର ଇସଲାମ ଖାଁଙ୍କ ସେନାପତି ମିର୍ଜା ଖୁରୁମଙ୍କ ସହିତ ଚିହ୍ନିତ କରାଯାଇ ପାରେ । (୧ ଖ)

କେଶୋଦାସଙ୍କ ଆକ୍ରମଣ ସମ୍ବନ୍ଧରେ ପାଞ୍ଜିରେ ଥିବା ବିବରଣ ସଂକ୍ଷିପ୍ତ ଓ ସୁସଂଗତ । "ଏ ମହାରାଜାଙ୍କ ଯାଷୀ ପଟଣ କେସୋମାରୁ ଅସି ଗୁଣ୍ଡିଚା ଯାତ୍ରା ଦେଖି ଦୁଇ ଦେଉଳ ଧଇଲା । ପରମେଶ୍ୱର ଗୁଣ୍ଡିଚା ଘରେ ବିଜେ କରିଥିଲେ । ତିନି ରଥେ ପୋଡ଼ି ଦେଲା । ପରମେଶ୍ୱରଙ୍କୁ ଚନ୍ଦ୍ରଦୋଳରେ ବିଜେ କରାଇ ବାହାରଙ୍କ କାନ୍ଧେ ଦେଇ ବଡ଼ ଦେଉଳେ ବିଜେ କରାଇଲେ । ମାସେ ପର୍ଯ୍ୟନ୍ତ ଦାରବନ୍ଧାରେ ରହିଲେ । ପରମେଶ୍ୱରଙ୍କୁ ଶୀତଳ ଭୋଗ ମୁଣ୍ଡୋଷ ହୋଇଥିଲେ । ରାଜାଙ୍କ ସଙ୍ଗେ ପୀରତି ହୋଇଗଲା । ଗୁଣ୍ଡିଚା ଘର ଠାରେ ଅନେକ ମାଇଲା ।" "ଏ ମହାରାଜାଙ୍କ ଅ ୧୪ ଙ୍କେ ହାମିମ ଅଇଲା । ସେବକେ ପରମେଶ୍ୱରଙ୍କୁ ନେଇ ଖୁରୁଧାରେ ଗୋପାଳ ଦେଉଳେ ବିଜେ କରାଇଥିଲେ । ଅ ୧୫ ଙ୍କେ ଶ୍ରୀପୁରୁଷୋତ୍ତମ ବଡ଼ ଦେଉଳେ ବିଜେ କରାଇଲେ । (୨)

ମିର୍ଜାନାଥନ୍ ୧୬୦୮ ରୁ ୧୬୨୪ ଖ୍ରୀଷ୍ଟାବ୍ଦ ମଧ୍ୟରେ ଘଟିଥିବା ସମସ୍ତ ଯୁଦ୍ଧର ବିବରଣୀ ଦେଇଛନ୍ତି । ତାଙ୍କ ମତରେ ପୁରୀ ମନ୍ଦିର ଆକ୍ରମଣ ୧୬୧୯-୨୦ ଖ୍ରୀଷ୍ଟା-

---

(୧ କ) ମିର୍ଜାନାଥନ୍ କୃତ 'ବହାରିସ୍ତାନ-ଇ-ଘାଇବି' (Babāristan i-Ghaybi)ର ଇଂରେଜୀ ଅନୁବାଦ, ପ୍ରଥମ ଭାଗ, ପୃ ୩୪-୩୮

(୧ ଖ) " ପୃ ୬୦

(୨) ମାଦଳା ପାଞ୍ଜି, ପୃ ୬୫

ଭିତରେ ଘଟିଥିଲା । ସେ ସୁଦୂର ଗୌହାଟୀରେ ରହି ଶୁଣାକଥାରେ ବିଶ୍ୱାସ କରି ଉକ୍ତ ଯୁଦ୍ଧର ବିବରଣ ଲେଖିଥିବାରୁ ଏହା ଅତିରଞ୍ଜନ ଦୋଷଦୁଷ୍ଟ ଓ ପ୍ରଶସ୍ତିମୂଳକ ସେ ତିନୋଟି ରଥ ପୋଡ଼ା ହେବା କଥା ଶୁଣି ଅନେକ ରଥ ପୋଡ଼ା ହେବା କଥା ଲେଖିଛନ୍ତି । ପୁରୁଷୋତ୍ତମ ଦେବ ତିନି ଚାରି ଲକ୍ଷ ପାଇକ ନେଇ ପୁରୀ ମନ୍ଦିର ଘେରାଉ କରିଥିବା ବର୍ଣ୍ଣନା ଆଦୌ ବିଶ୍ୱାସଯୋଗ୍ୟ ନୁହେଁ ।

ଏବେ ଖୁର୍ଦ୍ଧା ସବ୍‌ଡିଭିଜନ ଲୋକସଂଖ୍ୟା ୪ ଲକ୍ଷ ମାତ୍ର । ସେ ସମୟରେ ନିଶ୍ଚୟ ଏହାର ପ୍ରାୟ ଅଧା ଥିବେ । ସେମାନଙ୍କ ମଧ୍ୟରୁ ତିନି ଚାରି ଲକ୍ଷ ପାଇକ ସଂଗ୍ରହ କରିବା କଳ୍ପନାତୀତ । ଏହି ଦୃଷ୍ଟିରୁ ବିଚାର କଲେ ମିର୍ଜାନାଥନ୍ ବର୍ଣ୍ଣିତ ସନ୍ଧିସର୍ତ୍ତ ମଧ୍ୟ ବିଶ୍ୱାସଯୋଗ୍ୟ ନୁହେଁ । ଖୁର୍ଦ୍ଧା ରାଜା ନିଜ କନ୍ୟାକୁ ଜାହାଙ୍ଗୀରଙ୍କ ପାଇଁ ଦିଲ୍ଲୀ ପଠାଇଥିବା ଗୋଟିଏ ସନ୍ଧି ସର୍ତ୍ତ ରୂପେ ବର୍ଣ୍ଣିତ ହୋଇଛି । ଏପରି ଗୋଟିଏ ପ୍ରସିଦ୍ଧ ଘଟଣା ଘଟିଥିଲେ ଜାହାଙ୍ଗୀର ସ୍ୱହସ୍ତଲିଖିତ ଆତ୍ମଚରିତରେ ଏହା ନିଶ୍ଚୟ ଲିପିବଦ୍ଧ କରିଥାନ୍ତେ । କିନ୍ତୁ ନାଥନ୍ ବର୍ଣ୍ଣିତ ସନ୍ଧିର କୌଣସି ଉଲ୍ଲେଖ ସେଥିରେ ନାହିଁ । କେଶୋଦାସ ପୁରୁଷୋତ୍ତମ ଦେବଙ୍କୁ ସଂପୂର୍ଣ୍ଣ ରୂପେ ପରାସ୍ତ କରିଥିଲେ ତାଙ୍କୁ ଉଦ୍ଧାର କରିବା ନିମିତ୍ତ ବଙ୍ଗ ଓ ଓଡ଼ିଶାର ସୁବାଦାର ଦ୍ୱୟ ସୈନ୍ୟ ପଠାଇ ନ ଥାନ୍ତେ ଓ ନିଜର ରାଜପୁତ ସୈନ୍ୟମାନଙ୍କୁ ଖୁର୍ଦ୍ଧା ଯୋଗୁଁ କାର୍ଯ୍ୟରୁ ତଡ଼ି ଦେଇ ନ ଥାନ୍ତେ ।

ମିର୍ଜାନାଥନ୍ ପ୍ରଦତ୍ତ ଅତିରଞ୍ଜିତ ବିବରଣ ପାଠ କରି ଏତିକି ସତ୍ୟ ମିଳେ ଯେ ଗୁଣ୍ଡିଚା ଯାତ୍ରା ଯୋଗୁଁ ଜଗନ୍ନାଥ ମହାପ୍ରଭୁ ଗୁଣ୍ଡିଚା ଘରେ ଥିବାରୁ ସମସ୍ତଙ୍କ ଦୃଷ୍ଟି ସେଠାରେ ନିବଦ୍ଧ ଥିଲା । ଏହି ସୁଯୋଗରେ ରାଜପୁତ ସେନାପତି କେଶୋ-ଦାସ ଜଗନ୍ନାଥ ମନ୍ଦିର ଦର୍ଶନ କରିବା ଛଳନାରେ ବହୁ ଛଦ୍ମବେଶୀ ରାଜପୁତ ସୈନ୍ୟ ସହ ଅତର୍କିତ ଭାବରେ ମନ୍ଦିରରେ ପଶି ଜଗନ୍ନାଥଙ୍କ ଭଣ୍ଡାର ଲୁଟି କରି ନେଲେ । କେବଳ ସେତିକି ନୁହେଁ; ହିନ୍ଦୁ ଓଡ଼ିଆ ମଧ୍ୟ ସମଗ୍ର ହିନ୍ଦୁ ସମାଜର ପୂଜ୍ୟ ଓ ନମସ୍ୟ ତିନିରଥକୁ ମଧ୍ୟ ପୋଡ଼ି ଜାଳି ଦେଲେ । ପୁରୁଷୋତ୍ତମ ଦେବ ପ୍ରବଳ ପ୍ରତିରୋଧ କରିବାରୁ ତାଙ୍କ ସହିତ ସନ୍ଧି କରିବାର ଛଳନା କରି ବହୁ ଓଡ଼ିଆ ସୈନ୍ୟଙ୍କୁ ହତ୍ୟା କରିଥିଲେ । ତାଙ୍କର ଉପଦ୍ରବ ଯୋଗୁଁ ଆଠ ମାସ ପର୍ଯ୍ୟନ୍ତ ପୁରୀରେ ଅନ୍ନ ମହାପ୍ରସାଦ ଭୋଗ ବନ୍ଦ ହୋଇଗଲା । ସେ ହିନ୍ଦୁ ହୋଇ ପ୍ରସିଦ୍ଧ ହିନ୍ଦୁ ମନ୍ଦିର ଆକ୍ରମଣ ଓ ଲୁଣ୍ଠନ କରି ଥିବାରୁ ଜାହାଙ୍ଗୀରଙ୍କ ଅତ୍ୟନ୍ତ ପ୍ରିୟ ପାତ୍ର ହୋଇ ଥିବାର ତାଙ୍କ ଜୀବନ-ଚରିତରୁ ଜଣାଯାଏ ।

'Kesho Das Maru, who is a Rajput of the province of Mairtha and is greater in loyalty than his contem-

poraries. I promoted him to the rank of 1500." (3)

ଯେଉଁ ବୀର ରାଜପୁତ ଜାତିର ଆବାଳବୃଦ୍ଧବନିତା ମୁସଲମାନ ରାଜତ୍ୱ ଆରମ୍ଭରୁ ସ୍ୱଧର୍ମ ଓ ଦେଶର ରକ୍ଷା ପାଇଁ ଚିରକାଳ ମୁସଲିମ ବାହିନୀର ପ୍ରବଳ ପ୍ରତିରୋଧ କରି ଆସୁଥିଲେ, ଆକବରଙ୍କ କୂଟନୀତି ଫଳରେ ସେମାନଙ୍କର ଜପର ଘୋର ନୈତିକ ଅଧଃପତନ ଘଟିଥିଲା ତାହା କେଶୋଦାସ ମାରୁଙ୍କ ନନ୍ଦନୀୟ କାର୍ଯ୍ୟ କଳାପରେ ପ୍ରତିଫଳିତ ହୋଇଅଛି ।

## ସୁବାଦାର କଲ୍ୟାଣମଲ୍ଲଙ୍କ ଖୁରୁଧା ଆକ୍ରମଣ :—

ହାସିମ ଖାଁଙ୍କ ପରେ ରାଜା କଲ୍ୟାଣମଲ୍ଲ ଓଡ଼ିଶାର ସୁବାଦାର ହେଲେ (୧୬୧୧-୧୬୧୭) । ସେ କଟକରେ ଅଧିଷ୍ଠିତ (୬-୭-୧୬୧୧) ହେବା ପରେ କେଶୋଦାସ ମାରୁଙ୍କ ପରି ଜାହାଙ୍ଗୀରଙ୍କ ସନ୍ତୋଷ ବିଧାନ ନିମିତ୍ତ ପୁନର୍ବାର ୧୬୧୧ ଖ୍ରୀଷ୍ଟାବ୍ଦରେ ଖୁରୁଧା ରାଜ୍ୟ ଆକ୍ରମଣ କଲେ । ଏ ସଂପର୍କରେ ମିର୍ଜାନାଥନ ଲେଖିଛନ୍ତି—

"The Rāja (Kalyan) thought in his mind that he would accomplish such a service which would not only draw the attention of his master but would also keep the high and low of that region under his control. He then put in the fore front of his mind the idea of the conquest of Khurdah and marched against Rāja Purushottama Deva When a large portion of his territory was attacked and looted, Purushottama Deva × × × expressed his desire to surrender. He offered his daughter as a present for the service of the Emperor and three hundred thousand rupees as peshkash to the imperial exchequer and the best of his elephants Sisnāga for the use of the Emperor. Thus he submitted to the imperialists by handing over the bride to the Rāja with a hundred thousand rupees and saved himself from the attack of the Rāja and the imperial officers. The Raja after gaining the victory returned to Cuttack and sent his bride (dolah)

---

(3) Tuzuk-i-Jahangiri (ତୁଜୁକ୍ ଇ ଜାହାଙ୍ଗୀର) ବା ଜାହାଙ୍ଗୀରଙ୍କ ଆତ୍ମ ଜୀବନ-ଚରିତ, ଇଂରେଜୀ ଅନୁବାଦ, ପୃ ୨୧

along with the elephant Sisnag and all the peshkash in cash and kind in charge of trustworthy officers to the august court." (4)

ଉକ୍ତ ଚିଠାଂଶରୁ ଜଣାଯାଏ ଯେ ରାଜା କଲ୍ୟାଣ ବାଦଶାହଙ୍କ ଦୃଷ୍ଟି ଆକର୍ଷଣ ଓ ଖୁରୁଧାର ଯୁଦ୍ଧପ୍ରିୟ ଲୋକମାନଙ୍କୁ ଦମନ କରିବା ନିମିତ୍ତ କଟକର ସୁବାଦାର ହେବାର ଅଳ୍ପ ଦିନ ପରେ ପୁରୁଷୋତ୍ତମଙ୍କ ବିରୁଦ୍ଧରେ ଯୁଦ୍ଧ ଆରମ୍ଭ କରିଦେଲେ । ତାଙ୍କ ରାଜ୍ୟର ବହୁ ଅଂଶ ଆକ୍ରମିତ ଓ ଲୁଣ୍ଠିତ ହେବାରୁ ସେ ଆତ୍ମସମର୍ପଣ ପାଇଁ ସମ୍ବାଦ ପ୍ରେରଣ କଲେ । ସେ ସ୍ୱୀୟ କନ୍ୟା ଓ ଶେଷନାଗ ନାମକ ତାଙ୍କର ଉତ୍କୃଷ୍ଟ ହସ୍ତୀକୁ ବାଦସାହଙ୍କ ନିକଟକୁ ଉପହାର ସ୍ୱରୂପ ପଠାଇବା ଏବଂ ସମ୍ରାଟଙ୍କ ରାଜକୋଷକୁ ତିନିଲକ୍ଷ ଟଙ୍କା ପେସକସ ଦେବା ପାଇଁ ସ୍ୱୀକୃତ ହୋଇଥିଲେ । ଏହି ପ୍ରକାରେ ସେ ସ୍ୱୀୟ କନ୍ୟା ଓ ଏକଲକ୍ଷ ଟଙ୍କା ପ୍ରଦାନ କରି ନିଜକୁ ଆକ୍ରମଣରୁ ରକ୍ଷା କରିଥିଲେ । ଖୁରୁଧା ବିଜୟ ପରେ ରାଜା କଲ୍ୟାଣ କଟକକୁ ଫେରିଗଲେ ଏବଂ ବିଶ୍ୱସ୍ତ କର୍ମଚାରୀଙ୍କ ଦାୟିତ୍ୱରେ ବାଦସାହଙ୍କ ନିକଟକୁ ରାଜକନ୍ୟା (ଦୋଳା) ଶେଷନାଗ ହସ୍ତୀ ଏବଂ ନଗଦ ଟଙ୍କା ଓ ମଣିମୁକ୍ତାଦି ରତ୍ନ ଆକାରରେ ପ୍ରଦତ୍ତ ପେସକସ ପଠାଇ ଦେଇଥିଲେ ।

ମାଦଳାପାଞ୍ଜିରେ ରଜା କଲ୍ୟାଣଙ୍କ ଆକ୍ରମଣ ସମ୍ବନ୍ଧରେ ନିମ୍ନୋକ୍ତ ବିବରଣ ମିଳେ । "ଅ ୧୭ ଙ୍କେ ରାଜା କଲ୍ୟାଣ ଅଇଲେ । ଦାସ ବିଦ୍ୟାଧରଙ୍କୁ କପଟେ ଗାଡ଼ିଲେ, ଘଟଚଳି ଟାଙ୍ଗିରେ ଭେଟ କରାଇଲେ । ଭେଟରେ ଢେ଼ରା ଭିତରେ ବିଦ୍ୟାଧରଙ୍କୁ ଧରାଇଲେ । ଷୋଡ଼ଶ ସେନାପତିଙ୍କ ମରାଇ ପକାଇଲେ । ଏଥିନେ ପରମେଶ୍ୱର ମଞ୍ଚସାନାସିରେ ଥିଲେ । ଏ ଗୋଳ ଶୁଣି ଗୁରୁବାଦାର ଗଡ଼ ଦ୍ୱାରେ ରୂପରେ ବିଜେ କରିଥିଲେ । ଅ ୧୮ ଙ୍କେ ରାଜା କଲ୍ୟାଣକୁ ବେଢ଼ି ମାଇଲେ । ପଳାଇବା ବେଳେ ବାଘସରପୁର ଠାରେ ମାରି ପକାଇଲେ । କଟକ ପରିପନ୍ତେ ସବୁ ଘେନିଲେ ଛଡ଼ାଇ ।" (୫)

ମିର୍ଜାନାଥନ୍ ଓ ମାଦଳା ପାଞ୍ଜି ବର୍ଣ୍ଣନା ମଧ୍ୟରେ ବହୁ ପାର୍ଥକ୍ୟ ଦେଖାଯାଏ । ଏଥିରୁ ଜଣାଯାଏ ଯେ ରାଜା କଲ୍ୟାଣ, ମନ୍ତ୍ରୀ ଓ ସୁଦକ୍ଷ ସେନାପତି ଦାସ ବିଦ୍ୟାଧରଙ୍କ ସହିତ କପଟ ମୈତ୍ରୀ ସ୍ଥାପନ କରି ତାଙ୍କୁ ଢେ଼ରା ଭିତରେ ବିଶ୍ୱାସଘାତକତା ପୂର୍ବକ ମାରି ପକାଇଲେ । ଏହା ପରେ ସେ ସେହିପରି ଷୋଳଜଣ

---

(୪) ବହାରସ୍ତାନ-ଇ-ଘାଇବ, ପୃ ୧୪୪-୧୪୫

(୫) ମାଦଳା ପାଞ୍ଜି, ପୃ ୬୫-୬୬

ସୁଦକ୍ଷ ଓଡ଼ିଆ ସେନାପତିଙ୍କୁ ହତ୍ୟା କରିଥିଲେ । ଏଥିରେ ଗଜପତିଙ୍କ ଦୁର୍ଦ୍ଦାନ୍ତ ପାଇକ ସେନା ଉତ୍କ୍ଷିପ୍ତ ହୋଇ ମୋଗଲ ସେନାକୁ ପ୍ରବଳ ଭାବରେ ଆକ୍ରମଣ କରି ସ୍ୱରାଜ୍ୟରୁ ଘଉଡ଼ାଇ ଦେଲେ ଓ କଟକ ପର୍ଯ୍ୟନ୍ତ ଅଧିକାର କରିନେଲେ । ରାଜା କଲ୍ୟାଣ ପ୍ରାଣ ବିକଳରେ ପଳାଇଲା ବେଳକୁ ତାଙ୍କୁ ପିପିଲି ନିକଟବର୍ତ୍ତୀ ବାଘସର-ପୁର ଠାରେ ବେଢ଼ି ମାରିପକାଇଲେ ।

ଦାସ ବିଦ୍ୟାଧରଙ୍କୁ କପଟରେ ମାରି ପକାଇବା ବିଷୟ କବିଭୂଷଣ ଗୋବିନ୍ଦ ସାମନ୍ତରାୟ କୃତ 'ସ୍ୱରସର୍ବସ୍ୱମ୍' ଗ୍ରନ୍ଥ ଉତ୍ତରାର୍ଦ୍ଧର ଶେଷ ଅଧ୍ୟାୟରୁ ଜଣାଯାଏ । ଯଥା :—

"ଜଘାନ ରାଜା କପଟେନ ମନ୍ତ୍ରିଣଂ
ତଂଦାସବିଦ୍ୟାଧର ମଙ୍କଶିଷୟା ।"

ଦାସ ବିଦ୍ୟାଧରଙ୍କ ବିଧବା ପତ୍ନୀ ଆତ୍ମରକ୍ଷା ପାଇଁ ସ୍ୱୀୟ ଜାମାତା 'ବନ୍ଧ-ମେତ୍ରୀପତି' ବା ବାଙ୍କୀ ରାଜାଙ୍କ ନିକଟକୁ ପଳାଇଗଲେ । ରାଜା କଲ୍ୟାଣ କୃତ ଏହି ଜଘନ୍ୟ ହତ୍ୟାକାଣ୍ଡ ପରେ ଉତ୍କଳଦେଶ ବା ଖୁର୍ଦ୍ଧା ଅଞ୍ଚଳରେ ଭୀଷଣ ବିପ୍ଳବ ଘଟିଥିଲା । ଯଥା :—

"ଅଥୋ ତ୍ର ଦେଶେ ଉଦନନ୍ତରଂ ମହା-
ନୁପପ୍ଳବୋଽଜାୟତ ଲୋକଦୁଃସହଃ ।" (୭)

ଏହି ଘୋର ବିପ୍ଳବ ସମୟରେ ଖୁର୍ଦ୍ଧାର ଦୁର୍ଦ୍ଧର୍ଷ ପାଇକମାନେ ମାତି ଉଠି ମୋଗଲ ସେନାକୁ କଟକ ପର୍ଯ୍ୟନ୍ତ ଘଉଡ଼ାଇ ନେଇଥିବା ବର୍ଣ୍ଣନା ମନସ୍ତାତ୍ତ୍ୱିକ ଦୃଷ୍ଟିରୁ ସତ୍ୟ ପରି ଜଣାଯାଏ । କିନ୍ତୁ ମାଦଳାପାଞ୍ଜିରେ ପ୍ରଦତ୍ତ ବାଘସର-ପୁରଠାରେ ରାଜା କଲ୍ୟାଣଙ୍କ ହତ୍ୟା ବୃତ୍ତାନ୍ତ ସତ୍ୟ ନୁହେ । କାରଣ ସେ ୧୬୧୭ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ମାସ ୮ ତାରିଖରେ ବାଦସାହ ଜାହାଙ୍ଗୀରଙ୍କୁ ସାକ୍ଷାତ କରିଥିବାର ବିଶ୍ୱାସଯୋଗ୍ୟ ପ୍ରମାଣ ମିଳେ । ଉକ୍ତ ପାଇକ ବାହିନୀ ଅନ୍ୟ କୌଣସି ରାଜପୁତ ସର୍ଦ୍ଦାରଙ୍କୁ ହତ୍ୟା କରି ପରମ ଶତ୍ରୁ ରାଜା କଲ୍ୟାଣକୁ ମାରି-ଦେଲେ ବୋଲି ମନେକଲେ ।

ଗଜପତି ସ୍ୱୀୟ କନ୍ୟାକୁ ଦୋଳାରେ ବସାଇ ବାଦସାହଙ୍କ ନିକଟକୁ ପଠାଇ-ଥିବା କଥା ଯାହା ମିର୍ଜାନାଥନ୍ ଲେଖିଛନ୍ତି ତାହା ଆଦୌ ବିଶ୍ୱାସଯୋଗ୍ୟ ନୁହେ ।

---

(୭) ମିଉଜିୟମରେ ସଂରକ୍ଷିତ 'ସ୍ୱରସର୍ବସ୍ୱମ୍' ଉତ୍ତରାର୍ଦ୍ଧ ଶେଷ ସଂଗ୍ରହରୁ ଗୃହୀତ ।

କାରଣ ଓଡ଼ିଶା ଗଜପତିମାନେ କନ୍ୟା ଜନ୍ମ ହେଲେ ତାକୁ ଘରେ ରଖନ୍ତି ନାହିଁ । ତାକୁ ନିଜ ଭାଇ ଭଉଣୀ ବା ମାମୁଁ ଘରକୁ ପଠାଇ ଦିଅନ୍ତି । ଏ ପରଂପରା ଏ ପର୍ଯ୍ୟନ୍ତ ଗଜପତି ପରିବାରରେ ପ୍ରଚଳିତ । ଆଉ ମଧ୍ୟ ଜାହାଙ୍ଗୀର ଏପରି ଏକ ପ୍ରସିଦ୍ଧ ଘଟଣା ସ୍ୱୀୟ ଆତ୍ମଚରିତରେ ଆଦୌ ଉଲ୍ଲେଖ କରିନାହାନ୍ତି । ସେ ଯୁଗରେ କେତେକ ଧର୍ମଦ୍ରୋହୀ ରାଜପୁତ ରାଜା ମୋଗଲ ରାଜପ୍ରାସାଦକୁ ସ୍ୱୀୟ କନ୍ୟା ଓ ପତ୍ନୀ ମାନଙ୍କୁ ପଠାଇ ବାଦସାହଙ୍କ ପ୍ରୀତି ଅର୍ଜନ କରିଥିବାର ଦୃଷ୍ଟାନ୍ତ ଦେଖାଯାଏ । ରାଜା କଲ୍ୟାଣ ବାଦସାହଙ୍କୁ ଖୁସି କରିବା ପାଇଁ ଅନ୍ୟ କାହାର ଝିଅକୁ ଧରି ଗଜପତିଙ୍କ ଝିଅ ବୋଲି ଦିଲ୍ଲୀ ପଠାଇ ଦେଇଥିବେ । ଏହି ଦୃଷ୍ଟିରୁ ବିଚାର କଲେ ତୋଷାମୋଦକାରୀ ମୁସଲମାନ ଐତିହାସିକ ମିର୍ଜାନାଥନ୍‌ଙ୍କ ବିବରଣୀକୁ ଅଭ୍ରାନ୍ତ ସତ୍ୟ ବୋଲି ଗ୍ରହଣ କରାଯାଇ ନ ପାରେ । କେବଳ ବନପୁରର ଅଦ୍ଭୁତ 'ଶେଷ ନାଗ' ନାମକ ଉତ୍କୃଷ୍ଟ ହସ୍ତୀ ଓ ବହୁ ଲୁଣ୍ଠିତ ଧନରତ୍ନ ରାଜା କଲ୍ୟାଣ ମୋଗଲ ବାଦସାହଙ୍କ ନିକଟକୁ ପଠାଇଥିବା ବିବରଣ ସତ୍ୟ ମୂଳକ ଜଣାଯାଏ ।

## ସୁବାଦାର ମକରମ୍ ଖାଁଙ୍କ ଖୋର୍ଦ୍ଧା ଆକ୍ରମଣ :—

ରାଜା କଲ୍ୟାଣଙ୍କ ପରେ ମକରମ୍ ଖାଁ ୧୬୧୭ରେ କଟକର ସୁବାଦାର ହେଲେ । ସେ ମଧ୍ୟ ପ୍ରଥମ ଦୁଇ ସୁବାଦାରଙ୍କ ପରି ଖୋର୍ଦ୍ଧା ରାଜ୍ୟ ଆକ୍ରମଣ କରି-ଥିଲେ । ମିର୍ଜାନାଥନ୍ ଏ ବିଷୟ ବର୍ଣ୍ଣନା କରି ନ ଥିଲେ ମଧ୍ୟ ବାଦସାହ ଜାହାଙ୍ଗୀର ସ୍ୱୀୟ ଆତ୍ମଚରିତରେ ଏହା ଉଲ୍ଲେଖ କରି ଗର୍ବ ଓ ଗୌରବ ଅନୁଭବ କରି-ଛନ୍ତି । ଯଥା :—

"At this time it was represented to me that Makarram Khan, son of Muazzam Khan, who was the governor of Orissa, had conquered the country of Khurda, and the Raja of that place had fled and gone to Rajamahendra × × × Between the province of Orissa and Golconda there were two Zamindars, one the Raja of Khurda and the second the Raja of Rajamahendra. The province of Khurda has come in to the possession of the servants of the court After this it is the turn of the country of Rajmahendra " (7)

ଅର୍ଥାତ୍ "ଏହି ସମୟରେ ମୋତେ ଜଣାଇ ଦିଆଗଲା ଯେ ଓଡ଼ିଶାର ସୁବା-ଦାର ଥିବା ମୁଅଜ୍ଜମ ଖାଁଙ୍କ ପୁତ୍ର ମକରରମ ଖାଁ ଖୋର୍ଦ୍ଧା ରାଜ୍ୟ ଆକ୍ରମଣ କରିବାରୁ

(୭) ତୁଜୁକ୍-ଇ-ଜାହାଙ୍ଗୀର, ପ୍ରଥମ ଖଣ୍ଡ, ପୃ ୪୩୩ ।

ସେଠାରୁ ରାଜା ପଳାଇ ଯାଇ ରାଜମହେନ୍ଦ୍ର ରାଜ୍ୟରେ ଆଶ୍ରୟ ଗ୍ରହଣ କରନ୍ତି । ଓଡ଼ିଶା ଓ ଗୋଲକୁଣ୍ଡା ପ୍ରଦେଶଦ୍ୱୟ ମଧ୍ୟରେ ଦୁଇଜଣ ଶକ୍ତିଶାଳୀ ଜମିଦାର ଅଛନ୍ତି । ପ୍ରଥମ ହେଉଛନ୍ତି ଖୁର୍ଦ୍ଧା ରାଜା ଓ ଦ୍ୱିତୀୟ ରାଜମହେନ୍ଦ୍ର ରାଜା । ଖୁର୍ଦ୍ଧା ରାଜ୍ୟ ବାଦଶାହଙ୍କ କର୍ମଚାରୀ ମାନଙ୍କ ଅଧିକାରଭୁକ୍ତ ହେଲାଣି । ଏହା ପରେ ରାଜମହେନ୍ଦ୍ର ରାଜ୍ୟର ପାଳି ପଡ଼ିବ ।"

ଖୁର୍ଦ୍ଧା ରାଜ୍ୟ ବିଜେତା ମକରମ ଖାଁଙ୍କ ସାହସିକ କାର୍ଯ୍ୟର ପୁରସ୍କାର ସ୍ୱରୂପ ତାଙ୍କ 'ମନସବ' ବୃଦ୍ଧି କରାଯାଇ ତାଙ୍କୁ ସମ୍ମାନାସ୍ପଦ ପୋଷାକପତ୍ର ଦିଆଗଲା ।

ଉଦ୍ଧୃତାଂଶରୁ ଜଣାଯାଏ ଯେ ଖୁର୍ଦ୍ଧା ରାଜ୍ୟ ଅତ୍ୟନ୍ତ ଶକ୍ତିଶାଳୀ ଥିବାରୁ ଏହାର ବିଜୟକୁ ବାଦଶାହ ବିଶେଷ ଗୁରୁତ୍ୱ ପ୍ରଦାନ କରୁଥିଲେ ଏବଂ ଏହା ସାଧିତ ହେବାରୁ ତାଙ୍କ ଜୀବନର ଗୋଟିଏ ଲକ୍ଷ୍ୟ ପୂର୍ଣ୍ଣ ହେଲା ବୋଲି ଭାବି ବିଶେଷ ଆତ୍ମ-ପ୍ରସାଦ ଅନୁଭବ କଲେ ।

ମାଦଳାପାଞ୍ଜିରେ ମଧ୍ୟ ଉକ୍ତ ଆକ୍ରମଣର ଉଲ୍ଲେଖ ମିଳେ, ଯଥା—"୨୧ ଅଙ୍କେ ମକରମ ଖାଁ ଆଇଲେ । ଧନୁ ୨୨ ଦିନେ ଖୁର୍ଦ୍ଧା ଘେନିଲେ । ସାକ୍ଷୀ-ଗୋପାଳଙ୍କୁ ଖଣ୍ଡ କଲେ । ପରମେଶ୍ୱର ଗୁରୁବାଇ ଠାରୁ ଯାଇ ବାଣପୁର ସୀମା ଗଡପଦର ଠାଇ ଜଙ୍ଗଲ ଭିତରେ ରୂପରେ ବିଜେ କରିଥିଲେ । ଶୀତଳ ମୁଣ୍ଡୋଷ୍ଠ କରୁଥିଲେ । ରାଜା ଯାଇ କୁହୁଡ଼ି ଘେନି ରଣପୁର ସୀମାରେ ମାଣକି ଗ୍ରାମରେ କଟକ କରିଥିଲେ । ଏ ମହାରାଜାଙ୍କ ଅ ୨୩ ଙ୍କେ ମକରମ ଖାଁ ଗଲେ । ପରମେ-ଶ୍ୱରଙ୍କୁ ଗଡପଦର ଠାରୁ ଆଣି ଶ୍ରୀପୁରୁଷୋତ୍ତମ ବଡ଼ ଦେଉଳେ ବିଜେ କରାଇଲେ ।" (୮)

ଉଭୟ ବର୍ଣ୍ଣନାକୁ ତୁଳନା କଲେ ଆକ୍ରମଣ ବୃତ୍ତାନ୍ତରେ ବିଶେଷ ସାମଞ୍ଜସ୍ୟ ଲକ୍ଷିତ ହୁଏ । ପରନ୍ତୁ ପାଞ୍ଜିର ବର୍ଣ୍ଣନା ଅଧିକ ପ୍ରାଞ୍ଜଳ । କେଶୋଦାସ ମାରୁ ବା ରାଜା କଲ୍ୟାଣ ଏ ଦୁହେଁ ଖୁର୍ଦ୍ଧା ଦୁର୍ଗ ଆକ୍ରମଣ କରି ନ ଥିଲେ । କିନ୍ତୁ ସୁବାଦାର ମକରମ ଖାଁ ପୁରୁଷୋତ୍ତମ ଦେବଙ୍କୁ ଖୁର୍ଦ୍ଧା ଦୁର୍ଗରୁ ତଡ଼ି ଏହା ପ୍ରାୟ ଏକବର୍ଷ କାଳ ଅଧିକାର କରିଥିଲେ । ରାଜା ରଡ଼ମାଣକି ଠାରେ କଟକ କରି ରହିଲେ । ଜଗନ୍ନାଥ ମହାପ୍ରଭୁଙ୍କୁ ପୁରୀରୁ ନେଇ ଗଡପଦର ଠାରେ ଲୁକ୍କାୟିତ ଭାବରେ ରଖାଗଲା । ତେଣୁ ଏଥର ଖୁର୍ଦ୍ଧା ଆକ୍ରମଣ ଯେ ଅତ୍ୟନ୍ତ ପ୍ରବଳ ହୋଇଥିଲା ଏଥିରେ ସନ୍ଦେହ ନାହିଁ ।

---

(୮) ମାଦଳା ପାଞ୍ଜି, ପୃ ୬୬

ପୁରୁଷୋତ୍ତମ ଦେବ ରାଜମହେନ୍ଦ୍ରୀକୁ ପଳାଇଥିବା କଥା ଯାହା ବାଦସାହ ଲେଖିଛନ୍ତି ତାହା ସତ୍ୟ ନୁହେଁ । ସେ ଶୁଣା କଥା ଉପରେ ନିର୍ଭର କରି ଏପରି ବର୍ଣ୍ଣନା କରିଛନ୍ତି । ରାଜା ଗଡ଼ ମାଣକି ଠାରେ ଲୁକ୍କାୟିତ ଭାବରେ ରହିବା ବିବରଣ ବିଶ୍ୱାସଯୋଗ୍ୟ, ତେଣୁ ଗ୍ରହଣୀୟ ।

## ସୁବାଦାର ଅହମ୍ମଦ ବେଗ୍‌ଙ୍କ ଖୁରୁଧା ଆକ୍ରମଣ :—

ମକରମ ଖାଁ ପରେ ହାସନ୍ ଅଲ୍ଲି ଖାଁ ତୁର୍କମାନ ୧୬୨୦ରେ ଓଡ଼ିଶାର ସୁବାଦାର ହେଲେ । ତାଙ୍କ ଶାସନ କାଳର କୌଣସି ବିବରଣ ମିଳେ ନାହିଁ । ସେ ପ୍ରାୟ ଏକ ବର୍ଷ କାଳ ରହିଲା ପରେ ବାଦସାହଙ୍କ ପ୍ରାଣପ୍ରିୟ ବେଗମ ନୁର୍-ଜାହାନଙ୍କ ଉଦ୍ୟମ ଫଳରେ ତାଙ୍କ ଭାଇର ପୁଅ ମିର୍ଜ୍ଜା ଅହମ୍ମଦ ବେଗ୍ ଖାଁ ୧୬୨୧ରେ ଓଡ଼ିଶାର ସୁବାଦାର ହେଲେ । ସେ ୧୬୨୨ ଖ୍ରୀଷ୍ଟାବ୍ଦରେ ଖୁରୁଧା ଆକ୍ରମଣ କରିଥିବା ବିଷୟ ଜାହାଙ୍ଗୀର ନିଜ ଆତ୍ମଜୀବନ ଚରିତରେ ଲେଖିଛନ୍ତି—
"It so happened that at this time Ahmed Beg Khan ×× had attacked the Zamindars of Khurda." (9)

ଏହି ସମୟରେ (ସାହାଜାହାନଙ୍କ ଖୁରୁଧା ରାଜ୍ୟ ପ୍ରବେଶ ପୂର୍ବରୁ) ଅହମ୍ମଦ ବେଗ୍ ଖାଁ ଖୁରୁଧା ରାଜ୍ୟର ଜମିଦାରମାନଙ୍କ ବିରୁଦ୍ଧରେ ଆକ୍ରମଣ ଚଳାଇଥିଲେ । ମିର୍ଜାନାଥନ୍ ଏ ବିଷୟ ଲେଖି ନ ଥିଲେ ମଧ୍ୟ ମାଦଳା ପାଞ୍ଜିରେ ଏହାର ଉଲ୍ଲେଖ ମିଳେ । ଯଥା "ଅ ୨୭ ଙ୍କେ ସୁବା ଅହମଦ ବେଗ୍ ଅଇଲେ । ଦକ୍ଷିଣକୁ ମନ୍ଥମ ବାଣପୁର ଯାଏ ଗଲେ । ଅ ୨୨ ଙ୍କେ ଖଣ୍ଡନ୍ତ ଗ୍ରାମରେ ରାଜା ଆବାହନ ହୋଇଲେ ।" (୧୦)

ଦକ୍ଷିଣ ଆଡ଼୍ ସାହାଜାହାନଙ୍କ ଆକ୍ରମଣର ପ୍ରତିରୋଧ ନିମିତ୍ତ ଅହମ୍ମଦ ବେଗ୍ ବାଣପୁର ଯାଇ ସେଠାରେ ଛାଉଣି ଘାଟି ଠାରେ ଜଗି ରହିଲେ । ତେଣୁ ଖୁରୁଧା ରାଜ୍ୟର ବିଶେଷ କ୍ଷତି କରିବା ପାଇଁ ଏଥରକ ତାଙ୍କୁ ସମୟ ଓ ସୁଯୋଗ ମିଳିଲା ନାହିଁ ।

## ପୁରୁଷୋତ୍ତମ ଦେବଙ୍କ ମୃତ୍ୟୁ :—

ଅହମ୍ମଦ ବେଗଙ୍କ ଆକ୍ରମଣ ସମୟରେ ପୁରୁଷୋତ୍ତମ ଦେବ ଖଣ୍ଡନ୍ତ (କୋଧହୁଏ ମାଣକି) ଗ୍ରାମରେ ଅଜ୍ଞାତବାସ କାଳରେ ଘୋର ଦୁଃଖ ଓ ନୈରାଶ୍ୟରେ

---

(୯) ତୁଜୁକ୍-ଇ-ଜାହାଙ୍ଗୀର, ପ୍ରଥମ ଭାଗ
(୧୦) ମାଦଳା ପାଞ୍ଜି, ପୃ ୬୭

ପ୍ରାଣ ହରାଇଥିଲେ । ତାଙ୍କ ପୁତ୍ର ନରସିଂହ ଦେବଙ୍କ ଦୁଇ ଅଙ୍କ ୬-୯-୧୬୨୨ ତାରଖରେ ପଡ଼ୁଥିବା ସୁନିଆ ପୂର୍ବରୁ ଚଳୁଥିବାରୁ ଏବଂ ତାରଖର କେତେକ ଦିନ ପୂର୍ବରୁ ତାଙ୍କର ମୃତ୍ୟୁ ଘଟିଥିଲା ।

ମିର୍ଜାନାଥନ୍ ଲେଖିଛନ୍ତି ଯେ ସାହାଜାଦାମାନଙ୍କ ଖୁର୍ଦ୍ଧା ରାଜ୍ୟ ପ୍ରବେଶ ସମୟରେ ପୁରୁଷୋତ୍ତମଦେବ ତାଙ୍କୁ ଅଭ୍ୟର୍ଥନା କରିଥିଲେ । (୧୧) କିନ୍ତୁ ଏହା ଏକାବେଳେକେ ମିଥ୍ୟା । ସାହାଜାଦାମାନଙ୍କ ଖୁର୍ଦ୍ଧା ଆଗମନ ସମୟରେ ପୁରୁଷୋତ୍ତମଦେବଙ୍କ ପୁତ୍ର ନରସିଂହ ଦେବ ଖୁର୍ଦ୍ଧା ରାଜା ଥିବା ଅଭ୍ରାନ୍ତ ଭାବରେ ପ୍ରମାଣିତ ହୋଇଛି । ମିର୍ଜାନାଥନ ଶୁଣା କଥା ଉପରେ ନିର୍ଭର କରି ପୁରୁଷୋତ୍ତମ ଦେବଙ୍କ ସମ୍ବନ୍ଧରେ ବହୁ ଅଳୀକ ବୃତ୍ତାନ୍ତ ଲିପିବଦ୍ଧ କରିଥିବା ପୂର୍ବେ ଆଲୋଚିତ ହୋଇଅଛି । ଏହା ମଧ୍ୟ ସେହିପରି ଭ୍ରାନ୍ତ ବିବରଣ ସମୂହ ମଧ୍ୟରେ ଏକତମ ।

## ପୁରୁଷୋତ୍ତମ ଦେବଙ୍କ କୀର୍ତ୍ତିକଳାପ :—

ମୋଗଲ ସୁବାଦାରମାନଙ୍କ ବାରମ୍ବାର ଆକ୍ରମଣ ଯୋଗୁଁ ପୁରୁଷୋତ୍ତମ ଦେବଙ୍କ ରାଜତ୍ୱ କାଳରେ ରାଜ୍ୟର ଶାନ୍ତି ଓ ସମୃଦ୍ଧି ଗୁରୁତର ଭାବରେ ବ୍ୟାହତ ହୋଇଥିଲା । ଏତେ ବାଧାବିଘ୍ନ ସତ୍ତ୍ୱେ ସେ ଶାନ୍ତ ସମୟରେ ରାଜାଦର୍ଶ ପାଳନ ପାଇଁ ବୀର ପୁରୁଷୋତ୍ତମପୁର, ଶ୍ରୀପୁରୁଷୋତ୍ତମପୁର ଓ ପ୍ରତାପ ପୁରୁଷୋତ୍ତମପୁର ନାମକ ଶାସନତ୍ରୟ ପ୍ରତିଷ୍ଠା କରିଥିଲେ । ଏହି ତିନୋଟି ଗ୍ରାମ ପ୍ରବଳ ପରାକ୍ରାନ୍ତ ମୋଗଲ ଶକ୍ତି ଦ୍ୱାରା ପ୍ରପୀଡ଼ିତ ଏବଂ ନିଷ୍ପେଷିତ ହେଲେ ହେଁ ସ୍ମୃତି ବହନ କରି ଏ ପର୍ଯ୍ୟନ୍ତ ଜଟଣୀ-ପୁରୀ ରେଲ ରାସ୍ତା ନିକଟରେ ବିଦ୍ୟମାନ ।

## ସାହିତ୍ୟ ଚର୍ଚ୍ଚା :—

**ଗଙ୍ଗାଧର ମିଶ୍ର**—ସ୍ୱନାମଧନ୍ୟ ଜ୍ୟୋତିଷ ବାଜପେୟୀଙ୍କ ବଂଶଧର **ଗଙ୍ଗାଧର ମିଶ୍ର** ସେ ସମୟର ଜଣେ ପ୍ରସିଦ୍ଧ କବି ଓ ପଣ୍ଡିତ ଥିଲେ । ସେ ପୁରୀ ଅଞ୍ଚଳରୁ ପଳାଇ ଯାଇ ସମ୍ବଲପୁରର ଚୌହାନ ବଂଶୀ ରାଜା ବଳୟାର ସିଂହଙ୍କ ସଭା ମଣ୍ଡନ କରିଥିଲେ । ସେଠାରେ ଥିବା ସମୟରେ ସେ ସଂସ୍କୃତ ଭାଷାରେ 'କୋଶଳାନନ୍ଦମ୍' ନାମକ ଏକ ମହାକାବ୍ୟ "କଳୌ କଳାଚଳ ଯୁଗେ" ବା ୪୭୧୬ କଳି ଯୁଗାବ୍ଦ ବା ୧୬୧୫ ଖ୍ରୀଷ୍ଟାବ୍ଦରେ ରଚନା କରିଥିଲେ । (୧୨)

---

(୧୧) ବହାରସ୍ତାନ-ଇ-ଘାଇବି, ଦ୍ୱିତୀୟ ଭାଗ, ପୃ ୬୮-୬୯

(୧୨) କବିଙ୍କ ବିଶଦ ବିବରଣ ପାଇଁ ମୋ ଦ୍ୱାରା ପ୍ରଣୀତ ଓ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ 'Descriptive Catalogue of Sanskrit Manuscripts in Orissa, Vol. II, Preface, pp. CXXIX to CXXXII ଦ୍ରଷ୍ଟବ୍ୟ ।

**ଆନନ୍ଦ ମିଶ୍ର** :— ତାଙ୍କ ସମସ୍ତର ଅନ୍ୟ ଜଣେ ପ୍ରସିଦ୍ଧ ପଣ୍ଡିତ ହେଉଛନ୍ତି ଶାଣ୍ଡିଲ୍ୟ ସଗୋତ୍ର **ଆନନ୍ଦ ମିଶ୍ର** । ତାଙ୍କ କୃତ କୌଣସି ଗ୍ରନ୍ଥ ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇନାହିଁ । ତାଙ୍କ ପୁତ୍ର ପ୍ରସିଦ୍ଧ ଟୀକାକାର କବିଚନ୍ଦ୍ର ପୁରୁଷୋତ୍ତମ ମିଶ୍ର କୃତ 'ଅନର୍ଘ ରାଘବ ଟୀକା'ରୁ ଜଣାଯାଏ ଯେ ସେ, ସେ ଯୁଗର ଜଣେ ପ୍ରଖ୍ୟାତ ନାମା ପଣ୍ଡିତ ଥିଲେ ଏବଂ କାଣ୍ୱଶାଖାର ମନ୍ତ୍ରାବଳୀ, ବେଦାନ୍ତସୂତ୍ରାବଳୀ ଓ ଭାଗବତ ପ୍ରଭୃତିର ଭାଷ୍ୟ ରଚନା କରିଥିଲେ । ଆନନ୍ଦ ମିଶ୍ର କେତେକାଳ ପାରଳା ଖେମୁଣ୍ଡିର ଗଙ୍ଗବଂଶୀୟ ଗଜପତି ନାରାୟଣ ଦେବଙ୍କ ସଭାମଣ୍ଡନ କରିଥିଲେ । କିନ୍ତୁ ମୃତ୍ୟୁପୂର୍ବରୁ ତାଙ୍କ ଦ୍ୱାରା ପ୍ରଦତ୍ତ ମାନସମ୍ମାନ ଓ ଭୂସଂପତ୍ତି ତ୍ୟାଗ କରି ମୋକ୍ଷ ପ୍ରାପ୍ତି ନିମିତ୍ତ ମର୍ତ୍ତ୍ୟ ବୈକୁଣ୍ଠ ପୁରୁଷୋତ୍ତମ କ୍ଷେତ୍ରରେ ବାସ କରିଥିଲେ । (୧୩)

**ପୁରୁଷୋତ୍ତମ ମିଶ୍ର** :—ପୁରୁଷୋତ୍ତମ ମିଶ୍ରଙ୍କ ଜ୍ୟେଷ୍ଠ ଭ୍ରାତା ଶ୍ରୀଧର ମିଶ୍ର ବ୍ୟାକରଣ, କାବ୍ୟ, ଅଳଙ୍କାର, ସାଂଖ୍ୟ, ଶ୍ରୁତି, ସ୍ମୃତି, ପୁରାଣ, ନାଟକ କୋଷ ପ୍ରଭୃତିରେ ଅଗାଧ ପାଣ୍ଡିତ୍ୟ ଅର୍ଜନ କରିଥିବା ଜଣାଯାଏ । କିନ୍ତୁ ତାଙ୍କ କୃତ କୌଣସି ଗ୍ରନ୍ଥ ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇନାହିଁ । ଟୀକାକାର କବିଚନ୍ଦ୍ର ପୁରୁଷୋତ୍ତମ ମିଶ୍ରଙ୍କ ଏହି କବି ପ୍ରତିଭାର ପ୍ରଥମ ଉନ୍ମେଷ ପ୍ରକାଶ ପାଇଥିଲା ତାଙ୍କ କୃତ 'ସୁବନ୍ତ ପ୍ରଦୀପିକା' ନାମକ ବ୍ୟାକରଣ ଗ୍ରନ୍ଥରେ । ଏହା ଗଜପତି ପୁରୁଷୋତ୍ତମ ଦେବଙ୍କ ୨୪ ଅଙ୍କରେ ରଚିତ ହୋଇଥିବା ଗ୍ରନ୍ଥ ଶେଷରେ ପ୍ରଦତ୍ତ ଶ୍ଳୋକରୁ ଜଣାଯାଏ । ଯଥା :—

"ଅଙ୍କେ ଶ୍ରୀ ପୁରୁଷୋତ୍ତମସ୍ୟ ବସୁଧାଭେତ୍ତୁର୍ଚ୍ଚତୁର୍ବିଂଶକେ
ଖ୍ୟାତେ ବାଲ୍ମିକତା ମୟାବିରଚିତା ବ୍ୟୁତ୍ପନ୍ନସଂପ୍ରୀତିଦା
ଯାଚେ ମୂର୍ଦ୍ଧ୍ନି ନିଧାୟ ପାଣିଯୁଗଳଂ ନମ୍ରେ ଗୁଣଗ୍ରାହିଣଃ
ସୁଂସ୍ତ୍ରୀଶବ୍ଦସୁବୋଧିକା ଚ ସୁଧୀୟଃ ସଂଶୋଧୟନ୍ତୁ ସ୍ଫୁଟମ୍ । (୧୪)

**ରଘୁନାଥ ରାଜ ହରିଚନ୍ଦନ** :—ବାଣପୁର ରାଜା ରଘୁନାଥ ରାଜ ହରିଚନ୍ଦନ ସେ ଯୁଗର ଜଣେ ସୁସାହିତ୍ୟିକ ଓ ସାହିତ୍ୟପ୍ରେମୀ ନରପତି ଥିଲେ ।

---

(୧୩) "ଶ୍ରୀ ନାରାୟଣ ଭୂମିପେନ୍ଦ୍ର ବିହିତାଂ ତ୍ୟକ୍ତ୍ୱା ପରାଂ ସମ୍ପଦଂ
କ୍ଷେତ୍ରଂ ଶ୍ରୀ ପୁରୁଷୋତ୍ତମଂ ସୁକୃତିନା ଗୋଲୋକବୁଦ୍ଧ୍ୟାଶ୍ରିତଂ
ଯେନାଭୂତ୍ ସ ବିରକ୍ତସଂଘଶିଖରସ୍ମା ମାନନ୍ଦମିଶ୍ରୋ ମଣି
ସ୍ତତ୍ପୁତ୍ରୀୟ ମୁରାରିକାବ୍ୟବିବୃତା ବକ୍ତୋ ଗତଃ ସପ୍ତମଃ ।"

(୧୪) ମିତ୍ରଜିତ୍ପୁର ପୋଥି ଭଣ୍ଡାରରେ ସଂରକ୍ଷିତ 'ସୁବନ୍ତ ପ୍ରଦୀପିକା' ପୋଥିରୁ ଉଦ୍ଧୃତ ।

ତାଙ୍କ ସଭାକବି ପଣ୍ଡିତ ବିଷ୍ଣୁ ଦାସ ଓଡ଼ିଆ ଭାଷାରେ ବହୁ ଚଉତିଶା, ଚଉପଦୀ ଓ ଛାନ୍ଦ ରଚନା କରି ଓଡ଼ିଆ ସାହିତ୍ୟରେ ଯୁଗାନ୍ତର ଆଣିଥିଲେ । ତାଙ୍କ ଦ୍ୱାରା ରଚିତ ଓ ତାଙ୍କ ପୃଷ୍ଠପୋଷକ ବାଣପୁର, ପଣ୍ଡିତ ହରିଚନ୍ଦନ'ଙ୍କ ନାମରେ ଭଣିତ 'ଲୀଳାବତୀ' କାବ୍ୟ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଏକ ଉଜ୍ଜ୍ୱଳ ରତ୍ନ । ପାଟରାଣୀ ନୟାଗଡ଼ ରାଜକନ୍ୟା ଶକୁନ୍ତଳା ଦେବୀ ରସିକ ରାଜକବି ରଘୁନାଥଙ୍କ ପ୍ରିୟତମା ମହିଷୀ ଥିଲେ । ତେଣୁ ଗ୍ରନ୍ଥର କେତେକ ଭଣିତାରେ ତାଙ୍କର ନାମୋଲ୍ଲେଖ ଦେଖାଯାଏ । ସେ ଜଣେ ଶ୍ରେଷ୍ଠ ଖଣ୍ଡପାଳ ବା ଖଣ୍ଡାୟତ ଓ ଦକ୍ଷେଶ୍ୱରଙ୍କ ପରମ ଭକ୍ତ ଥିଲେ । (୧୫) ସେ ସଂସ୍କୃତ ଭାଷାରେ ଅନେକ ସଂଗୀତ ରଚନା କରିଥିବା 'ସଂଗୀତ କଳ୍ପଲତା'ରେ ପ୍ରଦତ୍ତ କେତେକ ଉଦାହରଣରୁ ଜଣାଯାଏ ।

**ଗୋବିନ୍ଦ ଭଞ୍ଜ** :—ସେ ଗଜପତି ବଳଭଦ୍ରଦେବଙ୍କ (୧୬୪୮-୧୬୫୯) ସମସାମୟିକ କେନ୍ଦୁଝରର ପ୍ରସିଦ୍ଧ ରାଜା ଶିବନାରାୟଣ ଭଞ୍ଜଙ୍କ ପିତାମହ ଥିବାରୁ ସପ୍ତଦଶ ଶତାବ୍ଦୀର ପ୍ରଥମ ଭାଗରେ ରାଜତ୍ୱ କରୁଥିଲେ । ଏ ଦୃଷ୍ଟିରୁ ବିଚାର କଲେ ସେ ଗଜପତି ପୁରୁଷୋତ୍ତମ ଦେବଙ୍କ ସମକାଳୀନ ହୋଇଛନ୍ତି । ସେ କୃଷ୍ଣ ଭକ୍ତି ରସାତ୍ମକ 'ଚରଣ ସୁଧାନିଧି' ଓ 'ଭକ୍ତ ବିନୋଦ' ପ୍ରଭୃତି ଗ୍ରନ୍ଥ ରଚନା କରିଥିଲେ ।

ରଣପୁର ଗଡ଼, ଗଡ଼ ମଧୁପୁର, ବଡ଼ ଖେମଣ୍ଡି ଓ ସାନ ଖେମଣ୍ଡି ପ୍ରଭୃତି ସେମାନଙ୍କ ରାଜତ୍ୱ କାଳରେ ସଂସ୍କୃତ ତଥା ଓଡ଼ିଆ ସାହିତ୍ୟ ଚର୍ଚ୍ଚାର ଗୋଟିଏ ଗୋଟିଏ ପ୍ରଧାନ କେନ୍ଦ୍ର ଥିଲା ।



(୧୫) 'ରଘୁନାଥ ରାଜ ଖଣ୍ଡୁଆଳକୁଳ କୁମୁଦ-ମୃଗଲାଞ୍ଛନ' (ଅଷ୍ଟାବିଂଶ ଛାନ୍ଦ)
'ବାଣପୁର ପତି ହରିଚନ୍ଦନ
ଶକୁନ୍ତଳା ଦେବୀ ମନ-ମଣ୍ଡନ
ସେବା କରି ଦକ୍ଷେଶ୍ୱର ଚରଣେ
ବେଶ କୌଶଳ ଛାନ୍ଦ ଗୀତେ ଭଣେ
ପ୍ରଭୁ ଶୂଳଧର
ହରିଚନ୍ଦନ ଦୋଷ କ୍ଷମା କର ।'

# ପରିଶିଷ୍ଟ

## ଗଜପତି ପୁରୁଷୋତ୍ତମ ଦେବଙ୍କ ରାଜତ୍ୱର ଅଙ୍କ ଗଣନା



ଗଜପତି ରାମଚନ୍ଦ୍ର ଦେବ କେବେ ମଲେ ଓ ତାଙ୍କ ପୁତ୍ର ପୁରୁଷୋତ୍ତମ ଦେବ କେବେ ରାଜତ୍ୱ ଆରମ୍ଭ କଲେ ସେ ସମ୍ବନ୍ଧରେ ଏଠି କେତୋଟି ପ୍ରମାଣ ମିଳେ । ସେ ୨୭ ଅଙ୍କ ପର୍ଯ୍ୟନ୍ତ ରାଜତ୍ୱ କରିଥିବା ମାଦଳାପାଞ୍ଜିରୁ ଜଣାଯାଏ । ମାଦଳାପାଞ୍ଜିରେ ଅଛି "ଅ ୨୫ ଙ୍କେ ସୁବା ଅହମଦ ବେଗ ଅଇଲେ, ଦକ୍ଷିଣକୁ ମହିମ ବାଣପୁର ଯାଏ ଗଲେ । ଅ ୨୭ ଙ୍କେ ମାଣତ୍ର ଗ୍ରାମରେ ରାଜା ଆବାହନ ହୋଇଲେ । ଏ ରାଜା ଭୋଗ କଲେ ବ ୨୨ ର୍ଷ ।"

ପୁରୀ ରଘୁନନ୍ଦନ ପାଠାଗାରରେ ଥିବା ଏକ 'ପାଳକ ପଞ୍ଜିକା' ପୋଥିରୁ ଜଣାଯାଏ ଯେ, "ପୁରୁଷୋତ୍ତମ ଦେବ ମହାରାଜାଙ୍କ ସମସ୍ତ ୨୫ ଅଙ୍କ ଜ୍ୟେଷ୍ଠ ପୂର୍ଣ୍ଣିମୀ ଦିନକୁ ଗ୍ରହଣ ସାଧନ ପ୍ରବୃତ୍ତି ଶକାବ୍ଦ ୧୫୪୨, ଶଶୀ, ପକ୍ଷ ଖୈକ (ଶଶୀ = ୧, ପକ୍ଷ = ୨, ଖ = ୦, ଏକ = ୧ ଅର୍ଥାତ୍ ୧୦୨୧) ହୀନ ଜାତ ଶାସ୍ତାବ୍ଦ ୫୨୧" । ୧୬୨୦ ଖ୍ରୀଷ୍ଟାବ୍ଦ ଜୁନ୍‌ମାସ ୪ ତାରିଖ ଜ୍ୟେଷ୍ଠ ପୂର୍ଣ୍ଣିମୀ ଦିନ, ଚନ୍ଦ୍ର ଗ୍ରହଣ ହୋଇଥିଲା । ସେ ଦିନକୁ ୧୫୪୨ ଶକାବ୍ଦ ଗତ ହୋଇଥିଲା । (୧୬)

ତାଙ୍କ ପୁଅ ଗଜପତି ନରସିଂହଙ୍କ ଦୁଇ ଅଙ୍କ '୬୨୧ରୁ ଆରମ୍ଭ ହୋଇଥିବ । ବିଲୋଚନ ମହାନ୍ତି କୃତ ପ୍ରସିଦ୍ଧ ଜ୍ୟୋତିଷ ଗ୍ରନ୍ଥ 'ଭାସ୍ୱତୀ'ର ଏକ ପଦ୍ୟାନୁବାଦ ପୋଥିରୁ ଜଣାଯାଏ । ଯଥା —

"ଚାରି ସହସ୍ର ସାତଶ ସତଚାଳିଶ
ହୋଇଥିଲା କଳିଯୁଗ ଗତ ବରଷ
ନୃସିଂହ ଦେବଙ୍କ ଏକତିରିଶ ଗତେ
ବିଲୋଚନ ରଚିତ ଏ ଭାଷା କବିତେ ।"

ଅର୍ଥାତ୍ ୪୭୪୭ କଳିଯୁଗାବ୍ଦ ବା ୧୬୪୬ ଖ୍ରୀଷ୍ଟାବ୍ଦରେ ନୃସିଂହ ଦେବଙ୍କ ୩୧ ଅଙ୍କ ଗତ ହୋଇଥିଲା । ଏଠାରୁ ପଛକୁ ଗଣିଲେ ୧୬୨୧ରେ ନରସିଂହଙ୍କ ୨ ଅଙ୍କ ଆରମ୍ଭ ଓ ପୁରୁଷୋତ୍ତମଙ୍କ ରାଜତ୍ୱ ଶେଷ ହୋଇଥିଲା । ଏହି ଦୁଇଟିକୁ ନିର୍ଦ୍ଦିଷ୍ଟ ପ୍ରମାଣ ରୂପେ ଗ୍ରହଣ କରି ପୁରୁଷୋତ୍ତମ ଦେବଙ୍କ ଅଙ୍କ ଗଣନା କରାଗଲା ।

---

(16) Eclipses of the Moon in India by Robert Sewell, P. XLI.

| ସୁନିଆର ତାରିଖ | | ରାଜତ୍ୱର ଅଙ୍କ |
|---|---|---|
| ୬-୯-୧୬୦୦ | ତାରିଖ ସୁନିଆ ଦିନ ଠାରୁ | ୩ ଅଙ୍କ |
| ୩୦-୮-୧୬୦୧ | ,, | ୪ ,, |
| ୧୯ ୮-୧୬୦୨ | ,, | ୫ ,, |
| ୭ ୯-୧୬୦୩ | ,, | ୭ ,, |
| ୨୭ ୮-୧୬୦୪ | ,, | ୮ ,, |
| ୧୫-୮-୧୬୦୫ | ,, | ୯ ,, |
| ୩ ୯-୧୬୦୬ | ,, | ୧୦ ,, |
| ୨୪-୮-୧୬୦୭ | ,, | ୧୧ ,, |
| ୧୧-୯-୧୬୦୮ | ,, | ୧୨ ,, |
| ୩୧ ୮-୧୬୦୯ | ,, | ୧୩ ,, |
| ୨୧-୮-୧୬୧୦ | ,, | ୧୪ ,, |
| ୨୮-୯-୧୬୧୧ | ,, | ୧୫ ,, |
| ୨୭-୮-୧୬୧୨ | ,, | ୧୭ ,, |
| ୧୭-୮-୧୬୧୩ | ,, | ୧୮ ,, |
| ୫-୯-୧୬୧୪ | ,, | ୧୯ ,, |
| ୨୫-୯-୧୬୧୫ | ,, | ୨୧ ,, |
| ୧୪-୮-୧୬୧୬ | ,, | ୨୨ ,, |
| ୨-୯-୧୬୧୭ | ,, | ୨୩ ,, |
| ୨୨-୮-୧୬୧୮ | ,, | ୨୪ ,, |
| ୧୦-୯-୧୬୧୯ | ,, | ୨୫ ,, ଘାଳକ ପଞ୍ଜିକା |
| ୨୯-୮-୧୬୨୦ | ,, | ୨୭ ,, |
| ୧୮-୮-୧୬୨୧ | ,, • | |

## ପୁରୁଷୋତ୍ତମ ଦେବଙ୍କ ରାଜତ୍ୱର ଅଭିଲେଖ ସମୂହ

(କେସିଆଡ଼ ସର୍ବମଙ୍ଗଳା ମନ୍ଦିର ଲେଖ)

୧ମ ଧାଡ଼ି — ଶ୍ରୀ ଶୁଭମସ୍ତୁ ଶ୍ରୀ ମାନସିଂହ ମହାରାଜାଙ୍କର ବିଜେ ଶୁଭ ରାଜ୍ୟେ ସମସ୍ତ ୪୭ ଅଙ୍କ ? ଶ୍ରାବ୍ଣ

୨ୟ ଧାଡ଼ି — ମକର ଦି ୩ ନେ ସୁ ? ୫ ସୋମବାରେ ୧୫୨୬ ଶକେ କୁଲ୍ୟସେନ ଗ୍ରାମର ଶ୍ରୀ ଗୋବିନ୍ଦ ଭୂପ୍ୟାଙ୍କର ପ୍ରତିଷ୍ଠିତ

୩ୟ ଧାଡ଼ି — ଶ୍ରୀ ରଘୁନାଥ ଭୂୟାଁ ପୌତ୍ର ଶ୍ରୀ ଯଦୁ ଭୂୟାଁଙ୍କର ପୁତ୍ର ଶ୍ରୀମାନ
ଶ୍ରୀ ଚନ୍ଦ୍ରଧର ଭୂୟାଁ ।

୪ର୍ଥ ଧାଡ଼ି — ଶ୍ରୀ ମଙ୍ଗଳା ଠାକୁରାଣୀଙ୍କ ଅଜ୍ଞା° ପ୍ରମାଣେ ପ୍ରଭୁ ଆଦେଶ
ଦେଲ ବେ × ×

୫ମ ଧାଡ଼ି — ଜଇବେ ଏ ଦେଉଳ ଅଧକ୍ଷ × × ବଳଳ ଦାସ ×

୬ଷ୍ଠ ଧାଡ଼ି — ନ କମିଲ ବସୁରାମ କଳୁ × × ×

୭ମ ଧାଡ଼ି — ଏ କରଣ ହର ଦାସ (୧୭)

## ଟିପ୍ପଣୀ :—

ସୁବର୍ଣ୍ଣରେଖା ନଦୀଠାରୁ ଅନତିଦୂରରେ ଅବସ୍ଥିତ ବର୍ତ୍ତମାନ ମେଦିନୀପୁର ଜିଲ୍ଲା ଅନ୍ତର୍ଗତ କେସିଆଡ଼ି ଗଡ଼ର ସର୍ବମଙ୍ଗଳା ମନ୍ଦିରରେ ଏହି ଶିଳ ଲେଖଟି ଖୋଦିତ ହୋଇଛି । ଶ୍ରୀ ପରମାନନ୍ଦ ଆଚାର୍ଯ୍ୟ ଏହି ଲେଖର ପାଠୋଦ୍ଧାର କରି ଏକ ପ୍ରବନ୍ଧରେ ପ୍ରକାଶ କରିଥିଲେ । ଏହି ଲେଖ ଦ୍ୱାରା ବର୍ତ୍ତମାନ ଓଡ଼ିଶାରୁ ବିଚ୍ଛିନ୍ନ ମେଦିନୀପୁର ଜିଲ୍ଲାରେ ଓଡ଼ିଆ ଭାଷା, ଓଡ଼ିଆ ଅକ୍ଷର ଏବଂ ଓଡ଼ିଶା ରାଜାଙ୍କ ଅଙ୍କ ଗଣନା ପ୍ରଚଳିତ ଥିବାର ଅକାଟ୍ୟ ପ୍ରମାଣ ମିଳେ । ଏହି ଲେଖଟି ୧୫୨୭ ଶକାବ୍ଦ ମକର ୩ ଦିନ ସୁ ? ୫ ସୋମବାର ଦିନ ଲିଖିତ ହୋଇଥିଲା । ଜ୍ୟୋତିଷ ଗଣନା ଅନୁସାରେ **୧୬୦୪ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସ ୩୧ ତାରିଖ ଦିନ ମକର ମାସ ୩ ଦିନ ସୋମବାର ହୋଇଥିଲା** । ଏ ଦିନ ତିଥି ଥିଲା ମାଘ କୃଷ୍ଣ ପଞ୍ଚମୀ । ତେଣୁ ଏଠାରେ 'ଶୁ' ନ ହୋଇ 'ବ' ହେବ । ଏହା ଲିପିକାର ପ୍ରମାଦ ବା ପାଠରେ ଭ୍ରମ ହୋଇପାରେ । କିନ୍ତୁ ରାମଚନ୍ଦ୍ର ଦେବଙ୍କ ୪୭ ଅଙ୍କ ଚଳିଥିବା ଅନ୍ୟ ସମସ୍ତ ଉପଲବ୍ଧ ତଥ୍ୟ ଦ୍ୱାରା ଅପ୍ରମାଣିତ ହେଉଥିବାରୁ ଏହା ବୋଧହୁଏ ପୁରୁଷୋତ୍ତମ ଦେବଙ୍କ ୭ ଅଙ୍କ ହେବ । ସେତେବେଳେ ମାନସିଂହ ବଙ୍ଗ ଓ ଓଡ଼ିଶାର ସୁବାଦାର ଥିଲେ ।

ଏଥିରୁ ଜଣାଯାଏ ଯେ କୁଲ୍ୟସେନ ଗ୍ରାମର ଶ୍ରୀ ଗୋବିନ୍ଦ ଭୂୟାଁଙ୍କର ପଣନାତି, ଶ୍ରୀ ରଘୁନାଥ ଭୂୟାଁଙ୍କ ନାତି, ଶ୍ରୀ ଯଦୁ ଭୂୟାଁଙ୍କର ପୁତ୍ର ଶ୍ରୀମାନ ଶ୍ରୀ ଚନ୍ଦ୍ରଧର ଭୂୟାଁ । ଶ୍ରୀ ମଙ୍ଗଳା ଠାକୁରାଣୀଙ୍କ ଅଜ୍ଞା ପ୍ରମାଣେ ଦେଉଳ ତୋଳାଇ ଥିଲେ । ଲେଖଟିର ଶେଷ ତିନି ଧାଡ଼ିର କେତେକାଂଶ ଚୂନ ପଲସ୍ତ୍ରା ହୋଇ

(17) Proceedings of the I. H. R. Commission, Vol. XXII, P. 69.

ଯାଇଥିବାରୁ ଅନେକ ଅକ୍ଷର ବଣ୍ଡ ନାହିଁ । ଯେତିକ ପଢ଼ାଯାଉଛି ସେଥିରୁ ଜଣାଯାଏ ଯେ ଦେଉଳର ଅଧ୍ୟକ୍ଷ ଥିଲେ ବକଳ ଦାସ, କରଣ ଥିଲେ ହର ଦାସ । କପିଳ (କପିଳା ?) ବସୁଗ୍ରାମ ମଧ୍ୟ କୌଣସି ଏକ କାର୍ଯ୍ୟରେ ନିଯୁକ୍ତଥିଲେ । କାକଟ-ପୁରର ମଙ୍ଗଳାଙ୍କ ପରି କେଶିଆଡ଼ ଗଡ ସର୍ବମଙ୍ଗଳାଙ୍କର ମେଦିନୀପୁର ଓ ମୟୂରଭଞ୍ଜ ଅଞ୍ଚଳରେ ଅତ୍ୟନ୍ତ ପ୍ରସିଦ୍ଧ ଥିଲା । ସର୍ବମଙ୍ଗଳା ଠାକୁରାଣୀଙ୍କ ପିତଳ ପ୍ରତିମା ପାଦପୀଠରେ ସେହି ୧୫୨୬ ଶକାବ୍ଦର ଅନ୍ୟ ଏକ ଲେଖ ରହିଛି । ତାହାର ପାଠ ତଳେ ଦିଆଗଲା ।

## ସର୍ବମଙ୍ଗଳା ବିଗ୍ରହ ପାଦପୀଠରେ ଥିବା ଲେଖ

ପ୍ରଥମ ଧାଡ଼ି — ଶ୍ରୀ ମାନସିଂହ ମହାରାଜା ଶୁଭ ରାଜ୍ୟେ ଦ୍ୱିଜକୁଳକୁମୁଦାନନ୍ଦ ଶ୍ରୀଳ ଶ୍ରୀ ରଘୁନାଥ ଶର୍ମା

୨ୟ ଧାଡ଼ି — ଭୂମିପ ସୁତ ଶ୍ରୀ ଚନ୍ଦ୍ରଧର ଶର୍ମା ଭୂମିପ କରତେଦଂ ସର୍ବମଙ୍ଗଳା ପ୍ରତିମାକୁ ପୂଜା ଶକାବ୍ଦ ୧୫୨୬ କପିଳା ରଘୁନାଥ

ଟିପ୍ପଣୀ :—

ଏହି ପ୍ରତିମା ଲିପିରୁ ଜଣାଯାଏ ଯେ ୧୫୨୬ ଶକାବ୍ଦ ବା ୧୬୦୪ ଖ୍ରୀଷ୍ଟାବ୍ଦରେ ରାଜା ମାନସିଂହଙ୍କ ରାଜତ୍ୱ କାଳରେ ଶ୍ରୀଳ ଶ୍ରୀ ରଘୁନାଥ ଶର୍ମା ବ୍ରାହ୍ମଣଙ୍କ ପୁଅ ଶ୍ରୀ ଚନ୍ଦ୍ରଧର ଶର୍ମା ବ୍ରାହ୍ମଣ ଏହି ସର୍ବମଙ୍ଗଳା ପ୍ରତିମା ନିର୍ମାଣ କରାଇ ପୂଜା କରିଥିଲେ । ପ୍ରତିମା ନିର୍ମାତା ବୋଧହୁଏ କପିଳା ରଘୁନାଥ ।

## ସର୍ବମଙ୍ଗଳା ଦେଉଳର ନାଟମନ୍ଦିର ଶିଳାଲେଖ (୧୮)

୧ମ ଧାଡ଼ି -- ଶୁଭମସ୍ତୁ ଶକାବ୍ଦ ୧୫୮୭ ସମସ୍ତ ୧୧ ଅଙ୍କ ଶ୍ରାବଣ କୁମ୍ଭ ୧୩ ଦିନେ ସୁଦି ସୁ

୨ୟ ଧାଡ଼ି — ଏବାରେ ଶ୍ରୀ ମଙ୍ଗଳା ଠାକୁରାଣୀଙ୍କ ନାଟମନ୍ଦିର ଶ୍ରୀ ସାହୁ ସାଲିମ ପାତ୍ରଙ୍କ

୩ୟ ଧାଡ଼ି — ର ଶୁଭ ରାଜ୍ୟେ ଶ୍ରୀ ରାଜା କଲ୍ୟାଣମଲ୍ଲଙ୍କ ସୁବା ସାହେବ ସୁନ୍ଦର ଦାସ × × ଥେ ଦେବତା

୪ର୍ଥ ଧାଡ଼ି — ଶ୍ରୀ କେଶିଆଡ଼ଗଡ × × ଅଧିଷ୍ଠାନେ ଏ ନାଟମନ୍ଦିର ଗଢ଼ନ ଶ୍ରୀଧର ମହାରଣା

୫ମ ଧାଡ଼ି — ଦନେଇ ମହାରଣା, ବନମାଳୀ ଦାସ ଓ ଅର୍ଜୁନ ମହାରଣା ଉଦେଖନ୍ତୁ ସଦ୍ ? ବ × କ

୬ଷ୍ଠ ଧାଡ଼ି — ମଧୁ ମିସ୍ତ୍ରୀ ମକୁନ୍ଦ ମି (ସ୍ତ୍ରୀ) ଓ ଗଡ଼ × × ନାଏକ ଜଗବନ୍ଧୁ

୭ମ ଧାଡ଼ି — ଅ × ବ ମୁରାରି ନାଇକ ଚନ୍ଦ୍ର × × ×

(18) Proceedings of the I. H. R. Commission, Vol. XXI

ଟିପ୍ପଣୀ :—

ଏହି ଶିଳାଲିପିରୁ ଜଣାଯାଏ ଯେ ସର୍ବମଙ୍ଗଳାଙ୍କ ନାଟମନ୍ଦିର ନିର୍ମାଣ ସମୟରେ ୧୫୩୭ ଶକାବ୍ଦ ବା ୧୬୧୫ ଖ୍ରୀଷ୍ଟାବ୍ଦରେ ସାହା ସାଲିମ ବା ଜାହାଙ୍ଗୀର ପାତଶା ବା ଦିଲ୍ଲୀ ବାଦସାହ ଓ ରାଜା କଲ୍ୟାଣମଲ୍ଲ ଓଡ଼ିଶାର ସୁବାଦାର ଥିଲେ। ସେହି ବର୍ଷ ସୁନ୍ଦର ଦାସ କାଣିଅାଡ ଗଡ଼ରେ ସର୍ବମଙ୍ଗଳା ଠାକୁରାଣୀଙ୍କ ନାଟମନ୍ଦିର ତୋଳାଇ ଥିଲେ। ଏହି ମନ୍ଦିର ନିର୍ମାଣରେ ଶ୍ରୀଧର ମହାରଣା, ଦଦେଇ ମହାରଣା, ବନମାଳୀ ଦାସ, ଅର୍ଜୁନ ମହାରଣା, ଉଦେଈନୁ, ମଧୁମିସ୍ତ୍ରୀ, ମକୁନ୍ଦ ମିସ୍ତ୍ରୀ, ଗଡୁ ନାଏକ, ଜଗବନ୍ଧୁ, ମୁରର ନାଇକ ପ୍ରଭୃତି ନିଯୁକ୍ତ ହୋଇ-ଥିଲେ। ଭାଷାତତ୍ତ୍ୱ ଦୃଷ୍ଟିରୁ ଲେଖଟି ଅତ୍ୟନ୍ତ ଉପାଦେୟ । ଏଥିରେ ପାତସା (ବାଦସାହ), ସୁବା ସାହେବ (ସୁବାଦାର) ମିସ୍ତ୍ରୀ ପ୍ରଭୃତି ଯାବନିକ ଶବ୍ଦର ବ୍ୟବହାର ଦେଖାଯାଏ। ସେ ପର୍ଯ୍ୟନ୍ତ ମେଦିନୀପୁର ଜିଲ୍ଲା ଓଡ଼ିଶା ସୁବାର ଅନ୍ତର୍ଭୁକ୍ତ ଥିଲା। ସେଠାର ଲୋକେ ଓଡ଼ିଆ ଭାଷା, ଲିପି ଓ ଓଡ଼ିଶା ରାଜାଙ୍କ ଅଙ୍କ ବ୍ୟବହାର କରୁଥିଲେ।

ଜ୍ୟୋତିଷ ଗଣନାନୁସାରେ ୧୬୧୬ ଖ୍ରୀଷ୍ଟାବ୍ଦ ଫେବ୍ରୁୟାରୀ ମାସ ୯ ତାରିଖରେ କୁମ୍ଭ ୧୩ ଦିନ, ଫାଲ୍‌ଗୁନ, ଶୁକ୍ଳ ଦ୍ୱିତୀୟା ଶୁକ୍ରବାର ହୋଇଥିଲା। କିନ୍ତୁ ଏହା ୧୧ ଅଙ୍କ ନ ହୋଇ ୨୧ ଅଙ୍କ ହେବ।

ଏହା ବ୍ୟତୀତ ତାଙ୍କ ରାଜତ୍ୱରେ ପ୍ରଦତ୍ତ ଦୁଇଟି ତମ୍ବାପଟା ଙ୍ଗୋମରୁ ମିଳି-ଥିଲା। କିନ୍ତୁ କୌଣସିଟିର ସମୟ ସ୍ଥିର କରି ହେଉନାହିଁ। ସେଥି ମଧ୍ୟରୁ ପ୍ରଥମଟିରୁ ଜଣାଯାଏ ଯେ ଶ୍ରୀ ପୁରୁଷୋତ୍ତମ ଦେବଙ୍କର ସମସ୍ତ ୫, ମକର ୭, ମାଘ ବହୁଳ ୩୦ ? ସୋମବାର ଦିନ ରାଜା ରଘୁସିଂହଦେବ ବଳଭଦ୍ର ମିଶ୍ରଙ୍କୁ ରଘୁସିଂହପୁର ଗ୍ରାମ ଦାନ କରିଥିଲେ। (୧୯) ଗଣନା ଅନୁସାରେ ୪ ୧-୧୬୦୨ରେ ମକର ସାତ, ସୋମବାର, ମାଘ ବହୁଳ ୭ ହୋଇଥିଲା। ଅମାନ୍ତ ମାସ ଅନୁସାରେ ୨୨ ହେଉଛି। (୨୦) ଅନ୍ୟଟିରୁ ଜଣାଯାଏ ଯେ ବୀର ଶ୍ରୀ ପୁରୁଷୋତ୍ତମ ଦେବ ମହାରାଜାଙ୍କର ୯ ଅଙ୍କ ମେଷ ଦୁଇ ଦିନ ଦ୍ରୁମା ରାଜ୍ୟାଧିପତି ସ୍ୱସ୍ତି ଶ୍ରୀ ଗଦାଧର ସାମନ୍ତରାୟ ମହାପାତ୍ର ଗଡଦଲି ଜମ୍ବୁ ? କୁ ୨୦ ଭରଣ ଭୂମି ଦାନ କରିଥିଲେ। କିନ୍ତୁ ଏଥିରେ ତିଥି, ବାର ନ ଥିବାରୁ ନିର୍ଦ୍ଦିଷ୍ଟ ତାରିଖ ଜଣା ପଡୁନାହିଁ।



(19) Inscriptions of the Madras Presidency by V. Rangacharya, Vol. I, P. 675, No. 49, P. 679, No. 100

(20) An Indian Ephemeris Vol. VI P. 6.

# ତୃତୀୟ ଅଧ୍ୟାୟ

# ଗଜପତି ନରସିଂହ ଦେବ

(୧୬୨୧—୧୬୪୭ ଖ୍ରୀଷ୍ଟାବ୍ଦ)



## ମୋଗଲ ସୁବାଦାରଙ୍କ ସହିତ ସଂଘର୍ଷ

ଗଜପତି ନରସିଂହ ଦେବ ଖୁର୍ଦ୍ଧା ସିଂହାସନରେ ବସିବା ସମୟରେ ମିର୍ଜା ଅହମ୍ମଦ ବେଗ ଓଡ଼ିଶାର ସୁବାଦାର ଥିଲେ (୧୬୨୧-୧୬୨୪)। ସେ ଅତ୍ୟନ୍ତ ଦୁର୍ଦ୍ଦାନ୍ତ ଓ ଅତ୍ୟାଚାରୀ ଥିବା ପ୍ରଭୁ ରସିକାନନ୍ଦଙ୍କ ଜୀବନ ଚରିତ ବର୍ଣ୍ଣନାତ୍ମକ 'ରସିକ ମଙ୍ଗଳ' ଗ୍ରନ୍ଥରୁ ଜଣାଯାଏ। ଯଥା—

"ତାର ବିବରଣ କହି ଶୁନ ସର୍ବ ଜନ
ଅହମ୍ମଦ ବେଗ ବଡ଼ ଦୁଷ୍ଟ ସେ ଯବନ।
ଉଡ଼ିଷ୍ୟା ଦେଶେତେ ଯତ ରାଜା ଭୂଞ୍ଜ୍ୟା ବୈସେ
ସବାକାର ଘରଦ୍ୱାର ଭାଙ୍ଗିଲ ବିଶେଷେ।
ଘର ବାଡ଼ି ଭାଙ୍ଗିଲ କାଟିଲ ସର୍ବ ବନ,
ସବାକାର ସଙ୍ଗେ ଧରି ଲଇଲ ଯବନ।
ବଡ଼ଇ ଦ୍ରୋହୀ ଦୁଷ୍ଟ ଯବନ ରାଜନ,
ଥରହରି କାମ୍ପେ ସବ ଭୂଞ୍ଜ୍ୟା ଗଣ।" (୧)

ନରସିଂହ ଦେବ ସିଂହାସନରେ ବସିବାର ପ୍ରାୟ ଏକ ବର୍ଷ ପରେ ଅହମ୍ମଦ ବେଗଙ୍କ ସହିତ ତାଙ୍କର ସଂଘର୍ଷ ହୋଇଥିବା ମାଦଳାପାଞ୍ଜିରୁ ଜଣାଯାଏ। ଯଥା—"ଏ ମହାରାଜାଙ୍କ ୨ଶ ଅଙ୍କେ ଅହମ୍ମଦ ବେଗ୍ ବୋଇଲା କୁନ୍ମୁ ରଜାଙ୍କର କଟକ ନେଇ। ଏଥକୁ ରଜା ଅନ୍ଧାରି ମନ୍ଥମ ଠାରୁ ଭାଙ୍ଗି

(୧) 'ରସିକ ମଙ୍ଗଳ' ବଙ୍ଗାକ୍ଷରରେ ମୁଦ୍ରିତ ପୃ ୧୬୦

ମାଣକି କଟକକୁ ବଳେ କରିଥିଲେ । ତାହି ଭିତରୁ ପରମେଶ୍ୱରଙ୍କ ଠାରୁ ବ୍ରହ୍ମମାନ ବାହାର କରି ଦଇତାପତି ଲୁଗାରେ ପୁରାଇ ମାଣତ୍ରିର କଟକେ ଶ୍ରୀନଅରେ ବିଜେ କରାଇଥିଲେ । ଏ ମହାରାଜା ଏ ଅହମ୍ମଦ ବେଗକୁ ଦରବନ୍ଧ କରିଥିଲେ । ମଙ୍ଗଳାଯୋଡ଼ ଠାରେ ଦରବନ୍ଧାରୁ ଫେଲ ହୋଇ କଟକ ଗଲେ ।" (୨)

ଏଥିରୁ ଜଣାଯାଏ ଯେ ପୁରୁଷୋତ୍ତମ ଦେବଙ୍କ ୨୫ ଅଙ୍କ ବା ୧୬୧୯-୨୦ରୁ ଜଗନ୍ନାଥ ମହାପ୍ରଭୁ ପୁଣି ବଡ଼ ଦେଉଳରୁ ନିଆଯାଇ ବାଣପୁର ଅଞ୍ଚଳରେ ଅନ୍ଧାରି ମଠମ ଠାରେ ରଖାଯାଇଥିଲେ । ଅହମ୍ମଦ ବେଗଙ୍କ ଆକ୍ରମଣ ଆଶଙ୍କାରେ ମହାପ୍ରଭୁ ଟଡ଼ ମାଣକିରେ ରକ୍ଷିତ ହେଲେ । ଅହମ୍ମଦ ବେଗ ରାଜାଙ୍କ ପରିବାରଙ୍କୁ କଟକ ନେବା ପାଇଁ ଆଦେଶ ଦେବାରୁ ନରସିଂହ ଦେବ ଉଦ୍ୟୁକ୍ତ ହୋଇ ମଙ୍ଗଳାଯୋଡ଼ ଗଡ଼ ଠାରେ ତାଙ୍କୁ ଘେରାଉ କରିଥିଲେ । ଫଳ ସୁବାଦାର ଓଡ଼ିଆ ପାଇକ ମାନଙ୍କୁ ହଟାଇ ଦେଇ (ଦରବନ୍ଧାରୁ ଫେଲି ବାହାର ହୋଇ) କଟକ ପଳାଇଗଲେ । ୨୭-୮ ୧୬୨୩ରୁ ୧୫-୮-୧୬୨୪ ପର୍ଯ୍ୟନ୍ତ ନରସିଂହ ଦେବଙ୍କ ଗୁର ଅଙ୍କ ଚାଲୁଥିବାରୁ ଉକ୍ତ ସମସ୍ତ ମଧ୍ୟରେ ଉଭୟଙ୍କ ମଧ୍ୟରେ ସଂଘର୍ଷ ଘଟିଥିବ ।

## ଯୁବରାଜ ସାହଜାହାନଙ୍କ ଓଡ଼ିଶା ଆକ୍ରମଣ

ଜାହାଙ୍ଗୀରଙ୍କ ପ୍ରାଣପ୍ରିୟ ବେଗମ ନୂର୍‌ଜାହାନଙ୍କ ଚକ୍ରାନ୍ତ ଫଳରେ ନ୍ୟାଯ୍ୟ ଦିଲ୍ଲୀ ସିଂହାସନ ଅଧିକାରରୁ ବଞ୍ଚିତ ହୋଇ ସାହଜାହାନ ୧୬୨୨ ଖ୍ରୀଷ୍ଟାବ୍ଦରେ ମଣ୍ଡୁ ଠାରେ ପ୍ରଥମେ ବିଦ୍ରୋହ ଆରମ୍ଭ କରିଥିଲେ । ସେଠାରୁ ସେ ମୁସଲିପଟ୍ଟମ ଆସି (୧୦-୧୧-୧୬୨୩) ଗୋଲକୁଣ୍ଡା ସୁଲତାନଙ୍କ ସାହାଯ୍ୟରେ ଓଡ଼ିଶା ଅଭିମୁଖରେ ଅଭିଯାନ ଚଳାଇଥିଲେ । ସେତେବେଳେ ଗଞ୍ଜାମର ଜୟପୁର ଅଞ୍ଚଳ ଗୋଲକୁଣ୍ଡା ସୁଲତାନଙ୍କ ଅଧିକାରଭୁକ୍ତ ଥିଲା । ବାଣପୁର ନିକଟବର୍ତ୍ତୀ ଛତ୍ରଗଡ଼ ଘାଟିର ଆର ପାଖରେ ସୁଲତାନ ଗୋଟିଏ ଦୁର୍ଗ ନିର୍ମାଣ କରି ସେଠାରେ କେତେ ତୋପ ଓ ବନ୍ଧୁକଧାରୀ ସୈନ୍ୟ ରଖିଥିଲେ । ଗୋଲକୁଣ୍ଡାର ଜନୈକ ସେନାପତି 'ମନସୁର' ଓଡ଼ିଶାକୁ ଆସିବା ବାଟରେ 'ମନସୁର ଗଡ଼' * ନାମକ ଏକ ସୁଦୃଢ଼ ଦୁର୍ଗ ନିର୍ମାଣ କରିଥିଲେ । ଗୋଲକୁଣ୍ଡା ସୁଲତାନଙ୍କ ସାହାଯ୍ୟରେ ଦୁର୍ଭେଦ୍ୟ ଛତ୍ରଗଡ଼ ଘାଟି ପାର ହୋଇ ସାହଜାହାନ ଖୁର୍ଦ୍ଧା ରାଜ୍ୟରେ ପ୍ରବେଶ କରିଥିଲେ । ସେ ଖୁର୍ଦ୍ଧା ଦୁର୍ଗରେ ପହଞ୍ଚିବାରୁ ନରସିଂହ ଦେବ ତାଙ୍କର ବଶ୍ୟତା ସ୍ୱୀକାର କରି-

---

(୨) ମାଦଳା ପାଞ୍ଜି, ପୃ ୬୬ ୬୭

* ( ଗଞ୍ଜାମ ଜିଲ୍ଲାର ଗୋପାଳପୁର ନିକଟରେ ଏହା ଅବସ୍ଥିତ । ଧ୍ୱଂସପ୍ରାପ୍ତ ଏହି ଗଡ଼କୁ ଏବେ ଲୋକେ 'ମନସୁରକୋଠା' ବୋଲି କହନ୍ତି ।)

ଥିଲେ । ଏହାପରେ ସେ ୧୬୨୩ ଡ଼ିସେମ୍ବର ମାସରେ କଟକ ଅଧିକାର କରିଥିଲେ । (୩)

ଛତ୍ରଦ୍ୱାର ଘାଟି ବାଟେ ସାହଜାହାନଙ୍କ ଖୁରୁଧା ରାଜ୍ୟରେ ପ୍ରବେଶ କରିବା ସମ୍ବାଦ ପାଇ ମିର୍ଜା ଅହମ୍ମଦ ବେଗ ପ୍ରଥମେ ପିପିଲି ଠାରେ ରହିଲେ ଏବଂ ସେଠାରୁ ପରିବାର ନେଇ କଟକ ଗଲେ ଏବଂ ପରେ ବର୍ଦ୍ଧମାନକୁ ପଳାଇଗଲେ । ସାହଜାହାନ କଟକରେ କିଛୁଦିନ ରହି ତାଙ୍କର ବିଶ୍ୱସ୍ତ ସହଚର ମହମ୍ମଦ ତକିକୁ 'ସାହକୁଲି ଖାନ୍' ଉପାଧିରେ ମଣ୍ଡିତ କରି ଓଡ଼ିଶାର ସୁବାଦାର ରୂପେ ନିଯୁକ୍ତ କରିଥିଲେ । କଟକରେ ଶାସନର ସୁବନ୍ଦୋବସ୍ତ କରି ସେ ମେଦିନୀପୁର ପର୍ଯ୍ୟନ୍ତ ବିନା ବାଧାରେ ଅଧିକାର କରିଗଲେ । (୪)

ମାଦଳାପାଞ୍ଜିରେ ସାହଜାହାନଙ୍କ ଓଡ଼ିଶା ଅଭିଯାନ ସମ୍ବନ୍ଧରେ ନିମ୍ନୋକ୍ତ ବିବରଣ ମିଳେ । "ଅ ୫ ଙ୍କେ ଦକ୍ଷିଣରୁ ସାହାଜାନ ପାତିଶା ଅଇଲେ । ରାଜାଙ୍କ ଭେଟ ହୋଇଲା । ପାତିଶାଙ୍କ ସଙ୍ଗେ ୮୦୦ ହାଥୀ ଥିଲା, ୧୪,୦୦୦ ଘୋଡ଼ା, ୧୦୦,୦୦୦ ପାଦାନ୍ତି ଥିଲେ । ରାଜା ଏହାଙ୍କ ସଙ୍ଗେ ଯାଜପୁର ଯାଏ ଗଲେ । ସେଠାରୁ ହାଥୀ ଶ୍ରୀପା ହୋଇ ବାହୁଡ଼ିଲେ । ପାତିଶା ପାଟଣା ଗଲେ । ପରମେଶ୍ୱର ଯେ ମାଣିକର ବ୍ରହ୍ମ ବିଜେ କରିଥିଲେ । ଏଠାରେ ଶୀତଳ ଭୋଗ ମୁଣୋହି ହୋଉ-ଥିଲେ । ରାଜା ଭୀମ ଶ୍ରୀପୁରୁଷୋତ୍ତମ ଅଇଲକୁ ବଡ଼ ବଡ଼ ବ୍ରହ୍ମ ଆଣି ବିଜେ କରାଇ ଧର୍ଣ୍ଣୁଡ଼ି ଭୋଗ ମୁଣୋହି ହୋଇଲେ । ଏ ଦିନେ ସାହାକୁଳ ଖାଁ ନବାବ ହୋଇଥିଲେ ।"

ପାଞ୍ଜିର ବର୍ଣ୍ଣନା ମୋଗଲ ଇତିହାସ ଦ୍ୱାରା ସମର୍ଥିତ ହୁଏ । କେବଳ ଆକ୍ର-ମଣ ସମୟ ୫ ଅଙ୍କ ନ ହୋଇ ଚାରି ଅଙ୍କ ହେବ । ଏଥିରେ ବର୍ଣ୍ଣିତ ରାଜା ଭୀମ ବା ଭୀମ ସିଂହ ସାହଜାହାନଙ୍କ ଜଣେ ପ୍ରଧାନ ବିନ୍ଦୁ ସେନାପତି ଥିଲେ । ସେ ସାହଜାହାନଙ୍କ ବିଦ୍ରୋହ ସମୟରେ ତାଙ୍କର ବିଶ୍ୱସ୍ତ ବନ୍ଧୁ ରୂପେ କାର୍ଯ୍ୟ କରୁ-ଥିଲେ । (୫) ପ୍ରସିଦ୍ଧ ହିନ୍ଦୁ ସେନାପତି ରାଜା ଭୀମଙ୍କ ସାହାଯ୍ୟରେ ପ୍ରାୟ ଚାରିବର୍ଷ ପରେ ୧୬୨୦ରେ ଜଗନ୍ନାଥ ମହାପ୍ରଭୁ ପୁନର୍ବାର ପୁରୀ ମନ୍ଦିରକୁ ଆସିଥିଲେ

---

(3) Prince Shahjahan in Bengal, I. H. Q Vol. XI, P. 92.

(4) History of Bengal (Dacca University publication) Vol. II, P. 307.

(5) Rebellion of Shahjahan and his career in Bengal I.H.Q. Vol. X, pp 676-712.

ହେବାରୁ ଅନ୍ନ-ମହାପ୍ରସାଦର ପୁନଃ ପ୍ରଚଳନ ଘଟିଲା । ସେତେବେଳର ସୁବାଦାର ଏଥିରେ କୌଣସି ବାଧା ଦେଇ ନ ଥିଲେ ।

ସାହଜାହାନ ଯୁଦ୍ଧରେ ପରାସ୍ତ ହୋଇ ୧୬୨୫ ଜାନୁୟାରୀ ମାସରେ ବଙ୍ଗଳା ହରାଇ ପୁନର୍ବାର ରାଜମହଲ ଠାରୁ ଓଡ଼ିଶା ଭିତର ଦେଇ ଦାକ୍ଷିଣାତ୍ୟ ଅଭିମୁଖରେ ଯାତ୍ରା କଲେ । ଏ ଘଟଣା ମଧ୍ୟ ପାଞ୍ଜିରେ ଲିପିବଦ୍ଧ ହୋଇଅଛି "ଏ ମହାରାଜାଙ୍କ ୧୨ ଅଙ୍କେ ସାହଜାଦା (ସାହଜାହାନ) ପାତିଶା ପାଟଣାରୁ ଭାଗି ଅଇଲାକୁ ପରମେଶ୍ୱରଙ୍କୁ ଖୁରୁଧା କଟକେ ନେଇ **ମେରଦାରେ** ବିଜେ କରାଇଲେ । ସାହଜାହାନ ପାତିଶା ଭାଗି ଆସି ଦକ୍ଷିଣ ଗଲା ଉତ୍ତାରେ ଶ୍ରୀପୁରୁଷୋତ୍ତମ ପରମେଶ୍ୱରଙ୍କୁ ନିଚଳ (ନୀଳାଚଳ) ସଂଘାସନେ ବିଜେ କରାଇଲେ ।" (୬) ଏଠାରେ ପାଞ୍ଜି ବର୍ଣ୍ଣିତ ଘଟଣା ସତ୍ୟ, କିନ୍ତୁ ଅଙ୍କ ଗଣନା ଭୁଲ । ଏହା ୧୨ ଅଙ୍କ ନ ହୋଇ ୭ ଅଙ୍କ ହେବ ।

ସାହଜାହାନଙ୍କ ଦାକ୍ଷିଣାତ୍ୟ ଗମନ ପରେ ମିର୍ଜା ଅହମ୍ମଦ ବେଗ ପୁନର୍ବାର ୧୫୨୫ର ଶେଷ ଭାଗରୁ ୧୫୨୮ ପର୍ଯ୍ୟନ୍ତ ଓଡ଼ିଶାର ସୁବାଦାର ହେଲେ । କିନ୍ତୁ ଏହି ସମୟ ମଧ୍ୟରେ ସେ ଖୁରୁଧା ରାଜ୍ୟ ବା ଜଗନ୍ନାଥ ମନ୍ଦିର ଆକ୍ରମଣ କରି ନ ଥିଲେ । ବୋଧହୁଏ ସେ ସ୍ୱାମୀ ରସିକାନନ୍ଦଙ୍କ ଦ୍ୱାରା ପ୍ରଭାବିତ ହୋଇ ଏପରି ଉଦାର ନୀତି ଅବଲମ୍ବନ କରିଥିଲେ ।

## କୋଣାର୍କର ସୂର୍ଯ୍ୟ ମନ୍ଦିର ଆକ୍ରମଣ :—

ଅହମ୍ମଦ ବେଗଙ୍କ ପରେ ବକର ଖାଁ ନଜମ-ଇ-ସାନି ୧୬୨୮ ରୁ ୧୬୩୨ ପର୍ଯ୍ୟନ୍ତ ଓଡ଼ିଶାର ସୁବାଦାର ହେଲେ । ସେ ସୁବାଦାର ହେବା ସଙ୍ଗେ ସଙ୍ଗେ ୧୬୨୮ ମାର୍ଚ୍ଚ ପୂର୍ବରୁ କୋଣାର୍କର ସୂର୍ଯ୍ୟ ମନ୍ଦିର ଆକ୍ରମଣ କରିଥିବା ସ୍ୱର୍ଗତଃ ମନମୋହନ ଚକ୍ରବର୍ତ୍ତୀ ଅନ୍ୟ ଏକ ମାଦଳାପାଞ୍ଜିରୁ ପାଇ ଏକ ପ୍ରବନ୍ଧ ପ୍ରକାଶ କରିଥିଲେ । ଏହି ଭୀଷଣ ଆକ୍ରମଣ ଯୋଗୁଁ ସୂର୍ଯ୍ୟଦେବଙ୍କ ବିଗ୍ରହ ସେଠାରୁ ଅଣା ଯାଇ ଜଗନ୍ନାଥ ବେଢ଼ା ମଧ୍ୟରେ ଥିବା 'ନୀଳାଦ୍ରି-ମହୋଦୟ' ମନ୍ଦିରରେ ରଖାଯାଇଥିଲେ । ନରସିଂହ ଦେବ ସୂର୍ଯ୍ୟ ବିଗ୍ରହ ଶୂନ୍ୟ ମନ୍ଦିର ଦେଖିବା ପାଇଁ ତାଙ୍କ ୯ ଅଙ୍କ ମୀନ ୨୦ ଦିନ ଚୈତ୍ର କୃଷ୍ଣ ସପ୍ତମୀ ସୋମବାର ଦିନ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରୁ ସେଠାକୁ ଯାତ୍ରା କରିଥିଲେ । ଯଥା—

"ଶ୍ରୀ ରାମଚନ୍ଦ୍ର ଦେବ ମହାରାଜାଙ୍କ ନାତି ଶ୍ରୀପୁରୁଷୋତ୍ତମ ଦେବ ମହାରାଜାଙ୍କ ପୁଅ ଶ୍ରୀ ନରସିଂହ ଦେବ ମହାରାଜାଙ୍କ ୯ ଅଙ୍କ ମୀନ ୨୧ ଦିନ ସପ୍ତମୀ ସୋମବାର

---

(୬) ମାଦଳାପାଞ୍ଜି, ପୃ ୬୭ ।

ଏ ଦେଉଳ ଦେଖିବା ନିମନ୍ତେ ଶ୍ରୀ ପୁରୁଷୋତ୍ତମରୁ ବିଜେ କରି ଦେଖିଲେ । ଏ ଦିନକୁ ଦିଲ୍ଲୀବାଦସା ସାହାଜାହାନ ବାଦସାଙ୍କର ହୋଇ ଓଡ଼ିଶା ସୁବା ବାକର ଖାଁ ହୋଇଥିଲା । ଏ ଦମନ ଜପଦର୍ପ ନିମନ୍ତେ ମହାରାଜାଧିରାଜ ବିରଞ୍ଚି ଦେବ ଶ୍ରୀପୁରୁଷୋତ୍ତମ ଦେଉଳେ ନୀଳାଦ୍ରି-ମହୋଚ୍ଛବ ଦେଉଳେ ବିଜେ କରିଥିଲେ । ଏ ମହାରାଜା ଏ ତୁଛା ଦେଉଳ ଦେଖିବାକୁ ବିଜେ କରି ଯାଇ ଏ ଦେଉଳ ମଫାଇଲେ ।" (୭)

ଜ୍ୟୋତିଷ ଗଣନା ଅନୁସାରେ ୧୬୨୮ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସ ୧୭ ତାରିଖରେ ମୀନ ୨୦ ଦିନ, ଚୈତ୍ର କୃଷ୍ଣ, ସପ୍ତମୀ ସୋମବାର ପଡ଼ିଥିଲା । ପାଞ୍ଜିରେ ମୀନ ୨୧ ଦିନ ଲେଖା ଯାଇଛି । କିନ୍ତୁ ସୌର ମାନ ମାସ ଗଣନାରେ ଦିନକର ପାର୍ଥକ୍ୟ ଧର୍ତ୍ତବ୍ୟ ନୁହେଁ । ପ୍ରାଚୀ ସମିତି ପ୍ରକାଶିତ ମାଦଳା ପାଞ୍ଜିରେ ମଧ୍ୟ ଚନ୍ଦ୍ର ଓ ସୂର୍ଯ୍ୟଙ୍କ ବିଗ୍ରହଦ୍ୱୟ ପୁରୀକୁ ଅଣାଯାଇଥିବା ବିଷୟ ଲିଖିତ ହୋଇଛି ।" ଏ ରାଜାଙ୍କ ଦିନରେ କୋଣାରକ କ୍ଷେତ୍ରରୁ ଚନ୍ଦ୍ର ସୂର୍ଯ୍ୟଙ୍କୁ ଆଣି ଦେଉଳ ଭିତରେ ଇନ୍ଦ୍ରଙ୍କ ଦେଉଳେ ବସାଇଲେ ।" ବକର ଖାଁଙ୍କ କୋଣାର୍କ ସୂର୍ଯ୍ୟ ମନ୍ଦିର ଆକ୍ରମଣ ଏ ଯୁଗର କୌଣସି ମୁସଲମାନ ଇତିହାସ ପୁସ୍ତକରେ ଲିପିବଦ୍ଧ ହୋଇ ନ ଥିଲେ ମଧ୍ୟ ବର୍ଷ, ମାସ, ଦିନ, ବାର, ତିଥି ପ୍ରଭୃତି ସଂପୂର୍ଣ୍ଣରୂପେ ମିଳି ଯାଉଥିବାରୁ ପାଞ୍ଜି ବର୍ଣ୍ଣିତ ବିବରଣ ସର୍ବଥା ଗ୍ରହଣଯୋଗ୍ୟ ।

**ଗଞ୍ଜାମ ଆକ୍ରମଣ :—**

ବକର ଖାଁ ୧୬୩୦ରେ ବିରାଟ ସେନା ସହ ଛତ୍ରଦ୍ୱାର ଘାଟି ପାର ହୋଇ ଏବଂ ଖଲିକୋଟ, କୋଦଳା (ଆଠଗଡ଼) ଓ ଆଳି (ନାମ ଜଣା ଯାଉ ନାହିଁ) ଇତ୍ୟାଦି ରାଜ୍ୟର ରାଜାମାନଙ୍କ ଠାରୁ ସୈନ୍ୟ ସାହାଯ୍ୟ ନେଇ ଗୋଲକୁଣ୍ଡା ସୁଲତାନଙ୍କ ରାଜ୍ୟରେ ଥିବା ସୁଦୃଢ଼ 'ମନସୁର ଗଡ଼'କୁ ଅଧିକାର କରିଥିଲେ । ଏହାର ବର୍ତ୍ତମାନ ନାମ ମନସୁର କୋଟ ଏବଂ ଏହା ବ୍ରହ୍ମପୁରର ଠିକ ୮ ମାଇଲ ପୂର୍ବରେ ଅବସ୍ଥିତ । ଗୋଲକୁଣ୍ଡା ବାହିନୀ ତୁମୁଳ ସଂଗ୍ରାମ ଚଳାଇ ମଧ୍ୟ ଶେଷରେ ପରାସ୍ତ ହୋଇଥିଲେ । ୧୬୩୧ ମସିହା ଏପ୍ରିଲ ମାସ ୨୩ ତାରିଖରେ ସମ୍ରାଟ ସାହଜାହାନ ଏହି ବିଜୟ ସମ୍ବାଦ ପାଇଥିଲେ ।

---

(7) J. A. S. Bengal, 1908, Vol. IV No. 6, N. S pp 322-323 Appendix C.
ନରସିଂହ ଦେବଙ୍କ ଦ୍ୱାରା କରାଯାଇଥିବା ମନ୍ଦିରର ପାଦପୀଠ ଠାରୁ କଳସ-ପାଦ ପର୍ଯ୍ୟନ୍ତ ମାପ କୋଣାର୍କ ମୁଖ୍ୟ ମନ୍ଦିରର ଏକମାତ୍ର ବିଶ୍ୱାସଯୋଗ୍ୟ ବିବରଣ । ଏହା ସ୍ୱର୍ଗତଃ କୃପାସିନ୍ଧୁ ମିଶ୍ରଙ୍କ 'କୋଣାର୍କ' ପୁସ୍ତକରେ ଆଲୋଚିତ ହୋଇଅଛି ।

## ଜମିଦାର ମାନଙ୍କ ଉପରେ ଅତ୍ୟାଚାର :—

ବକର ଖାଁ ଜମିଦାର ଓ ରଯୃତ ମାନଙ୍କ ଉପରେ ଭୀଷଣ ଅତ୍ୟାଚାର ଚଳାଇଥିଲେ । ଥରେ ସେ ରାଜ୍ୟର ଜମିଦାରମାନଙ୍କୁ ଏକ ସଭାକୁ ଡକାଇ ଜବରଦସ୍ତି ଟଙ୍କା ଆଦାୟ କରିବା ନିମିତ୍ତ ସମସ୍ତଙ୍କୁ ବନ୍ଦୀ କରିଥିଲେ । ତାଙ୍କ ଆଦେଶରେ ସାତ ଶହ ଜମିଦାର ନିହତ ହୋଇଥିଲେ, କେବଳ ଜଣେ ଜମିଦାର କୌଶଳକ୍ରମେ ବନ୍ଦୀଶାଳାରୁ ପଳାଇଯାଇ ବାଦସାହ ସାହଜାହାନଙ୍କ ସମ୍ମୁଖରେ ଉକ୍ତ ଅମାନୁଷିକ ଅତ୍ୟାଚାର ଓ ନୃଶଂସ ହତ୍ୟାକାଣ୍ଡର ବିବରଣ ପ୍ରଦାନ କରିଥିଲେ । ସେ ଏପରି ନିଷ୍ଠୁର ଭାବରେ ଓଡ଼ିଶାରୁ ୪୦ ଲକ୍ଷ ଟଙ୍କା ଆଦାୟ କରିଥିବାର ଅଭିଯୋଗ ହୋଇଥିଲା । ବାଦସାହ ତାଙ୍କ ଉପରେ ଅତ୍ୟନ୍ତ ବିରକ୍ତ ହୋଇ ତାଙ୍କୁ କୈଫିୟତ ଦେବା ପାଇଁ ଦିଲ୍ଲୀ ଡକାଇ ନେଇଥିଲେ । (୮) (୨୪-୭-୧୬୩୨) କିନ୍ତୁ ସେ ଖୁର୍ଦ୍ଧା ରାଜ୍ୟ ବା ଜଗନ୍ନାଥ ମନ୍ଦିର ଆକ୍ରମଣ କରିଥିବାର କୌଣସି ଠାରେ ଉଲ୍ଲେଖ ନାହିଁ ।

## ଶାନ୍ତିପୂର୍ଣ୍ଣ ରାଜତ୍ୱ କାଳ:—

ସାହଜାହାନଙ୍କ ଦାକ୍ଷିଣାତ୍ୟ ପ୍ରତ୍ୟାବର୍ତ୍ତନ ସମୟରୁ (୧୬୨୫) ନରସିଂହଙ୍କ ମୃତ୍ୟୁ ପର୍ଯ୍ୟନ୍ତ (୧୬୪୭) କୌଣସି ସୁବାଦାର ଖୁର୍ଦ୍ଧା ରାଜ୍ୟ ବା ଜଗନ୍ନାଥ ମନ୍ଦିର ଆକ୍ରମଣ କରିଥିବା କୌଣସି ସୂତ୍ରରୁ ଜଣାଯାଏ ନାହିଁ । ଏପରି କି କୋଣାର୍କ ଆକ୍ରମଣକାରୀ, ସୁଦୃଢ଼ 'ମନସୁରଗଡ଼' ବିଜେତା, ଜମିଦାର-କୁଳହନ୍ତା ଦୁର୍ଦ୍ଦାନ୍ତ ବକର ଖାଁ ଜଗନ୍ନାଥ ମନ୍ଦିର ପ୍ରତି ଅଶୁଭ ଦୃଷ୍ଟି ପକାଇ ନ ଥିଲେ । ବର୍ତ୍ତମାନ ଏହାର ରହସ୍ୟ ଭେଦ କରିବା ସହଜ ନୁହେଁ । ବକର ଖାଁଙ୍କ ପରବର୍ତ୍ତୀ ସୁବାଦାର ମୁତାକ୍କାଦ୍ ଖାଁ (ମିର୍ଜା ମାକି) ୧୬୩୨ ରୁ ୧୬୪୧ ପର୍ଯ୍ୟନ୍ତ ଅତ୍ୟନ୍ତ ସୁଖଶାନ୍ତିରେ ରାଜ୍ୟ ପାଳନ କରିଥିଲେ । ତାଙ୍କ ଶାସନ କାଳ ମଧ୍ୟରେ ୧୬୩୬-୧୬୩୭ରେ ବାରମ୍ବାର ମୁସଲମାନ ସେନା ଦ୍ୱାରା ଆକ୍ରାନ୍ତ ଜଗନ୍ନାଥ ମନ୍ଦିରର ଜୀର୍ଣ୍ଣ ସଂସ୍କାର କାର୍ଯ୍ୟ ସାଧିତ ହୋଇଥିଲା । ପରବର୍ତ୍ତୀ ଦୁଇଜଣ ସୁବାଦାର ସାହ ନିର୍ମ୍ବାଜ ଖାଁ (୧୬୪୧-୧୬୪୨) ବଙ୍ଗର ଶାସକ ଯୁବରାଜ ମହମ୍ମଦ ସୁଜାଙ୍କ ଶ୍ୱଶୁର ମହମ୍ମଦ ଜମାନ୍ ତେହରାନ (୧୬୪୨-୧୬୪୫) ମଧ୍ୟ ଉଦାର ଶାସକ ଥିଲେ ।

## ନରସିଂହ ଦେବଙ୍କ ହତ୍ୟା:—

ମହମ୍ମଦ ଜମାନ୍‌ଙ୍କ ପରେ ମୁତାକ୍କାଦ ଖାଁ ଦ୍ୱିତୀୟଥର ଓଡ଼ିଶାର ସୁବାଦାର ହୋଇଥିଲେ (୨୧-୧୧-୧୬୪୫ରୁ ୨୬-୭-୧୬୪୮) । ସେ ଗଜପତି ନରସିଂହ

(8) Studies in Mughal India by Sir J. N. Sarkar, P. 202-203

ଦେବଙ୍କୁ ମରାଇଥିବା ଖାନ୍-ଇ-ଦୁରାନ୍ ୧୬୬୧ରେ ଦିଲ୍ଲୀ ଦରବାରକୁ ଲେଖିଥିବା ଏକ ପତ୍ରରୁ ଜଣାଯାଏ — "When the late Mutaqad Khan was Subahdar he slew Narasingh Dev and made his nephew Gangadhara Rajah." (9) ମୁତାକ୍କାଦ ଖାଁ ଓଡ଼ିଶା ଛାଡ଼ିବା ପୂର୍ବରୁ ଗଙ୍ଗାଧର କେତେ ମାସ କାଳ ରାଜତ୍ୱ କରିଥିବାରୁ ୧୬୫୭ ଖ୍ରୀଷ୍ଟାବ୍ଦରେ ନରସିଂହ ଦେବ ନିହତ ହୋଇଥିଲେ । ଏହି ବିବରଣ ମାଦଳାପାଞ୍ଜି ଦ୍ୱାରା ସମର୍ଥିତ ହୁଏ । ଯଥା :—

"ଏ ମହାରାଜାଙ୍କ ଅ ୩୨ ଙ୍କ ମିଥୁନ ୭ ଦିନ ରାତ୍ର ଘାରିବାକୁ ନବାବ ମତମତ ଖାଁର ଅମର ଫତେ ଖାଁ । ଆସି ଶ୍ରୀପୁରୁଷୋତ୍ତମ ଦକ୍ଷିଣ ପାର୍ଶ୍ୱ ନଅରେ ରାଜାଙ୍କ ଅନିରୁଦ୍ଧ ରଘୁ ପିତାମହଙ୍କୁ ସାଙ୍ଗ କରି ରାଜା ଠାକୁରଙ୍କ ମୁଣ୍ଡ କାଟି ଦେଲା । ଶ୍ରୀନଅର ଦ୍ରବ୍ୟ ଯାକ ନେଲା । ପରମେଶ୍ୱରଙ୍କ ଭଣ୍ଡାର ସବୁ ନେଲା ।" (୧୦) ପାଞ୍ଜିରେ ମୁତାକ୍କାଦ ଖାଁ ଶବ୍ଦ 'ମତମତ ଖାଁ' ଓ ଅମୀର ଶବ୍ଦ ଅମର ରୂପରେ ଏ ଦେଶର ଜନସାଧାରଣଙ୍କ ଉଚ୍ଚାରଣ ଅନୁସାରେ ଲେଖାଯାଇଛି । ତାଙ୍କର ୩୨ ଅଙ୍କ ମିଥୁନ ୭ ଦିନ ପଡ଼ିଥିଲା ୧୬୫୭ ଖ୍ରୀଷ୍ଟାବ୍ଦ ଜୁନ୍ ମାସ ୫ ତାରିଖ ଶନିବାର ଦିନ ।

ରାଜପୁତ କବି ଯାନକୃଷ୍ଣ ଦାସ ତାଙ୍କ 'ରସବିନୋଦ' ଗ୍ରନ୍ଥରେ ନୃସିଂହ-ଦେବଙ୍କୁ ଫତେ ଖା ପଠାଣ ହତ୍ୟା କରିଥିବା ବିଷୟ ଲେଖିଛନ୍ତି । ଯଥା —

"ତାହାଙ୍କ ଠାରୁ ଯେ ତନୁଜ, ନୃସିଂହ ଦେବ ମହାରାଜ ।
× × ×
ତହୁଁ ପୁରୁଷୋତ୍ତମ ଗଲେ, ପ୍ରଭୁଙ୍କ ସେବା କରିଥିଲେ ।
ଏମନ୍ତେ ଫତେ ଖାଁ ପଠାଣ, ଜାଣିଲା ଓଡ଼ିଶା ଭିଆଣ ।
× × ×
ଗୃପତେ କଲେ ଯେ ବିଗ୍ରହ, ହବାଇଲେ ନୃପତିକ ମାର ।
ଧନ ଭଣ୍ଡାର ନାଞ୍ଚ ଦେଇ, ଥାନରେ ଭେଟାଇଲେ ନେଇ ।
× × ×
**ପୁରୁଷୋତ୍ତମେ ରାଜା ଥିଲେ, ଅଭିର ନେଇ ଭେଟାଇଲେ ।**
**ତେଣୁ ସେ କୋପଭରେ ଆସି, ରାଜାଙ୍କୁ ପକାଇଲା ନାଶି ।"**

---

(9) Studies in Mughal India by Sir J.N. Sarkar P. 24.
(୧୦) ମାଦଳାପାଞ୍ଜି ପୃ ୬୭-୬୮

ଏହି ହତ୍ୟାକାଣ୍ଡ ପାଇଁ ଫତେ ଖାଁଙ୍କ ଅପେକ୍ଷା ରାଜାଙ୍କ ବୃଦ୍ଧ ପିତାମହ କୃତଘ୍ନୀ ଅନିରୁଦ୍ଧ ରାୟ ଅଧିକ ଦାୟୀ । ସୁବାଦାର ମୁରାଦାବାଦ ଖାଁ ଅତ୍ୟନ୍ତ ଶାନ୍ତ-ଶିଷ୍ଟ ଥିଲେ ଏବଂ ପୂର୍ବରୁ ୧୧ ବର୍ଷ କାଳ ସୁବାଦାର ଥିବା ସମୟରେ କାହାର କୌଣସି ପ୍ରକାରେ କ୍ଷତି ବା ଅନିଷ୍ଟ କରି ନ ଥିଲେ । ତେଣୁ ତାଙ୍କୁ ଏଥିପାଇଁ ସଂପୂର୍ଣ୍ଣ ଦାୟୀ କରାଯାଇ ନ ପାରେ । ଖୁର୍ଦ୍ଧା ସିଂହାସନ ଅଧିକାର ପାଇଁ ରାଜ ପରିବାର ମଧ୍ୟରେ ହୋଇଥିବା ଷଡ଼ଯନ୍ତ୍ର ଏହା ମୂଳରେ ଥିବାର ପରବର୍ତ୍ତୀ ଘଟଣା ଚକ୍ରରୁ ଜଣାଯାଏ । ରାଜହନ୍ତା ଫତେ ଖାଁ ରାଜାଙ୍କୁ ମାରିବା ପରେ ବିଜୟୋନ୍ମତ୍ତ ହୋଇ ଗୃହଶତ୍ରୁ ମାନଙ୍କ ସାହାଯ୍ୟରେ ରାଜ ନଅରର ଧନଦ୍ରବ୍ୟ ଓ ଜଗନ୍ନାଥ ମହାପ୍ରଭୁଙ୍କ ଭଣ୍ଡାର ଲୁଣ୍ଠନ କରିଥିଲେ ।

## ନରସିଂହ ଦେବଙ୍କ କୀର୍ତ୍ତିକଳାପ :—

ତାଙ୍କ ରାଜତ୍ୱର ଅଧିକ ଭାଗ ଅପେକ୍ଷାକୃତ ସୁଖଶାନ୍ତିରେ କଟିଥିବାରୁ ନରସିଂହଦେବ ଲୁଣି ଖାଇ ଯାଉଥିବା ଜଗନ୍ନାଥ ମନ୍ଦିର ଦେହରେ ଚୂନ ପଲସ୍ତରା କରିଥିଲେ । ପୁରୀ ମନ୍ଦିର ନିର୍ମିତ ହେବା କାଳରୁ (୧୧୧୮-୧୬୭) ପ୍ରାୟ ପାଞ୍ଚଶତ ବର୍ଷ ମଧ୍ୟରେ କେବେ ଚୂନ ହୋଇଥିବାର ଜଣାଯାଏ ନାହିଁ । ବାରମ୍ବାର ମୁସଲମାନ ସେନାର ଆକ୍ରମଣ ଓ ଆକ୍ରମଣ ଜନିତ ଅବହେଳା ଯୋଗୁଁ ଏହାର ବାହାର କାନ୍ଥ ଖଣ୍ଡିଆ ଖାବରା ହୋଇ ଗଛ ପତ୍ର ଉଠିଯାଇଥିଲା । ତେଣୁ ଏହି ଚୂନ କାମ ତାଙ୍କ ୧୯ ଅଙ୍କ ଧନୁ ୨୨ ଦିନ ଠାରୁ (୨୧-୧୨-୧୬୩୭ ଠାରୁ ୨୧ ଅଙ୍କ ଧନୁ ୨୫ ଦିନ (୨୪-୧୨-୧୬୩୭) ବା ୩୬୮ ଦିନରେ ଶେଷ ହୋଇଥିଲା । ନାରାୟଣ ରାୟଗୁରୁ ମହାପାତ୍ର, ମନ୍ତ୍ରୀ କହ୍ଲାଇ ବିଦ୍ୟାଧର ମହାପାତ୍ର, ବନମାଳୀ ରାଜତରାୟ (ପାଇକରା) ମହାପାତ୍ର, ମାନ ପଟ୍ଟନାୟକ ଓ ଜଗନ୍ନାଥ ମହାପାତ୍ର ପ୍ରଭୃତିଙ୍କ ତତ୍ତ୍ୱାବଧାନରେ ଏହି ଚୂନ କାମ କରାଯାଇଥିଲା । ଏଥିରେ ୯୧୫୩୮ କାହାଣ ୨ ପଣ ୧୦ ଗଣ୍ଡା କଉଡ଼ି ଖର୍ଚ୍ଚ ହୋଇଥିଲା । (୧୧)

ସେ ସ୍ୱନାମରେ ଶ୍ରୀର ନରସିଂହପୁର ଶାସନ ଭାର୍ଗବୀ ନଦୀ କୂଳରେ ପ୍ରତିଷ୍ଠା କରିଥିଲେ । ତାଙ୍କ ସାନ ଭାଇ ବିଶ୍ୱନାଥ ରାଏ, ମନ୍ତ୍ରୀ କହ୍ଲାଇ ବିଦ୍ୟାଧର, ପାତ୍ର ଦାମୋଦର ପ୍ରୌଢ଼ରାଏ, ପାତ୍ର ବାସୁ ସାନ୍ତରା ଯଥାକ୍ରମେ ବିଶ୍ୱନାଥପୁର, କହ୍ଲାଇ ବିଦ୍ୟାଧରପୁର, ଦାମୋଦରପୁର ଓ ବାସୁଦେବପୁର ଶାସନ ପ୍ରତିଷ୍ଠା କରିଥିଲେ । ଏ ସମସ୍ତ ଶାସନ ଅଦ୍ୟାବଧି ବିଦ୍ୟମାନ । ତାଙ୍କ ପାତ୍ର ମାନ ପଟ୍ଟନାୟକ ମାନମାଧବଙ୍କ ଦେଉଳର ମଣ୍ଡପ କରିଥିଲେ ।

---

(୧୧) ଏହାର ସମସ୍ତ ହିସାବ ମାଦଳାପାଞ୍ଜି ପୃ ୯୦-୯୧ ମଧ୍ୟରେ ଦିଆଯାଇଛି ।

## କୌଳୀନ୍ୟ ପ୍ରଥା ପ୍ରଚଳନ :—

ବଙ୍ଗ ଦେଶରେ ପ୍ରଥମେ ସେନ ବଂଶୀୟ ରାଜା ବଲ୍ଲାଳ ସେନ ସମାଜର କ୍ଷତି-କାରକ କୌଳୀନ୍ୟ ପ୍ରଥା ପ୍ରଚଳନ କରିଥିଲେ । ରାଜା ନରସିଂହ ଦେବ ବଙ୍ଗଳାର ଅନ୍ଧ ଅନୁକରଣରେ ଏହି ପ୍ରଥା ପୁରୀ ଜିଲ୍ଲାରେ ଚଳାଇଥିଲେ । ଏ ସଂପର୍କରେ ସ୍ୱର୍ଗତଃ ଐତିହାସିକ କୃପାସିନ୍ଧୁ ମିଶ୍ରଙ୍କ ସୁଚିନ୍ତିତ ମତ ଏଠାରେ ଉଲ୍ଲେଖଯୋଗ୍ୟ- "ବଙ୍ଗଦେଶ ଓ ଓଡ଼ିଶା ମଧ୍ୟରେ ରାଜନୀତି, ସମାଜ ଓ ଧର୍ମକ୍ଷେତ୍ରରେ ଯେବର କେତେ ଆଦାନ ପ୍ରଦାନ ହୋଇଥିବା ସ୍ଥଳେ ଉତ୍କଳର ସ୍ୱାଧୀନ ଗଜପତିମାନେ କୌଳୀନ୍ୟ ମୋହରୁ ଉତ୍କଳ ବ୍ରାହ୍ମଣ ସମାଜକୁ ଏତେ କାଳ ମୁକ୍ତ ରଖିଥିଲେ । ବର୍ତ୍ତମାନ ଦେଶ ଯେତେବେଳେ ମୁସଲମାନ ଆକ୍ରମଣ ଓ ଲୁଣ୍ଠନରେ ଛାରଖାର, ଓଡ଼ିଶାର ଗଜପତି ଯେତେବେଳେ ପ୍ରାଣ ଭୟରେ ଇତସ୍ତତଃ, ଉତ୍କଳବାସୀଙ୍କ ପ୍ରାଣରୁ ଯେତେବେଳେ ସ୍ୱାଧୀନ ଚିନ୍ତା, ଉଚ୍ଚ ଆକାଂକ୍ଷା ଓ ଯେବକଦ୍ୱନ୍ଦ୍ୱତା ଲୁପ୍ତପ୍ରାୟ, ସେତିକବେଳେ ରାଜା ନରସିଂହଦେବ ଉତ୍କଳରେ କୌଳୀନ୍ୟ କଳ୍ପନାରେ ଉନ୍ମାଦ ଅନୁଭବ କରୁଥିଲେ । × × ସେହି ସମୟରେ ଉତ୍କଳ ବ୍ରାହ୍ମଣ ସମାଜରେ ସାମନ୍ତ, ଭଞ୍ଜମିଶ୍ର ଓ ବୈଦିକ ତିନ ଶ୍ରେଣୀର ସୃଷ୍ଟି ହେଲା । କୁଳ ମର୍ଯ୍ୟାଦା ଅନୁସାରେ ବ୍ରାହ୍ମଣମାନେ ଜମିବାଡ଼ି ବୃତ୍ତିର ଦାନ ପାଇଲେ ଏବଂ ଗ୍ରାମର ମୁଖ୍ୟ ସାମନ୍ତ 'ଦାନାଧ୍ୟକ୍ଷ' ହେଲେ । ଏଣିକ ସାମନ୍ତ ସୃଷ୍ଟିରେ ରାଜାମାନେ ଗୌରବ ଅନୁଭବ କଲେ । କାଳକ୍ରମେ ପୁରୀ ଜିଲ୍ଲାର ଶାସନ ମାନଙ୍କରେ ଚାରି ଶ୍ରେଣୀର ସାମନ୍ତ ସୃଷ୍ଟି ହେଲେ—ଦଶପୁର, ନନ୍ଦ, ବାଜପେୟୀ ଓ ଗୋଆନ୍ତରୀୟ । ଏମାନଙ୍କ ମଧ୍ୟରେ ଦଶପୁର ମାନଙ୍କୁ ନରସିଂହ ଦେବ ପ୍ରଥମେ ସାମନ୍ତ କରିଥିଲେ ।" (୧୨)

## ବସନ୍ତ ଗୁଣ୍ଡିଚା ଯାତ୍ରା ପ୍ରଚଳନ :—

ବହୁ ପ୍ରାଚୀନ କାଳରୁ ଆଷାଢ଼ ଶୁକ୍ଳ ଦ୍ୱିତୀୟା ଦିନ ଠାରୁ ନବଦିବସ ବ୍ୟାପି ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ରଥଯାତ୍ରା ଉତ୍ସବ ପ୍ରତିପାଳିତ ହୋଇଥିଲା । ଚୋଡ଼ଗଙ୍ଗ ଦେବଙ୍କ ଦ୍ୱାରା ଗୁଣ୍ଡିଚା ମନ୍ଦିର ନିର୍ମିତ ହେବା ପରେ ଏହାର ଅପର ନାମ ହେଲା ଗୁଣ୍ଡିଚା ଯାତ୍ରା । ତାଙ୍କ ରାଜତ୍ୱର ପ୍ରାୟ ୧୫ ବର୍ଷ ସୁଖ ଶାନ୍ତିରେ କଟିଥିବାରୁ ସେ ଚୈତ୍ର ମାସ ଶୁକ୍ଳ ପକ୍ଷରେ ଜଗନ୍ନାଥ ମହାପ୍ରଭୁଙ୍କ ବସନ୍ତ-ଗୁଣ୍ଡିଚା ଯାତ୍ରା ଆରମ୍ଭ କରିଥିଲେ । ଏହି ଘଟଣାକୁ ସ୍ମରଣୀୟ କରିବା ପାଇଁ ତାଙ୍କର ସଭାକବି ହଳଧର ମିଶ୍ର 'ବସନ୍ତୋତ୍ସବ ମହାକାବ୍ୟମ୍' ରଚନା କରିଥିଲେ । ଏହାର ମଙ୍ଗଳାଚରଣ ପରେ ପ୍ରଦତ୍ତ ଗୋଟିଏ ଦୁଇଟି ଶ୍ଳୋକରୁ ଜଣାଯାଏ ଯେ, ପୂର୍ବବର୍ତ୍ତୀ ବର୍ଷ ଓ

---

(୧୨) 'ଉତ୍କଳ ଇତିହାସ', ୭ ପଣ୍ଡିତ କୃପାସିନ୍ଧୁ ମିଶ୍ର ପ୍ରଣୀତ ପୃ ୨୦୪

ଶାସ୍ତ୍ରାର୍ଥବିଜ୍ଞ ସୂର୍ଯ୍ୟ ଓ ଚନ୍ଦ୍ରବଂଶୀ ରାଜାମାନେ ଭୟ ଅଥବା ମୋହବଶରୁ କରି ପାରି ନ ଥିବା ଜଗନ୍ନାଥ ମହାପ୍ରଭୁଙ୍କ ବସନ୍ତଗୁଣ୍ଡିଚ୍ଚ ଯାତ୍ରା ପରମବୈଷ୍ଣବ ଭକ୍ତ ଗୋବ୍ରାହ୍ମଣ ପ୍ରତିପାଳକ ଶତ୍ରୁକୁଳ ଧୂମକେତୁ ସତ୍ୟବାଦୀ ନରସିଂହ ଦେବ ପ୍ରଥମେ କରିବାକୁ ସମର୍ଥ ହୋଇଥିଲେ । (୧୩)

ଧନକୃଷ୍ଣ ଦାସ କୃତ 'ରସବିନୋଦ' ଗ୍ରନ୍ଥର ୪୨ ଅଧ୍ୟାୟରେ ମଧ୍ୟ 'ବସନ୍ତଗୁଣ୍ଡିଚ୍ଚ' ଯାତ୍ରାର ଉଲ୍ଲେଖ ଦେଖାଯାଏ ।

"ତାହାଙ୍କ ଠାରୁ ଯେ ତନୁଜ, ନୃସିଂହ ଦେବ ମହାରାଜ ।
ଚୌତିଶ ଅଙ୍କ ଯାଏ ଥିଲେ, ବିଷ୍ଣୁ ଚରଣେ ସେବା କଲେ ।
× × ×
ମୀନ ମାସରେ ଯାତ୍ରା ପୁଣ, ବସନ୍ତ ଗୁଣ୍ଡିଚ୍ଚ ଉଆଣ ।
ଜହ୍ନୁଂ ସେ ବିଷ୍ଣୁଙ୍କ ଭଗତ, କଲେ ଗୁଣ୍ଡିଚ୍ଚ ନାମେ ଜାତ ।"

ବାରମ୍ବାର ମୋଗଲ ସେନାର ପ୍ରବଳ ଆକ୍ରମଣ ଫଳରେ ସପରିବାର ସ୍ୱୀୟ ପିତାଙ୍କ ବହୁମାସ ଦୁର୍ଦ୍ଦଶା ଓ ପରିଶେଷରେ ଅଜ୍ଞାତ ବାସରେ ତାଙ୍କର ମୃତ୍ୟୁ ସ୍ୱଚକ୍ଷୁରେ ଦେଖି ଏବଂ ବିଭିନ୍ନ ଦୁର୍ଗମ ସ୍ଥାନକୁ ସ୍ଥାନାନ୍ତରୀକରଣ ଦ୍ୱାରା ଓଡ଼ିଶାର ପ୍ରଭୁ ଜଗନ୍ନାଥଙ୍କୁ ବିଧର୍ମୀମାନଙ୍କ ହସ୍ତରୁ ରକ୍ଷା ସମ୍ବନ୍ଧରେ ତିକ୍ତ ଅନୁଭୂତି ଥାଇ ମଧ୍ୟ ନରସିଂହ ଦେବ ଭାବୀ ଆକ୍ରମଣର ପ୍ରତିରୋଧ ପାଇଁ ରାଜ୍ୟରକ୍ଷା ବ୍ୟବସ୍ଥାକୁ ସୁଦୃଢ଼ ନ କରି ବହୁ ବ୍ୟୟ ଓ ସମୟ ସାପେକ୍ଷ ଅଯଥା ଆଡ଼ମ୍ବର ପୂର୍ଣ୍ଣ, ଏବଂ ସେ ଯୁଗର ଅବସ୍ଥା ବିରୁଦ୍ଧରେ ଅନାବଶ୍ୟକ ବସନ୍ତ ଗୁଣ୍ଡିଚ୍ଚ ଯାତ୍ରା ଚଳାଇ ବୁଦ୍ଧିମତ୍ତା ଓ ଦୂରଦୃଷ୍ଟିର ପରିଚୟ ଦେଇ ନ ଥିଲେ । ଅବଶ୍ୟ ଜଗନ୍ନାଥଙ୍କ ମହାତ୍ମ୍ୟ ବୃଦ୍ଧି ନିମିତ୍ତ ସେ ନିଜର ନୂତନ କଳ୍ପନାକୁ କାର୍ଯ୍ୟରେ ପରିଣତ କରିଥିଲେ । କିନ୍ତୁ ଏହା ଦୀର୍ଘ ଦିନ ସ୍ଥାୟୀ ହୋଇଥିବାର ପ୍ରମାଣ ମିଳେ ନାହିଁ ।

---

(୧୩) "ମୁରାରେ ରସମାଧୁରୀ ପରିଚିତେ ନବେ ଗୁଣ୍ଡିଚ୍ଚ-
ବିନୋଦ ଭରବର୍ଣ୍ଣନେ ମମ ମନୋ ଯଥା ତତ୍ କୁରୁ ।
× × ×
ତସ୍ୟାତ୍ମଜୋଽବନୀତଲେଽଖିଳଧର୍ମସେତୁଃ
ଶ୍ରୀମନ୍ନୃସିଂହ ଇତି ଗୋ-ଦ୍ୱିଜ-ଶର୍ମ-ହେତୁଃ
ଦୁର୍ଦ୍ଧର୍ଷ ଦୁର୍ବିସହ-ଶାତ୍ରବ-ଧୂମକେତୁ
ସ୍ୱପ୍ନେଽପି ଯୋଽନୃତ ମଭାଷତ ନୈବ ହେତୁଃ ।

## ସଂସ୍କୃତ ସାହିତ୍ୟ ଚର୍ଚ୍ଚା

### କବିରତ୍ନ ପୁରୁଷୋତ୍ତମ ମିଶ୍ର :—

ତାଙ୍କ ରାଜସଭା ଦୁଇ ଜଣ ପ୍ରସିଦ୍ଧ ସଂସ୍କୃତ ପଣ୍ଡିତଙ୍କ ଦ୍ୱାରା ମଣ୍ଡିତ ହୋଇ-ଥିବାରୁ ବିଶେଷ ଖ୍ୟାତି ଲାଭ କରିଥିଲା । ସେ ଦୁହିଁଙ୍କ ମଧ୍ୟରେ ଟୀକାକାର କବିରତ୍ନ ପୁରୁଷୋତ୍ତମ ମିଶ୍ରଙ୍କ ନାମ ସର୍ବାଦୌ ଉଲ୍ଲେଖଯୋଗ୍ୟ । ଆନ୍ଧ୍ର ଦେଶର କୋଲାଚଳ ମଲ୍ଲିନାଥ ସୂରିଙ୍କ ପରି ସେ ନିଜର ବିଭିନ୍ନ ଟୀକା ପାଇଁ ଉତ୍କଳର ସର୍ବାଞ୍ଚଳରେ ସୁପରିଚିତ ଥିଲେ । ସେ ରୂପ ଗୋସ୍ୱାମୀ କୃତ 'ହଂସଦୂତ'ର ମନୋହାରଣୀ ନାମକ ଟୀକା ନରସିଂହ ଦେବଙ୍କ ଗୃହଅଙ୍କରେ ରଚନା କରିଥିଲେ । ଏହା ହଂସଦୂତର ସର୍ବପ୍ରଥମ ଟୀକା । ଯଥା :—

× × ×

"ମିଶ୍ର ଶ୍ରୀ ପୁରୁଷୋତ୍ତମୋ ବିତନୁତେ ଟୀକାଂ ମନୋହାରଣୀମ୍
ଟୀକେୟଂ ପ୍ରଥମା ମୟୈବ ରଚିତା ଶ୍ରୀହଂସଦୂତାଭିଧେ

× × ×

'ଅଙ୍କେ ଶ୍ରୀ ନରସିଂହ ଭୂପତିଳକସ୍ୟାମ୍ଭୋଧି ସଂଖ୍ୟେ ମୟା
କାଳେନାପିକୃତା ଯଥାଯଥମିତି ଟୀକା ସତାଂପ୍ରୀତୟେ
ଯସ୍ୟାଂ ଯଦ୍‌ଯଦଲେଖି ବିଭ୍ରମବଶାତ୍ ଯଦ୍‌ବାଭ୍ରମାତ୍ ସଂଭ୍ରମାତ୍
ଶୋଧ୍ୟଂ ତତ୍ତଦମେଧ ମେବ ନିପୁଣୈ ର୍ଯାଚେ ନତଃସାଞ୍ଜଳିଃ ।'

ନରସିଂହ ଦେବଙ୍କ ଗୃହଅଙ୍କ ୧୫-୮-୧୬୨୩ରୁ ଚଳିଥିବାରୁ ଏହି ତାରିଖ ପାଖାପାଖି ଉକ୍ତ ଟୀକା ରଚିତ ହୋଇଥିଲା । ସେ ମୁରାରି କୃତ ପ୍ରସିଦ୍ଧ ଅନର୍ଘ ରାଘବ ନାଟକର ଟୀକା ନରସିଂହଙ୍କ ରାଜତ୍ୱ କାଳରେ ସମାପ୍ତ କରିଥିଲେ । ଯଥା :—

"ଶାର ଶ୍ରୀପୁରୁଷୋତ୍ତମ କ୍ଷିତିପତେଃ ପୁତ୍ରେ ନୃସିଂହ କ୍ଷମା—
ନାଥେ ଶାସତି ମେଦିନୀଂ ଗଜପତୌ କ୍ଷେଣ୍ୱିନ୍ଦ୍ରିୟେନ୍ଦୌ ଶକେ
ପ୍ରୀତ୍ୟୈ ସଦ୍‌ଗୁଣିନାଂ ମୟାପି ନନୁ ଯା ଟୀକା ମୁରାରେଃ କୃତା
ତ୍ୱଂ ତେ ତାଂ ପରିଶୋଧୟନ୍ତୁ ବହୁଶୋ ଭୂୟୋ ନମସ୍ୟାଃ ମମ ।"

---

ଯେନାକାରି ମୁରାରିଗୁରୁଚରଣ ଦ୍ୱନ୍ଦ୍ୱାରବିନ୍ଦାତ୍ମନା
ଯାହା ତୈହ କଳକ୍ଷ ପକ୍ଷ ବହିତା ଲକ୍ଷ୍ମୀପତେର୍ଗୁଣ୍ଡିତ୍ର ।
ଯା ମୋହାଦଥବାଭସ୍ୟ······ ···ହାସାତ୍ ପୁରା କୋ କୃତା
ବର୍ଯ୍ୟୈଃ ସୂର୍ଯ୍ୟଶଶାଙ୍କବଂଶଜନୃପୈଃ ଶାସ୍ତ୍ରାର୍ଥବିଜ୍ଞୈରପି ।"

ଅର୍ଥାତ୍ ପୁରୁଷୋତ୍ତମ ଦେବଙ୍କ ପୁତ୍ର ଗଜପତି ନରସିଂହ ଦେବଙ୍କ ରାଜତ୍ୱ କାଳରେ ଖ (୦) ଇଷୁ (୫) ଇନ୍ଦ୍ରିୟ (୫) ଓ ଇନ୍ଦୁ (୧) ଅର୍ଥାତ୍ ୧୫୫୦ ଶକାବ୍ଦ ବା ୧୬୨୮ ଖ୍ରୀଷ୍ଟାବ୍ଦରେ ସେ ମୁରାରି ଟୀକା ସମାପ୍ତ କରିଥିଲେ । ଏ ଶ୍ଳୋକଟି ନାଟକର ସପ୍ତମ ଅଙ୍କ ଟୀକାର ଶେଷରେ ଲିପିବଦ୍ଧ ହୋଇଅଛି ।

ସେ ମଧ୍ୟ 'ନୀଳାଦ୍ରିନାଥଶତକମ୍'ର ପ୍ରଣେତା ଥିଲେ । ଗଜପତି ନରସିଂହ ଦେବଙ୍କ ନ୍ୟାୟ ଲଳିତ ରାଜ୍ୟ ଶାସନ କାଳରେ ନୀଳାଦ୍ରିନାଥଙ୍କୁ ସ୍ତୁତି କରୁଥିବା ସମୟରେ ସ୍ୱତଃ ଏହି ଶତକର ଶ୍ଳୋକାବଳୀ ତାଙ୍କ ହୃଦ-କନ୍ଦରରୁ ନିସୃତ ହୋଇଥିଲା ।

"ନରସିଂହ ବାରଣପତୌ ମହୀମିମାଂ
ଲଳିତା ନୟା ଯବତି ପୌରୁଷୋତ୍ତମେ
ରସ-କାଳ-ବାଣ-ବିଧୁ-ସମ୍ମିତେ ଶକେ
ଚରିତୋଽସ୍ୟମାଶୁ କବିରତ୍ନ ସୂରିଣା ।"

ଏ ଗ୍ରନ୍ଥର ରଚନା କାଳ ହେଉଛି ରସ (୬) କାଳ (୭) ବାଣ (୫) ବିଧୁ (୧) ୧୫୭୬ ଶକାବ୍ଦ ବା ୧୬୫୪ ଖ୍ରୀଷ୍ଟାବ୍ଦ । ଏତଦ୍‌ବ୍ୟତୀତ ସେ ଉତ୍କଳ ପଣ୍ଡିତ ସମାଜରେ ବିଶେଷ ଆଦୃତ 'ନୈଷଧ ମହାକାବ୍ୟମ୍'ର ମଧ୍ୟ ଏକ ସୁନ୍ଦର ଟୀକା ରଚନା କରିଥିଲେ । କିନ୍ତୁ ଏହି ପ୍ରକାଣ୍ଡ ଗ୍ରନ୍ଥର ଦୁଇଟି ସର୍ଗର ଟୀକା ଥିବା ଖଣ୍ଡିଏ ପୋଥି ମିଉଜିୟମରେ ସଂରକ୍ଷିତ । ଯେତେଦୂର ସମ୍ଭବ ନରସିଂହଙ୍କ ରାଜ ସଭାରେ ଥିବା ସମୟରେ ସେ ଏହା ରଚନା କରିଥିଲେ । ତାଙ୍କର ଅନ୍ୟ ଗୋଟିଏ କୃତି ହେଉଛି 'ଯମକ ଭାରତ ମହାକାବ୍ୟମ୍' । ଗଞ୍ଜାମରେ ଏହି ପୋଥିର ସନ୍ଧାନ ଶ୍ରୀମାନ୍ ସୁଦର୍ଶନ ଆଚାର୍ଯ୍ୟ ଏମ୍. ଏ. ପାଇଛନ୍ତି ।

ତାଙ୍କର ସମସ୍ତ ଗ୍ରନ୍ଥ ମଧ୍ୟରେ 'ସଙ୍ଗୀତ ନାରାୟଣମ୍' ଗ୍ରନ୍ଥ ଭାରତ ପ୍ରସିଦ୍ଧ । ଏହା ଏକ ସମୟରେ ସଂଗୀତ ସମ୍ବନ୍ଧରେ ଏକ ଉତ୍କୃଷ୍ଟ ଗ୍ରନ୍ଥ ରୂପେ ଉତ୍କଳ, ଆନ୍ଧ୍ର ଓ ବଙ୍ଗ ଦେଶରେ ବିବେଚିତ ହେଉଥିଲା । ସେ ଗଜପତିଙ୍କ ରାଜସଭାରେ ୧୬୧୯ରୁ ୧୬୫୪ ପର୍ଯ୍ୟନ୍ତ ଦୀର୍ଘ ୨୫ ବର୍ଷ କାଳ ରହିଥିଲେ । କିନ୍ତୁ ନରସିଂହ ଦେବଙ୍କ ହତ୍ୟା ପରେ ସେ ପୁରୀ ପରିତ୍ୟାଗ କରି ତାଙ୍କ ପିତା ଆନନ୍ଦ ମିଶ୍ରଙ୍କ ଆଶ୍ରୟଦାତା ପାରଳାଖେମଣ୍ଡିର ଗଜପତି ନାରାୟଣ ଦେବଙ୍କ ସଭା ମଣ୍ଡନ କରିଥିଲେ । ସେ ସମୟରେ ନାରାୟଣ ଦେବ ସଂଗୀତ ଓ ସାହିତ୍ୟର ପୃଷ୍ଠପୋଷକ ରୂପେ ବିଶେଷ ଖ୍ୟାତି ଅର୍ଜନ କରିଥିଲେ । କବିରତ୍ନ ପୁରୁଷୋତ୍ତମ ମିଶ୍ର ପାରଳାଖେମଣ୍ଡିରେ ଅବସ୍ଥାନ ସମୟରେ ଉକ୍ତ ଗ୍ରନ୍ଥ ରଚନା କରି, ସ୍ୱୀୟ ଆଶ୍ରୟ ଦାତାଙ୍କ ନାମାନୁସାରେ ଏହାର ନାମ ରଖିଥିଲେ 'ସଂଗୀତ ନାରାୟଣମ୍' । ଏହା ପ୍ରକୃତରେ କବିରତ୍ନଙ୍କ କୃତି

ହେଲେ ମଧ୍ୟ ପ୍ରତ୍ୟେକ ପରିଚ୍ଛେଦର ଭଣିତାରେ ଗଜପତି ନାରାୟଣ ଦେବଙ୍କ ନାମ ପରିଦୃଷ୍ଟ ହୁଏ । ଉକ୍ତ ଗ୍ରନ୍ଥ ପାଠରୁ ଜଣାଯାଏ ଯେ କବିଚନ୍ଦ୍ର, 'ରାମଚନ୍ଦ୍ରୋଦୟ ପ୍ରବନ୍ଧ' ଓ 'ତାଳ ସଂଗ୍ରହ' ନାମକ ଅନ୍ୟ ଦୁଇଟି ସଂଗୀତ ଗ୍ରନ୍ଥ ପ୍ରଣୟନ କରିଥିଲେ । କବିଚନ୍ଦ୍ରଙ୍କ ପୁତ୍ର ନାରାୟଣ ମିଶ୍ର ମଧ୍ୟ ସଂଗୀତ ଶାସ୍ତ୍ରରେ ଅତ୍ୟନ୍ତ ପାରଦର୍ଶୀ ଥିଲେ ଏବଂ ପିତାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ 'ସଂଗୀତ ସରଣୀ' ନାମକ ଗ୍ରନ୍ଥ ସଙ୍କଳନ କରିଥିଲେ । କବିଚନ୍ଦ୍ରଙ୍କ ଭ୍ରାତୃଷ୍ପୁତ୍ର ପଣ୍ଡିତ ରଘୁନାଥ ମିଶ୍ର 'ଯମକ ଭାଗବତ ମହାକାବ୍ୟମ୍'ର ଏକ ଟୀକା ରଚନା କରିଥିବାର ଜଣାଯାଏ । ନିଜର ଅସାଧାରଣ କବିତ୍ୱ ଓ ପାଣ୍ଡିତ୍ୟ ଯୋଗୁଁ ପୂର୍ବ-ଭାରତରେ ବିଶେଷ ଖ୍ୟାତି ଲାଭ କରିଥିବା କବିଚନ୍ଦ୍ର ପୁରୁଷୋତ୍ତମ ମିଶ୍ର ସ୍ୱୀୟ ମହନୀୟ କୃତି ସମୂହ ଦ୍ୱାରା ସଂସ୍କୃତ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରିଥିବାରୁ ଆଜି ସେ ଓଡ଼ିଆ ଜାତିର ଗୌରବାସ୍ପଦ ଓ ନମସ୍ୟ । (୧୮)

**କବି ହଳଧର ମିଶ୍ର** :—ଗଜପତି ନରସିଂହଙ୍କ ରାଜସଭାର ଅନ୍ୟ ଜଣେ ପ୍ରସିଦ୍ଧ କବି ଓ ପଣ୍ଡିତ ହେଉଛନ୍ତି କବି ହଳଧର ମିଶ୍ର । ଏ ପର୍ଯ୍ୟନ୍ତ ତାଙ୍କ ରଚିତ ତିନୋଟି ଗ୍ରନ୍ଥ, ଯଥା 'ବସନ୍ତୋତ୍ସବ ମହାକାବ୍ୟମ୍', 'ସଙ୍ଗୀତ କଳ୍ପଲତା' ଓ 'ହଳଧର ସଂହିତା' ନାମକ ଜ୍ୟୋତିଷ ଶାସ୍ତ୍ର ଆବିଷ୍କୃତ ହୋଇଅଛି ଏବଂ ଏହି ତିନୋଟିର ପୋଥି ପ୍ରାଦେଶିକ ମିଉଜିୟମ ପୋଥି ଭଣ୍ଡାରରେ ସଂରକ୍ଷିତ । ସେ 'ହରିହର ପ୍ରକାଶ ପ୍ରବନ୍ଧ' ନାମକ ଅନ୍ୟ ଏକ ଗ୍ରନ୍ଥ ମଧ୍ୟ ରଚନା କରିଥିବାର ଜଣାଯାଏ । ସେ ନିତ୍ୟାଗ୍ନିରନିଷ୍ଠ, ମହର୍ଷିପ୍ରତିମ, ବହୁ-ଧର୍ମଶାସ୍ତ୍ର ପ୍ରଣେତା ପ୍ରସିଦ୍ଧ ଶମ୍ଭୁକର ବାଜପେୟୀଙ୍କ ବଂଶରେ ଜାତ ହୋଇଥିଲେ । ତାଙ୍କ ପିତାଙ୍କ ନାମ ବିଦ୍ୟାକର ମିଶ୍ର ଓ ମାତାଙ୍କ ନାମ ପଦ୍ମାବତୀ । ତାଙ୍କ ପୁତ୍ର କପିଳେଶ୍ୱର ମିଶ୍ର ମଧ୍ୟ ଜଣେ ପ୍ରଖ୍ୟାତ ପଣ୍ଡିତ ଥିଲେ । ସେ ସ୍ୱୀୟ ପୃଷ୍ଠପୋଷକ ନରସିଂହ ଦେବଙ୍କ ଦ୍ୱାରା ନୂତନ ପ୍ରଚଳିତ ବସନ୍ତ ଗୁଣ୍ଡିଚା ଯାତ୍ରାକୁ ସ୍ମରଣୀୟ କରିବା ପାଇଁ ଦ୍ୱାବିଂଶ ସର୍ଗ ବିଶିଷ୍ଟ 'ବସନ୍ତୋତ୍ସବ ମହାକାବ୍ୟମ୍' ରଚନା କରିଥିଲେ ।

ତାଙ୍କ କୃତ 'ସଂଗୀତ କଳ୍ପଲତା' ଏକ ଉପାଦେୟ ଗ୍ରନ୍ଥ । ଏଥିରେ ସେ ନିଜର କେତେକ ସଂଗୀତ ସହ କବିରାଜ ଜୟଦେବ, ଗଜପତି ରୁଦ୍ର ରାୟ (ପ୍ରତାପ ରୁଦ୍ର), ରାୟ ରାମାନନ୍ଦ, ଗଜପତି ମୁକୁନ୍ଦ ଦେବ, ଗଜପତି ରାମଚନ୍ଦ୍ର, ବାଣ ନଗର ହରିଚନ୍ଦନ (ବାଣପୁର ରାଜା ରଘୁନାଥ ହରିଚନ୍ଦନ), ମଧୁପୁର ନରେନ୍ଦ୍ର, ଅନଙ୍ଗ

(୧୮) ଏହାଙ୍କ ସମ୍ବନ୍ଧରେ ମୁଁ ଇଂରାଜୀ ଭାଷାରେ ଲିଖିତ ଦୁଇଟି ପ୍ରବନ୍ଧ ପ୍ରକାଶ କରିଅଛି । ଯଥା :—(1) O. H. R. J. Vol. VIII, Nos 3 & 4 1960. (2) O H. R. J. Vol. X Nos. 1 & 2, 1961.

ଗ୍ରାମ (ଖେମିଣ୍ଡି ରାଜା) ଅନଙ୍ଗ ଭ୍ରମରବର, ଗଙ୍ଗାଧର ଦାସଙ୍କ ଦ୍ୱାରା ରଚିତ ସଂଗୀତର ଅଂଶ ବିଶେଷ ଉଦାହରଣ ସ୍ୱରୂପ ପ୍ରଦାନ କରିଛନ୍ତି । ଏମାନେ ସମସ୍ତେ ହେଉଛନ୍ତି ଉତ୍କଳୀୟ । ଉଦାହୃତ ସଂଗୀତ ଗୁଡ଼ିକ ମଧ୍ୟରୁ କେତେକ ସଂସ୍କୃତ, କେତେକ ଓଡ଼ିଆ ଓ କେତେକ ବ୍ରଜବୋଲି ଭାଷାରେ ରଚିତ । ଉକ୍ତ ନାମାବଳୀ ପ୍ରତି ଦୃଷ୍ଟିପାତ କଲେ ସ୍ପଷ୍ଟ ଜଣାଯାଏ ଯେ ହଳଧରଙ୍କ ପୂର୍ବରୁ ଓଡ଼ିଶାରେ ସଂଗୀତ ଚର୍ଚ୍ଚା ବିଶେଷ ଭାବରେ ହେଉଥିଲା । ବିଶେଷତଃ ସଂଗୀତ ସମ୍ବନ୍ଧୀୟ ସଂସ୍କୃତ ଗ୍ରନ୍ଥରେ ବହୁ ଓଡ଼ିଆ ସଂଗୀତର ଅଂଶବିଶେଷ ଉଦାହରଣ ସ୍ୱରୂପ ପ୍ରଦତ୍ତ ହୋଇଥିବାରୁ ସେ ଯୁଗରେ ଓଡ଼ିଶୀ ସଙ୍ଗୀତକୁ ଶାସ୍ତ୍ରସମ୍ମତ ବା ଶାସ୍ତ୍ରୀୟ କରିବା ପାଇଁ ନିରବଚ୍ଛିନ୍ନ ଉଦ୍ୟମ ଚାଲିଥିଲା ।

ତତ୍‌କୃତ 'ହଳଧର ସଂହିତା' ଏକ ଜ୍ୟୋତିଷ ଗ୍ରନ୍ଥ । ତଥାପି 'ବସନ୍ତୋ-ତ୍ସବ ମହାକାବ୍ୟମ୍' ଓ 'ସଂଗୀତ କଳ୍ପଲତା'ରେ ଲିଖିତ ପ୍ରଥମ ମଙ୍ଗଳାଚରଣ ଶ୍ଳୋକ ମଧ୍ୟ ଏଥିରେ ପରିଦୃଷ୍ଟ ହୁଏ । ବସନ୍ତୋତ୍ସବ ମହାକାବ୍ୟମ୍‌ର ଶେଷ ସର୍ଗରେ ଲିଖିତ "ମାତାପସ୍ୟ ପବିନ୍ତ କୀର୍ତ୍ତି·····ଧୀରେ ଦଦେ ଚନ୍ଦ୍ରଦେ" ଶ୍ଳୋକ ମଧ୍ୟ ଏହି ଗ୍ରନ୍ଥର ଶେଷରେ ରହିଛି । ପରନ୍ତୁ 'ହଳଧର ସଂହିତା'ର ପୁଷ୍ପିକାରେ ପ୍ରଦତ୍ତ ନିମ୍ନୋକ୍ତ ଶ୍ଳୋକରୁ ଜଣାପଡ଼େ ଯେ ହଳଧରଙ୍କର କାବ୍ୟ, ବ୍ୟାକରଣ, ଅଭିଧାନ, କବିତା, ସଂଗୀତ, ଗୀତା, ଆଗମ, ଜ୍ୟୋତିଃଶାସ୍ତ୍ର, ସ୍ମୃତି ଓ ପୁରାଣ ପ୍ରଭୃତିରେ ବିଶେଷ ପାଣ୍ଡିତ୍ୟ ଥିଲା । ତାଙ୍କ ପୁତ୍ରଙ୍କ ନାମ କପିଳେଶ୍ୱର ମିଶ୍ର, ପୌତ୍ରଙ୍କ ନାମ ନୃସିଂହ ଓ ପ୍ରପୌତ୍ରଙ୍କ ନାମ ଲୋକନାଥ ।

"କାବ୍ୟ ବ୍ୟାକରଣାଭିଧାନକବିତା ସଂଗୀତ ଗୀତାଗମ
ଜ୍ୟୋତିଃସ୍ମାର୍ତ୍ତ ପୁରାଣବିଦ୍ ହଳଧରୋ ଧୀରୋ ଧରାମଣ୍ଡନେ ।
ତଜ୍ଜାତଃ କପିଳେଶ୍ୱରୋ ଗୁଣନିଧି ସ୍ତଦ୍‌ଭୂ ନୃସିଂହୋ ଗୁଣୀ ।
ତତ୍ସୂନୁ ସ୍ତଦିଦଂ ହଳାୟୁଧକୃତ ଶ୍ରୀଲୋକନାଥୋଽହତଃ ।" (୧୫)

## ଓଡ଼ିଆ ସାହିତ୍ୟ ଚର୍ଚ୍ଚା

ତାଙ୍କ ରାଜତ୍ୱ କାଳରେ କେତେଜଣ କୃତୀ ଉତ୍କଳୀୟ ମାତୃ-ସାହିତ୍ୟର ବିକାଶ ସାଧନ ପାଇଁ ଜୀବନ ଉତ୍ସର୍ଗ କରିଥିଲେ । ସେମାନଙ୍କ ମଧ୍ୟରେ ଭକ୍ତକବି ଯବନ ସାଲବେଗ, 'ଜଗନ୍ନାଥଚରିତାମୃତ' ପ୍ରଣେତା ବିପ୍ର ଦିବାକର ଦାସ, 'ହରିବଂଶ'ର ଅନୁବାଦ କର୍ତ୍ତା ବିଲୋଚନ ମହାନ୍ତିଙ୍କ ନାମ ଉଲ୍ଲେଖଯୋଗ୍ୟ । ପୂର୍ବ-

(୧୫) ମିଉଜିୟମରେ ସଂରକ୍ଷିତ 'ହଳଧର ସଂହିତା' ପୋଥିରୁ ଗୃହୀତ ।

ପଣ୍ଡିତ ହଳଧର ମିଶ୍ର କୃତ 'ସଂଗୀତକଲ୍ପଲତା' ଗ୍ରନ୍ଥରେ 'ନୃପ ନରସିଂହ'ଙ୍କ ନାମରେ ଭଣିତ ହୋଇଥିବା ଦୁଇଟି, ହଳଧର ମିଶ୍ରଙ୍କ ନାମରେ ଭଣିତ ଦୁଇଟି, ଗଙ୍ଗାଧର ଦାସଙ୍କ ଭଣିତା ଥିବା ଦୁଇଟି ଓଡ଼ିଆ ସଂଗୀତର ଅଂଶ ବିଶେଷ ଦେଖାଯାଏ । ସମସାମୟିକ ଯଦୁପତି ଦାସଙ୍କ ଦ୍ୱାରା ବ୍ରଜବୋଲି ଭାଷାରେ ରଚିତ ଗୋଟିଏ ସଂଗୀତ 'ପ୍ରାଚୀନ ଗଦ୍ୟ ପଦ୍ୟାଦର୍ଶ'(୧୬) ପୁସ୍ତକରେ ପରିଦୃଷ୍ଟ ହୁଏ । କିନ୍ତୁ ନୃପ ନରସିଂହ, ହଳଧର ମିଶ୍ର, ଗଙ୍ଗାଧର ଦାସ ଓ ଯଦୁପତି ଦାସଙ୍କ ଦ୍ୱାରା ଓଡ଼ିଆ ଭାଷାରେ ରଚିତ କୌଣସି ଗ୍ରନ୍ଥ ଏ ପର୍ଯ୍ୟନ୍ତ ମିଳି ନାହିଁ । ପ୍ରଭୁ ରସିକାନନ୍ଦଙ୍କ ଶିଷ୍ୟ ଶ୍ରୀ କିଶୋରାନନ୍ଦ ଓଡ଼ିଆ ଛାନ୍ଦ ଆକାରରେ ରେମୁଣାସ୍ଥିତ କ୍ଷୀରଚୋରା ଗୋପୀନାଥଙ୍କ ମାହାତ୍ମ୍ୟ ଓ ରସିକାନନ୍ଦଙ୍କ ଜୀବନୀ 'ଶ୍ରୁତିସାର' ନାମକ ଗ୍ରନ୍ଥରେ ବର୍ଣ୍ଣନା କରିଥିଲେ । ଗ୍ରନ୍ଥଟି ଏ ପର୍ଯ୍ୟନ୍ତ ଅପ୍ରକାଶିତ । (୧୭) ଭାରତ ପ୍ରସିଦ୍ଧ ଜ୍ୟୋତିର୍ବିଦ ପୁରୀବାସୀ ଶତାନନ୍ଦ ଆଚାର୍ଯ୍ୟ କୃତ ସଂସ୍କୃତ 'ଭାସ୍ୱତୀ' ଗ୍ରନ୍ଥର ଓଡ଼ିଆ ପଦ୍ୟାନୁବାଦ ବିଲୋଚନ ମହାନ୍ତିଙ୍କ ଦ୍ୱାରା ନରସିଂହଙ୍କ ୩୧ ଅଙ୍କରେ କଳିଯୁଗାବ୍ଦ ୪୬୪୭ରେ ସମାପ୍ତ ହୋଇଥିଲା । ଯଥା —

"ଚାରି ସହସ୍ର ସାତ ଶତଚାଳିଶ ହୋଇଥିଲା କଳିଯୁଗ ଗତ ବରଷ
ନୃସିଂହଦେବ ଏକତିରିଶ ଗତେ ବିଲୋଚନ ରଚିଲା ଏ ଭାଷା କବିତ୍ୱେ ।"

ଅତଏବ ଉକ୍ତ ଗ୍ରନ୍ଥ ୪୬୪୭ ଯୁଗାବ୍ଦ ବା ୧୫୪୬ ଖ୍ରୀଷ୍ଟାବ୍ଦରେ ରଚିତ ହୋଇଥିଲା ।

**ଭକ୍ତକବି ସାଲବେଗ** :—'ଦାର୍ଢ୍ୟତାଭକ୍ତି' ଗ୍ରନ୍ଥରେ ପ୍ରଦତ୍ତ ଭକ୍ତକବି ସାଲବେଗଙ୍କ ଜୀବନ ଚରିତରୁ ଜଣାଯାଏ ଯେ ସାଲବେଗ ମୁଗଲ ଲାଲବେଗର ପୁତ୍ର ଥିଲେ ଏବଂ କଟକ ସହରସ୍ଥ ଲାଲବାଗରେ ତାଙ୍କର ବାସସ୍ଥାନ ଥିଲା । ଯଥା—

"କଟକ ନାମେ ଯେ ସହର, ଲାଲବାଗରେ ତାର ଘର ।
ଜାତିରେ ଅଟଇ ପଠାଣ, ତାହାର କଥା ଏବେ ଶୁଣ ।
ମୁଗଲ ନାମେ ଲାଲବେଗ, ତାହାର ପୁତ୍ର ସାଲବେଗ ।"

ମୋଗଲ ଇତିହାସରୁ ଜଣାଯାଏ ଯେ ଜାହାଙ୍ଗୀର ସ୍ୱରାଜତ୍ୱ ଆରମ୍ଭରେ ତାଙ୍କର ପ୍ରିୟପାତ୍ର ଜାହାଙ୍ଗୀର କୁଲି ଖାଁ ବା ଲାଲବେଗଙ୍କୁ ଷ୍ୱଣହଜାର ମନସବାଦାର ପଦ ଦେଇ ବିହାରର ସୁବାଦାର ରୂପେ ନିଯୁକ୍ତ କରିଥିଲେ । ବଙ୍ଗ ସୁବାଦାରଙ୍କ

---

(୧୬) ପ୍ରାଚୀ ସଂସ୍କରଣ, ପୃ ୧୧୯-୧୨୦
(୧୭) ଡକ୍ଟର ଶ୍ରୀ ହରେକୃଷ୍ଣ ମହତାବଙ୍କ 'ଓଡ଼ିଶା ଇତିହାସ'

ମୃତ୍ୟୁ ପରେ ତାଙ୍କୁ ୧୬୦୭ ମେ ମାସରେ ବଙ୍ଗ ସୁବାଦାର ରୂପେ ଅଧିଷ୍ଠିତ କରାଗଲା । ଏହାର ବର୍ଷକ ମଧ୍ୟରେ ୨୬-୪-୧୬୦୮ ତାରିଖରେ ତାଙ୍କର ମୃତ୍ୟୁ ଘଟିଲା । (୧୮)

ଜାହାଙ୍ଗୀରଙ୍କ ରାଜତ୍ୱ ଆରମ୍ଭ ସଙ୍ଗେ ସଙ୍ଗେ ମୁଗଲ ଆକ୍ରମଣ ଆରମ୍ଭ ହୋଇଥିଲା । 'ଦାର୍ଢ୍ୟତାଭକ୍ତି' ବର୍ଣ୍ଣନା ଅନୁଯାୟୀ ପୁରୀକୁ ମୋଗଲ ଆକ୍ରମଣ ସମୟରେ ପ୍ରତାପୀ ଲାଲବେଗ ଦଣ୍ଡମୁକୁନ୍ଦପୁର ଠାରେ ଏକ ବିଧବା ବ୍ରାହ୍ମଣୀକୁ ବଳପୂର୍ବକ ଅପହରଣ କରି ନେଇଥିଲେ । ଏହି ଘଟଣାର କିଛିଦିନ ପରେ ଉକ୍ତ ବ୍ରାହ୍ମଣୀ ଗର୍ଭରୁ ଭକ୍ତକବି ସାଲବେଗ ଜନ୍ମ ଗ୍ରହଣ କରିଥିଲେ । ତେଣୁ ସାଲ-ବେଗଙ୍କ ଜନ୍ମ ୧୬୦୮ ଖ୍ରୀଷ୍ଟାବ୍ଦର ଶେଷ ଭାଗରେ ଘଟିଥିଲା । ଇଂରାଜ ବଣିକ ମାନଙ୍କ ଓଡ଼ିଶା ଆଗମନ ଇତିହାସରୁ ଜଣାଯାଏ ଯେ ୧୬୩୩ ଖ୍ରୀଷ୍ଟାବ୍ଦରେ କଟକର ଲାଲବାଗ ପ୍ରାସାଦ ତିଆରି ହୋଇଥିଲା । (୧୯) ସାଲବେଗ ଜଣେ ସ୍ୱର୍ଗତଃ ସୁବାଦାରଙ୍କ ପୁତ୍ର ହୋଇଥିବାରୁ ତାଙ୍କୁ ଲାଲବାଗ ଅଞ୍ଚଳରେ କୌଣସି ବୃକସ୍ଥ ମିଳିଥିବା ସମ୍ଭବପର । ତେଣୁ ଦାର୍ଢ୍ୟତାଭକ୍ତି ରଚନା ବେଳକୁ ସେ କଟକ ଲାଲ-ବାଗର ଅଧିବାସୀରୂପେ ଖ୍ୟାତି ଲାଭ କରିଥିବେ ।

ତାଙ୍କର ପିତା ଜଣେ ମୁସଲମାନ ହୋଇଥିବାରୁ ସେ ଉର୍ଦ୍ଦୁ ଓ ହିନ୍ଦୀ ନିଶ୍ଚୟ ଶିକ୍ଷା କରିଥିବେ । ସେ ପରବର୍ତ୍ତୀ ଜୀବନରେ ଶ୍ରୀରାଧାକୃଷ୍ଣଙ୍କ ପରମ ଭକ୍ତ ହୋଇ ଥିବାରୁ ବହୁ ଭକ୍ତଙ୍କ ପରି ବଙ୍ଗଳା ଭାଷାରେ ବ୍ୟୁତ୍ପତ୍ତି ଲାଭ କରିଥିବେ । ନିଜର ମାଆ ଉତ୍କଳୀୟା ବ୍ରାହ୍ମଣୀ ହୋଇଥିବାରୁ ଓ କଟକରେ ବସତି ଯୋଗୁଁ ଓଡ଼ିଆ ଭାଷାରେ ଯଥେଷ୍ଟ ପାଣ୍ଡିତ୍ୟ ଲାଭ କରିଥିବେ । ତେଣୁ ସେ ନିଜର ନୈସର୍ଗିକ କବିତ୍ୱ ବଳରେ ଓଡ଼ିଆ ବଙ୍ଗଳା ଓ ହିନ୍ଦୀ—ଏହି ତିନି ଭାଷାରେ ବହୁ କବିତା ରଚନା କରିବାକୁ ସମର୍ଥ ହୋଇଥିଲେ । ଶେଷ ଜୀବନରେ ସେ ଶ୍ରୀକ୍ଷେତ୍ରରେ ବହୁକାଳ ଅବସ୍ଥାନ କରିଥିବା ତାଙ୍କ ବହୁ ଭଜନ ଓ ଜଣାଣରୁ ଜଣାଯାଏ । ତାଙ୍କର ଜଗନ୍ନାଥଙ୍କ ଜଣାଣ ଗୁଡ଼ିକ ଅତ୍ୟନ୍ତ ହୃଦୟସ୍ପର୍ଶୀ । ଯଥା :—

(କ) "ଜଗବନ୍ଧୁ ହେ ଗୋସାଇଁ, ତୁମ୍ଭ ଶ୍ରୀଚରଣ ବିନୁ ଅନ୍ୟ ଆଶ୍ରେ ନାହିଁ ।"
(ଖ) "ଆହେ ନୀଳଗିରି, ତୁମ୍ଭ ଶ୍ରୀଭୁଜେ ଦର୍ପଣା କେରି କେରି ।"
ବଡ଼ଦାଣ୍ଡ ଦେଖି ମନତୋଷ, ହେଣୁମାତ୍ର ତେଣୁ କଲି ଗ୍ରାସ
ଖିରି ଖେଚେଡ଼ିରେ ମନ ନ ବୋଧଇ, ଟଙ୍କ ତୋରାଣୀରେ ମନ ତୋଷ ।"
(ଗ) "ଗରୁଡ଼ ପଛରେ ରହି ଦେଖ, କି ଶୋଭା ପାଉଛି ପଦ୍ମମୁଖ ।"

---

(18) Journal of Indian History, Vol. XI, P. 337
(19) Early Annals of the English in Bengal.

(ଘ) ଆହେ ମାନ-ଶଇଳ ପ୍ରବଳ-ମତ୍ତ-ବାରଣ,
ମୋ ଅହଙ୍କ ନଳିନୀ-ବନକୁ କର ଦଳନ ।

× × ×

କହେ ସାଲବେଗ ହୀନ ଜାତିରେ ମୁଁ ଯବନ,
ଶ୍ରୀରଙ୍ଗା ଚରଣ ତଳେ କରୁଅଛୁ ଜଣାଣ ।”

ତାଙ୍କର ରଚନାର ଭାଷା ଅତି ସରଳ, ଲଳିତ ଓ ହୃଦୟସ୍ପର୍ଶୀ । ଜାହାଙ୍ଗୀରଙ୍କ ରାଜତ୍ୱରେ ନୁରଜାହାନଙ୍କ ଅଦମ୍ୟ ପ୍ରଚେଷ୍ଟା ଫଳରେ 'ଗୁଲାବ' ବା ଗୋଲାପ ଫୁଲର ବହୁଳ ବ୍ୟବହାର ଭାରତରେ ଘଟିଥିଲା । ତେଣୁ ଯବନ କବି ସାଲବେଗ ଶ୍ରୀମତୀ ରାଧାଙ୍କ ଚିବୁକକୁ ଗୋଲାପ ସହିତ ତୁଳନା କରିଛନ୍ତି । ଯଥା—'ଚିବୁକ ଗୁଲାବର ଲଜିତ ନର୍ମିଳ' । କବିଙ୍କ ଶ୍ରୀକୃଷ୍ଣ ମଧ୍ୟ ମୋଗଲ ଅମଳରେ ପ୍ରଚଳିତ 'ଓରମାଲ' ବା ରୁମାଲ ଧାରଣ କରିଛନ୍ତି । ଯଥା—'ମୁକୁଟ ମନୋହର ଓରମାଲ ମନୋହର' । ଏ ସମସ୍ତ ବିଷୟର ବଳେ କବିଙ୍କ ରଚନା କାଳକୁ ସପ୍ତଦଶ ଶତାବ୍ଦୀର ମଧ୍ୟଭାଗରେ ସ୍ଥିର କରାଯାଇପାରେ । (୨୦)

ସୁଦର୍ଶନ ଦାସଙ୍କ ରଚିତ ଯଶୋବନ୍ତ ଦାସଙ୍କ 'ଚଉରାଶୀ ଆଜ୍ଞା' ଗ୍ରନ୍ଥରେ ଯବନ କବି ସାଲବେଗ ଯଶୋବନ୍ତ ଦାସଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିବା ଲେଖାଅଛି । କିନ୍ତୁ ଗୌଡ଼ୀୟ ବୈଷ୍ଣବ ଗ୍ରନ୍ଥରେ ସାଲବେଗ ଶ୍ରୀ ଶ୍ୟାମାନନ୍ଦଙ୍କ ଶିଷ୍ୟ ରୂପେ ବର୍ଣ୍ଣିତ ହୋଇଛନ୍ତି । ଏହା ଅନ୍ୟ ପ୍ରମାଣ ଦ୍ୱାରା ସମର୍ଥିତ ହେଉଥିବାରୁ ଗ୍ରହଣୀୟ । 'ରସିକ ମଙ୍ଗଳ' ଗ୍ରନ୍ଥ ଅନୁଯାୟୀ ପ୍ରଭୁ ଶ୍ୟାମାନନ୍ଦ ୧୫୫୨ ଶକାବ୍ଦ ବା ୧୬୩୦ ଖ୍ରୀଷ୍ଟାବ୍ଦରେ ପ୍ରାଣତ୍ୟାଗ କରିଥିଲେ । ସେତେବେଳକୁ ସାଲବେଗଙ୍କୁ ୨୨ ବର୍ଷ ହୋଇଥିବ ଏବଂ ଏହାର ଅଳ୍ପଦିନ ପୂର୍ବରୁ ସେ ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇଥିଲେ । ଏହା-ପରେ ତାଙ୍କର ବୈଷ୍ଣବ ରଚନାବଳୀ ଆରମ୍ଭ ହୋଇଥିବ ।

**ଦିବାକର ଦାସ :**—ଦିବାକର ଦାସ ଭକ୍ତକବି ଜଗନ୍ନାଥ ଦାସ ପ୍ରତିଷ୍ଠିତ ଅତିବଡ଼ି ସଂପ୍ରଦାୟର ଅନ୍ତର୍ଭୁକ୍ତ ଥିଲେ । ସେ କୃଷ୍ଣଦାସ ଗୋସ୍ୱାମୀ କୃତ 'ଶ୍ରୀ ଚୈତନ୍ୟ ଚରିତାମୃତ' ଅନୁକରଣରେ ଓଡ଼ିଆ ନବାକ୍ଷରୀ ବୃତ୍ତରେ ଅତିବଡ଼ି ସଂପ୍ରଦାୟ ପ୍ରତିଷ୍ଠାତା ଭକ୍ତପ୍ରବର ଜଗନ୍ନାଥ ଦାସଙ୍କ ଚରିତ ଓ ଧର୍ମମତ ବର୍ଣ୍ଣନାତ୍ମକ 'ଜଗନ୍ନାଥ ଚରିତାମୃତ' ଗ୍ରନ୍ଥ ରଚନା କରିଥିଲେ । ସେ ନିଜର ଗୁରୁ ପରଂପରା ନିମ୍ନୋକ୍ତ ମତେ ବର୍ଣ୍ଣନା କରିଛନ୍ତି । ଯଥା—

---

(୨୦) 'ଭକ୍ତ କବି ସାଲବେଗ' ଝଙ୍କାର, ୯ମ ବର୍ଷ, ୧୨ଶ ସଂଖ୍ୟା ପୃ ୧୦୯୩-୧୦୯୭

"ଶ୍ରୀ ଅତିବଡ଼ ଯେ ଗୋସାଇଁ, ରାଧାଙ୍କ ଅଂଶେ ଜନ୍ମ ହୋଇ । ୧୩୫
× × ×
ସର୍ବସ୍ୱ କର୍ତ୍ତା ସେବା ସେହି, ସେ ବନମାଳୀ ଦାସ ହୋଇ । ୧୩୮
ତାହା ଭାବରେ ସଖି ସେହି, କେଳିକୃଷ୍ଣ ଦାସ ଗୋସାଇଁ । ୧୩୯
ବନମାଳୀଙ୍କ ଶିଷ୍ୟ ପୁଣ, ତାଙ୍କର ସେବାଟି କଙ୍କଣ । ୧୪୦
ବଡ଼ ଦୟାଳୁ ତାଙ୍କ ଶିଷ୍ୟ, ସେ ମେଧା କସ୍ତୁରୀ ସେ ଦାସ । ୧୪୧
ତହିଁରୁ ନବୀନ କିଶୋର, ଇନ୍ଦ୍ରାପଦ୍ମା ନାମ ଅଂଶର । ୧୪୨
ତାଙ୍କ ସେବା ଦ୍ରବ୍ୟ ଭ୍ରମର, ସେ ପାଦେ ଆଶ୍ରେ ଦିବାକର ।" ୧୪୩
(ଜ: ଚ: ତ୍ରୟୋଦଶ ଅଧ୍ୟାୟ)

ଶ୍ରୀ ଚୈତନ୍ୟ ଦେବ ୧୫୧୦ରେ ଭକ୍ତ ପ୍ରବର ଜଗନ୍ନାଥ ଦାସଙ୍କୁ ଅତିବଡ଼ୀ-ପଦବୀ ପ୍ରଦାନ କରିଥିଲେ । ଦିବାକର ଦାସ ଶିଷ୍ୟ ପ୍ରଶିଷ୍ୟ କ୍ରମେ ଜଗନ୍ନାଥ ଦାସଙ୍କ ଷଷ୍ଠ ପୁରୁଷ ହୋଇଥିବାରୁ ତାଙ୍କୁ ୧୬୦୦ ଖ୍ରୀଷ୍ଟାବ୍ଦର ପାଖାପାଖି ଅବସ୍ଥାପିତ କରାଯାଇ ପାରେ । ଆଉ ମଧ୍ୟ ସେ କୃଷ୍ଣ ଦାସ ଗୋସ୍ୱାମୀ କୃତ 'ଶ୍ରୀ ଚୈତନ୍ୟଚରିତାମୃତ' ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇଥିଲେ । ଯଥା—

"ଚୈତନ୍ୟ ଚରିତ ଅମୃତ, ଗୋଦାବରୀ କୂଳ ଚରିତ
ରାୟେ ରାମାନନ୍ଦ ପୁଚ୍ଛିଲେ, ଶଚୀ କୁମର ଆଜ୍ଞା କଲେ ।"

ବଙ୍ଗ ଓ ଉତ୍କଳରେ ସୁପ୍ରଚଳିତ ଉକ୍ତ ଗ୍ରନ୍ଥ କୃଷ୍ଣ ଦାସ ଗୋସ୍ୱାମୀ ବୃନ୍ଦାବନ ଧାମରେ ୧୫୩୭ ଶକାବ୍ଦ ବା ୧୬୧୫ ଖ୍ରୀଷ୍ଟାବ୍ଦରେ ସମାପ୍ତ କରିଥିଲେ । ସେ ଯୁଗରେ ଯାତାୟାତ ଓ ଗ୍ରନ୍ଥ ପ୍ରଚାରର ଘୋର ଅସୁବିଧା ଥିବାରୁ ଉକ୍ତ ଗ୍ରନ୍ଥ ଉତ୍କଳରେ ପ୍ରଚାରିତ ହେବା ପାଇଁ ଅନ୍ୟୂନ ୨୦/୩୦ ବର୍ଷ ଲାଗିଥିବ । ଏ ସମସ୍ତ ଦୃଷ୍ଟିରୁ ଦିବାକର ଦାସଙ୍କୁ **ସପ୍ତଦଶ ଶତାବ୍ଦୀର ତୃତୀୟ ଦଶକରେ** ଅବସ୍ଥାପିତ କରାଯାଇପାରେ ।

## ଦିବାକରଙ୍କ ବଂଶଲତା

ବାଇଧର ଦାସ, ଭରଦ୍ୱାଜ ଗୋତ୍ର, ବୃହସ୍ପତି ପ୍ରବର
|
ନନ୍ଦ ଦାସ
|
ଗୋପାଳ ଦାସ
|
ନମ ଦେବ ଓ ଚମ୍ପା ଦେଈ ମାତା
|
ଦିବାକର ଦାସ (ଜ: ଚ: ପୃ ୪୭)

ଢବ୍‌କର ଉକ୍ତ ଗ୍ରନ୍ଥରେ ଗୌଡ଼ୀୟ ଗୋସ୍ୱାମୀ ମାନଙ୍କ ଦ୍ୱାରା ପ୍ରତିଷ୍ଠା ପ୍ରାପ୍ତ ବୃନ୍ଦାବନ ଧାମ ଅପେକ୍ଷା ଶ୍ରୀପୁରୁଷୋତ୍ତମ କ୍ଷେତ୍ରର ମାହାତ୍ମ୍ୟ ଓ ଗୌରବ ଅଧିକ ଥିବା ବିଷୟ ପ୍ରତିପାଦନ କରିବା ପାଇଁ ଯଥାସାଧ୍ୟ ଉଦ୍ୟମ କରିଛନ୍ତି । ସେ ଶ୍ରୀକ୍ଷେତ୍ରରେ ନିଜର ଜୀବନଯାପନ କରିଥିଲେ । ଶ୍ରୀ ଚୈତନ୍ୟ ଜଗନ୍ନାଥଙ୍କ ଅସାଧାରଣ ବିଦ୍ୱତା ଓ ବହୁଶାସ୍ତ୍ରଦର୍ଶିତାରେ ମୁଗ୍‌ଧ ହୋଇ ତାଙ୍କୁ ଅନ୍ତର୍ବର୍ତ୍ତୀ ଉପାଧିରେ ଭୂଷିତ କରିଥିବାରୁ ବଙ୍ଗ ଦେଶୀୟ ବୈଷ୍ଣବମାନେ ତାଙ୍କ ଉପରେ ବିଶେଷ ଈର୍ଷ୍ୟାନ୍ୱିତ ହୋଇଥିଲେ ତାହା ଢବ୍‌କର ନିର୍ଭିକ ଭାବରେ ଉଲ୍ଲେଖ କରିଛନ୍ତି । 'ହରେ ରାମ କୃଷ୍ଣ' ମହାମନ୍ତ୍ର ଜପରେ ମୁକ୍ତିଲାଭ ବିଷୟ ଏଥିରେ ପ୍ରାଞ୍ଜଳ ଭାବରେ ବୁଝାଇ ଦିଆଯାଇଛି । 'ମହାପୁରୁଷ ଚରିତ' ହିସାବରେ ଏହା ଓଡ଼ିଆ ଭାଷାରେ ପ୍ରଥମ ଗ୍ରନ୍ଥ ।

## ଦେଶରେ ଧର୍ମ

ଅହମ୍ମଦବେଗ ଓଡ଼ିଶାର ସୁବାଦାର ଥିବା କାଳରେ (୧୫୨୫-୧୫୨୮) ପ୍ରଭୁ ଶ୍ୟାମାନନ୍ଦଙ୍କ ପ୍ରଧାନ ଶିଷ୍ୟ ଶ୍ରୀ ରସିକାନନ୍ଦ ଦେବ ଗୋସ୍ୱାମୀ ସମଗ୍ର ଉତ୍କଳରେ ବୈଷ୍ଣବଧର୍ମ ପ୍ରଚାର କରିଥିଲେ । ଦୁର୍ଦ୍ଦାନ୍ତ ହିନ୍ଦୁବିଦ୍ୱେଷୀ ସୁବାଦାର ମଧ୍ୟ ତାଙ୍କର ମୁଖାମୃତ ବାଣୀ ଶ୍ରବଣ କରି ବିଶେଷ ଭାବରେ ପ୍ରଭାବିତ ହୋଇଥିଲେ । ଯଥା—

"ହେନମତେ ଅହମ୍ମଦବେଗ ସୁବା ସ୍ଥାନେ
କହିଲ ସକଳ ତତ୍ତ୍ୱ ନିଗମ ପ୍ରମାଣେ
ଶୁଣିଯା ସେ ରସିକେର ମୁଖାମୃତ ବାଣୀ
ଆନନ୍ଦ ହଇଯା ସୁବା ଛାଡ଼ିଲ ଧରଣୀ
ଅନେକ କରିଲ ସ୍ତୁତି ବିନୟ ବଚନ
କୃଷ୍ଣେର ନାରାୟଣ ଅଂଶ ଜାନିଲେନ ମନେ"

× × ×

ମୟୂରଭଞ୍ଜର ରାଜା ବୈଦ୍ୟନାଥଭଞ୍ଜଙ୍କ ଉଦ୍ୟମ ଫଳରେ ପ୍ରଭୁ ରସିକାନନ୍ଦ ଓ ଗଜପତି ନରସିଂହଙ୍କ ମଧ୍ୟରେ ମିଳନ ଘଟିଥିଲା ।

"ହରିନାରାୟଣ ରାଜା କୈଲ ଦରଶନେ, ମୟୂରଭଞ୍ଜର ଅଧିପତି ବଡ଼ ଭାଗ୍ୟବାନ୍

× × ×

ଗଜପତି ସ୍ଥାନେ କହେ ହରିନାରାୟଣ, ରସିକ ଚରଣ ଭୂମି କରହ ଦର୍ଶନ,

× × ×

ବହୁରୂପେ କହିଲେକ ଗଜପତି ସ୍ଥାନେ, ଶୁଣିଶ୍ୱା ନୃସିଂହ ଦେବ ଆନନ୍ଦିତ ମନେ
ଯାଇତେ କରିଲ ମନ ଚରଣ ଦର୍ଶନେ, × ×
ଅନ୍ତର୍ଯାମୀ ରସିକେନ୍ଦ୍ର ଜ୍ଞାତ ସର୍ବଜନ, ଗଜପତି ସ୍ଥାନେ ଗିଶ୍ୱା ଦିଲ ଦରଶନ ।
× × ×
ପରବେଶ ହୋଇଲ ପ୍ରଭୁ ଗଜପତି ସ୍ଥାନେ,
ଦେଖିଲେକ ରଜା ଯେନ ଦୃଷ୍ଟି ନ'ଶପୂଣେ ।
ଅସ୍ତବ୍ୟସ୍ତ ହୋଇଶ୍ୱା ରଜା ଉଠିଲ ତ୍ୱରିତେ, ଦଣ୍ଡବତ ପରଣାମ କରିଲ ସାକ୍ଷାତେ ।
ଶ୍ରୀ ଜଗନ୍ନାଥର ଅଧିକାରୀ ଆନ ରଜା,
ରସିକେନ୍ଦ୍ର ଚନ୍ଦ୍ରେ ବହୁରୂପେ କୈଲ ପୂଜା ।" (୬୧)

ପ୍ରଭୁ ରସିକାନନ୍ଦ ୧୫୯୧ ଖ୍ରୀଷ୍ଟାବ୍ଦରେ ଶିଷ୍ଟକରଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ଅଚ୍ୟୁତାନନ୍ଦ ଦେବ ସୁବର୍ଣ୍ଣରେଖା ନଦୀ ତୀରସ୍ଥ ରୟୁଣୀ ନଗରର ରଜା ଥିଲେ । ସେ ମୟୂରଭଞ୍ଜ ମହାରଜା ବୈଦ୍ୟନାଥ ଭଞ୍ଜଙ୍କ ସାହାଯ୍ୟରେ ମେଦିନୀପୁର, ମୟୂରଭଞ୍ଜ ଓ ବାଲେଶ୍ୱର ଜିଲାର ବହୁ ସ୍ଥାନରେ ନିଜର ଧର୍ମମତ ପ୍ରଚ୍ଚର କରିଥିଲେ । ତାଙ୍କର ଗୁରୁ ଶ୍ୟାମାନନ୍ଦ ୧୬୩୦ରେ ପ୍ରାଣତ୍ୟାଗ କରିଥିଲେ । ମେଦିନୀପୁର ଜିଲାର ଗୋପୀବଲ୍ଲଭପୁର ତାଙ୍କ ଧର୍ମ ପ୍ରଚ୍ଚରର ପ୍ରଧାନ କେନ୍ଦ୍ର ଥିଲା । ଶ୍ରୀ ରସିକାନନ୍ଦ ଗଜପତି ଦିବ୍ୟସିଂହ ନରସିଂହ ଦେବ (୧୬୨୮-୧୬୩୦)ଙ୍କ ସମୟରୁ ଗୋପୀନାଥ କୃଷ୍ଣଙ୍କ ପୂଜା ପୀଠ ରୂପେ ଖ୍ୟାତି ଲାଭ କରିଥିବା ବାଲେଶ୍ୱର ଜିଲାସ୍ଥ ରେମୁଣା କଟକକୁ ନିଜ ଧର୍ମ ପ୍ରଚ୍ଚରର ପ୍ରଧାନ କେନ୍ଦ୍ର କରିଥିଲେ । ଶ୍ରୀ ରସିକାନନ୍ଦ ରେମୁଣା କ୍ଷୀରଚୋର ଗୋପୀନାଥ ମନ୍ଦିରରେ ୧୬୭୪ରେ ପ୍ରାଣତ୍ୟାଗ କରିଥିଲେ । ଶିଷ୍ୟ ପରମ୍ପରା କ୍ରମେ ଶ୍ରୀ ରସିକାନନ୍ଦ-ପନ୍ଥୀମାନେ ରେମୁଣା ଗୋପୀନାଥଙ୍କ ସେବା କାର୍ଯ୍ୟରେ ରହି ଆସୁଛନ୍ତି । ପୁରୀରେ 'କୁଞ୍ଜମଠ' ତାଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା । (୬୨)

୧୬୩୩ ଖ୍ରୀଷ୍ଟାବ୍ଦରେ ରଚିତ କାନ୍ତମାଳା ଟୀକା ସମେତ 'ଭକ୍ତିରତ୍ନାବଳୀ' ଗ୍ରନ୍ଥର ପ୍ରଣେତା ତିରଭୁକ୍ତ ବା ମିଥିଳାବାସୀ ବିଷ୍ଣୁପୁରୀ, ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ କିଛିକାଳ ଅବସ୍ଥାନ କରିଥିଲେ । ତାଙ୍କର ଉକ୍ତ ଗ୍ରନ୍ଥ ଉତ୍କଳର ବୈଷ୍ଣବ ସମାଜରେ ବିଶେଷ ଭାବରେ ପ୍ରଚଳିତ ଥିଲା ।

---

(୬୧) ରସିକ ମଙ୍ଗଳ ପୃ ୧୬୭-୧୬୭
(୬୨) ଡକ୍ଟର ହରେକୃଷ୍ଣ ମହତାବଙ୍କ 'ଓଡ଼ିଶା ଇତିହାସ' ପୃ ୧୯୯-୨୦୦

ପ୍ରଭୁ ଶ୍ରୀ ଚୈତନ୍ୟଙ୍କ ମୃତ୍ୟୁର ପ୍ରାୟ ୯୦ ବର୍ଷ ପରେ ଶ୍ରୀ ରସିକାନନ୍ଦ ଦୀର୍ଘ ଅର୍ଦ୍ଧ ଶତାବ୍ଦୀ କାଳ ସମଗ୍ର ଉତ୍କଳରେ ସ୍ୱୀୟ ଧର୍ମମତ ପ୍ରଚାର କରିବା ଫଳରେ ସମାଜରେ ଶ୍ରୀରାଧା ଓ ଶ୍ରୀ ଗୋପୀବଲ୍ଲଭ ଶ୍ରୀକୃଷ୍ଣଙ୍କ ଉପାସନାର ଲୋକପ୍ରିୟତା ଯଥେଷ୍ଟ ବୃଦ୍ଧି ଲାଭ କରିଥିଲା । ଦେଶର ସର୍ବତ୍ର ଶ୍ରୀକୃଷ୍ଣ ପୂଜା ପାଇଁ ଶତ ଶତ ମନ୍ଦିର ନିର୍ମିତ ହୋଇଥିଲା । ସମସାମୟିକ ଓ ପରବର୍ତ୍ତୀ ସଂସ୍କୃତ ଓ ଓଡ଼ିଆ ସାହିତ୍ୟ ଏହାଦ୍ୱାରା ବିଶେଷ ପ୍ରଭାବିତ ହେଲା ଏବଂ ଉଭୟ ଭାଷାରେ ଶ୍ରୀକୃଷ୍ଣ ଲୀଳା ବର୍ଣ୍ଣନାତ୍ମକ ଗ୍ରନ୍ଥ କ୍ରମଶଃ ଅଧିକ ସଂଖ୍ୟାରେ ରଚିତ ହେଲା ।

**ଗଜପତି ନରସିଂହ ଦେବଙ୍କ ଅଙ୍କ ଗଣନା :—** ଅହମ୍ମଦ ବେଗଙ୍କ ପ୍ରଥମ ସୁବାଦାରି ଓ ଯୁବରାଜ ସାହାଜାହାନଙ୍କ ଖୋର୍ଦ୍ଧା ଅଭିଯାନ ସମ୍ପୃକ୍ତ ୧୬୨୩ ନରସିଂହ ଦେବଙ୍କ ରାଜତ୍ୱ ଆରମ୍ଭ ହୋଇଥିବା ଏବଂ ମୁତାକ୍କାଦ ଖାଁଙ୍କ ଦ୍ୱିତୀୟ ସୁବାଦାରି ଶେଷ ପୂର୍ବରୁ (୧୬୫୫-୧୬୫୮) ତାଙ୍କର ହତ୍ୟା ଘଟିଥିବା ମୁସଲମାନ ଇତିହାସ ଓ ମାଦଳାପାଞ୍ଜିରୁ ନିର୍ଦ୍ଦିଷ୍ଟ ଭାବରେ ଜଣାଯାଏ । ତେଣୁ ତାଙ୍କ ରାଜତ୍ୱର ଅଙ୍କ ଗଣନା ଅଭ୍ରାନ୍ତ ଭାବରେ କରାଯାଇପାରେ ।

ତାଙ୍କ ରାଜତ୍ୱ କାଳର ଦୁଇଖଣ୍ଡି ତମ୍ବାପଟା ଗଞ୍ଜାମରୁ ମିଳିଛି । ତାଙ୍କର ଦୁଇଅଙ୍କ ମେଷ ୨ ବୈଶାଖ, ଶୁଦ୍ଧ ୧୦, ମଙ୍ଗଳବାର ଦିନ ପ୍ରଦତ୍ତ ପ୍ରଥମ ତମ୍ବାପଟାରୁ ଜଣାଯାଏ ଯେ ସେ ନିଜର ଦୀର୍ଘାୟୁ ନିମିତ୍ତ ଧର୍ମା ରଥ ଓ ଅନ୍ୟ ମାନଙ୍କୁ ଶୁନ୍ୟ-ରାମଚନ୍ଦ୍ରପୁରମ୍ ଗ୍ରାମ ଦାନ କରିଥିଲେ । ୨୯ ୪-୧୯୨୩ରେ ବୈଶାଖ,ଶୁଦ୍ଧ୧୦, ମଙ୍ଗଳବାର ପଡ଼ିଥିଲା । କିନ୍ତୁ ସେ ତିଥିରେ ବୃଷ ୨ ଦିନ ହୋଇଥିଲା । ତେଣୁ ଏଠାରେ ପାଠରେ ଭ୍ରମ ବା ଲିପିକାର ପ୍ରମାଦ ଥିବାର ସନ୍ଦେହ ଏ ।

ଦ୍ୱିତୀୟ ତମ୍ବାପଟାଟିରୁ ଜଣାଯାଏ ଯେ ବୀର ନରସିଂହଦେବଙ୍କ ସତର ଅଙ୍କ ବିଚ୍ଛା ୨୨, ମାର୍ଗଶୀର ଶୁଦ୍ଧ ୫, ଶୁକ୍ରବାର ଦିନ, ଶ୍ରୀ ଧର୍ମ ଚରଣ ସୁର ମହାରଥୀ ମହାରାଜ ସେବକ ନାରାୟଣ ପଣ୍ଡାଙ୍କୁ କେତେକ ଭୂମିଦାନ କରିଥିଲେ । ୧୨-୧୧-୧୬୩୪ରେ ବିଚ୍ଛା ୧୦, ମାର୍ଗଶୀର ଶୁଦ୍ଧ ୫ ପଡ଼ିଥିଲା । (୨୩)

---

(23) Inscriptions of the Madras Presidency, by V. Rangacharya Vol. I, P. 6 No. 289, P. 699, No. 86

| ସୁନଅଁର ତାରିଖ | | ରାଜତ୍ୱର ଅଙ୍କ | ପ୍ରସିଦ୍ଧ ଘଟଣା |
|---|---|---|---|
| ୬-୯-୧୭୨୨ | ତାରିଖ ସୁନଅା ଦିନ ଠାରୁ | ୩ ଅଙ୍କ | |
| ୨୬-୮-୧୭୨୩ | ,, | ୪ ,, | ଅହମ୍ମଦ ବେଗଙ୍କ ସଙ୍ଗେ ସଂଘର୍ଷ ଓ ସାହଜାହାନଙ୍କ ଆଗମନ |
| ୨୫ ୮-୧୭୨୪ | ,, | ୫ ,, | |
| ୩ ୯-୧୭୨୫ | ,, | ୬ ,, | ସାହଜାହାନଙ୍କ ଦାକ୍ଷିଣାତ୍ୟ ପ୍ରତ୍ୟାବର୍ତ୍ତନ |
| ୨୪ ୮-୧୭୨୬ | ,, | ୮ ,, | |
| ୧୨-୯-୧୭୨୭ | ,, | ୯ ,, | ବକର ଖାଁଙ୍କ ଦ୍ୱାରା ଆକ୍ରାନ୍ତ |
| ୩୧-୮-୧୭୨୮ | ,, | ୧୦ ,, | କୋଣାର୍କ ଦେଉଳର ମାଥ ଗ୍ରହଣ |
| ୨୦-୮-୧୭୨୯ | ,, | ୧୧ ,, | |
| ୮-୯-୧୭୩୦ | ,, | ୧୨ ,, | |
| ୨୮-୮-୧୭୩୧ | ,, | ୧୩ ,, | |
| ୧୬-୮-୧୭୩୨ | ,, | ୧୪ ,, | |
| ୪-୯-୧୭୩୩ | ,, | ୧୫ ,, | |
| ୨୫-୮-୧୭୩୪ | ,, | ୧୬ ,, | |
| ୧୩-୯-୧୭୩୫ | ,, | ୧୮ ,, | |
| ୨-୯-୧୭୩୬ | ,, | ୧୯ ,, | ପୁଣ୍ୟ ଦେଉଳର ଚୂନ ପଲସ୍ତରା କରାଗଲା |
| ୨୨-୮-୧୭୩୭ | ,, | ୨୧ ,, | |
| ୯-୯-୧୭୩୮ | ,, | ୨୨ ,, | |
| ୩୦-୮-୧୭୩୯ | ,, | ୨୩ ,, | |
| ୧୮-୮-୧୭୪୦ | ,, | ୨୪ ,, | |
| ୬-୯-୧୭୪୧ | ,, | ୨୫ ,, | |
| ୨୬-୮-୧୭୪୨ | ,, | ୨୬ ,, | |
| ୮-୯-୧୭୪୩ | ,, | ୨୮ ,, | |
| ୩-୯-୧୭୪୪ | ,, | ୨୯ ,, | |
| ୨୩-୮-୧୭୪୫ | ,, | ୩୧ ,, | |
| ୧୧-୯-୧୭୪୬ | ,, | ୩୨ ,, | |
| ୩୧-୮-୧୭୪୭ | | | ଫତେ ଖାଁଙ୍କ ପୁଣ୍ୟ ନଅର ଆକ୍ରମଣ । ଜୁନ୍ ୫ ତାରିଖରେ ନରସିଂହଙ୍କର ହତ୍ୟା । |

—*—

# ଚତୁର୍ଥ ଅଧ୍ୟାୟ

# ଗଜପତି ବଳଭଦ୍ର ଦେବ

(୧୬୪୭ – ୧୬୫୭ ଖ୍ରୀଷ୍ଟାବ୍ଦ)



## ସିଂହାସନ ଆରୋହଣ

ମୋଗଲ ସେନାପତି ଫତେ ଖାଁଙ୍କ ଦ୍ୱାରା ୧୬୪୭ ଖ୍ରୀଷ୍ଟାବ୍ଦରେ ଭୋଇ ବଂଶୀୟ ଗଜପତି ନରସିଂହ ଦେବଙ୍କ ହତ୍ୟା ପରେ ଖୋର୍ଦ୍ଧା ସିଂହାସନ ଅଧିକାର ପାଇଁ ଘୋର ବିବାଦ ଲାଗିଥିଲା । ମାଦଳାପାଞ୍ଜିରୁ ଜଣାଯାଏ ଯେ ଏହି ସମୟରେ ନରସିଂହ ଦେବଙ୍କ ଭାଇ ଗୋକୁଳ ରାଏଙ୍କ ପୁଅ ଗଙ୍ଗାଧର ଦେବ ଖୋର୍ଦ୍ଧା ରାଜ୍ୟରେ କେତେ ମାସ ରାଜତ୍ୱ କରିଥିଲେ । ତାଙ୍କ ସିଂହାସନ ପ୍ରାପ୍ତି ସମ୍ବନ୍ଧରେ ମୋଗଲ ଇତିହାସରୁ ନିମ୍ନୋକ୍ତ ବିବରଣ ମିଳେ —

"When late Mutaqad Khan was Subahdar, he slew Narasingh Deva and made his nephew Gangadhar Rajah. Balabhadra Deva, the elder brother of the slain, became Rajah after killing Gangadhar with the help of the officers of the state. When he died, Mukunda Dev succeeded at the age of four years only." (1)

ମାଦଳାପାଞ୍ଜିର ବର୍ଣ୍ଣନା ମୋଗଲ ଇତିହାସ ବିବରଣ ଦ୍ୱାରା ମୂଳତଃ ସମର୍ଥିତ ହୁଏ । କିନ୍ତୁ ପାଞ୍ଜିରେ ଗଙ୍ଗାଧର ଓ ବଳଭଦ୍ରଙ୍କ ମଧ୍ୟରେ ସଂଘର୍ଷର ଉଲ୍ଲେଖ ନାହିଁ । ଏଥିରେ ବଳଭଦ୍ର ଦେବ ରାଜା ହେବା ପରେ ଗଙ୍ଗାଧର ଦେବଙ୍କୁ ଭୁଲାଇ ମାରିବା କଥା ଲେଖାଯାଇଛି । କିନ୍ତୁ ମୋଗଲ ଇତିହାସ ଅନୁସାରେ ବଳଭଦ୍ର ଦେବ ନିହତ ନରସିଂହ ଦେବଙ୍କ ବଡ଼ ଭାଇ ଥିଲେ ଏବଂ ସେ ରାଜ୍ୟର

(1) 'Studies in Mughal India' by Sir J. N. Sarkar, P. 221.

କର୍ମଗୃଷ୍ଟ ଗୋଷ୍ଠୀର ସାହାଯ୍ୟରେ ଗଙ୍ଗାଧର ଦେବଙ୍କୁ ହତ୍ୟା କରି ନିଜେ ସିଂହାସନ ଅଧିକାର କରିଥିଲେ । ଏହା ଅଧିକ ଯୁକ୍ତିସଙ୍ଗତ ହୋଇଥିବାରୁ ଗ୍ରହଣୀୟ । ନରସିଂହଙ୍କ ହତ୍ୟା ପରେ ଗଙ୍ଗାଧରଙ୍କ ରାଜ୍ୟପ୍ରାପ୍ତି ଓ ଗଙ୍ଗାଧରଙ୍କୁ ବଧ କରି ବଳଭଦ୍ର ଦେବଙ୍କ ସିଂହାସନ ଅଧିକାର ପ୍ରଭୃତି ଘଟଣା ଯୋଗୁଁ ୧୬୫୭ରୁ ୧୬୫୯ ପର୍ଯ୍ୟନ୍ତ ଖୁର୍ଦ୍ଧା ରାଜ୍ୟରେ ଘୋର ଅଶାନ୍ତି ଓ ଅରାଜକତା ବ୍ୟାପିଯାଇଥିଲା । ଏହି ଦୁଇ ବର୍ଷ ମଧ୍ୟରେ ଗଙ୍ଗାଧର ଦେବ ଏକ ବର୍ଷ କାଳ (ଅନ୍ୟ ପାଞ୍ଜି ମତରେ ପ୍ରାୟ ଚାରି ମାସ) କାଳ ରାଜତ୍ୱ କରିଥିଲେ ।

## ମୋଗଲ ସୁବାଦାରମାନଙ୍କ ସହିତ ସଂପର୍କ :—

ତାଙ୍କ ଦଶ ବର୍ଷ ବ୍ୟାପୀ ରାଜତ୍ୱ କାଳ ମଧ୍ୟରେ କଟକରେ ପାଞ୍ଚ ଜଣ ମୋଗଲ ସୁବାଦାର ରୂପେ କାର୍ଯ୍ୟ କରିଥିଲେ ।

୧) ଜାନ୍ ବେଗ ହାରୁଭ୍ (୧୬୪୮-୧୬୫୦)

୨) ମହମ୍ମଦ ହାସୁନ୍ (୧୬୫୧ ନଭେମ୍ବର)

୩) ମୀର-ସମସାମ୍-ଉଦ୍ଦୌଲ୍ଲା ଆଞ୍ଜୁ । ସେ ୩-୧୦-୧୬୫୪ରେ କଟକର ସୁବାଦାର ରୂପେ ନିଯୁକ୍ତ ପାଇ ଏଠାକୁ କାର୍ଯ୍ୟରେ ଯୋଗ ଦେବା ପାଇଁ ଆସୁଥିବା ବେଳେ ବାଟରେ ଯାଜପୁର ଠାରେ ପ୍ରାଣତ୍ୟାଗ କରିଥିଲେ ।

୪) ରସିଦ ଖାଁ ୧୪-୪-୧୬୫୫

୫) ତରବୟତ୍ ଖାଁ (ସଫିଉଲ୍ଲାବଲାସ୍) (୧୬୫୫-୧୬୫୭) ଏହି ପାଞ୍ଚଜଣ ନାମକୁ ମାତ୍ର ସୁବାଦାର ଥିଲେ ଏବଂ ପ୍ରକୃତ କ୍ଷମତା ବଙ୍ଗ ଶାସନ ଦାୟିତ୍ୱରେ ଥିବା ରାଜକୁମାର ସୁଜାଙ୍କ ହସ୍ତରେ ନ୍ୟସ୍ତ ଥିଲା । (୨)

ମହମ୍ମଦ ହାସୁନ୍ ଖାଁ ଯୁବରାଜ ସୁଜାଙ୍କ ପ୍ରତିନିଧି ରୂପେ ଓଡ଼ିଶା ସୁବା ଶାସନ କରୁଥିବା ସମୟରେ ଜଣେ ଛଦ୍ମବେଶୀ ନିଜକୁ ଗଙ୍ଗାଧର ଦେବ ବୋଲି କହି ମେଳ କରିବାରୁ କେତେକ ଜମିଦାର (ଖୁର୍ଦ୍ଧା ରାଜାଙ୍କ ଅନୁଗତ) ଏକାଠି ମିଶି ତାଙ୍କୁ ଧରି କଟକ ନିକଟରେ ହାଣି ପକାଇଥିଲେ । ଏହି ପାଞ୍ଚଜଣ ମଧ୍ୟରୁ କେହି ଖୁର୍ଦ୍ଧା ରାଜ୍ୟ ବା ଜଗନ୍ନାଥ ମନ୍ଦିର ଆକ୍ରମଣ କରିଥିବା ଜଣାଯାଏ ନାହିଁ । ପ୍ରତ୍ୟେକଙ୍କ ଶାସନର ସ୍ୱଳ୍ପକାଳ ସ୍ଥାୟିତ୍ୱ ଏହାର କାରଣ ରୂପେ ନିର୍ଦ୍ଧାରିତ ହୋଇପାରେ । ତେଣୁ ବଳଭଦ୍ରଙ୍କ ରାଜତ୍ୱ କାଳ ଶାନ୍ତିମୟ ଥିଲା ।

---

(2) 'History of Bengal' published by the Dacca University Vol. II, P. 231-232.

## ସାହିତ୍ୟ ଚର୍ଚ୍ଚା :—

ବଳଭଦ୍ର ଦେବଙ୍କ ରାଜତ୍ୱ କାଳରେ ଶିବନାରାୟଣ ଭଞ୍ଜ କେନ୍ଦୁଝର ରାଜ୍ୟର ରାଜା ଥିଲେ । ତାଙ୍କ ସଭାକବି ନରସିଂହ ମିଶ୍ର **'ଶିବନାରାୟଣ ଭଞ୍ଜ ମହୋଦୟ ନାଟିକା'** ନାମକ ଗ୍ରନ୍ଥ ପ୍ରଣୟନ କରିଥିଲେ । ଏହା ପୁରୁଷୋତ୍ତମ କ୍ଷେତ୍ରରେ ଗଜପତି ବଳଭଦ୍ର ଦେବଙ୍କ ସଭାରେ ଅଭିନୀତ ହୋଇଥିଲା । ଏହି ଅପ୍ରକାଶିତ ଗ୍ରନ୍ଥର ଖଣ୍ଡିଏ ତାଳପତ୍ର ପୋଥି କଲିକତା ଏସିଆଟିକ ସୋସାଇଟି ପୋଥି ଭଣ୍ଡାରରେ ରକ୍ଷିତ ଅଛି । ସେଥିରୁ ଆବଶ୍ୟକୀୟ ଅଂଶ ନିମ୍ନରେ ଉଦ୍ଧାର କରାଗଲା ।

"ନାନ୍ଦ୍ୟନ୍ତେ ସୂତ୍ରଧାରଃ, ଅସ୍ତି ଦକ୍ଷିଣପାରାବାରତୀରେ ସକଳପକ୍ଷୟ-ଦକ୍ଷ-କ୍ଷମାମଣ୍ଡଳମଣ୍ଡନ ଶ୍ରୀପୁରୁଷୋତ୍ତମାଭିଧ ପୁଣ୍ୟକ୍ଷେତ୍ରଂ ।

× × ×

ସଭାଗଜପତେ ସ୍ୱୟଂ ଭଜନ୍ତ କୌତୁକଂ ଦର୍ଶନେ
ଭ୍ରମନ୍ତ ଭରତୋତ୍ତମା ଭବସି ସର୍ବଭୂମଣ୍ଡଳେ ।

× × ×

ପୃଥ୍ୱୀସ୍ୱଂ ନବଖଣ୍ଡମଣ୍ଡିତ ସ୍ୱରୁଚିରସ୍ଥାନେଷୁ ଭାରତ-
ଖଣ୍ଡୋତ୍କଳ ଦେଶ ଏବ ରୁଚିର ସ୍ଥାପିଭଞ୍ଜକ୍ଷମା
ତସ୍ୟାମପ୍ୟୁପମାବଧାନରହିତଂ କେନ୍ଦୁଝରାବସ୍ଥିତଂ
ଯତ୍ରାସ୍ତେ ବସୁଧାଧିପଃ ଶିବପୁରୋ ନାରାୟଣ ଶୋଭତେ ।

ସମାପ୍ତି - **ପୃଥ୍ୱୀ ଶ୍ରୀ ବଳଭଦ୍ର ଦେବ ନୃପତି** ର୍ଭର୍ତ୍ତୁଂ ପ୍ରଶାସ୍ତୁସ୍ୱସ୍ଥଂ
ବିପ୍ରା ବେଦବଦୋ ଭବନ୍ତୁ ଗୁଣିନୋ ସମ୍ପତ୍ତିମନ୍ତୋଭୁବି
ଭୂପାନ କୃଷ୍ଣପଦାରବିନ୍ଦଯୁଗଳେ ଭକ୍ତିଷ୍ଟିରଂ ସ୍ଥାସ୍ୟତି
ଜୀୟାତ୍ ନରସିଂହ ମିଶ୍ର କବିତା ଯାବନ୍ମହୀମଣ୍ଡଳମ୍ ।

× . ×

ଇତି ଶ୍ରୀ ନରସିଂହ ମିଶ୍ର ବିରଚିତାୟାଂ ଶ୍ରୀ ଶିବନାରାୟଣ ଭଞ୍ଜ ମହୋଦୟ ନାଟିକାୟାଂ ଜାବନ୍ମୁକ୍ତି ପ୍ରତିପାଦନଂ ନାମ ପଞ୍ଚମାଙ୍କଃ ସମାପ୍ତଃ । (୩)

ରାଜନୀତିକ ଭାବରେ କେନ୍ଦୁଝର ରାଜ୍ୟ ମୋଗଲ ଶାସନାଧୀନ ଥିଲେ ମଧ୍ୟ ସେଠା ରାଜା ଶିବନାରାୟଣ ଭଞ୍ଜ ଖୋର୍ଦ୍ଧା ରାଜା ବଳଭଦ୍ର ଦେବଙ୍କୁ ଓଡ଼ିଶାର

---

(3) Notices of Sanskrit Manuscripts by H. P. Shastri
Vol. IV, 1911, pp 147-148

ଗଜପତି ଗ୍ଭବରେ ଯଥୋଚିତ ଭକ୍ତି ଓ ସମ୍ମାନ ପ୍ରଦର୍ଶନ କରୁଥିଲେ । ତେଣୁ ସେ ତାଙ୍କ ସଭା ପଣ୍ଡିତ ନରସିଂହ ମିଶ୍ର ପ୍ରଣୀତ 'ଶ୍ରୀ ଶିବନାରାୟଣ ଭଞ୍ଜ ମହୋଦୟ ନାଟିକା'କୁ ଗଜପତିଙ୍କ ପଣ୍ଡିତ ସଭାରେ ଅଭିମତ କରାଇଥିଲେ । କବି ନରସିଂହ ମଧ୍ୟ ସେଠାରେ ନିଜର ପାଣ୍ଡିତ୍ୟ ପ୍ରଦର୍ଶନ କରି ନିଜକୁ ଗୌରବାନ୍ୱିତ ମନେ କରିଥିବାରୁ ସ୍ପଷ୍ଟ ଜଣାଯାଏ ଯେ କାଳେମ୍ବାର ମୋଗଲ ଆକ୍ରମଣ ସତ୍ତ୍ୱେ ସଂସ୍କୃତ ଚର୍ଚ୍ଚାର କେନ୍ଦ୍ର ରୂପେ ପୁରୁଷୋତ୍ତମ କ୍ଷେତ୍ରର ଖ୍ୟାତି ଓ ମାହାତ୍ମ୍ୟ ସେ ପର୍ଯ୍ୟନ୍ତ ଅକ୍ଷୁର୍ଣ୍ଣ ଥିଲା ।

ପ୍ରଭୁ ରସିକାନନ୍ଦଙ୍କ ଜୀବନ ଚରିତ ବର୍ଣ୍ଣନାତ୍ମକ 'ରସିକମଙ୍ଗଳ' ଗ୍ରନ୍ଥ ସୁଦୂର ମେଦିନୀପୁର ଜିଲ୍ଲାରେ ଲିଖିତ ହୋଇଥିଲେ ମଧ୍ୟ ସେଥିରେ ସମ୍ମାନର ସହିତ ଗଜପତି ବଳଭଦ୍ରଙ୍କ ଅଙ୍କ ବ୍ୟବହୃତ ହୋଇଥିବାର ନିମ୍ନୋଦ୍ଧୃତ କେତୋଟି ପଂକ୍ତିରୁ ଜଣାଯାଏ । ଯଥା :—

"ବଳଭଦ୍ର ଗଜପତି ଓଡ଼ିଶ୍ୟାର ଦେଶେ
ନବ୍ୟ ଅଙ୍କ ବସନ୍ତ ପଞ୍ଚମୀ ମକର ମାସେ ।
ଆଜ୍ଞା ପାଇ । ଆରମ୍ଭ କୈଲ ସେ ଦିବସେ
ରସିକ ଚରଣ ହୃଦେ କରିୟା ବିଶେଷେ ।
ଅଷ୍ଟ ମାସ ଦୁଇପକ୍ଷେର ସେ ଭାବନା
ରସିକେର ଯଶଃ କୀର୍ତ୍ତି କରିଲୁ ରଚନା
ରବିବାର ଦିନ ସାଙ୍ଗ ହୈଲ ପୁସ୍ତକେ
କାର ଅଙ୍କ କାଇନ୍ୟ ପଞ୍ଚମୀ ଶୁକ୍ଳ ପକ୍ଷେ ।" (୪)

ଗଣନା ଅନୁସାରେ ୧୫୬୬ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ମାସ ୧୪ତାରିଖ କନ୍ୟ (ଆଶ୍ୱିନ) ଶୁକ୍ଳ ସପ୍ତମୀ ରବିବାର ହୋଇଥିଲା ତେଣୁ ଏହାକୁ ବାରଅଙ୍କ ରୂପେ ଗ୍ରହଣ କରାଯାଇପାରେ । କାଠଯୋଡ଼ି ନଦୀର ଉତ୍ତରକୁ ଖୁର୍ଦ୍ଧା ରାଜବଂଶର କୌଣସି କର୍ତ୍ତୃତ୍ୱ ନଥିଲେ ମଧ୍ୟ, ବର୍ତ୍ତମାନ ଓଡ଼ିଶାରୁ ବିଚ୍ଛିନ୍ନ ଓଡ଼ିଆଭାଷୀ ମେଦିନୀପୁର ଅଞ୍ଚଳରେ ଧର୍ମ ସଂକ୍ରାନ୍ତ ଓ ସାମାଜିକ ବିଷୟରେ ଓଡ଼ିଶା ଗଜପତିଙ୍କ ପ୍ରଭାବ ଓ ପ୍ରତିପତ୍ତି ଅକ୍ଷୁର୍ଣ୍ଣ ଥିଲା । ମୋଗଲ ପୂର୍ବରୁ ଖଣ୍ଡବିଖଣ୍ଡିତ ବିରାଟ ଓଡ଼ିଆଭାଷୀ ଅଞ୍ଚଳ ଗଜପତିଙ୍କ ଅଙ୍କଗଣନା ରୂପକ ଏକତା ସୂତ୍ରରେ ଆବଦ୍ଧ ଥିଲା ।

---

(୪) 'ରସିକମଙ୍ଗଳ'; ଓଡ଼ିଆ ଅକ୍ଷର ଓ ଓଡ଼ିଆ ଭାଷାରେ ରଚିତ 'ରସିକମଙ୍ଗଳ' ଗ୍ରନ୍ଥ ମୟୂରଭଞ୍ଜ ଅଞ୍ଚଳରେ ମିଳୁଥିବାର ଜଣାଯାଏ ।

ତାଙ୍କ ସମୟର ପ୍ରସିଦ୍ଧ ଓଡ଼ିଆ କବି ହେଉଛନ୍ତି ଗଞ୍ଜାମ ଅନ୍ତର୍ଗତ ଘୁମୁସର ରାଜ୍ୟର ଅଧିପତି ଧନଞ୍ଜୟ ଭଞ୍ଜ । ସେ ମଧ୍ୟ ତାଙ୍କ ପୁତ୍ର ମୁକୁନ୍ଦଦେବ ଓ ନାତି ଦିବ୍ୟସିଂହ ଦେବଙ୍କ ସମକାଳୀନ ଥିଲେ । ତେଣୁ ତାଙ୍କ ସମ୍ବନ୍ଧରେ ଯଥା ସ୍ଥାନରେ ଆଲୋଚିତ ହେବ ।

## ବଳଭଦ୍ର ଦେବଙ୍କ ମୃତ୍ୟୁ :—

ମୋଗଲ ଇତିହାସରୁ ଜଣାପାଏ ଯେ, ଖାନ୍-ଇ-ଦୁରାନ୍ ୧୬୬୦ ଖ୍ରୀଷ୍ଟାବ୍ଦ ମେ ମାସରେ ଓଡିଶା ସୁବାର ଶାସନ ଭାର ଗ୍ରହଣ କରିବା ସମୟରେ ଖୁର୍ଦ୍ଧା ରାଜ୍ୟରେ ମୁକୁନ୍ଦଙ୍କ ଆଧିପତ୍ୟ ସୁପ୍ରତିଷ୍ଠିତ ହୋଇଥିଲା । 'ରସିକ ମଙ୍ଗଳ' ଅନୁସାରେ ୧୪ ୯-୧୫୫୬ ତାରିଖରେ ଓଡିଶାର ଗଜପତି ବଳଭଦ୍ରଙ୍କ ବାର ଅଙ୍କ ପୂର୍ତ୍ତି ଥିଲା । ଏହାର କେତେ ଦିନ ପରେ ତାଙ୍କର ମୃତ୍ୟୁ ଘଟିଥିଲା ।

## ରାଜତ୍ୱର ଘଟଣାବଳୀ :—

ତାଙ୍କ ରାଜତ୍ୱର କୌଣସି ବିଶେଷ ଘଟଣା ସମ୍ବନ୍ଧରେ ଜଣାଯାଇନାହିଁ । ସେ ଜଗନ୍ନାଥ ସଡକର ଅଦୂରରେ ସ୍ୱନାମରେ ବୀରବଳଭଦ୍ରପୁର ନାମକ ଶାସନ ପ୍ରତିଷ୍ଠା କରିଥିଲେ । ଏହା ଅଦ୍ୟାବଧି ତାଙ୍କର ସ୍ମୃତି ବହନ କରି ବିଦ୍ୟମାନ । ପାଞ୍ଜିରେ ଲେଖାଅଛି ଯେ ତାଙ୍କ ରାଜତ୍ୱର ଗୃହ ଅଙ୍କରେ କଟକରୁ ଧରା ହୋଇଥିବା ଗୋପାଳ ଦାସ ନାମକ ଦନ୍ତା ହସ୍ତୀକୁ ମହାନୁଆଜ ଖାଁ ପୁରୀରୁ ଦିଲ୍ଲୀ ନେଇଥିଲେ । ମହାନୁଆଜ ଖାଁଙ୍କୁ ୧୬୪୨ରେ ଓଡିଶାର ସୁବାଦାର ଥିବା ସାହାନୁ-ଓ୍ୱାଜ ଖାଁଙ୍କ ସହିତ ଚିହ୍ନିତ କରାଯାଇପାରେ । ବୋଧହୁଏ ହାତୀ ନେବା ପାଇଁ ଦିଲ୍ଲୀରୁ ତାଙ୍କୁ ଏଠାକୁ ପଠାଯାଇଥିଲା ।

ଅନ୍ୟ ଏକ ପାଞ୍ଜିରୁ ଜଣାଯାଏ ଯେ ବଳଭଦ୍ରଦେବ ବଡ଼ ଦେଉଳ ବାହାର ବେଢା ତଳେ 'ଲକ୍ଷ୍ମୀଭଦ୍ର' ନାମକ ସନ୍ନ୍ୟାସୀଙ୍କୁ ରଖାଇଥିଲେ । ରାଜାଙ୍କ ଠାରୁ ଏପରି ବିଶେଷ ଅନୁଗ୍ରହ ପାଇଥିବାରୁ ଉକ୍ତ ସନ୍ନ୍ୟାସୀ ସୁଖ୍ୟାତିସମ୍ପନ୍ନ ଥିବାର ମନେହୁଏ । କିନ୍ତୁ ତାଙ୍କର ପରିଚୟ କୌଣସି ସୂତ୍ରରୁ ମିଳିନାହିଁ ।

## ଗଜପତି ବଳଭଦ୍ର ଦେବଙ୍କ ଅଙ୍କ ଗଣନା :—

ତାଙ୍କ ରାଜତ୍ୱର ଖଣ୍ଡିଏ ତମ୍ବା ପଟା ଗଞ୍ଜାମରୁ ମିଳିଛି । ସେଥିରୁ ଜଣାଯାଏ ଯେ ତାଙ୍କ ଦଶ ଅଙ୍କ କୁମ୍ଭ ୨୫ ଦିନ, ଜଣେ ସାମନ୍ତ ରାଜା ଜଗନ୍ନାଥ ସାମନ୍ତରାୟ ମହାପାତ୍ରଙ୍କ ଘର ନରହରି ସ୍ୱେଡ଼ ରାଓ ନାମକ ଆନ୍ଧ୍ରକୁ ୬୦ ଭରଣ ଭୂମି ଦାନ

କରିଥିଲେ । (୫) କିନ୍ତୁ ଏଥିରେ ତିଥି ବାର ଇତ୍ୟାଦି ଉଲ୍ଲେଖ ନ ଥିବାରୁ ଏହା ଅଙ୍କ ଗଣନା ପାଇଁ ଉପାଦେୟ ନୁହେଁ । ତେଣୁ 'ରସିକମଙ୍ଗଳ'ରେ ପ୍ରଦତ୍ତ ଅଙ୍କ, ମାସ, ତିଥି, ବାର, ପ୍ରଭୃତି ସବୁ ଠିକ ରୂପେ ମିଳିଯାଉଥିବାରୁ ତାହାକୁ ମୂଳ କରି ବଳଭଦ୍ର ଦେବଙ୍କ ଅଙ୍କ ଗଣନା ନିମ୍ନୋକ୍ତ ପ୍ରକାରରେ କରାଯାଇପାରେ ।

| ସୁନିଆର ତାରିଖ | | ରାଜତ୍ୱର ଅଙ୍କ |
|---|---|---|
| ୧୯-୮-୧୬୪୮ | ତାରିଖ ସୁନିଆ ଦିନ ଠାରୁ | ୩ ଅଙ୍କ |
| ୬-୯-୧୬୪୯ | " | ୪ " |
| ୨୮-୮-୧୬୫୦ | " | ୫ " |
| ୧୬ ୮-୧୬୫୧ | " | ୬ " |
| ୫-୯-୧୬୫୨ | " | ୮ " |
| ୨୫-୮-୧୬୫୩ | " | ୯ " |
| ୧୩ ୯-୧୬୫୪ | " | ୧୦ " |
| ୨-୯-୧୬୫୫ | " | ୧୧ " |
| ୨୧-୮-୧୬୫୬ | " | ୧୨ " |

୧୬୫୬ ଖ୍ରୀଷ୍ଟାବ୍ଦର ସୁନିଆ ପରେ ତାଙ୍କର ମୃତ୍ୟୁ ଘଟିଥିଲା ।



(5) Inscriptions of the Madras Presidency, Vol. I, Ganjam, No. 95, P. 679.

# ଗଜପତି ମୁକୁନ୍ଦ ଦେବ(୧)

(୧୬୫୭ – ୧୬୮୯ ଖ୍ରୀଷ୍ଟାବ୍ଦ)



## ସିଂହାସନ ଆରୋହଣ

ଗଜପତି ବଳଭଦ୍ର ଦେବଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ମୁକୁନ୍ଦ ଦେବ ଖୁର୍ଦ୍ଧା ସିଂହାସନ ଅଧିକାର କରିଥିଲେ । ଓଡ଼ିଶାର ଶେଷ ସ୍ୱାଧୀନ ଗଜପତି ଚାଲୁକ୍ୟ ବଂଶୀୟ ମୁକୁନ୍ଦ ଦେବ (୧୫୫୯ ୧୫୬୮)ଙ୍କ ସହିତ ଭୋଇ ବଂଶୀୟ ମୁକୁନ୍ଦ ଦେବଙ୍କର କୌଣସି ବଂଶ ସଂପର୍କ ନାହିଁ । ତେଣୁ ସେ ପ୍ରଥମ ମୁକୁନ୍ଦ ଦେବ ରୂପେ ସାଧାରଣତଃ ଗୃହୀତ ହୁଅନ୍ତି । ସେ ରାଜା ହେବା ସମୟରେ ରାଜକୁମାର ଆଜମ ବଙ୍ଗଳାର ସୁବାଦାର ଥିଲେ । ସେତେବେଳେ ଓଡ଼ିଶାର ଦେଓ୍ୱାନ୍ ଥିଲେ ମିର୍ଜା ଜାଫର । ସେ ବାଦସାହ ଔରଙ୍ଗଜେବଙ୍କ ରାଜତ୍ୱ ଆରମ୍ଭରେ ୧୦୬୯ ହିଜ୍ରୀ ସନ ବା ୧୬୫୮-୫୯ରେ କଟକର ଦେଓ୍ୱାନ୍ ବଜାର ମସଜିଦ ନିର୍ମାଣ କରିଥିଲେ । ଏହା କଟକର ପ୍ରଥମ ମସଜିଦ୍ । ତାଙ୍କ ରାଜତ୍ୱ ଆରମ୍ଭ ସମୟରେ ଇସ୍ତିସାମ ଖାଁ (ଶେଖ ଫରିଦ କିମ୍ବା ଇକ୍‌ଲସ ଖାଁ) ଦଶ ମାସ ପାଇଁ (ନଭେମ୍ବର ୧୬୫୯ରୁ ସେପ୍ଟେମ୍ବର ୧୬୬୦) ଓଡ଼ିଶା ସୁବାଦାର ଥିଲେ । ତାଙ୍କ ପରବର୍ତ୍ତୀ ସୁବାଦାର ହେଉଅଛନ୍ତି ଦୁର୍ଦ୍ଦାନ୍ତ ରଣନିପୁଣ ଖାନ-ଇ-ଦୁରନ୍ । ସେ କଟକରେ ସୁବାଦାର ହେବା ସମୟରେ ଓଡ଼ିଶାରେ ମୁକୁନ୍ଦଦେବଙ୍କ କପରି ପ୍ରଭାବ ଓ ପ୍ରତିପତ୍ତି ଥିଲା ତାହା ନିମ୍ନୋକ୍ତ ସମସାମୟିକ ବିବରଣୀରୁ ଜଣାଯାଏ —

"When the Khan reached Kataka, Rajah Mukunda Dev of Khurda, the leading Zamindar of the country, whose orders are obeyed by the other Zamindars of the country, whom all other Zamindars of this country worship like a god and disobedience of whose orders they regard as a great sin, waited on him with due humility accompanied by other Zamindars and Khandaits of Central Orissa." (6)

---

(6) 'Studies in Mughal India' by Sir J. N. Sarkar, P. 208.

ଅର୍ଥାତ୍ "୧୬୭୦ ଖ୍ରୀଷ୍ଟାବ୍ଦରେ ଖାନ୍-ଇ-ଦୁରାନ୍ କଟକରେ ସୁବାଦାର କାର୍ଯ୍ୟରେ ଯୋଗ ଦେବା ସମୟରେ ମୁକୁନ୍ଦଦେବ ଖୁର୍ଦ୍ଧାର ରାଜା ଥିଲେ। ଓଡ଼ିଶାର ସେ ଶ୍ରେଷ୍ଠ ଜମିଦାର ଥିଲେ। ସମସ୍ତ ଜମିଦାର ତାଙ୍କ ଆଦେଶ ପାଳନ କରୁଥିଲେ ଏବଂ ତାଙ୍କୁ ଦେବତା ରୂପେ ପୂଜା କରୁଥିଲେ। ତାଙ୍କର ଆଦେଶ ଲଙ୍ଘନ ମହାପାପ କାର୍ଯ୍ୟ ରୂପେ ବିବେଚିତ ହେଉଥିଲା। ମୁକୁନ୍ଦଦେବ ମଧ୍ୟ ଓଡ଼ିଶାର ଅନ୍ୟାନ୍ୟ ଜମିଦାର ଓ ଖଣ୍ଡାୟତ ମାନଙ୍କୁ ସଙ୍ଗରେ ନେଇ ସୁବାଦାରଙ୍କୁ ଭେଟି ସମ୍ମାନ ପ୍ରଦର୍ଶନ କରିଥିଲେ।" ପ୍ରବଳ ପରାକ୍ରାନ୍ତ ସମଗ୍ର ଭାରତର ସାର୍ବଭୌମ କ୍ଷମତାସଂପନ୍ନ ମୋଗଲ ରାଜଶକ୍ତିର ସତୁରି ବର୍ଷ ମଧ୍ୟରେ (୧୫୯୦-୧୬୬୦) ବାରମ୍ବାର ଆକ୍ରମଣ ସତ୍ତ୍ୱେ ଓଡ଼ିଶାରେ ଖୁର୍ଦ୍ଧା ଗଜପତିଙ୍କ ଉପରେ ଅଖଣ୍ଡ ପ୍ରଭାବ ଓ ପ୍ରତିପତ୍ତି ଥିଲା ତାହା ଉଦ୍ଧୃତ ବିବରଣ ଦ୍ୱାରା ପ୍ରତିପାଦିତ ହୁଏ।

## ଖୁର୍ଦ୍ଧା ରାଜ୍ୟ ଆକ୍ରମଣ :—

ଉକ୍ତ ଘଟଣା ପରେ ଖାନ୍-ଇ ଦୁରାନ୍ ରୋଗାକ୍ରାନ୍ତ ଭାବରେ ଦୁଇ ମାସ କାଳ ଶଯ୍ୟାଶାୟୀ ହୋଇଥିଲେ। ଏହି ସୁଯୋଗରେ ସ୍ଥାନୀୟ ଜମିଦାରମାନେ ବିଦ୍ରୋହ କରିଦେଲେ। ରାଜା ମୁକୁନ୍ଦ ଦେବ ବିଦ୍ରୋହୀ ଜମିଦାର ମାନଙ୍କୁ ଦମନ କରିବା ପାଇଁ ପ୍ରେରିତ ସୈନ୍ୟମାନଙ୍କୁ ସାହାଯ୍ୟ ନ ଦେଇ ଅରାଜକତା ସୃଷ୍ଟି କଲେ। ତଥାପି ମୋଗଲ ସେନା ଅନେକ ବିଦ୍ରୋହୀ ଜମିଦାରଙ୍କୁ ପରାସ୍ତ କରି ବହୁ ଦୁର୍ଗ ଅଧିକାର କରିଥିଲେ। ରୋଗରୁ ସାମାନ୍ୟ ଆରୋଗ୍ୟ ଲାଭ କଲା ପରେ ଖାନ୍-ଇ-ଦୁରାନ୍ ୧୬୭୧ ଫେବୃୟାରୀ ୭ ତାରିଖରେ ମୋଗଲ ସେନା ଦ୍ୱାରା ଅବିଜିତ ଦୁର୍ଗ ଗୁଡ଼ିକ ଅଧିକାର କରିବା ପାଇଁ କଟକରୁ ଯୁଦ୍ଧଯାତ୍ରା କଲେ। ଫେବୃୟାରୀ ୧୬ ତାରିଖ ଦିନ ଗୋଟିଏ ଉଚ୍ଚ ପାହାଡ଼ (ବରୁଣେଇ ପାହାଡ଼)ର ପାଖାପାଖି କାଲୁପଡ଼ା, ମୋଟରି (ଦୁଇଟି ଯାକ ଡେଲାଙ୍ଗ ନିକଟରେ) କରକହି ? (Karkahi) ଖୁରଦିହ (Khurdiha) ବା ଘୋରଡ଼ିଆ ଓ ଅନ୍ୟ ଛଅଗୋଟି ଦୁର୍ଗ ନିକଟରେ ମୋଗଲ ସେନା ପହଞ୍ଚିଗଲେ। ୧୭ ତାରିଖ ଦିନ ମୋଗଲ ସେନା ଦୁର୍ଗ ଗୁଡ଼ିକ ଅବରୋଧ କରିବାରୁ ଖୁର୍ଦ୍ଧା ରାଜ୍ୟର ହଜାର ହଜାର ସଂଖ୍ୟାରେ ପାଇକ ଓ ଘୋଡ଼ାସବାର ସୈନ୍ୟ ଏକତ୍ର ହୋଇ ଭୀଷଣ ପ୍ରତିରୋଧ କଲେ। ରଣପୁର ଓ ବାଙ୍କୀର ଜମିଦାର ଦ୍ୱୟ ଏବଂ ଅନ୍ୟ ଭୂଇଁଆ ଓ ଖଣ୍ଡାୟତ ମାନେ ସେମାନଙ୍କ ସହିତ ଯୋଗ ଦେଇ ତୁମୁଳ ଯୁଦ୍ଧ ଚଳାଇଥିଲେ। ମୋଗଲସେନା ବହୁ ବିଦ୍ରୋହୀ ସୈନ୍ୟଙ୍କୁ ହତ୍ୟା କରିଥିଲେ ଏବଂ ପାହାଡ଼ ପାଦଦେଶରେ ଖୁର୍ଦ୍ଧା ସେନା ଆକ୍ରମଣ ଉଦ୍ଦେଶ୍ୟରେ ଖୋଳିଥିବା ଗାତ ଗୁଡ଼ିକ (trenches) ଅଧିକାର କରି ବାରମ୍ବାର ତୋପ ବନ୍ଧୁକରୁ ଗୋଳା ଫୁଟାଇ ସେମାନଙ୍କ ବ୍ୟୂହ ଭେଦ କରିଥିଲେ। ଖୁର୍ଦ୍ଧା ସୈନ୍ୟମାନେ ଗ୍ଲେଟ ବନ୍ଧୁକ (Matchlock) ଧନୁଶର, ଖଣ୍ଡା, ସାବଳ (Sablis), ଦୋଆଡ଼ ? (Duars)

ଧୁକନ୍ ? (Dhukans), ସିଣ୍ଟି ? (Scintis) * ପ୍ରଭୃତି ଅସ୍ତ୍ରଶସ୍ତ୍ର ସାହାଯ୍ୟରେ ଯୁଦ୍ଧ ଚଳାଇଥିଲେ । କିନ୍ତୁ ଭୀଷଣ ଗୁଳ ଗୋଳା ମାଡ଼ର ପ୍ରତିରୋଧ କରିବାକୁ ଅସମର୍ଥ ହୋଇ ନିଜ ନିଜ ପରିବାର ମାନଙ୍କୁ ନେଇ ପଳାଇଗଲେ । ତାଙ୍କ ପୂର୍ବବର୍ତ୍ତୀ କୌଣସି ସୁବାଦାର ଏପରି ବିସ୍ତୃତ ରାଜସ୍ୱ ଲାଭ କରି ପାରିବା ପାଇଁ ସମର୍ଥ ହୋଇ ନ ଥିଲେ । ଖୁର୍ଦ୍ଧାର ଏହି ସାତଟି ଦୁର୍ଗ ମୋଗଲ ସେନାଙ୍କ ଦ୍ୱାରା ଅଧିକୃତ ହେଲା ଏବଂ ତିନି ଗୁରି ଦିନ ମଧ୍ୟରେ ବିଜିତ ଅଞ୍ଚଳର ଶାସନ ପାଇଁ ଥାନା ସବୁ ଖୋଲା ଗଲା ।"

"୧୭୨୧ ଫେବୃୟାରୀ ୨୦ ତାରିଖରେ ଖାନ୍-ଇ-ଦୁରାନ୍ ଗଭୀର ଅରଣ୍ୟ ମଧ୍ୟରେ ଅବସ୍ଥିତ ଓ ଉଚ୍ଚ ପର୍ବତ (ବରୁଣେଇ ପର୍ବତ) ଦ୍ୱାରା ସୁରକ୍ଷିତ ମୁକୁନ୍ଦ ଦେବଙ୍କ ପୂର୍ବପୁରୁଷ କ୍ରମିକ ରାଜଧାନୀ ଖୁର୍ଦ୍ଧାଦୁର୍ଗ ଅଧିକାର କରିବା ପାଇଁ ସୈନ୍ୟ ଚାଳନା କଲେ । ମୋଗଲ ସେନା ଖୁର୍ଦ୍ଧା ଗଡ଼ ଠାରୁ ଏକ ମାଇଲ୍ ଦୂରରେ ତମ୍ବୁସବୁ ପକାଇ ରହିଲେ । ଆକ୍ରମଣ ପୂର୍ବରୁ ରାଜା ପଳାଇ ଯାଇଥିଲେ । ମୋଗଲ ସେନା ଅପରିମିତ ଲୁଣ୍ଠିତ ଧନରତ୍ନ ନେଇଗଲେ ଓ ରାଜଧାନୀରେ ବହୁଲୋକଙ୍କୁ ବନ୍ଦୀ କଲେ । ଗତ ୫୦ ବର୍ଷ ମଧ୍ୟରେ ଅନ୍ୟ କୌଣସି ସୁବାଦାର ଜୟ କରି ପାରି ନ ଥିବା ଏ ସମସ୍ତ ଦୁର୍ଗ ଖାନ-ଇ ଦୁରାନ୍ ଜୟ କରିବାକୁ ସମର୍ଥ ହେଲେ ଏବଂ ବହୁ ଲୋକଙ୍କୁ ଖଣ୍ଡାଗ୍ରେ ଧର୍ମରେ ଦୀକ୍ଷିତ କରାଇଥିଲେ । ସେ ଖୁର୍ଦ୍ଧା ଦୁର୍ଗ ଅଧିକାର କରି ମୁକୁନ୍ଦ ଦେବଙ୍କ ସାନ ଭାଇ ଭ୍ରମରବରଙ୍କୁ ଖୁର୍ଦ୍ଧା ସିଂହାସନରେ ବସାଇଲେ । ଏହା ପରେ ବିଜୟୀ ସୁବାଦାର କେତେଦିନ ପର୍ଯ୍ୟନ୍ତ ଖୁର୍ଦ୍ଧାରେ ବିଶ୍ରାମ ନେଇଥିଲେ ।"

"ଓଡ଼ିଶାର ଶ୍ରେଷ୍ଠ କ୍ଷମତାଶାଳୀ ରାଜାଙ୍କ ଏ ଦୁର୍ଦ୍ଦଶା ଦେଖି ଅନ୍ୟ ବିଦ୍ରୋହୀ ମାନେ ଅସ୍ତ୍ର ସମର୍ପଣ କଲେ । କାଙ୍କୀ ଜମିଦାର ଓ ରଣପୁର ଜମିଦାର କଣ୍ଡ ନରେନ୍ଦ୍ର ? ସୁବାଦାରଙ୍କ ସହିତ ମୁଲାକାତ୍ କରିବା ପାଇଁ ନିଜ ନିଜର ବିଶ୍ୱସ୍ତ ପ୍ରତିନିଧିଙ୍କୁ ପଠାଇଲେ । ପ୍ରତି ଦୁର୍ଗ ଓ ମହଲରୁ ରାଜସ୍ୱ ଆଦାୟର ପଥ ସୁଗମ ହୋଇଗଲା । ଅନ୍ୟର କୁପରାମର୍ଶରେ ପଡ଼ି ସୁବାଦାରଙ୍କ କ୍ଷମତାକୁ ଅସ୍ୱୀକାର ପୂର୍ବକ ରାଜସ୍ୱ ବନ୍ଦ କରିଥିବା ରାଜା ମୁକୁନ୍ଦଦେବ ମୋଗଲ ସେନା ହସ୍ତରୁ ରକ୍ଷା ପାଇବାର ଅନ୍ୟ ଉପାୟ ନ ଦେଖି ୧୭୨୧ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସ ୧୮ ତାରିଖରେ ସୁବାଦାରଙ୍କ ସହିତ ମୁଲାକାତ୍ କରି ତାଙ୍କ ଅଶିତ କାର୍ଯ୍ୟପାଇଁ ଦୁଃଖ ପ୍ରକାଶ କରିଥିଲେ । ବିଦ୍ରୋହୀ ଭରତ ପଟ୍ଟନାୟକ ମଧ୍ୟ ମୁକୁନ୍ଦଙ୍କ ପଥ ଅନୁସରଣ କରିଥିଲେ ।"

---

* ଏଥି ମଧ୍ୟରୁ କେତେକ ଅସ୍ତ୍ରଶସ୍ତ୍ର ଆକାର ପ୍ରକାର ଜଣା ପଡ଼ୁନାହିଁ ।

## ଛଦ୍ମବେଶୀ ଗଙ୍ଗାଧରଙ୍କ ସିଂହାସନ ଦାବୀ—

"ଖାନ୍-ଇ-ଦୁରାନ୍ ଦିଲ୍ଲୀ ଦରବାରକୁ ଲେଖିଥିବା ଏକ ପତ୍ରରୁ ଜଣାଯାଏ ଯେ ସେ ସୁବାଦାର ହୋଇ ଆସିବା ପୂର୍ବରୁ ଜଣେ ଛଦ୍ମବେଶୀ (Counterfeit) ଗଙ୍ଗାଧର ଦେବ ଦିଲ୍ଲୀ ଯାଇ ହସ୍ତୀବିକ୍ରେତା ମୁଜଫର ରାୟ ବୃନ୍ଦାବନ ଦାସଙ୍କ ଜରିଆରେ ମିର୍ଜା ରାଜା ଜୟସିଂହଙ୍କ ପୁତ୍ର କୁମାର ରାମସିଂହ କଚ୍ଛୁଆଙ୍କୁ ସାକ୍ଷାତ କରିଥିଲେ ଏବଂ ତାଙ୍କୁ ଖୁର୍ଦ୍ଧାର ରାଜା କରିଦେଲେ ସେ ବାର୍ଷିକ ବାଉଲକ୍ଷଟଙ୍କା ପେସ୍‌କସ୍ ଦେବେ ବୋଲି ଏକ ପ୍ରସ୍ତାବ ଦେଇଥିଲେ। କିନ୍ତୁ ଏହା କାର୍ଯ୍ୟକାରୀ ହୋଇ ନ ଥିଲା ଏବଂ ମୁକୁନ୍ଦ ଦେବ ସିଂହାସନ ଅଧିକାର କରିଥିଲେ। ଖାନ୍-ଇ-ଦୁରାନ୍ ସୁବାଦାର ହେବା ପରେ ଅନ୍ୟ ଜଣେ ଲୋକ ନିଜକୁ ଗଙ୍ଗାଧର ବୋଲି ଘୋଷଣା କରି ତଳମାଳ ଅଞ୍ଚଳରେ ମେଳି କରିଥିଲେ। କିନ୍ତୁ ସେ ଅଞ୍ଚଳର ଫୌଜଦାର ମହମ୍ମଦ ଜାନ୍ ତାଙ୍କୁ ଧରି ଆଣି ସୁବାଦାରଙ୍କ ନିକଟକୁ ପଠାଇ ଦେବାରୁ ସେ ତାଙ୍କୁ କଟକର ମାନଖଣ୍ଡି ଦୁର୍ଗରେ ବନ୍ଦୀ କରିଥିଲେ। ସୁବାଦାର ଏ ସବୁ ପ୍ରତି ଭ୍ରୂକ୍ଷେପ ନ କରି ବିଦ୍ରୋହୀ ମୁକୁନ୍ଦଙ୍କ ବିତାଡ଼ନ ପରେ ତାଙ୍କ ସାନ ଭାଇଙ୍କୁ ଖୁର୍ଦ୍ଧା ରାଜା କରି ଦିଲ୍ଲୀ ଦରବାରକୁ ଜଣାଇ ଦେଇଥିଲେ।"

## ଅନ୍ୟାନ୍ୟ ଜମିଦାରଙ୍କ ଅଧୀନତା ସ୍ୱୀକାର :—

ମୁକୁନ୍ଦଙ୍କ ବିତାଡ଼ନ ପରେ ରଣପୁର ଜମିଦାର ଖଣ୍ଡ ନରେନ୍ଦ୍ର ଏବଂ ମଲପଡ଼ା ଓ ଡମପଡ଼ାର ଜମିଦାର ହରି (ଯେଉଁମାନେ କି ପୂର୍ବେ କୌଣସି ସୁବାଦାରଙ୍କୁ ଭେଟି ନ ଥିଲେ) ଖାନ୍-ଇ-ଦୁରାନଙ୍କୁ ମୁଲାକାତ୍ କରି ବାର୍ଷିକ ପେସକସ ଦେବା ପାଇଁ ରାଜି ହୋଇଥିଲେ। କାଠଯୋଡ଼ୀର ଦକ୍ଷିଣ ତଟଦେଶରେ ଥିବା ଯେଉଁ ଜମିଦାର ମାନେ ରାଜଣା ବନ୍ଦ କରି ଫୌଜଦାର ସୟଦ ସେର ଖାଁନଙ୍କ ସହିତ ଲଢ଼େଇ କରିଥିଲେ ସେମାନେ ପରାଜିତ ହେଲେ। ଓଡ଼ିଶାର ଦକ୍ଷିଣ ସୀମା ମାଲୁଦରେ ଥିବା ଫୌଜଦାର ଅନ୍ଧାରି ଜମିଦାର ପିତାମ୍? ଓ ମାଲୁଦର ଜମିଦାର କୁମାର ଗୁରୁଙ୍କ ବିଦ୍ରୋହ ଦମନ କରିଥିଲେ।„ (୭)

ଖାନ୍-ଇ-ଦୁରାନ୍ ଖୁର୍ଦ୍ଧା ରାଜ୍ୟକୁ ସଂପୂର୍ଣ୍ଣ ରୂପେ ଜୟ କରିବା ପାଇଁ ନିରବଚ୍ଛିନ୍ନ ଓ ଧାରାବାହିକ ଭାବରେ ଯୁଦ୍ଧ ଚଳାଇ ସଫଳତା ଲାଭ କରିଥିବାରୁ ଏହା ମୋଗଲ ଇତିହାସରେ ଏକ ସ୍ମରଣୀୟ ଘଟଣା ରୂପେ ବର୍ଣ୍ଣିତ ହୋଇଥିଲା। ଏଥିରେ ଏହାର ବିସ୍ତୃତ ବିବରଣ ଲିପିବଦ୍ଧ ହୋଇଥିଲେ ମଧ୍ୟ ମାଦଳାପାଞ୍ଜିରେ

---

(7) Studies in Mughal India, P. 208-212

ଏହାର ସୂଚନା ମିଳେ ନାହିଁ । ଗଜପତିଙ୍କ ଅପମାନଜନକ ପରାଜୟକୁ ଲୁଚ୍ଚ-ଇବା ପାଇଁ ପାଞ୍ଜିକାର ଏପରି ମିଛକଥା ଅବଲମ୍ବନ କରିଥିବା ମନେହୁଏ । ମୁକୁନ୍ଦ ଦେବଙ୍କ ବଡ଼ାଭାଇ ଓ ମହାଜନିଆ ଗଙ୍ଗାଧର ଦେବ କିଛି କାଳ ରାଜା ହୋଇଥିବା ବିଷୟ ଏଥିରେ ଅତି ସଂକ୍ଷିପ୍ତରେ ବର୍ଣ୍ଣିତ ହୋଇଛି ।

"ଏ ଉତ୍ତାରୁ ଏହାଙ୍କ ପୁଅ ମୁକୁନ୍ଦ ଦେବ ମହାରାଜା ହୋଇଥିଲେ । ଏ ମହାରାଜାଙ୍କ ରାଜ୍ୟ କରିବା ଭିତରେ ମହାଜନିଆ ଗଙ୍ଗାଧର ଦେବ ରାଜା ହୋଇଲେ ମା ୧ । ୧୭ ଦିନ । ଏ ଧବଳେଶ୍ୱର ଠାରେ ମାରିଗଲେ । ଏଥି ଭିତରେ ମୁକୁନ୍ଦ ଦେବ ମହାରାଜାଙ୍କ ସାନ ଭାଇ କପିଳ ଭ୍ରମରବର ରାଏ ରାଜା ହୋଇଲେ ୧ ବର୍ଷ ୭ ମାସ । ଏ ଉତ୍ତାରୁ ଏହାଙ୍କୁ ମୁକୁନ୍ଦ ଦେବ ରାଜା ଧରାଇ ରଖିଲେ ।" (୮)

ମୁକୁନ୍ଦ ଦେବଙ୍କ ପରାଜୟ ୧୬୭୧ ମାର୍ଚ୍ଚ ମାସରେ ଘଟିଥିବାରୁ ଏହାର ଏକ ବର୍ଷ ସାତ ମାସ ପରେ ଅର୍ଥାତ୍ ୧୬୭୨ ଖ୍ରୀଷ୍ଟାବ୍ଦ ଅକ୍ଟୋବର ମାସରେ ସେ ପୁନର୍ବାର ଖୁର୍ଦ୍ଧା ସିଂହାସନ ଅଧିକାର କରି ସାନ ଭାଇ କପିଳ ଭ୍ରମରବରଙ୍କୁ ବନ୍ଦୀ କରିଥିଲେ । ସେ ଯେ ପ୍ରବଳ ଯୁଦ୍ଧ ଚଳାଇ ଖୁର୍ଦ୍ଧା ରାଜ୍ୟ ପୁନରଧିକାର କରିଥିଲେ ଏଥିରେ ସନ୍ଦେହ ନାହିଁ । କିନ୍ତୁ ତାଙ୍କର ଏହି ବିପୁଳ ବିଜୟ ସମ୍ବନ୍ଧରେ ମୋଗଲ ଇତିହାସ ଏକାବେଳକେ ନୀରବ ।

## ମୋଗଲ ସୁବାଦାର ମାନଙ୍କ ସହ ସଂପର୍କ :–

ମୁକୁନ୍ଦଙ୍କ ସିଂହାସନ ପ୍ରାପ୍ତି ପରେ ମଧ୍ୟ ଖାନ-ଇ ଦୁରାନ୍ ପ୍ରାୟ ୫ ବର୍ଷ ପର୍ଯ୍ୟନ୍ତ କଟକର ସୁବାଦାର ରହିଥିଲେ । ତାଙ୍କ ସୁବାଦାରି ସମୟରେ କେନ୍ଦ୍ରାପଡ଼ାର ପ୍ରସିଦ୍ଧ ବଳଦେବଜୀ ମନ୍ଦିର ଭଙ୍ଗାଯାଇ ସେଠାରେ ଏକ ମସଜିଦ ନିର୍ମିତ ହୋଇ-ଥିଲା । (୯) କିନ୍ତୁ ସେ ପୁରୀ ମନ୍ଦିର ଆକ୍ରମଣ କରିଥିବାର ଜଣାଯାଏ ନାହିଁ । ଖାନ୍ ଇ ଦୁରାନ୍ଙ୍କ ପରେ ଆଲ୍ଲାହର୍ଦ୍ଦି ଖାଁ ୧୬୬୭ ସେପଟେମ୍ବର ପରେ ଅଳ୍ପକାଳ ପାଇଁ ସୁବାଦାର ହୋଇଥିଲେ । ତାଙ୍କ ପରବର୍ତ୍ତୀ ଅନ୍ୟାନ୍ୟ ସୁବାଦାର ହେଉଛନ୍ତି :–

ତରବିୟତ୍ ଖାଁ ବରଲସ (୧୬୬୮-୧୬୬୯ ଖ୍ରୀଷ୍ଟାବ୍ଦ)

ସାଫ ଖାଁ (୧୬୬୯ ଖ୍ରୀଷ୍ଟାବ୍ଦ ଅକ୍ଟୋବର ମାସ ଠାରୁ)

---

(୮) ମାଦଳାପାଞ୍ଜି ପୃ ୬୯

(9) History of Orissa by R. D. Banerjee, Vol. II, P. 56

ସଫୌନ୍ ଖାଁ— ଏହି ସମୟରେ ମିର୍ଜା ଆନସାରିଙ୍କ ନାତି ଅବଦୁଲ୍ କରିମଙ୍କ ପୁଅ ଅବଦୁଲ ଅଜିଜ୍ ଔରଙ୍ଗଜେବଙ୍କ ରାଜତ୍ୱ କାଳରେ ୧୦୮୫ ହିଜ୍ରା ରମଜାନ ମାସରେ ଅର୍ଥାତ୍ ୧୬୭୪ ଖ୍ରୀଷ୍ଟାବ୍ଦରେ ପିପିଲି ଠାରେ ଏକ ବିଶାଳ ମସଜିଦ୍ ନିର୍ମାଣ କରିଥିଲେ । (୧୦) ଏଥିପାଇଁ ଯେ ଅନେକ ହିନ୍ଦୁ ମନ୍ଦିର ଭଙ୍ଗା ଯାଇଥିବ ଏଥିରେ ସନ୍ଦେହ ନାହିଁ ।

ରସିଦ୍ ଖାଁ (୧୬୭୬ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସରେ)

ସାୟୁସ୍ତ ଖାଁ (୧୬୭୬ ମାର୍ଚ୍ଚ ମାସରୁ ୧୬୭୭ ଡିସେମ୍ବର ପର୍ଯ୍ୟନ୍ତ)

ରାଜକୁମାର ମହମ୍ମଦ ଆଜମ୍ (୧୬୭୮ ଜୁଲାଇରୁ ୧୬୭୯ ଅକ୍ଟୋବର ପର୍ଯ୍ୟନ୍ତ)

ସାୟୁସ୍ତ ଖାଁ (୧୬୮୦ ଜାନୁୟାରି ଠାରୁ ୧୬୮୮ ଜାନୁୟାରି ପର୍ଯ୍ୟନ୍ତ) ଦ୍ୱିତୀୟ ବାର ସୁବାଦାର ରୂପେ ନିଯୁକ୍ତ ହୋଇଥିଲେ । (୧୧)

## ଯାଜପୁର ମନ୍ଦିର ଓ ସାରଳା ମନ୍ଦିରର ଧ୍ୱଂସସାଧନ ଓ ଜଗନ୍ନାଥ ମନ୍ଦିର ଅଭିଯାନ :—

ସାୟୁସ୍ତ ଖାଁଙ୍କ ସମୟରେ ତାଙ୍କ ପୁତ୍ର ଆବୁ ନସର ଖାଁ ୧୪-୧-୧୬୮୩ରୁ ଉତ୍କଳରେ ସୁବାଦାର ରୂପେ କାର୍ଯ୍ୟ କରୁଥିଲେ । ପ୍ରସିଦ୍ଧ ଝଙ୍କଡ଼ ଗ୍ରାମସ୍ଥ ମସ୍‌ଜିଦ୍‌ରେ ଥିବା ଶିଳାଲେଖରୁ ଜଣାଯାଏ ଯେ ୧୦୯୮ ହିଜ୍ରା ସନ ବା ୧୬୮୬ ଖ୍ରୀଷ୍ଟାବ୍ଦରେ ଏହା ନିର୍ମିତ ହୋଇଥିଲା । ଏହା ସାରଳା ଦେବୀଙ୍କ ପବିତ୍ର ମନ୍ଦିରର ପୀଠ ନିକଟରେ ଥିବାରୁ ଏହି ମନ୍ଦିରଟି ଭଙ୍ଗାଯାଇ ଯେ ମସ୍‌ଜିଦ୍ ତୋଳା ଯାଇଥିଲା ଏଥିରେ ସନ୍ଦେହ ନାହିଁ । ସେ ତାଙ୍କର ପ୍ରଭୁ ମୋଗଲ ବାଦସାହ ଔରଙ୍ଗଜେବଙ୍କ ପରି ଅତ୍ୟନ୍ତ ହିନ୍ଦୁଧର୍ମବିଦ୍ୱେଷୀ ଥିଲେ । ସେ ୧୦୯୮ ହିଜ୍ରା ଅବ୍ଦ * ବା ୧୬୮୬-୮୭ ଖ୍ରୀଷ୍ଟାବ୍ଦରେ ଯାଜପୁରର କେତେକ ପ୍ରସିଦ୍ଧ ହିନ୍ଦୁ ମନ୍ଦିର ଭାଙ୍ଗି ଏକ ବଡ଼ ମସ୍‌ଜିଦ୍ ନିର୍ମାଣ କରିଥିଲେ । (୧୨) ମାଦଳାପାଞ୍ଜିରୁ ଜଣାଯାଏ ଯେ ସେ ପୁରୀ ଜଗନ୍ନାଥ ମନ୍ଦିର ଆକ୍ରମଣ ଉଦ୍ଦେଶ୍ୟରେ କଟକରୁ ଅଭିଯାନ ଚଳାଇ ପିପିଲି ପର୍ଯ୍ୟନ୍ତ

---

(10) O.H.R.J. Vol. II, No. 4, P. 61

(11) History of Bengal (Dacca University) Vol. II.

* ୧୦୯୮ ହିଜ୍ରା ଅବ୍ଦ ୧୬୮୬ ନଭେମ୍ବର ମାସ ୭ ତାରିଖରେ ଆରମ୍ଭ ହୋଇଥିଲା ।

(12) 'Two forgotten Mughal Subadars of Orissa' by P. Acharjya. Pro. I. H. Congress, Nagpur, 1950. p. 219-221.

ଅଗ୍ରସର ହୋଇଥିଲେ । ସେ ଚୈତ୍ର ମାସରେ ପିପିଲିଠାରେ ଡେରା ପକାଇଥିଲେ । କିନ୍ତୁ ସେଠାରେ ହଠାତ୍ ବଜ୍ରପାତ ହେବାରୁ ସେ କଟକ ଫେରିଯାଇଥିଲେ । ଯଥା—

"ଏ ମହାରାଜାଙ୍କ ଅ ୩ ଅଙ୍କେ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରକୁ ଆକ୍ରମଣ କରିବା ବସ୍ତୁରେ ନବାବ ଅବଦୁଲ ନସର ଖାଁ ପିପିଲି ଯାଏ ଅଇଲା । ଏହାଙ୍କ ସହିତ ରାଜା କୃଷ୍ଣମୁକୁନ୍ଦ ସେନ ହାଣ୍ଡମୁକୁନ୍ଦପୁର ନଅରେ ବଜେ କଲେ । ଚଇତ ମାସରେ ପିପିଲି ଠାରେ ଚଡ଼କ ପଡ଼ିବାରେ ଆରବନ ରାଜାଙ୍କ ସଙ୍ଗେ ପ୍ରୀତି ହୋଇ କଟକ ବାହୁଡ଼ା କଲା ।" (୧୩)

ସେ ଯାଜପୁର ମନ୍ଦିର ଧ୍ୱଂସ କରିବା ପରେ ପୁରୀ ମନ୍ଦିର ବିରୁଦ୍ଧରେ ଅଭିଯାନ ଚଳାଇଥିବାରୁ ଏହା ୧୬୮୭ର ପ୍ରଥମ ଭାଗରେ ଘଟିଥିବାର ସ୍ଥିର କରାଯାଇ ପାରେ । କିନ୍ତୁ ପିପିଲି ଠାରେ ଦୈବୀ ଚଡ଼କ ପଡ଼ିବାରୁ ସେ ଏହାକୁ ବୋଧହୁଏ ଜଗନ୍ନାଥଙ୍କ ମହିମା ବୋଲି ଭାବି ଭୀତ-ତ୍ରସ୍ତ ହୋଇ କଟକ ଫେରି-ଆସିଲେ ଓ ଜଗନ୍ନାଥ ମନ୍ଦିର ଆସନ୍ନ ଆକ୍ରମଣରୁ ରକ୍ଷା ପାଇଗଲା ।

## ମୁକୁନ୍ଦ ଦେବଙ୍କ ମୃତ୍ୟୁ :—

୧୭-୮-୧୬୮୯ ତାରିଖରେ ପଡ଼ିଥିବା ସୁନିଆଁ ଅଙ୍କରୁ ଦିବ୍ୟସିଂହ ଦେବ ଖୁର୍ଦ୍ଧା ସିଂହାସନ ଆରୋହଣ କରିଥିବା ନିଶ୍ଚିତ ଭାବରେ ଜଣାଯାଏ । ତେଣୁ ଏହି ତାରିଖ ପୂର୍ବରୁ ମୁକୁନ୍ଦ ଦେବଙ୍କ ମୃତ୍ୟୁ ଘଟିଥିଲା । ମାଦଳାପାଞ୍ଜିରୁ ଜଣାଯାଏ ଯେ ସେ ଯାଜପୁର ନଅର ଠାରେ ବସନ୍ତ ରୋଗରେ ଆକ୍ରାନ୍ତ ହୋଇ ପ୍ରାଣତ୍ୟାଗ କରିବାରୁ ସେଠାରେ ତାଙ୍କର ଦାହକ୍ରିୟା ସମାପନ କରାଗଲା । ତାଙ୍କ ପାଟରାଣୀ ସ୍ୱାମୀଙ୍କ ଚିତାଗ୍ନିରେ ଝାସ ଦେଇ ପ୍ରାଣତ୍ୟାଗ କଲେ । ତାଙ୍କ ଯାଜପୁର ଯାତ୍ରାର କାରଣ ଲେଖା ନ ଥିଲେ ମଧ୍ୟ ନସର ଖାଁ କୃତ ମନ୍ଦିର ମାନଙ୍କ ଧ୍ୱଂସ ଲୀଳା ଦେଖିବା ପାଇଁ ସେ ସେଠାକୁ ଯାଇଥିବା ମନେହୁଏ । ତାଙ୍କ ପୂର୍ବପୁରୁଷ ନରସିଂହ ଦେବ ସୁବାଦାର ବକର ଖାଁ କୃତ କୋଣାର୍କ ମନ୍ଦିରର ଭୀଷଣ କ୍ଷତି ପରିଦର୍ଶନ ପାଇଁ ସେଠାକୁ ଯାଇଥିବା ପୂର୍ବେ ବର୍ଣ୍ଣିତ ହୋଇଛି । ସମ୍ଭବତଃ ସେ ଏହି ଆଦର୍ଶ ଦ୍ୱାରା ଅନୁପ୍ରାଣିତ ହୋଇଥିଲେ ।

## ସଂସ୍କୃତ ସାହିତ୍ୟ ଚର୍ଚ୍ଚା

ଖୁର୍ଦ୍ଧା ସିଂହାସନ ପୁନର୍ବାର ଅଧିକାର ପର ଠାରୁ (୧୬୬୨ ଅକ୍ଟୋବର) ମୁକୁନ୍ଦ ଦେବଙ୍କ ମୃତ୍ୟୁ ପର୍ଯ୍ୟନ୍ତ କୌଣସି ମୋଗଲ ସୁବାଦାର ଖୁର୍ଦ୍ଧା ରାଜ୍ୟ ବା

---

(୧୩) ମାଦଳାପାଞ୍ଜି, ପୃ ୭୯

ଜଗନ୍ନାଥ ମନ୍ଦିର ଆକ୍ରମଣ କରି ନ ଥିବାରୁ ତାଙ୍କ ରାଜତ୍ୱ ଅପେକ୍ଷାକୃତ ସୁଖ ଶାନ୍ତିରେ କଟିଥିଲା । ତେଣୁ ଏହି ଦୀର୍ଘ ୨୨ ବର୍ଷ ମଧ୍ୟରେ ବହୁ କବି ପଣ୍ଡିତ ନିଶ୍ଚିନ୍ତ ମନରେ ବାଣୀ ଆରାଧନା କରି ଅନେକ ଗ୍ରନ୍ଥ ରଚନା କରିଥିଲେ । ତାଙ୍କ ରାଜତ୍ୱରେ ଆବିର୍ଭୂତ କବି ପଣ୍ଡିତ ମାନଙ୍କ ମଧ୍ୟରୁ ନିମ୍ନଲିଖିତ କେତେକଙ୍କ ସମ୍ବନ୍ଧରେ ବିଶ୍ୱାସଯୋଗ୍ୟ ବିବରଣ ମିଳେ ।

## ଯତୀନ୍ଦ୍ର ରଘୂତ୍ତମ ତୀର୍ଥ :—

ସେ ପୁରୀବାସୀ ଜଣେ ସନ୍ନ୍ୟାସୀ ଥିବାରୁ ସ୍ୱଗ୍ରନ୍ଥ 'ମୁକୁନ୍ଦବିଳାସ ମହାକାବ୍ୟମ୍'ରେ ନିଜକୁ 'ଭିକ୍ଷୁ' 'କୌପୀନଭୃତ୍' ଓ 'ତୀର୍ଥପାଦ' ରୂପେ ପରିଚିତ କରାଇଛନ୍ତି । ସେ ହରିହରଙ୍କ ପରିତୋଷ ନିମିତ୍ତ ଉକ୍ତ କାବ୍ୟ ରଚନା କରିଥିଲେ । ସେ ଏହାର ଏକାଦଶ ସର୍ଗ ଶେଷସ୍ଥ ନିମ୍ନଲିଖିତ ଶ୍ଳୋକରେ ଗ୍ରନ୍ଥ ରଚନାର ସମୟ ପ୍ରଦାନ କରିଛନ୍ତି । ଯଥା—

ଗ୍ରହବସୁ ଶରଚନ୍ଦ୍ରୈ । ନ୍ମାନ ବର୍ଷାନ୍ତମେ୍ୟଽବ୍ଦେ
କ୍ଷିତିପତିକୁଳମୌଳେଃ ଷ୍ଟାମତେଃ ଶ୍ରୀଶକସ୍ୟ
ବସୁରସଋଷିବେଦୈଃ ସଂମିତାବ୍ଦାନ୍ତ ବର୍ଷେ
ସମଜନି କଳିକାଳ ସୈ୍ୟଷ କାବ୍ୟପ୍ରବନ୍ଧଃ ।

ଏହି କାବ୍ୟ ଗ୍ରହ(୯) ବସୁ ( ) ଶର (୫) ଚନ୍ଦ୍ର (୧) ବା ୧୫୮୯ ଶକାବ୍ଦ ବସୁ (୮) ରସ (୬) ଋଷି (୭) ଓ ବେଦ (୪) ଅର୍ଥାତ୍ ୪୭୬୮ କଳିଯୁଗାବ୍ଦରେ ରଚିତ ହୋଇଥିଲା । ଗଣନା ଅନୁସାରେ ଉକ୍ତ ବର୍ଷ ୧୬୬୭ ଖ୍ରୀଷ୍ଟାବ୍ଦ ଚଳୁଥିଲା ।

ଏହା ଗୀତଗୋବିନ୍ଦ ମହାକାବ୍ୟର ଅନୁକରଣରେ ଲିଖିତ ହୋଇଥିଲେ ମଧ୍ୟ ଗ୍ରନ୍ଥାରମ୍ଭରେ ଉଦାରହୃଦୟ ଦାର୍ଶନିକ ତୀର୍ଥପାଦ ବେଦାନ୍ତକୀର୍ତ୍ତିତ ଗୁଣାତୀତ ଗୃହସିନ୍ଧୁ ରାଧିକାବନ୍ଧୁ ଶ୍ରୀକୃଷ୍ଣଙ୍କୁ ପ୍ରଣତି ପୂର୍ବକ ବିଭିନ୍ନ ସଂପ୍ରଦାୟ ଦ୍ୱାରା ସ୍ୱ ସ୍ୱ ଇଷ୍ଟଦେବତା ରୂପେ ପୂଜିତ ଗଣେଶ, ସୂର୍ଯ୍ୟ, ଶିବ, ଦୁର୍ଗା, ବିଷ୍ଣୁ, ବ୍ରହ୍ମା ଓ ଶ୍ରୀ ରାଧିକାବଲ୍ଲଭ ଶ୍ରୀକୃଷ୍ଣଙ୍କ ମଧ୍ୟରେ ଅଭେଦତ୍ୱ ପ୍ରତିପାଦନ କରିଛନ୍ତି । କବି ବ୍ରହ୍ମ-ପତ୍ନୀ ସରସ୍ୱତୀ, ନାରାୟଣ-ସଙ୍ଗିନୀ ଲକ୍ଷ୍ମୀ, ଈଶାର୍ଦ୍ଧଶରୀରିଣୀ ଭଗବତୀ, ଶ୍ରୀରାମଚନ୍ଦ୍ର-ପ୍ରିୟା ସୀତା, ବାସୁଦେବ-ଗୃହିଣୀ ରୁକ୍ମିଣୀ, ବଳରାମବଲ୍ଲଭା ରେବତୀ ଏବଂ ଶ୍ରୀକୃଷ୍ଣଦୟିତା ଶ୍ରୀରାଧିକାଙ୍କର ଏକତ୍ୱ ତଥା ଅଭିନ୍ନତ୍ୱ ବର୍ଣ୍ଣନା କରିଛନ୍ତି । କବିଙ୍କ ମତରେ ସ୍ତ୍ରୀ ଓ ପୁରୁଷ ଦେହାଶ୍ରିତ ପ୍ରକୃତି ଓ ପୁରୁଷ; ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ରୂପେ କଳ୍ପିତ ତ୍ରିମୂର୍ତ୍ତି; ପୁଣ୍ୟ ନୀଳାଚଳରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ରୂପେ ପ୍ରକଟିତ ଚତୁର୍ଦ୍ଧାମୂର୍ତ୍ତି ତଥା ଶ୍ରୀରାଧାକୃଷ୍ଣଙ୍କ ଯୁଗଳମୂର୍ତ୍ତି

'ଏକମେବ ଅଦ୍ୱିତୀୟମ୍' ପରମ ବ୍ରହ୍ମଙ୍କର ବିଭିନ୍ନ ପ୍ରକାଶ ମାତ୍ର । ଦାର୍ଶନିକ ତୀର୍ଥପାଦ ବୈଷ୍ଣବ, ଶୈବ, ଶାକ୍ତ ପ୍ରଭୃତି ମୁଖ୍ୟ ମତାବଲମ୍ବୀମାନଙ୍କୁ ସ୍ୱ ସ୍ୱ ଇଷ୍ଟ-ଦେବତାଙ୍କ ମଧ୍ୟରେ ଅଯଥା ଭେଦଭାବ ପରିତ୍ୟାଗ କରି ସମସ୍ତଙ୍କୁ ନିର୍ଭେଦ ପରମେଶ୍ୱରଙ୍କ ବହୁଧା ରୂପ ରୂପେ ପୂଜା ଆରାଧନା କରିବା ପାଇଁ ବିନୀତ ଭାବରେ ପ୍ରାର୍ଥନା କରିଛନ୍ତି । ତୀର୍ଥପାଦ ସୁ ପ୍ରାଚୀନ ବୈଦିକ ଯୁଗର ଋଷିକଣ୍ଠ ନିଃସୃତ ମହାବାଣୀ "ଏକ ସଦ୍‌ବିପ୍ରାଃ ବହୁଧା ବଦନ୍ତି"ର ମହତ୍ତ୍ୱ ପ୍ରତିପାଦନ ପାଇଁ ଉକ୍ତ କାବ୍ୟ ରଚନା କରିଥିଲେ । ଏହା ପାଠ କଲେ ସ୍ପଷ୍ଟ ଧାରଣା ଜାତ ହୁଏ ଯେ ତତ୍କା-ଳୀନ ସମାଜରେ କ୍ରମଶଃ ଆଧିପତ୍ୟ ଲାଭ କରୁଥିବା ଶ୍ରୀରାଧାକୃଷ୍ଣ ମତାବଲମ୍ବୀ ମାନେ ସ୍ୱଧର୍ମମତର ଶ୍ରେଷ୍ଠତ୍ୱ ପ୍ରଚାର କରୁଥିବାରୁ ଦାର୍ଶନିକ କବି ସର୍ବଧର୍ମସମନ୍ୱୟର ମହା-ପୀଠସ୍ଥଳୀ ଶ୍ରୀକ୍ଷେତ୍ରରୁ ଏପରି ଉଦାର ବାଣୀ ଶୁଣାଇଥିଲେ । ଆଦର୍ଶ ଦୃଷ୍ଟିରୁ ଏହା ଏକ ଅଦ୍ୱିତୀୟ ଗ୍ରନ୍ଥ । (୧୪) ତୀର୍ଥପାଦଙ୍କର ଅନ୍ୟ କୌଣସି ରଚନାର ସନ୍ଧାନ ଏ ପର୍ଯ୍ୟନ୍ତ ମିଳି ନାହିଁ ।

**ବିଦ୍ୟାକର ପୁରୋହିତ :** - ବିଦ୍ୟାକର କୃତ 'ନାରାୟଣ ଶତକମ୍' ଅଧୁନାଲୁପ୍ତ ପ୍ରାଚୀ ସମିତି ଦ୍ୱାରା ପ୍ରାୟ ୩୦ ବର୍ଷ ପୂର୍ବେ ପ୍ରକାଶିତ ହୋଇଥିଲା । ଏହା ସଂସ୍କୃତ ସାହିତ୍ୟ ଭଣ୍ଡାରର ଏକ ଅମୂଲ୍ୟ ରତ୍ନ । ଏତଦ୍‌ବ୍ୟତୀତ ସେ ମହାରାଷ୍ଟ୍ରବାସୀ କବିରାଜ ସୂରି କୃତ 'ରାଘବପାଣ୍ଡବୀୟ ମହାକାବ୍ୟମ୍'ର 'ହୃଦୟାହ୍ଲାଦସାରିଦ' ନାମକ ଏକ ସୁନ୍ଦର ଟୀକା ରଚନା କରିଥିଲେ । ଏହାର ଖଣ୍ଡିଏ ପୋଥି ପ୍ରାଦେଶିକ ମିଉଜିୟମରେ ସଂରକ୍ଷିତ । ଏଥିରେ ପ୍ରଦତ୍ତ ଗୋଟିଏ ଶ୍ଳୋକରୁ ଜଣାଯାଏ, ସେ ଷୋଡ଼ଶ ଶତାବ୍ଦୀର ପ୍ରସିଦ୍ଧ ଉତ୍କଳୀୟ ପଣ୍ଡିତ କବି ଡିଣ୍ଡିମ ଜୀବଦେବାଚାର୍ଯ୍ୟଙ୍କ ବଂଶଧର ଥିଲେ ।

"ଶ୍ରୀ ଜୀବଦେବ କବିଡିଣ୍ଡିମ ବଂଶଜନ୍ମା
ବିଦ୍ୟାକରାଭିଧ ବୁଧଃ ସୁକବି ପ୍ରବୀଣଃ
ତସ୍ମୀରାଘବକୃତି ରାଘବପାଣ୍ଡବୀୟେ •
ବ୍ୟାଖ୍ୟାଂ ତନୋତି ହୃଦୟାହ୍ଲାଦସାରିଦାଖ୍ୟମ୍ ।"

ସେ ମୁକୁନ୍ଦଦେବଙ୍କ ରାଜତ୍ୱର ପ୍ରଥମ ଭାଗରେ ଆବିର୍ଭୂତ ହୋଇଥିଲେ ଏବଂ ପ୍ରସିଦ୍ଧ ରାଜଗୁରୁ ବଂଶୀୟ ଥିବାରୁ ତାଙ୍କ ସଭା ମଣ୍ଡନ କରୁଥିଲେ ।

---

(୧୪) କବି ଓ ଉକ୍ତ ଗ୍ରନ୍ଥ ସମ୍ବନ୍ଧରେ ବିସ୍ତୃତ ବିବରଣ ପାଇଁ ମୋର ଓଡ଼ିଆ ଓ ଇଂରାଜୀ ଭାଷାରେ ପ୍ରକାଶିତ ପ୍ରବନ୍ଧଦ୍ୱୟ ଦ୍ରଷ୍ଟବ୍ୟ :—
(କ) କୋଣାର୍କ, ଦ୍ୱିତୀୟ ବର୍ଷ, ପ୍ରଥମ ସଂଖ୍ୟା, ଏପ୍ରିଲ ୧୯୭୦
(ଖ) O. H. R. J. Vol. IX, Nos. 1 & 2, pp. 30-35

**ଅନାଦ୍ଧ ମିଶ୍ର**—ଅନାଦ୍ଧ ମିଶ୍ର ଗଜପତି ପୁରୁଷୋତ୍ତମ ଦେବ (୧୪୬୭ ୧୪୯୭ ଓ ଗଜପତି ପ୍ରତାପରୁଦ୍ର ଦେବ (୧୪୯୭-୧୫୩୪)ଙ୍କ ପ୍ରସିଦ୍ଧ ସଭାକବି ବିଦ୍ୟାନଗର (ବିଜୟ ନଗର) ପଣ୍ଡିତସଭା ବିଜୟୀ (ବିଦ୍ୟାନଗର-ବିଦ୍ୟାଗରିମ ଗ୍ରାବଂଶଙ୍କଃ) ସୁନାମଧନ୍ୟ କବିଚନ୍ଦ୍ର ରାୟ ଦିବାକର ମିଶ୍ରଙ୍କ ବଂଶଧର ଥିଲେ । ତାଙ୍କ ପିତାମହଙ୍କ ନାମ ମୁକୁନ୍ଦ ମିଶ୍ର, ପିତାଙ୍କ ନାମ ଶତଂଜୀବ ମିଶ୍ର ଓ ମାତାଙ୍କ ନାମ କମ୍ବଦେବୀ । ଶତଂଜୀବ ମିଶ୍ର 'ମୁଦିତମାଧବ' ନାମକ ଗ୍ରନ୍ଥ ରଚନା କରିଥିଲେ ଅନାଦ୍ଧ ମିଶ୍ର ଖଣ୍ଡପଡ଼ା ରାଜ୍ୟର ଅଧିପତି ସାହିତ୍ୟପ୍ରେମୀ ନାରାୟଣ ମଙ୍ଗରାଜଙ୍କ ପୃଷ୍ଠପୋଷକତା ଲାଭ କରି କାଳ୍ପନିକ ବିଷୟବସ୍ତୁ ସଂକଳିତ 'ମଣିମାଳା' ନାମକ ଏକ ନାଟିକା ରଚନା କରିଥିଲେ । ଏହି ଗ୍ରନ୍ଥଟି ଗଜପତି ମୁକୁନ୍ଦ ଦେବଙ୍କ ରାଜତ୍ୱର ଶେଷ ଭାଗରେ ଲିଖିତ ହୋଇଥିଲା ।

**ଦୀନବନ୍ଧୁ ମିଶ୍ର**—ଖଣ୍ଡପଡ଼ା ରାଜ୍ୟର ଅଧିପତି ଶ୍ରୀ ନାରାୟଣ ମଙ୍ଗରାଜଙ୍କ ଆଶ୍ରୟ ଲାଭକରି ଦୀନବନ୍ଧୁ ମିଶ୍ର ନାମକ ଅନ୍ୟଜଣେ ପଣ୍ଡିତ ଶ୍ରୀମଦ୍‌ଭାଗବତରୁ ସାର ସଂଗ୍ରହ କରି ୩୭୪୧ ଶ୍ଳୋକବିଶିଷ୍ଟ 'ହରିଭକ୍ତିସୁଧାକର' ନାମକ ଏକ ପ୍ରକାଣ୍ଡ ଗ୍ରନ୍ଥ ରଚନା କରି ତାଙ୍କ ପୃଷ୍ଠପୋଷକଙ୍କ ନାମରେ ଭଣିତା କରିଥିଲେ । ଏହାର ରଚନା ସମାପ୍ତ ହୋଇଛି ନଭ (୦), ଚନ୍ଦ୍ର (୧), ରସ (୬), ଓ ଇନ୍ଦୁ (୧) ୧୬୧୦ ଶକାବ୍ଦ ବା ୧୬୮୮ ଖ୍ରୀଷ୍ଟାବ୍ଦ । ଏଥିରେ ନାରାୟଣ ମଙ୍ଗରାଜଙ୍କ ସମ୍ବନ୍ଧରେ ନିମ୍ନୋକ୍ତ ବିବରଣ ମିଳେ ।

> "ଇହ ଷିତୌ ସର୍ବଗୁଣୈରୁପେତଃ, ସଙ୍ଗୀତବିଦ୍ ଭୂରିଯଶାଃ ସୁଗାତଃ
> ଯୋଽବଂସି ବିଦ୍ୟାର୍ଣ୍ଣବକର୍ଣ୍ଣଧାରେ, ବିଭାତି ନାରାୟଣ ମଙ୍ଗରାଜଃ
> ଦ୍ୱିଜପ୍ରିୟୋ ବିଷ୍ଣୁରତୋ ବଦାନ୍ୟୋ, ବାଗ୍ମୀ ବିବେକୀ ବିନୟୀ କଳଜ୍ଞଃ ।
> ବିସ୍ମରବତ୍ ବୃଦ୍ଧଜନାନୁବର୍ତ୍ତୀ, ବିନିର୍ମିତୋ ଯୋ ବିଧିନା ବଶୀଷ୍ୟ
> **ମହାନଦୀ ଦକ୍ଷିଣ ଭୂପ୍ରଦେଶେ, ଦେଶେ** ତଦୀୟେ ସଦନେ ଶକାବ୍ଦେ
> ଗତେ ନଭଶ୍ଚନ୍ଦ୍ର ରସେନ୍ଦୁ ସଂଖ୍ୟେ ବିନିର୍ମିତୋ ଭକ୍ତିସୁଧାକରୋଽୟଂ ।"(୧୫)

**ଶ୍ରୀକୃଷ୍ଣ ଶ୍ରୀଚନ୍ଦନ**— ଗଞ୍ଜାମ ଅନ୍ତର୍ଗତ ଖେମୁଣ୍ଡି ରାଜ୍ୟର ରାଜା ପଦ୍ମନାଭ ଅନଙ୍ଗଭୀମ ଦେବଙ୍କ ପ୍ରଧାନ ସଚିବ ଶ୍ରୀନାରାୟଣ ମଙ୍ଗରାଜ ପଣ୍ଡିତ ଓ ବିଦ୍ୟୋତ୍ସାହୀ ଥିଲେ । ଶ୍ରୀକୃଷ୍ଣ ଶ୍ରୀଚନ୍ଦନ ଏହି ସୁନାମଧନ୍ୟ ସଚିବ ନାରାୟଣ ମଙ୍ଗରାଜଙ୍କ ପୁତ୍ର । ସେ ମହାକବି କାଳିଦାସଙ୍କ 'ମେଘଦୂତମ୍'ର ଅନୁକରଣରେ 'ଅବ୍‌ଦଦୂତମ୍'

---

(୧୫) ସ୍ୱର୍ଗ ରଘୁନନ୍ଦନ ପୁସ୍ତକାଗାରରେ ସଂରକ୍ଷିତ 'ହରିଭକ୍ତି ସୁଧାକର' ପୋଥିରୁ ଉଦ୍ଧୃତ ।

ନାମକ ଏକ ସୁନ୍ଦର ଖଣ୍ଡକାବ୍ୟ ରଚନା କରିଥିଲେ । ଏଥିରେ ତାଙ୍କର ପିତା ନାରାୟଣ ମଙ୍ଗରାଜ 'କବି' ଓ 'କବିକୁଳ ସୁହୃତ୍' ବୋଲି ବର୍ଣ୍ଣିତ ହୋଇଛନ୍ତି ।

**କବି ନିତ୍ୟାନନ୍ଦ**—ତାଙ୍କ ଦ୍ୱାରା ରଚିତ ଦୁଇଟି ଗ୍ରନ୍ଥ, ଯଥା 'ଶିବଲୀଳାମୃତ-ମହାକାବ୍ୟମ୍' ଓ 'ଶ୍ରୀକୃଷ୍ଣଲୀଳାମୃତ ମହାକାବ୍ୟମ୍' ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇଅଛି ଏବଂ ଉଭୟ ଗ୍ରନ୍ଥର ପୋଥି ପ୍ରାଦେଶିକ ମିଉଜିୟମ ପୋଥି ଭଣ୍ଡାରରେ ସଂରକ୍ଷିତ । ସେ କୌଣ୍ଡିନ୍ୟାନ୍ୱୟରେ ଜନ୍ମଲାଭ କରିଥିଲେ । ତାଙ୍କ ବାସସ୍ଥାନ ବା ପିତାମାତାଙ୍କ ସମ୍ବନ୍ଧରେ ଗ୍ରନ୍ଥଦ୍ୱୟରୁ କୌଣସି ତଥ୍ୟ ମିଳେ ନାହିଁ । ସେ 'ନବଦୁର୍ଗମହୀମହେନ୍ଦ୍ର' ବା ନୟାଗଡ଼ର ସୂର୍ଯ୍ୟବଂଶୀ ରାଜା ଗଦାଧର ମାନଧାତାଙ୍କ ଆଶ୍ରୟରେ ରହି 'ଶିବଲୀଳାମୃତ ମହାକାବ୍ୟମ୍' ରଚନା କରିଥିଲେ । ଗଦାଧର ସିଂହ ସପ୍ତଦଶ ଶତାବ୍ଦୀର ମଧ୍ୟ ଭାଗରେ ରାଜତ୍ୱ କରୁଥିଲେ ଏବଂ ଗଜପତି ମୁକୁନ୍ଦ ଦେବଙ୍କ ସମସାମୟିକ ଥିଲେ । ଏହି କାବ୍ୟଟି 'ଗୀତଗୋବିନ୍ଦ ମହାକାବ୍ୟମ୍'ର ଅନୁକରଣରେ ଲିଖିତ । ଏଥିରେ ଏକାମ୍ରକାନନ ବା ଭୁବନେଶ୍ୱର କ୍ଷେତ୍ରର ମାହାତ୍ମ୍ୟ ସୁନ୍ଦର ଓ ଚିତ୍ତାକର୍ଷକ ଭାବରେ ବର୍ଣ୍ଣିତ ହୋଇଅଛି । ଏଥିରେ ନୟାଗଡ଼ ରାଜବଂଶର ଗୁରୁପୁରୁଷ ଓ ନୟାଗଡ଼ ରାଜ୍ୟସ୍ଥ ଲଡୁକେଶ ମହାଦେବଙ୍କ ବିବରଣ ମିଳେ ।

ସେ ଭର୍ଗୋବଂଶୋଦ୍ଭବ ବା ସୂର୍ଯ୍ୟବଂଶୀୟ ବନମାଳୀ ନାମକ ରାଜାଙ୍କ ଆଶ୍ରୟରେ ରହି 'ଶ୍ରୀକୃଷ୍ଣଲୀଳାମୃତ ମହାକାବ୍ୟମ୍' ପ୍ରଣୟନ କରିଥିଲେ । ଏହା 'ଗୀତଗୋବିନ୍ଦ ମହାକାବ୍ୟମ୍'ର ଏକ ଅନୁକୃତି ହୋଇଥିଲେ ମଧ୍ୟ ପୂର୍ବୋକ୍ତ ରଘୁତ୍ତମ ତୀର୍ଥ ବିରଚିତ 'ମୁକୁନ୍ଦବିଳାସ ମହାକାବ୍ୟମ୍' ଦ୍ୱାରା ପ୍ରଭାବିତ ହୋଇଥିଲା । ତାଙ୍କର ଦ୍ୱିତୀୟ ପୃଷ୍ଠପୋଷକ ରାଜା ବନମାଳୀ (୧୬) ଖଣ୍ଡପଡ଼ା ରାଜ୍ୟର ଅଧିପତି ପୂର୍ବୋକ୍ତ ନାରାୟଣ ମଙ୍ଗରାଜଙ୍କ ନାତି ଥିଲେ ।

**ଲକ୍ଷ୍ମୀଧର ମିଶ୍ର** :—ଲକ୍ଷ୍ମୀଧର ମିଶ୍ର ଏକାମ୍ର କ୍ଷେତ୍ର ବା ଭୁବନେଶ୍ୱର ନିବାସୀ କୌତ୍ସସଗୋତ୍ର ରାମକୃଷ୍ଣ ମିଶ୍ରଙ୍କ ପୁତ୍ର ଓ ପ୍ରଦ୍ୟୁମ୍ନ ମିଶ୍ରଙ୍କ ପୌତ୍ର ଥିଲେ । ତାଙ୍କ ପିତୃବ୍ୟଙ୍କ ନାମ ମଧୁସୂଦନ ମିଶ୍ର । ପ୍ରଦ୍ୟୁମ୍ନ ମିଶ୍ର ଗଜପତି ନରସିଂହ ଦେବ (୧୬୨୨-୧୬୪୭)ଙ୍କ ଦ୍ୱାରା ସମ୍ମାନିତ ହୋଇଥିଲେ । ଲକ୍ଷ୍ମୀଧର ଗଜପତି ମୁକୁନ୍ଦ ଦେବଙ୍କ ରାଜତ୍ୱ କାଳରେ 'ଶୈବକଳ୍ପଦ୍ରୁମ' ନାମକ ଧର୍ମଶାସ୍ତ୍ର ପ୍ରଣୟନ କରି

(୧୬) ଏହାଙ୍କ ସମ୍ବନ୍ଧରେ ବିଶଦ ବିବରଣ ମୋର ଇଂରେଜୀ ଭାଷାରେ ଲିଖିତ ପ୍ରବନ୍ଧରେ ଦିଆଯାଇଛି ।
O. H. R J, Vol. V, Nos. 1 & 2, 1956

ଅତ୍ୟନ୍ତ ଖ୍ୟାତି ଲାଭ କରିଥିଲେ । ଶୈବ ଧର୍ମ ସମ୍ବନ୍ଧରେ ଏହା ଏକ ପ୍ରାମାଣ୍ୟ ଗ୍ରନ୍ଥରୂପେ ବିବେଚିତ ହୁଏ ।

**ଗୋପୀନାଥ ଦଣ୍ଡନାୟକ**—ସେ ଦାମୋଦର ଦଣ୍ଡନାୟକଙ୍କ ପୁତ୍ର ବହୁଗୁଣମଣ୍ଡିତ ରାଜାଙ୍କ ଦ୍ୱାରା ସମ୍ମାନିତ, ପରମବିଷ୍ଣୁଭକ୍ତ ବିଖ୍ୟାତ ଭରତ ଦଣ୍ଡନାୟକଙ୍କ ଆଦେଶରେ 'ଶୁଦ୍ଧାହ୍ନିକପଦ୍ଧତି' ରଚନା କରିଥିଲେ ।(୧୭) ଉପରୋକ୍ତ ଭରତ ଦଣ୍ଡନାୟକଙ୍କୁ ସୁବାଦାର ଖାନ୍ ଇ-ଦୁରାନ୍‌ଙ୍କ ସହ ଘୋଷଣ ଯୁଦ୍ଧ ଚଳାଇଥିବା ମୁକୁନ୍ଦ ଦେବଙ୍କ ମନ୍ତ୍ରୀ ଓ ସେନାପତି ଭରତ ଦଣ୍ଡନାୟକଙ୍କ ସହିତ ଚିହ୍ନିତ କରଯାଇପାରେ ।

**ସ୍ୱରଭେଦ** :—କୌଣସି ଅଜ୍ଞାତନାମା ଉତ୍କଳୀୟ ପଣ୍ଡିତ 'ସ୍ୱରଭେଦ' ନାମକ ଜ୍ୟୋତିଷ ଗ୍ରନ୍ଥ ରଚନା କରିଥିବାର ଜଣାଯାଏ । ଏହି ଗ୍ରନ୍ଥ ଆରମ୍ଭରେ ପ୍ରଥମେ ଭୋଇ ବଂଶୀୟ ପ୍ରତିଷ୍ଠାତା 'ରାମଚନ୍ଦ୍ର ଦେବ', ତତ୍ପୁତ୍ର 'ପୁରୁଷୋତ୍ତମ ଦେବ', ତାଙ୍କ ବଂଶଧର ବଳଭଦ୍ର ଦେବ ଓ ତତ୍ପୁତ୍ର ମୁକୁନ୍ଦ ଦେବଙ୍କ ପ୍ରଶସ୍ତି-ଜ୍ଞାପକ ତିନୋଟି ଶ୍ଳୋକ ରହିଛି । ଗ୍ରନ୍ଥକର୍ତ୍ତା ମୁକୁନ୍ଦ ଦେବଙ୍କ ପ୍ରଶସ୍ତିଜ୍ଞାପକ ଏହି ଗ୍ରନ୍ଥ ହୋରାବିଦ୍‌ମାନଙ୍କ ପ୍ରୀତିବିଧାନ ନିମିତ୍ତ ରଚନା କରିଥିଲେ । (୧୮) କିନ୍ତୁ ଗ୍ରନ୍ଥକର୍ତ୍ତା ତାଙ୍କର ନାମ କୌଣସି ଠାରେ ଉଲ୍ଲେଖ କରିନାହାନ୍ତି । ତାଙ୍କ ରାଜତ୍ୱରେ ଆବିର୍ଭୂତ ଅନ୍ୟାନ୍ୟ କବି ପଣ୍ଡିତମାନଙ୍କର ବିଶ୍ୱାସଯୋଗ୍ୟ ବିବରଣ ଏ ପର୍ଯ୍ୟନ୍ତ ମିଳିନାହିଁ ।

## ଓଡ଼ିଆ ସାହିତ୍ୟ ଚର୍ଚ୍ଚା

ତାଙ୍କ ରାଜତ୍ୱ କାଳରେ ଆବିର୍ଭୂତ ନିମ୍ନଲିଖିତ ଓଡ଼ିଆ କବିମାନଙ୍କ ନାମ ସମ୍ବନ୍ଧରେ ନିର୍ଦ୍ଧାର୍ଯ୍ୟ ଭାବରେ ଜଣାଯାଏ ।

---

(୧୭) "ଶ୍ରୀ ଦାମୋଦର ଦଣ୍ଡନାୟକ ସୁତୋଽନେକୈ ର୍ଗୁଣୈର୍ଯୁତୋ
ବିଖ୍ୟାତୋ ଭରତୋ ନୃପେଣ ସଦା ସମ୍ଭାବିତୋ ଭୂଭୁଜା
ତସ୍ୟ ଶ୍ରୀପତି-ପାଦ ଚିନ୍ତନରତସ୍ୟାଜ୍ଞା ବିଶେଷାବୃତୋ
ଗୋପୀନାଥ କୃତୀ ତନୋତି ବିଶଦାଂ ଶୁଦ୍ଧାହ୍ନିକାଂ ପଦ୍ଧତିମ୍ ।"

ମୋ ଦ୍ୱାରା ସଂପାଦିତ —

Des. Cat. of Sans. Manuscripts of Orissa, Vol. I, p. 104.

(୧୮) "ତସ୍ୟ (ମୁକୁନ୍ଦସ୍ୟ) ଶ୍ରୀବିଜୟ ପ୍ରଶସ୍ତି ରଚନାଂ କର୍ତ୍ତୁଂ ମୁରାରେଃ ପଦଂ ନତ୍ୱା କୋଽପି କୁତୂହଳାତ୍ କୃତିବରୋ ହୋରାବିଦାଂ ପ୍ରୀତୟେ ।"

**ନୃସିଂହ ଭ୍ରମରବର** :—ନୃସିଂହ ଭ୍ରମରବର 'ଦଶବୋଲି' ନାମକ ଶ୍ରୀକୃଷ୍ଣ ଲୀଳାବର୍ଣ୍ଣନାତ୍ମକ ଏକ କ୍ଷୁଦ୍ର ଗ୍ରନ୍ଥର ପ୍ରଣେତା । ସେ ଢେଙ୍କାନାଳ ରାଜ୍ୟର ରାଜା ଥିବା ଗ୍ରନ୍ଥ ପାଠରୁ ଜଣାଯାଏ ।

"ସିଂହ ବିଦ୍ୟାଧର କୁଳସିନ୍ଧୁଚନ୍ଦ୍ର, **ଢେଙ୍କାନାଳ ନଗର ଅବନୀଇନ୍ଦ୍ର**
**ନରସିଂହ** ଭ୍ରମରବରର **ମନ; କୃଷ୍ଣ ବାହାରେ ଆନ୍ତ ନ ଜାଣେ ଆନ ।**
କୃଷ୍ଣଚରଣେ ଯେଣୁ **ରହିଲ** ଚିତ୍ତ, ସେହି ବିଷୟେ ଅରମ୍ଭ କଲି ଗୀତ ।
**ହରିଜନମ** ଠାରୁ ଏ ଦଶ ବୋଲି, **କଂସ ନାଶ**ଯାଏ ଇଷ୍ଟ କରିଥିଲି ।
**ଆହେ** ସାଧୁଜନେ ଦୋଷ କ୍ଷମାକର, **ଦେଶ ଭାଷା ବୋଲି ମନେ ନ ବିଗୃହ ।**
ନନ୍ଦନନ୍ଦନ ଚରଣ ସରସିଜେ, ନୃପ ନୃସିଂହ ଭ୍ରମରବର ଭଜେ ।"

କବି ନିଜର ଗ୍ରନ୍ଥ ରଚନା ସମୟ ନ ଦେଇଥିଲେ ମଧ୍ୟ ତାଙ୍କ ଗୁରୁ, ପୁରୀ ବାଙ୍କୀ ମୁହାଣ ନିବାସୀ ଶ୍ରୀ ଗୋପଦଣ୍ଡିଆ ଜଗବନ୍ଧୁ ଦାସ ଶ୍ରୀ ମୁକୁନ୍ଦ ଦେବ ରାଜାଙ୍କ ଆଗରେ ନିଜର କରାମତି ଦେଖାଇଥିବା ସ୍ୱଗ୍ରନ୍ଥର ଶେଷ (ଦଶମ) ବୋଲିରେ ଉଲ୍ଲେଖ କରିଛନ୍ତି । ଯଥା :—

"ଶିରୀ ଗୋପଦଣ୍ଡିଆ **ଜଗବନ୍ଧୁ ଦାସ,** ମୋତେ କୃପା କରି କଲେ ତାଙ୍କ ଶିଷ୍ୟ
ବଳଭଦ୍ର ଗୋସାଇଁ କରୁଣାରୁ, ବାଙ୍କି ମୁହାଣେ **ରହିଲ** ପୁରୁଣାରୁ

× × ×

**ମହାପ୍ରତାପୀ ମୁକୁନ୍ଦ ଦେବ ରାଜ,**
**ବୋଲେ ଦାସ କରାମତି ଦେଖ ଆଜ ।**

× × ×

ରାଜା ବୋଇଲେ ନ ଦେଲେ କରାମତି, ବାଙ୍କି ମୁହାଣେ କରିବ ନାହିଁ ସ୍ଥିତି ।"

ଏହାପରେ ସାଧୁ ଜଗବନ୍ଧୁ ଦାସେ ରାଜାଙ୍କ ଆଗରେ ନିଜର କରାମତି ଦେଖାଇବାରୁ ରାଜା ମୁକୁନ୍ଦ ଦେବ ତାଙ୍କର ମାହାତ୍ମ୍ୟରେ ଆଶ୍ଚର୍ଯ୍ୟାନ୍ୱିତ ହୋଇ ସାଷ୍ଟାଙ୍ଗ ପ୍ରଣିପାତ କରିଥିଲେ । ଯଥା—

"ରାଜା ଦେଖି ଦଣ୍ଡବତ ହୋଇପଡ଼ି, ଉଭା ହୋଇଲେ ଶିରରେ କରଯୋଡ଼ି" (୧୯)

ବର୍ଣ୍ଣିତ ମୁକୁନ୍ଦ ଦେବଙ୍କୁ ନିଃସନ୍ଦେହରେ ଖୋର୍ଦ୍ଧା ରାଜା ପ୍ରଥମ ମୁକୁନ୍ଦ ଦେବ ସହିତ ଚିହ୍ନିତ କରାଯାଇପାରେ । ନୃସିଂହ ଭ୍ରମରବର 'ଦଶବୋଲି' ବ୍ୟତୀତ ଅନ୍ୟ କୌଣସି ରଚନା ଲେଖିଥିବାର ଏ ପର୍ଯ୍ୟନ୍ତ ଜଣାଯାଇନାହିଁ ।

(୧୯) ସ୍ୱର୍ଗତଃ ଗୋବିନ୍ଦ ରଥଙ୍କ ଦ୍ୱାରା ୧୮୯୩ରେ ପ୍ରକାଶିତ ।

**ଭଜରୀ ଦାସ**—ସେ ପ୍ରସିଦ୍ଧ 'ଗୀତଗୋବିନ୍ଦ' ମହାକାବ୍ୟକୁ ସରଳ ନବାକ୍ଷରୀ ବୃତ୍ତରେ ଅନୁବାଦ କରିଥିଲେ । ଏହା ଏପର୍ଯ୍ୟନ୍ତ ଅପ୍ରକାଶିତ ଏହାର ନାମ 'ଅର୍ଥଗୋବିନ୍ଦ' । ଯଥା —

"ଶ୍ରୀ ଦ୍ଵିଜବଂଶ ଗାଥା ଗୀତମତେ, ବାଆସ୍ତରୀ ଶ୍ଳୋକ ଅଛି ତେ ।
ଲେଖନ କରିବ ଗୋସାଇଁ, ଅର୍ଥଗୋବିନ୍ଦ ନାମେ ମୂର୍ତ୍ତି ।"

ଗ୍ରନ୍ଥ ଶେଷରେ ସେ ଗ୍ରନ୍ଥ ରଚନାର ସମୟ ନିମ୍ନପ୍ରକାରେ ଲେଖିଛନ୍ତି ।

"ଭଜରୀ ଦାସ ମୂଢ଼ ଭାଇ, ଅଶୋକଖୋଲ ଗଡ଼େ ଥାଇ
ମୁକୁନ୍ଦ ଦେବ ରାଜାଙ୍କର, ଏକୋଇଶ ଅଙ୍କରେ ଆର ।
କୁମ୍ଭ ପନ୍ଦର ଦିନ ଅନ୍ତେ, କରିବି ଲେଖନ ଏ ପ୍ରସ୍ତେ ।
ଗାଇବା ଭାଗବତ ଦାସ, ବୋଲେ ଭଜରୀ ମୂଢ଼ ଦାସ ।" (୨୦)

ତେଲେଙ୍ଗା ମୁକୁନ୍ଦଦେବ ୨୧ ଅଙ୍କ ପର୍ଯ୍ୟନ୍ତ ରାଜତ୍ଵ କରି ନଥିବାରୁ କବିଙ୍କୁ ଭୋଇବଂଶୀୟ ପ୍ରଥମ ମୁକୁନ୍ଦ ଦେବଙ୍କ ସମକାଳୀନ ରୂପେ ଗ୍ରହଣ କରାଯାଇ ପାରେ । ଏଥିରେ ବ୍ୟବହୃତ କେହୁଣି, ଏହେଣ୍ଡେ, ମେଳକ୍ଷ (ମେଳଛ), ଜସ, ତଳହଳ, ଦ୍ରୁହସିତ, କାଏଣ, ଛନ୍ତ (ଛନ୍ତି), ଆଚଙ୍ଗେଣ, ଘୁଞ୍ଜଇ (ଘୁଞ୍ଚଇ), ପ୍ରଭୃତି ପ୍ରାଚୀନ ଶବ୍ଦର ବ୍ୟବହାର ଦ୍ଵାରା ଉକ୍ତ ସମୟ ନିର୍ଣ୍ଣୟ ସମର୍ଥିତ ହୁଏ । ତାଙ୍କ ୨୧ ଅଙ୍କ ୧୬୭୨—୭୩ରେ ପଡ଼ୁଥିବାରୁ ଉକ୍ତ ବର୍ଷ ଗ୍ରନ୍ଥ ରଚିତ ହୋଇଥିଲା । ଅଶୋକଖୋଲ ଗଡ଼ ଢେଙ୍କାନାଳ ଜିଲ୍ଲାରେ ଅବସ୍ଥିତ ଥିବାର ଜଣାଯାଏ । କବିଙ୍କ ନାମରୁ ସେ ଭୂପତି ପଣ୍ଡିତଙ୍କ ପରି ଜଣେ ପଶ୍ଚିମ ଦେଶାଗତ ସନ୍ନ୍ୟାସୀ ହୋଇଥିବାର ମନେହୁଏ ।

**ଜନାର୍ଦ୍ଦନ ଦାସ ବା ଦନାଇ ଦାସ**—ଜନାର୍ଦ୍ଦନ ଦାସ ବା ଦନାଇ ଦାସଙ୍କ 'ଗୋପୀଭାଷା'ର ଲଳିତ କୋମଳ କାନ୍ତ ପଦାବଳୀ ଇଂରେଜୀ ଶିକ୍ଷାର ପ୍ରସାର ପୂର୍ବରୁ ପାଠଶାଳୀର ଛାତ୍ରମାନଙ୍କର କଣ୍ଠଭୂଷଣ ଥିଲା । କିନ୍ତୁ ଏହି ସର୍ବଜନାଦୃତ କବିଙ୍କ ସମୟ ସ୍ଥିର ରୂପେ ନିର୍ଣ୍ଣୀତ ହୋଇନାହିଁ । କବି ମଧ୍ୟ ସ୍ଵଗ୍ରନ୍ଥର କୌଣସି ସ୍ଥାନରେ ନିଜର ବଂଶପରିଚୟ, ବାସସ୍ଥାନ ବା ରଚନାକାଳ ସମ୍ବନ୍ଧରେ ଉଲ୍ଲେଖ କରିନାହାନ୍ତି । ତେଣୁ ପରୋକ୍ଷ ପ୍ରମାଣ ବଳରେ ତାଙ୍କର ସମୟ ନିର୍ଦ୍ଧାରିତ କରଯାଇପାରେ ।

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ସ୍ଵରଚିତ 'ନାମଚିନ୍ତାମଣି' ଗ୍ରନ୍ଥରେ ଉକ୍ତ ଦନାଇ ଦାସଙ୍କ ସମ୍ବନ୍ଧରେ ଲେଖିଛନ୍ତି ।

---

(୨୦) ମିଭଜପୁରରେ ସଂରକ୍ଷିତ ପୋଥିରୁ ଉଦ୍ଧୃତ

'ହରିଦାସଙ୍କୁ ଯେ ବାଦସା ଚଢ଼ିଲା, ହରି ନ ବୋଲ କଲମା ଭଣରେ' ଗ୍ରନ୍ଥରେ ସୂଚିତ ବାଦସାଙ୍କୁ ନିଃସନ୍ଦେହରେ ହିନ୍ଦୁଧର୍ମର ଧ୍ୱଂସସାଧନବ୍ରତୀ ବାଦସାହ ଔରଙ୍ଗଜେବଙ୍କ ସହିତ ଚିହ୍ନିତ କରାଯାଇ ପାରେ । ତାଙ୍କ ରାଜତ୍ୱ କାଳରେ ବାରମ୍ବାର ଜଗନ୍ନାଥ ମନ୍ଦିର ଆକ୍ରମଣ ବିଷୟ ଯଥାସ୍ଥାନରେ ଆଲୋଚିତ ହୋଇଅଛି । ସୁବାଦାର ଖାନ-ଇ-ଦୁରାନଙ୍କ ସମୟରୁ (୧୬୬୦ ୧୬୬୭) ସୁବାଦାର ଏକରାମ ଖାଁ ଶାସନକାଳ ଶେଷ (୧୬୯୮) ପର୍ଯ୍ୟନ୍ତ ପ୍ରାୟ ୩୭ ବର୍ଷ ମଧ୍ୟରେ ଓଡ଼ିଶାର ପ୍ରସିଦ୍ଧ ହିନ୍ଦୁପୀଠ ସମୂହର ଧ୍ୱଂସସାଧନ ଦ୍ୱାରା ହିନ୍ଦୁଧର୍ମର ବିଲୋପ ପାଇଁ ବାରମ୍ବାର ଉଦ୍ୟମ କରାଯାଇ ଥିଲା । ତେଣୁ ଉକ୍ତ କବି ହରିଦାସଙ୍କ ପ୍ରତି ମୋଗଲ ସୁବାଦାରଙ୍କ ଅତ୍ୟାଚାର ଏହି ସମୟ ମଧ୍ୟରେ ଘଟିଥିବ । ଉକ୍ତ ହରିଦାସ କୃତ 'ମଯୂରଚନ୍ଦ୍ରିକା' ପୁସ୍ତକର 'ପଞ୍ଚମ ଚନ୍ଦ୍ରିକା'କୁ ଜନାର୍ଦ୍ଦନ ଦାସଙ୍କ 'ଗୋପୀଭାଷା' ବୃତ୍ତରେ ଗାଇବା ପାଇଁ ନିର୍ଦ୍ଦେଶ ଥିବାରୁ 'ଗୋପୀଭାଷା' ସପ୍ତଦଶ ଶତାବ୍ଦୀର ମଧ୍ୟ ଭାଗରେ ରଚିତ ହୋଇଥିବା ଅନୁମାନ କରାଯାଇ ପାରେ । ବେଗୁନିଆ ଥାନା ଅନ୍ତର୍ଗତ ସାନପଡ଼ର ଗ୍ରାମ ତାଙ୍କର ଜନ୍ମଭୂମି ଥିବା ଜନଶ୍ରୁତିରୁ ଜଣାଯାଏ ।

ଦେବାନନ୍ଦ ଦାସ ବା ନନ୍ଦ ଦାସ ନାମକ ଜନୈକ କବି ଦ୍ୱିତୀୟ ମୁକୁନ୍ଦ ଦେବଙ୍କ ଚତୁର୍ଦ୍ଦଶ ଅଙ୍କରେ ବା ୧୬୭୮ ଖ୍ରୀଷ୍ଟାବ୍ଦରେ 'ବୈଦ୍ୟଚନ୍ଦ୍ରଗୀତା' ରଚନା କରିଥିଲେ । ତାଙ୍କ କୃତ ଅନ୍ୟ ଗ୍ରନ୍ଥର ନାମ 'ଅକାକାର ସଂହିତା' । ସେଥିରେ ସେ ମୁକୁନ୍ଦଦେବଙ୍କ ୨ ଅଙ୍କ ବା ୧୬୫୭ ରେ ଜନ୍ମଗ୍ରହଣ କରିଥିବା ଦ୍ୱାରକାଦାସ ଏବଂ ଜନାର୍ଦ୍ଦନ ଦାସଙ୍କ ବିଷୟ ଉଲ୍ଲେଖ କରିଛନ୍ତି । ଦ୍ୱାରକାଦାସ ତାଙ୍କର ଅଧିକାଂଶ ରଚନା ଗଜପତି ମୁକୁନ୍ଦ ଓ ଦିବ୍ୟସିଂହ ଦେବଙ୍କ ରାଜତ୍ୱକାଳରେ ଲେଖି ଖ୍ୟାତିଲାଭ କରିଥିଲେ । ତେଣୁ 'ଅକାକାର ସଂହିତା' ଦିବ୍ୟସିଂହଦେବଙ୍କ ରାଜତ୍ୱର ପ୍ରଥମ ଭାଗରେ ରଚିତ ହୋଇ ଥିବାର ସ୍ଥିର କରାଯାଇପାରେ । ସେତେବେଳେକୁ ଜନାର୍ଦ୍ଦନ ଦାସଙ୍କ ଯଶଃ ଚତୁର୍ଦ୍ଦିଗରେ ବିସ୍ତୃତ ହୋଇଥିଲା । ପ୍ରସିଦ୍ଧ ପଞ୍ଚସଖା ମଧ୍ୟରୁ ଅନନ୍ତ ଦାସ ଖୁର୍ଦ୍ଧାରେ ଜନାର୍ଦ୍ଦନ ରୂପେ ଜନ୍ମଗ୍ରହଣ କରିଥିବା ଦେବାନନ୍ଦ ସ୍ୱୀୟ 'ଅକାକାରସଂହିତା'ରେ ପ୍ରକାଶ କରିଛନ୍ତି । ଦେବାନନ୍ଦଙ୍କ ଉକ୍ତି ବିଶ୍ୱାସଯୋଗ୍ୟ ଏବଂ ଏହା ଉପରେ ନିର୍ଭର କରି ଜନାର୍ଦ୍ଦନଙ୍କୁ ଗଜପତି ମୁକୁନ୍ଦଦେବଙ୍କ ସମକାଳୀନ ରୂପେ ଗ୍ରହଣ କରାଯାଇପାରେ ।

କବିଙ୍କ ରଚନାରେ ପ୍ରଭୃ, ପ୍ରଦଳୀ କପୂରବାର, କାଚଶିଖା, କେୟୂର, ତୃଣୀ (ତୋରଣ), ଧଇର୍ଯ୍ୟ, ଅପଷଟ, ତ୍ରିଖଣ୍ଡନ୍ତ, ପଦ୍ମବାଣ, ଉପେୟଣୀ, ଯଶୋଦାନନ୍ଦ, ବୃନ୍ଦାବନେଣ, ପଞ୍ଚବେଣ, ପାଶେଣ, ଗ୍ରୁମୁରେଣ, ଅମୃତ, ସବୁନ୍ତ, ଯୋଷଣ, କେଇଣି, ଯମୁନାଲଗେ (ଯମୁନାକୁ), ଦାଣ୍ଡନେଲ (ଦାଣ୍ଡକୁ), ବାପେ

ଆଏ, ହୋଉ, ଯାଉନ୍ତୁ, ରୋକେ ପ୍ରଭୃତି କେତେକ ପ୍ରାଚୀନ ପ୍ରୟୋଗ ପରିଦୃଷ୍ଟ ହୁଏ ।

ଦେବାନନ୍ଦଙ୍କ ମତରେ କବି ଖୁରୁଧାବାସୀ ହୋଇଥିବାରୁ ଯବନ ବା ମୁସଲମାନ ଶାସନ ସହିତ ତାଙ୍କର ଘନିଷ୍ଠ ପରିଚୟ ଜାତ ହୋଇଥିଲା । ତେଣୁ କବିଙ୍କ ଭାଷାରେ ନାଏକ, ତରକ, ଇଜର, ଆଡ଼ା, ସିପାଇ ଖୋଗମଜର, ହୁକୁମ, ନଟବନ୍ଦୀ ପ୍ରଭୃତି ଅଳ୍ପ କେତେକ ଯାବନିକ ଶବ୍ଦ ଅଜ୍ଞାତସାରରେ ସ୍ଥାନ ପାଇ ଯାଇଛି । ପଠାଇବା, ବରଗିବା, ପେଷିବା ପରିବର୍ତ୍ତେ କବି ବାରମ୍ବାର ଯାବନିକ ଶବ୍ଦ ‘ଭେଜିବା’ ପ୍ରୟୋଗ କରିଛନ୍ତି ।

ଶ୍ରୀକୃଷ୍ଣ ବିରହବିଧୁର ଗୋପୀମାନଙ୍କୁ ବ୍ରହ୍ମଜ୍ଞାନ ଶିକ୍ଷା ଦେବା ସମୟରେ ବିଭିନ୍ନ ନାୟିକାଙ୍କ ଘରେ ସ୍ୱର୍ଗର ଚିତ୍ରକର ମାନଙ୍କ ସାହାଯ୍ୟରେ ନିମ୍ନଲିଖିତ ଚିତ୍ରମାନ ଅଙ୍କନ କରାଇଥିଲେ । ଯଥା—ଶ୍ରୀକୃଷ୍ଣ, ଚନ୍ଦ୍ରଶେଖର, ମାଧବ, ମଦନ-ମୋହନ, ନାରାୟଣ, ଇନ୍ଦ୍ର, ଗିରିଗୋବର୍ଦ୍ଧନଧାରୀ ଗୋବିନ୍ଦ, ବସ୍ତ୍ରାହରଣ, ମଧୁସୂଦନ, ବାସୁଦେବ, ବାମନ ମୁରଲୀପାଣି ଗୋପୀନାଥ, ଲଳିତା-ବିଶାଖା-ବୃନ୍ଦାବତୀ ପ୍ରଭୃତି ଦୂତୀ ପରିବେଷ୍ଟିତ ଶ୍ରୀରାଧାକୃଷ୍ଣ, ହିରଣ୍ୟବିଦାରୀ ନୃସିଂହ, ରାମ ଲକ୍ଷ୍ମଣ, ସୀତା, ହନୁମାନ; ଦାଶରଥି, ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନ ଓ ସୀତା, ମଣ୍ଡଳ ମଧ୍ୟରେ ରଘୁନାଥ, ରାମନାଥ, ଗୋପୀନାଥ ଓ ବିଶ୍ୱନାଥ, ଅନନ୍ତଶୟନ, ଲକ୍ଷ୍ମୀ, ସରସ୍ୱତୀ, ଚତୁର୍ଦ୍ଧାମୂର୍ତ୍ତି, ମତ୍ସ୍ୟ, କୂର୍ମ, ବରାହ ପ୍ରଭୃତି ଅବତାର, ପଥର କାନ୍ଥ ଓ ଚୂନ ବାଡ଼ରେ ଦାରୁବ୍ରହ୍ମ, ସ୍ତୁରପାଶରେ ଦେବଗଣ, ମାଳମାଧବ, ସୁଦର୍ଶନ ଚକ୍ର ସଦାଶିବ ଓ ବ୍ରହ୍ମା । ପଟଚିତ୍ର ଓ କାନ୍ଥଚିତ୍ରର କବି ଯେପରି ମନୋରମ ଚିତ୍ରଣ ପ୍ରଦାନ କରିଛନ୍ତି ସେଥିରୁ ସେ କୌଣସି ରାଜ ପରିବାର ସହିତ ଘନିଷ୍ଠ ଭାବରେ ସଂପୃକ୍ତ ଥିବାର ମନେହୁଏ । କବି ଖୁରୁଧାବାସୀ ହୋଇଥିବାରୁ ସେ ଖୁରୁଧା ଦରବାର ଅଧୀନରେ କୌଣସି କର୍ମଚାରୀ ଥିବାର ଧାରଣା ସ୍ୱତଃ ମନରେ ଜାତ ହୁଏ । କବିଙ୍କ ବହୁଶାସ୍ତ୍ରଦର୍ଶିତା ସମ୍ବନ୍ଧରେ ପ୍ରାଚୀ ସମିତି ଦ୍ୱାରା ପ୍ରକାଶିତ ‘ଗୋପୀ ଭାଷାରେ ଆଲୋଚନା କରାଯାଇଛି । ଶ୍ରୀକୃଷ୍ଣଙ୍କ ସହିତ ଗୋପୀମାନଙ୍କ ରତିକ୍ରୀଡ଼ାର ନଗ୍ନ ଚିତ୍ର କବି ବାରମ୍ବାର ପ୍ରଦାନ କରି ଥିବାରୁ ଆଧୁନିକ ସମାଲୋଚକ ଦୃଷ୍ଟିରୁ ଗ୍ରନ୍ଥର ଗୌରବ ହାନି ଘଟିଅଛି । ଅନ୍ୟଥା ଭାଷାର କୋମଳତା ଓ ଲାଳିତ୍ୟ ପ୍ରକାଶ ଭଙ୍ଗୀର ଚମତ୍କାରିତା, ବର୍ଣ୍ଣନାର ବୈଶିଷ୍ଟ୍ୟ ବିଷୟରେ ଏହା କବିଙ୍କ ଏକ ଅମର କୃତି ରୂପେ ବିବେଚିତ ହୁଏ ।

**ଭକ୍ତକବି ଦ୍ୱାରକା ଦାସ** :— କବି ଦ୍ୱାରକା ଦାସ ରଚିତ ‘ପରିଚେପୀତା’ ସ୍ୱର୍ଗତଃ ଅଧ୍ୟାପକ ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ମୁଖବନ୍ଧ ସହ ୧୯୬୯ରେ ପ୍ରାଚୀ ସମିତି ଦ୍ୱାରା ପ୍ରକାଶିତ ହୋଇଥିଲା । ସେଥିରୁ ଜଣାଯାଏ ଯେ କବି

କାଠଯୋଡ଼ୀ କୂଳବର୍ତ୍ତୀ ଧୂଳସର ଗ୍ରାମରେ କରଣ କୁଳରେ ଷୋଡ଼ଶବର୍ଷୀୟ ପ୍ରଥମ ମୁକୁନ୍ଦ ଦେବଙ୍କ ୨ ଅଙ୍କ ଅର୍ଥାତ୍ ୧୬୫୬-୧୬୫୭ ଖ୍ରୀଷ୍ଟାବ୍ଦରେ ଜନ୍ମ ଗ୍ରହଣ କରିଥିଲେ । ସେ ମୁକୁନ୍ଦ ଦେବଙ୍କ ୨୭ ଅଙ୍କରେ ଅର୍ଥାତ୍ ୧୬୭୭-୧୬୭୮ ଖ୍ରୀଷ୍ଟାବ୍ଦରେ 'ଛତିଶ ଗୁପ୍ତଗୀତା' ରଚନା ସମାପ୍ତ କରିଥିଲେ । ଏହି ଗୀତାପାଠରୁ ଜଣାଯାଏ ଯେ ପଞ୍ଚସଖାଙ୍କ ମଧ୍ୟରେ ଜ୍ୟେଷ୍ଠ ମତ୍ତ ବଳରାମ ଦାସ ଛତିଶ ଗୁପ୍ତଗୀତା ଏକ ଅଧ୍ୟାୟ ଶେଷ କରି ମହାଯାଇଥିଲେ । ତାର ଅବଶିଷ୍ଟ ୩୫ ଅଧ୍ୟାୟ ଦ୍ୱାରକା ଦାସ ଶେଷ କରି ବଳରାମ ଦାସଙ୍କ ନାମରେ ଭଣିତା କରିଥିଲେ । ଦ୍ୱାରକା ବଳରାମ ଦାସଙ୍କ ଅବତାର ରୂପେ ଏହି କାର୍ଯ୍ୟ ସଂପନ୍ନ କରିଥିଲେ । ଯଥା—

"ସେ ବଳରାମ ଦାସ ଗୋପ୍ୟ କଥା; ଅଧ୍ୟାୟେ କହି ଯିବେ ମରି ।
ସେ ପୁଣି ମୁକୁନ୍ଦ ଦେବ ଦ୍ୱିଅଙ୍କେ; ବଳରାମ ଦାସ ଜନମ ଲୋକେ ।
ରାମ ଦାସ ଯେ ହେବ ଶୂଦ୍ର ଜାତି; କରିଷ୍ଣବ ପଣେ ନିର୍ଗୁଣ ଅତି ।
ତହିଁ ବଳରାମ ଦାସ ଜନମ; ତାହାର ହୋଇବ ଦ୍ୱାରକା ନାମ ।
ତା ମୁଖେ କୁହାଇବ ଗୀତାରସ; ଭଣିତା ହେବ ବଳରାମ ଦାସ ।
ପଞ୍ଚତିଂଶ ଅଧ୍ୟା କହିବେ ସେହି; ତୋ ଆଗେ ଅର୍ଜୁନ କହିଲି ମୁହିଁ ।"

'ପରଚେଗୀତା'ର ଉପସଂହାରରୁ ଜଣାଯାଏ ଯେ ସେ ଏହା ରଚନା କରିବା ପୂର୍ବରୁ 'ବ୍ରହ୍ମମୁଦ୍‌ଗର', 'ତତ୍ତ୍ୱ ଚୂଡ଼ାମଣି', ରାମାୟଣ, ଭାଗବତ, ଗୁପତଗୀତା 'ଭକ୍ତିରସାମୃତ' 'ସଂସାର ବୋଧ ଚଉତିଶା' ଗୀତା, ତତ୍ତ୍ୱଭାଗବତ, ରସକଳା, ପରଚେ ଚୂଡ଼ାମଣି, ଛପୋଇ, ଜଣାଣ, ନଅପୋଇ, ଗୁଣ୍ଡିଚା କେଳି, ତେଲି ପୋଇ, ଓ ଅନ୍ୟାନ୍ୟ ଚଉପଦୀ ଓ ଚଉତିଶା ମାନ ରଚନା କରିଥିଲେ । ତତ୍ପରେ ସେ ପ୍ରେମରସ ଚନ୍ଦ୍ରକା, ଗୋବିନ୍ଦ ଗୀତା, ଶିବ ପୁରାଣ ପ୍ରଭୃତି ପ୍ରଣୟନ କରିଥିଲେ । ଏଥିରେ ଏକ ସ୍ଥାନରେ ତେଲଙ୍ଗା ମୁକୁନ୍ଦ ଦେବଙ୍କ ଠାରୁ (ଓଡ଼ିଶା ରାଜାମାନଙ୍କ ବର୍ଣ୍ଣନା ପ୍ରସଙ୍ଗରେ) ବୀରକେଶରୀ ଦେବଙ୍କ ପର୍ଯ୍ୟନ୍ତ ରାଜାମାନଙ୍କ ନାମୋଲ୍ଲେଖ ରହିଛି । ଯଥା —

"ତଦନ୍ତରେ ବୀରକେଶରୀ ଦେବ ରାଯ୍ୟେ;
କତିଶ ସହସ୍ର କରନ୍ତେ ସେ ଗୋ ଏତେ ରାଜା ହୁଏ"

ଅତଏବ ସେ ବୀରକେଶରୀ ଦେବଙ୍କ ରାଜତ୍ୱର ପ୍ରଥମ ଭାଗ ପର୍ଯ୍ୟନ୍ତ ବଞ୍ଚିଥିବା ନିଃସନ୍ଦେହରେ ସ୍ଥିର କରାଯାଇପାରେ ।

କବି ଦ୍ୱାରକା ଦାସ ଅଶୀ ବର୍ଷରୁ ଅଧିକ କାଳ ଜୀବିତ ରହି ଖୁରୁଧାର ଛଅଜଣ ରାଜା; ଯଥା—ମୁକୁନ୍ଦ, ଦିବ୍ୟସିଂହ, ହରେକୃଷ୍ଣ, ଗୋପୀନାଥ, ରାମଚନ୍ଦ୍ର

(ଦ୍ୱିତୀୟ) ଏବଂ ବୀରକେଶରୀଙ୍କ ରାଜତ୍ୱ ଭୋଗ କରିଥିଲେ । ଶେଷ ଜୀବନ ସେ ସନ୍ନ୍ୟାସୀ ଭାବରେ କଟାଇଥିବା ତାଙ୍କ କୃତ 'ସପ୍ତପୋଇ'ରୁ ଜଣାଯାଏ । ଯଥା— "ଖଣ୍ଡି କୁଡ଼ିଆ କନ୍ଥାଟା ବସ୍ତ୍ର ମୋର' "ଫଳ ମୂଳ ଖାଇ ଦିନ ମୁ କାଟଇ କଷ୍ଟ ମୁଁ ସହିବି କେତେ ।" ସେ ବାଙ୍କୀ ଉପରଢ଼ା ଅଞ୍ଚଳରେ ଭଗୀପୁର ଠାରେ ମଠ କରି ସେଠାରେ ଶେଷ ଜୀବନ କଟାଇଥିଲେ । ଚୈତ୍ର ମାସ ବାରୁଣୀ ଅମାବାସ୍ୟା ଦିନ ଭକ୍ତ କବିଙ୍କ ତିରୋଧାନ ଘଟିଥିବ । ଭକ୍ତ କବି ଦ୍ୱାରକା ଦାସ ତାଙ୍କ ରଚନାବଳୀ ଯୋଗୁଁ ପ୍ରାଚୀନ ଉତ୍କଳ ସାହିତ୍ୟକୁ ସମୃଦ୍ଧ କରିଥିବାରୁ ସେ ଓଡ଼ିଆ ଜାତିର ଚିରସ୍ମରଣୀୟ ।

**ଶ୍ରୀଚୈତନ୍ୟ ଦାସ** :— ଶ୍ରୀଚୈତନ୍ୟ ଦାସ କୃତ 'ବିଷ୍ଣୁଗର୍ଭ ପୁରାଣ' ଓ 'ନିର୍ଗୁଣମାହାତ୍ମ୍ୟ' ପୁସ୍ତକଦ୍ୱୟ ଅଧୁନା ଲୁପ୍ତ ପ୍ରାଚୀ ସମିତି ଦ୍ୱାରା ପ୍ରକାଶିତ ହୋଇଥିଲା । ନିର୍ଗୁଣ ମାହାତ୍ମ୍ୟ ମୁଖବନ୍ଧରେ ସ୍ୱର୍ଗତ ଆର୍ତ୍ତବଲ୍ଲଭ ମହାନ୍ତି ଲେଖିଛନ୍ତି ଯେ କବି ଚୈତନ୍ୟ ଦାସ ଭକ୍ତକବି ଅତିବଡ଼ୀ ଜଗନ୍ନାଥ ଦାସଙ୍କ ପୂର୍ବବର୍ତ୍ତୀ ଏବଂ ତାଙ୍କ ବାସସ୍ଥାନ ବଡ଼ମୂଳ ଗ୍ରାମ କଟକ ଜିଲ୍ଲା ସାଲେପୁର ପ୍ରଗନା ଅନ୍ତର୍ଭୁକ୍ତ । କବି ବର୍ଣ୍ଣିତ କାଉଁରୀ ପାଟଣା ରାଜ୍ୟର ବର୍ତ୍ତମାନ ନାମ କଉଁରପୁର ଏବଂ ଖଡ଼ିଆଳ ନଗ୍ର ହେଉଛି ଚଣ୍ଡିଖୋଲ ଗ୍ରାମ (୨୧) ସ୍ୱର୍ଗତ ପ୍ରାଚ୍ୟ-ବିଦ୍ୟା ମହାର୍ଣ୍ଣବ ନଗେନ୍ଦ୍ର ନାଥ ବସୁ ମଧ୍ୟ ଚୈତନ୍ୟ ଦାସ ଗଜପତି ପ୍ରତାପରୁଦ୍ରଙ୍କ (୧୪୯୭-୧୫୩୪)ଙ୍କ ରାଜତ୍ୱର ଶେଷ ଦିଗରୁ ଖ୍ୟାତି ଲାଭ କରିଥିବାର ଲେଖିଛନ୍ତି (୨୨) । ପଣ୍ଡିତ ଶ୍ରୀ ସୂର୍ଯ୍ୟନାରାୟଣ ଦାସ ମଧ୍ୟ ଚୈତନ୍ୟ ଦାସ ପଞ୍ଚସଖାଙ୍କ ସମସାମୟିକ ବୋଲି ମତପ୍ରକାଶ କରିଛନ୍ତି । (୨୩) କବିଙ୍କ ବାସସ୍ଥାନ ଓ ଆବିର୍ଭାବ କାଳ ସମ୍ବନ୍ଧରେ ମୁଁ ଏକ ଦୀର୍ଘ ପ୍ରବନ୍ଧ ୧୯୪୫ରେ ପ୍ରକାଶ କରିଥିଲି । (୨୪) କବି ରଚିତ 'ନିର୍ଗୁଣ ମାହାତ୍ମ୍ୟ'ର ଏକ ପୋଥିରୁ ତାଙ୍କ ପରିଚୟ ଜ୍ଞାପକ କେତେକ ପଂକ୍ତି ନିମ୍ନରେ ଉଦ୍ଧାର କରାଗଲା ।

"କହଇ ବୁଦ୍ଧେଶ୍ୱର ବଳ; ଧ୍ୟାନ ଦାସ ଗୋସାଇଁ ଚେଲା ।
ଯେ ଦିନ ଉପଦେଶ ଦେଲେ; ମୋ ନାମ ଚଇତନ ହୋଲେ ।
ହରି ଶଙ୍କର ପାଦେ ମନ; ଭାବେ କହିଲେ ଚଇତନ ।

---

(୨୧) ନିର୍ଗୁଣ ମାହାତ୍ମ୍ୟ, ମୁଖବନ୍ଧ ଦ୍ରଷ୍ଟବ୍ୟ ।

(22) Modern Buddhism and its followers in Orissa, pp. 38-39.

(୨୩, ଓଡ଼ିଆ ସାହିତ୍ୟର ପରିଚୟ; ଦ୍ୱିତୀୟ ଭାଗ ପୃ ୧୬

(୨୪) ଦୈନିକ ଆଶା; ରବିବାର ସଂଖ୍ୟା; ତା ୨୭-୫-୪୫

ଯେ ମୋତେ ଦେଲ ଜନ୍ମ କର୍ମ; କହିବ ମାତା ପିତା ନାମ ।
ଦାଦାଙ୍କ ନାମ ଧନେଶ୍ୱର; ପିତାଙ୍କ ନାମ ବୃନ୍ଦେଶ୍ୱର ।
ମାତାଙ୍କ ନାମ ମେଘାବତୀ; ସେ ମୋତେ ଜନ୍ମ କଲେ କ୍ଷିତି ।
ଗୁରୁଙ୍କ ନାମ ଧ୍ୟାନ ଦାସ; ସେ ଦେଲେ ଜ୍ଞାନ ଉପଦେଶ ।
ମୋ ଗୃହେ ଥିଲେ ଷଡ଼ମାସ; ସେ ପୁଣି ସ୍ୱର୍ଗ କଲେ ବାସ ।
ମୋ କର୍ଣ୍ଣେ ଉପଦେଶ ବଚନ; ନାମ ମୋ ଦେଲେ ରଘୁନାଥ ।

× × ×

ଏ ଗୀତ ଉକତ ସର୍ବତେ; ନାମ ବଟମୂଳ ଗ୍ରାମରେ ।
ଲାଗିଥିବା ନାମେ ନରେଶ; ତହିଁରେ ମୋର ଗୃହ ବାସ ।
ଲେଖିଲି ମୋତେ ଶ୍ରଦ୍ଧା ପାଇ, ଜଡ଼ ଜାଗିର ଭୂମି ଦେଇ ।
କହିବ ରାଜ୍ୟର ରଚନା; ନାମ ତା କାଞ୍ଚିଗ୍ରାମ ପାଟଣା ।
ପ୍ରତାପରୁଦ୍ର ରାଜା ଦେଶ; ନଗ୍ର ଖଡ଼ିଆଡ଼ ବଡଶେଷ ।
ନିର୍ଗୁଣ ମାହାତ୍ମ୍ୟ ପୁସ୍ତକ; ସେ ରାଜ୍ୟ ହୋଇଲା ପ୍ରକଟ ।"

କବି ବର୍ଣ୍ଣିତ କାଞ୍ଚିଗ୍ରାମ ପାଟଣା ପୂର୍ବତନ ପାଟଣା ରାଜ୍ୟର (ବର୍ତ୍ତମାନ ବଲାଙ୍ଗୀର ପାଟଣା ଜିଲ୍ଲା) ଅପର ନାମ । ଖଡ଼ିଆଡ଼ ନଗ୍ରର ବର୍ତ୍ତମାନ ନାମ ହେଉଛି ଖଡ଼ିଆଳ । ଏହା ପ୍ରଥମେ ପାଟଣା ରାଜ୍ୟର ଅନ୍ତର୍ଭୁକ୍ତ ଥିଲା ଓ ସପ୍ତଦଶ ଶତାବ୍ଦୀର ଶେଷ ଭାଗରେ ଏହା ପାଟଣା ରାଜାଙ୍କ ଅଧୀନରେ ଏକ କ୍ଷୁଦ୍ର କରଦ ରାଜ୍ୟରେ ପରିଣତ ହୋଇଥିଲା । କବିଙ୍କ ସମସାମୟିକ ପ୍ରତାପରୁଦ୍ର ସୂର୍ଯ୍ୟବଂଶୀୟ ଉତ୍କଳର ଗଜପତି ପ୍ରତାପରୁଦ୍ର ନୁହନ୍ତି । ସେ ପାଟଣା ରାଜ୍ୟର ଚୌହାନବଂଶୀୟ ଅଧିପତି ଥିଲେ ଏବଂ ସପ୍ତଦଶ ଶତାବ୍ଦୀରେ ରାଜତ୍ୱ କରିଥିଲେ । କବିଙ୍କ ଆଶ୍ରୟଦାତା ଥିଲେ, ବଟମୂଳ ଗ୍ରାମର ଗୌନ୍ତିଆ ଏବଂ ସେ ତାଙ୍କୁ ଭୂମି ଓ ବୃତ୍ତି ଦେଇ ରଖିଥିଲେ । ପ୍ରାଚୀ ସଂସ୍କରଣରେ ମୁଦ୍ରିତ 'ପାଞ୍ଚବାଟି ଯେ ଭୂମି ଦେଇ' ସ୍ଥଳରେ ପୋଥିରେ ଅଛି "ଜଡ଼ ଜାଗିର ଭୂମି ଦେଇ" ପୋଥିର ପାଠ ସର୍ବାଦୌ ଗ୍ରାହ୍ୟ । କାରଣ ପାଟଣା ଖଡ଼ିଆଳ ଅଞ୍ଚଳରେ ପୂର୍ବ କାଳରେ ବାଟି, ମାଣ ଗୁଣ୍ଠ ଇତ୍ୟାଦି ଭୂମି ମାପ ପ୍ରଚଳିତ ନ ଥିଲା । କବିଙ୍କ ଇଷ୍ଟଦେବତା ଥିଲେ ପାଟଣା ରାଜ୍ୟ ସୀମାନ୍ତବର୍ତ୍ତୀ ଗନ୍ଧମାର୍ଦ୍ଦନ ପର୍ବତ ଶିଖରସ୍ଥ ପ୍ରସିଦ୍ଧ 'ହରିଶଙ୍କର' । କବିଙ୍କ ଦାଦା ବା ପିତାମହଙ୍କ ନାମ ଥିଲା ଧନେଶ୍ୱର । ପିତାମହ ଅର୍ଥରେ 'ଦାଦା' ଶବ୍ଦ କେବଳ ସମ୍ବଲପୁର ପାଟଣା ଅଞ୍ଚଳରେ ପ୍ରଚଳିତ । ସେ ବୃନ୍ଦେଶ୍ୱରଙ୍କ ଔରସରେ ମେଘାବତୀଙ୍କ ଗର୍ଭରୁ ଜନ୍ମ ଲାଭ କରିଥିଲେ । ସନ୍ନ୍ୟାସୀ ଧ୍ୟାନ ଦାସଙ୍କ ଠାରୁ ଦୀକ୍ଷା ଗ୍ରହଣ କରିବା ପୂର୍ବରୁ ତାଙ୍କର ନାମ ଥିଲା ଦେବଦତ୍ତ । ସେ ଜାତିରେ ଥିଲେ ମାଳାକାର ବା ମାଳୀ ।

କବିଙ୍କ ସମୟ ସମ୍ବନ୍ଧରେ ଅକାଟ୍ୟ ପ୍ରମାଣ ତାଙ୍କ ଶିଷ୍ୟ ଭୂପତି ପଣ୍ଡିତଙ୍କ 'ପ୍ରେମପଞ୍ଚାମୃତ' ଗ୍ରନ୍ଥର ଦଶମ ଅଧ୍ୟାୟରୁ ମିଳେ । ଯଥା—

'ଶ୍ରୀକୃଷ୍ଣ ଚରଣେ ବିଶ୍ୱାସ, ନାମ ଶ୍ରୀ ଚଇତନ ଦାସ ।
ମହାନ୍ତ ଶୁଦ୍ଧ ବୈଷ୍ଣବ, ଗୋପିକା ଭକ୍ତି ତାଙ୍କ ଭାବ ।
ଶ୍ରୀ ପୁରୁଷୋତ୍ତମେ ତାର ଘର; ଶୁଦ୍ଧ ପଶ୍ଚିମ ପାର୍ଶ୍ୱରେ ।
ପୂର୍ବେ ଶ୍ରୀ କପାଳମୋଚନ; ପଶ୍ଚିମେ ଲୋକେଶ୍ୱର ସ୍ଥାନ ।
ଏ ଦୁଇ ଶିବଙ୍କ ମଧ୍ୟେ; ମଠ ଚୈତନ୍ୟ ଦାସଙ୍କର ।
ତାହାଙ୍କ ସଙ୍ଗେ ମୋ ପୀରତି; ତାହାଙ୍କ ଇଷ୍ଟ ଗୋପୀପତି ।
ଅଗ୍ୟାଁ ହୋଇଲା ତାହାଙ୍କର, ଉତ୍କଳ ଭାଷା କାବ୍ୟ କର ।
ଚୌତିଶା ଚନ୍ଦ୍ରହେମ ଗୀତ, ବର୍ଣ୍ଣି ଶ୍ରୀ ଗୋବିନ୍ଦ ଚରିତ ।
ତାହାଙ୍କ ଅଗ୍ୟାଁ ଘେନି ଶିରେ, ମନ ଶ୍ରୀକୃଷ୍ଣ ଚରଣରେ ।

× × ×

ରଚିଁତ ଗୋବିନ୍ଦ ଚରିତ, ଚୌତିଶା ଚନ୍ଦ୍ରହେମ ଗୀତ ।
କରଇଁ ବୁଦ୍ଧି ଅନୁସାରେ, ଶୁଣାଇଁ ତାହାଙ୍କ ଛାମୁରେ ।
ସେ ପୁଣି ହୁଅନ୍ତି ପ୍ରସନ୍ନ, ଆନନ୍ଦେ ଦିଅନ୍ତି ଆଲିଙ୍ଗନ ।
ଏରୂପେ କୃପା ତାହାଙ୍କର, ଏଣି ଦୁର୍ଲ୍ଲଭ ଲାଭ ମୋର ।" (୨୫)

ଉକ୍ତ ତାଂଶରୁ ସ୍ପଷ୍ଟ ଜଣାଯାଏ ଯେ ଭୂପତି ପଣ୍ଡିତ ପ୍ରେମପଞ୍ଚାମୃତ ଲେଖିବା ବହୁବର୍ଷ ପୂର୍ବରୁ କବି ଚୈତନ୍ୟଦାସ ନିଜ ଜୀବନର ଶେଷଭାଗରେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରସ୍ଥ କପାଳମୋଚନ ଓ ଲୋକନାଥଙ୍କ ମଧ୍ୟବର୍ତ୍ତୀ ଏକ ସ୍ଥାନରେ ମଠ ପ୍ରତିଷ୍ଠା କରି ସେଠାରେ ମହନ୍ତ ରୂପେ ବାସ କରୁଥିଲେ । ପ୍ରେମପଞ୍ଚାମୃତ ୨୯-୧-୧୬୯୪ ତାରିଖରେ ସମାପ୍ତ ହୋଇଥିବା ନିଃସନ୍ଦେହରେ ଜଣାଯାଏ । ଭୂପତି ପଣ୍ଡିତଙ୍କ ଉତ୍କଳ ଆଗମନ ସମୟକୁ ମହାନ୍ତ ଚୈତନ୍ୟଦାସ ପୁରୁଷୋତ୍ତମ କ୍ଷେତ୍ରରେ କବିତ୍ୱ ଓ ପାଣ୍ଡିତ୍ୟ ଯୋଗୁଁ ପ୍ରସିଦ୍ଧି ଲାଭ କରିଥିବା 'ପ୍ରେମପଞ୍ଚାମୃତ' ପାଠରୁ ଜଣାଯାଏ । ଭୂପତି ପଣ୍ଡିତଙ୍କୁ ଓଡ଼ିଆ ଭାଷା ଶିକ୍ଷାକରି ଉକ୍ତ ଗ୍ରନ୍ଥ ଲେଖିବାପାଇଁ ଅନ୍ତତଃ ୧୦।୧୫ ବର୍ଷ ଲାଗିଥିବ । ପୁନର୍ବାର ଚୈତନ୍ୟଦାସ ଖଡ଼ିଆଳରୁ ପୁରୀ ଆସି ସେଠାରେ ମଠ ପ୍ରତିଷ୍ଠା କରି ମହାନ୍ତ ହେବାପାଇଁ ସେ ଯୁଗରେ ପ୍ରାୟ ଦଶ ବର୍ଷ ଦିଆଯାଇପାରେ । ଅତଏବ ନିର୍ଗୁଣ ମାହାତ୍ମ୍ୟ ୧୬୯୪ – ୨୪ = ୧୬୭୦ ଖ୍ରୀଷ୍ଟାବ୍ଦରେ ବା ତତ୍ ପୂର୍ବରୁ ଖଡ଼ିଆଳ ଅଞ୍ଚଳରେ ଲିଖିତ ହୋଇଥିଲା । ସପ୍ତଦଶ ଶତାବ୍ଦୀର ମଧ୍ୟ ଭାଗରେ ଓଡ଼ିଶାର ପଶ୍ଚିମ

(୨୫) ପ୍ରେମପଞ୍ଚାମୃତ, ପ୍ରାଚୀ ସଂସ୍କରଣ

ସୀମାନ୍ତବର୍ତ୍ତୀ ଓଡ଼ିଆ ଅଞ୍ଚଳରେ ଜଣେ ମାଳାକାର ବା ମାଳୀ କୁଳ ଜାତ କବିଙ୍କ ମାର୍ଜ୍ଜିତ, ଉନ୍ନତ ଓ ଭକ୍ତିଭାବ ପ୍ରକାଶକ ଭାଷା ଦେଖିଲେ ସେ ଯୁଗରେ ଓଡ଼ିଆ ଭାଷାର ବ୍ୟାପକତ ଓ ସର୍ବାଙ୍ଗୀଣ ବିକାଶ ସମ୍ବନ୍ଧରେ ସ୍ପଷ୍ଟ ଧାରଣା ଜାତ ହୁଏ। ଏଥିରେ ବହୁଳ ପ୍ରଚଳିତ ଭକ୍ତକବି ଜଗନ୍ନାଥ ଦାସଙ୍କ ଭାଗବତର ବିଷମୂଳ ପ୍ରଭାବ ସୁସ୍ପଷ୍ଟ।

**ହଳଧର ଦାସ**—କବି ହଳଧର ଦାସ କୃତ 'ଅଧ୍ୟାତ୍ମ ରାମାୟଣ'ର ନବାକ୍ଷରୀ ବୃତ୍ତରେ ପଦ୍ୟାନୁବାଦ ଉତ୍କଳରେ ସୁପ୍ରଚଳିତ। ଏହା ସମ୍ବନ୍ଧରେ ଡକ୍ଟର ଶ୍ୟାମସୁନ୍ଦର ରାଜଗୁରୁ, ପଣ୍ଡିତ ଶ୍ରୀ ବିନାୟକ ମିଶ୍ର, ପଣ୍ଡିତ ଶ୍ରୀ ସୂର୍ଯ୍ୟ-ନାରାୟଣ ଦାସ ପ୍ରଭୃତି ସ୍ୱ ସ୍ୱ ଗ୍ରନ୍ଥରେ ଆଲୋଚନା କରିଛନ୍ତି।

କବିଙ୍କ ଭାଷାରେ ଏହି ଗ୍ରନ୍ଥ ରଚନା ସମାପ୍ତ ହୋଇଛି—

"ଚାରି ସହସ୍ର ସାତ ଶତ, ଛୟାଶୀ ବରଷେ ସଂଯୁତ,
ଅଷ୍ଟାବିଂଶତି କଳିଯୁଗ, ଏତେକ ହୋଇଥିଲା ଭୋଗ।
ଆଶ୍ୱିନ ମାସରେ ଏ ଗୀତ, ସର୍ବ ଶୁଭେ ହେଲା ରଚିତ"

ଅର୍ଥାତ୍ କଳିଯୁଗାବ୍ଦ ୪୭୮୬ ବା ୧୬୮୨ ଖ୍ରୀଷ୍ଟାବ୍ଦରେ ଉକ୍ତ ଗ୍ରନ୍ଥ ରଚନା ସମାପ୍ତ ହୋଇଥିଲା। କବି ଗଜପତି ମୁକୁନ୍ଦ ଦେବଙ୍କ ଭାଇ ଅନନ୍ତ ପଟ୍ଟନାୟକଙ୍କ ପୁଅ ଥିଲେ। ସେ ବୀରପୁରୁ ଶାସନର ମହାଜନ ଧର୍ମକର୍ମନିରତ ପଣ୍ଡିତ ମହେଶ୍ୱର ଆଚାର୍ଯ୍ୟଙ୍କ ଠାରୁ ସଂସ୍କୃତ ଭାଷାରେ ଲିଖିତ ଅଧ୍ୟାତ୍ମ ରାମାୟଣର ଅର୍ଥ ବୁଝି ଦେଶ ଭାଷାରେ ସରଳ ନବାକ୍ଷରୀ ବୃତ୍ତରେ ଏହାକୁ ଲେଖିଥିଲେ। ଏହା ଏପର୍ଯ୍ୟନ୍ତ ଉପଲବ୍ଧ 'ଅଧ୍ୟାତ୍ମ ରାମାୟଣ'ର ଓଡ଼ିଆ ଅନୁବାଦ ଗୁଡ଼ିକ ମଧ୍ୟରେ ପ୍ରାଚୀନତମ।

**ଦେବାନନ୍ଦ ଦାସ**— ଦେବାନନ୍ଦ ଦାସ ହେଉଛନ୍ତି 'ବୈଚନ୍ଦ୍ର ଗୀତା'ର ପ୍ରଣେତା। ଗ୍ରନ୍ଥରେ ଏହାର ରଚନା କାଳ ସମ୍ବନ୍ଧରେ ନିମ୍ନଲିଖିତ ବିବରଣ ମିଳେ। ଯଥା –

"ମୁକୁନ୍ଦ ଦେବ ରାଜତ୍ୱରେ, ସମ୍ପୂର୍ଣ୍ଣ ଚଉଦ ଅଙ୍କରେ।
ବେଳ ଆଷାଢ଼ ସେ ସାଲର, ସ୍ୱାମୀ ନୂତନ କଳେବର।
ଦ୍ୱିତୀୟା ଅଦ୍ଦ ଶୁକ୍ରବାରେ, ଗୁଣ୍ଡିଚ୍ଚା ବିଜେ ଠାକୁରେ।
ସେ ଦିନେ ଏ ଗୀତା ସଂପୂର୍ଣ୍ଣ, ଯେ ପୁଞ୍ଜ ଶାଳର ଗ୍ରାମେଣ।
× × ×
ମୁଁ ଗଦାଧର ଦାସ ଶିଷ୍ୟ, ଶ୍ରୀପ୍ରେମ ଚରଣେ ମୋ ଆଶ।"

ଜ୍ୟୋତିଷ ଗଣନା ଅନୁସାରେ ୧୬୭୮ ଖ୍ରୀଷ୍ଟାବ୍ଦରେ ଦୋ-ଆଷାଢ଼ ବା ମଳ ଆଷାଢ଼ ମାସ ପଡ଼ିଥିଲା । ୧-୬-୧୬୭୮ ଓ ୧-୭-୧୬୭୮ ଏହି ଦୁଇ ତାରିଖରେ ଆଷାଢ଼ ଶୁକ୍ଳ ଦ୍ୱିତୀୟା ତିଥି ଥିବାରୁ, ୧-୭-୧୬୭୮ରେ ଶ୍ରୀଗୁଣ୍ଡିଚା ହୋଇଥିବ । ୧-୭-୭୮ ବୁଧବାର ହୋଇଥିବାରୁ ଏହା ୩-୭-୭୮ରେ ଶେଷ ହୋଇଥିବ ।

**ଧନଞ୍ଜୟ ଭଞ୍ଜ** :- କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କ ପିତାମହ, ଘୁମୁସର ରାଜ୍ୟର ରାଜା ଧନଞ୍ଜୟ ଭଞ୍ଜ ପ୍ରାୟ ୧୬୩୬ରୁ ୧୭୦୧ ପର୍ଯ୍ୟନ୍ତ ୬୫ ବର୍ଷ ରାଜତ୍ୱ କରି ୯୦ ବର୍ଷ ବୟସରେ ପ୍ରାଣତ୍ୟାଗ କରିଥିଲେ । ସେ 'ମଦନ ମଞ୍ଜରୀ', 'ତ୍ରିପୁର ମଞ୍ଜରୀ'; 'ଇଚ୍ଛାବତୀ' 'ଅନଙ୍ଗରେଖା' ଓ 'ରଘୁନାଥ ବିଳାସ' ନାମକ ପାଞ୍ଚଖଣ୍ଡ କାବ୍ୟ ରଚନା କରିଥିଲେ ।* ସେଥି ମଧ୍ୟରୁ ପ୍ରଥମ ଚାରିଖଣ୍ଡ କାଳ୍ପନିକ ଓ ଶେଷୋକ୍ତ କାବ୍ୟଟି 'ରାମାୟଣ' ଅନୁସରଣରେ ଲିଖିତ । ସେ 'ଶାଳିହୋତ୍ର' ନାମକ ଅଶ୍ୱଶାସ୍ତ୍ରର ମଧ୍ୟ ଓଡ଼ିଆ ପଦ୍ୟାନୁବାଦ କରିଥିଲେ । ଏତଦ୍‌ବ୍ୟତୀତ ତାଙ୍କ କୃତ ଅନେକ ଚଉତିଶା ଦୃଷ୍ଟିଗୋଚର ହୁଏ । ସେଗୁଡ଼ିକ ଏ ପର୍ଯ୍ୟନ୍ତ ଅପ୍ରକାଶିତ ରହିଛି । ସେ ଭୋଇ ବଂଶୀୟ ନରସିଂହ ଦେବ, ବଳଭଦ୍ରଦେବ, ମୁକୁନ୍ଦଦେବ ଓ ଦିବ୍ୟସିଂହ ଦେବଙ୍କ ସମସାମୟିକ ଥିଲେ । ଏପରି ଦୀର୍ଘ ରାଜତ୍ୱ କାଳରେ ସେ ଆହୁରି ଅନେକ ଗ୍ରନ୍ଥ ଲେଖିଥିବେ । କିନ୍ତୁ ସେଗୁଡ଼ିକର ନାମ ପର୍ଯ୍ୟନ୍ତ ଜଣାଯାଇ ନାହିଁ । ତଥାପି ସେ ସପ୍ତଦଶ ଶତାବ୍ଦୀର ଜଣେ ଶ୍ରେଷ୍ଠ ଓଡ଼ିଆ କବି ରୂପେ ବିବେଚିତ ହୁଅନ୍ତି ।

**ମହେଶ୍ୱର ଦାସ** : ମହେଶ୍ୱର ଦାସ ଭକ୍ତକବି ବଳରାମ ଦାସଙ୍କ ସୁପ୍ରସିଦ୍ଧ 'ଜଗମୋହନ ବା ଦାଣ୍ଡୀ ରାମାୟଣ' ଅବଲମ୍ବନରେ ଏକ ଅତି ସଂକ୍ଷିପ୍ତ ରାମାୟଣ ରଚନା କରିଥିବାର ଜଣାଯାଏ । ଜଗମୋହନ ରାମାୟଣର ଦାଣ୍ଡୀ ବୃତ୍ତ ଓ ସେଥିରେ ବ୍ୟବହୃତ ବହୁ ଶବ୍ଦର ପ୍ରୟୋଗ 'ଟୀକା ରାମାୟଣ'ରେ ପରିଦୃଷ୍ଟ ହୁଏ । ତେଣୁ ଗ୍ରନ୍ଥକାର ମହେଶ୍ୱରଙ୍କୁ ଜଣେ ପ୍ରାଚୀନ କବି ରୂପେ ଗ୍ରହଣ କରାଯାଇପାରେ । କିନ୍ତୁ ଗ୍ରନ୍ଥରେ ତାଙ୍କର ପରିଚୟ ବା ଗ୍ରନ୍ଥ ରଚନା କାଳର ଉଲ୍ଲେଖ ଦେଖାଯାଏ ନାହିଁ । 'ଅଧ୍ୟାତ୍ମ ରାମାୟଣ'ର ପ୍ରଥମ ଓଡ଼ିଆ ପଦ୍ୟାନୁବାଦକର୍ତ୍ତା ହଳଧର ଦାସଙ୍କ ଗୁରୁ ମହେଶ୍ୱର ଆଚାର୍ଯ୍ୟ ଜଣେ ବଡ଼ ବିଦ୍ୱାନ୍ ଥିଲେ ଏବଂ ରାମାୟଣରେ ତାଙ୍କର ବିଶେଷ ପାଣ୍ଡିତ୍ୟ ଥିବାର ଜଣାଯାଏ । ଯଥା—

"ବିଦ୍ୟାପୁର ନାମେ ଶାସନ; ତହିଁରେ ଅଟେ ମହାଜନ ।
ବତ୍ସସ ଗୋତ୍ରରେ ଜନମ, ମହେଶ୍ୱର ଆଚାର୍ଯ୍ୟ ନାମ ।

---

* 'ଇଚ୍ଛାବତୀ' ଓ 'ଅନଙ୍ଗରେଖା' କାବ୍ୟ ଦୁଇଟି ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ମୁଦ୍ରିତ ଓ ପ୍ରକାଶିତ ହୋଇଅଛି ।

ବ୍ରହ୍ମ କର୍ମରେ ସେ ନିରତ; ପଣ୍ଡିତ ବଇଷ୍ଣବ ଶାନ୍ତ ।
ସେ ମୋତେ ଅନୁଗ୍ରହ କଲେ; ରାମାୟଣ ଅର୍ଥ କହିଲେ ।
ଶୁଣିଣ କୃତାର୍ଥ ହୋଇଲି; ତହିଁରୁ ଯେତେ ମୁଁ ବୁଝିଲି ।
ତାହା ଭାବନା କରି ଚିତ୍ତେ; ସବୁ ଲୋକମାନଙ୍କ ହିତେ ।
ସୀତା ରାମ କ୍ଷମା ଶଙ୍କର; ଏହାଙ୍କୁ କରି ନମସ୍କାର ।
ଦେଶ ଭାଷାରେ କଲି ଗୀତ; ଏତ ଅଗାଧ ସିନ୍ଧୁମତ ।"

ସେ ବୈଷ୍ଣବ ଥିବାରୁ ଆଚାର୍ଯ୍ୟ ପରବର୍ତ୍ତିରେ ଦାସ ସଂଜ୍ଞା ଗ୍ରହଣ କରିଥିବା ଯୁକ୍ତିଯୁକ୍ତ ମନେହୁଏ । ଅନ୍ୟ ଚରୁଛ ପ୍ରମାଣ ନ ମିଳିବା ପର୍ଯ୍ୟନ୍ତ ମହେଶ୍ୱର ଆଚାର୍ଯ୍ୟଙ୍କୁ ଟୀକା ରାମାୟଣର ପ୍ରଣେତା ରୂପେ ଗ୍ରହଣ କରାଯାଇପାରେ । ହଳଧର ୧୬୮୨ରେ ଅଧ୍ୟାତ୍ମ ରାମାୟଣ ରଚନା କରିଥିବାରୁ ମହେଶ୍ୱରଙ୍କ ଟୀକା ରାମାୟଣ ଏହାର କିଛି କାଳ ପୂର୍ବରୁ ରଚିତ ହୋଇଥିବାର ସ୍ଥିର କରାଯାଇପାରେ ।

**ରାଜତ୍ୱର କୀର୍ତ୍ତିକଳାପ :**— ମାଦଳାପାଞ୍ଜିରୁ ଜଣାଯାଏ ଯେ ତାଙ୍କ ପାତ୍ର ପୀତାମ୍ବର ବିଦ୍ୟାଧର ମହାପାତ୍ର ଶ୍ରୀ ଲକ୍ଷ୍ମୀଠାକୁରାଣୀଙ୍କ ଜଗମୋହନ କରି-ଥିଲେ । ତାଙ୍କର ଅନ୍ୟ ପାତ୍ର ପ୍ରସିଦ୍ଧ ଭରତ ପଟ୍ଟନାୟକ ଯମେଶ୍ୱର ଦେଉଳ ଜଗମୋହନ ଓ ବାଲି ସାହୀ ସୁଦର୍ଶନ ଦେବଙ୍କ ଦେଉଳ ପଥର ଗୃହମା କରିଥିଲେ । ମଦନଗୋପାଳ ଦେବଙ୍କ ଜଗମୋହନ ଓ ଜଳକ୍ରୀଡ଼ା ମଣ୍ଡପ ତାଙ୍କଗୁରୁ ବନମାଳୀ ମହାପାତ୍ରଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ଶ୍ରୀକ୍ଷେତ୍ରରେ ଏ ସମସ୍ତ କୀର୍ତ୍ତିର ନିର୍ମାଣ ଫଳରେ ଏହାର ଶ୍ରୀବୃଦ୍ଧି ସାଧିତ ହୋଇଥିଲା ।

ଯେତେବେଳେ ସମଗ୍ର ଉତ୍ତର ଭାରତ ଏବଂ ଓଡ଼ିଶାର ମୋଗଲବନ୍ଦୀ ଅଞ୍ଚଳରେ ପ୍ରବଳ ପ୍ରତାପ ପରଧର୍ମବିଦ୍ୱେଷୀ ଦିଲ୍ଲୀ ବାଦସାହ ଔରଙ୍ଗଜେବଙ୍କ ଆଦେଶରେ ସଂସ୍କୃତ ଶିକ୍ଷା, ହିନ୍ଦୁଧର୍ମ ଓ ହିନ୍ଦୁକୀର୍ତ୍ତି ସକଳର ବିଲୋପ ସାଧନ ପାଇଁ ଧାରାବାହିକ ଭାବରେ ଉଦ୍ୟମ ଚାଲିଥିଲା, ସେତେବେଳେ ଖୋର୍ଦ୍ଧା ଗଜପତି ମୁକୁନ୍ଦଦେବ ହିନ୍ଦୁକୀର୍ତ୍ତି, ହିନ୍ଦୁଧର୍ମ ଓ ସଂସ୍କୃତିର ରକ୍ଷା, ସଂସ୍କୃତ ସାହିତ୍ୟ ତଥା ସ୍ୱ ମାତୃ ସାହିତ୍ୟର ଅଭିବୃଦ୍ଧି ନିମିତ୍ତ ଯଥାସାଧ୍ୟ ଉଦ୍ୟମ କରି ଚିରସ୍ମରଣୀୟ ହୋଇଛନ୍ତି ।

## ଗଜପତି ମୁକୁନ୍ଦ ଦେବଙ୍କ ରାଜତ୍ୱର ଦାନପତ୍ର ସମୂହ

ଏ ପର୍ଯ୍ୟନ୍ତ କେବଳ ଗଞ୍ଜାମ ଅଞ୍ଚଳରୁ ତାଙ୍କ ରାଜତ୍ୱ କାଳରେ ଲିଖିତ ୧୮ ଖଣ୍ଡି ଦାନପତ୍ର ମିଳିଛି । ସେ ଗୁଡ଼ିକରୁ ନିମ୍ନୋକ୍ତ ତଥ୍ୟ ସମୂହ ମିଳେ ।

ପାଠ ଦୋଷରୁ କମ୍ବା ଲିପିକାର ପ୍ରମାଦ ଯୋଗୁଁ ସେଥିମଧ୍ୟରୁ କେତେକର ଠିକ୍ ତାରିଖ ମିଳୁ ନାହିଁ ।

୧) ମୁକୁନ୍ଦ ଦେବଙ୍କ ୩ ଅଙ୍କ, ? ମକର ୩, ମାଘ, କୃଷ୍ଣ, ୨ ବୁଧବାର ଦିନ ଭଗବାନ ପଣ୍ଡାଙ୍କୁ କେତେକ ଜମି ଦିଆ ଯାଇଥିଲା । ୪-୪ ୧୬୭୦ରେ ୪ ଅଙ୍କ ମକର ୭ ଦିନ ହେଉଛି । ଆଉ ସବୁ ମିଳୁଛି ।

୨) ମୁକୁନ୍ଦ ଦେବଙ୍କ ୫ ଅଙ୍କ ମୀନ ୧୨, ଚୈତ୍ର କୃଷ୍ଣ ୨, ଶୁକ୍ରବାର ଦିନ ଜଗନ୍ନାଥ ସିଂହ, ସଦାଶିବ ମିଶ୍ର ଓ ଅନ୍ୟ ୧୧ ଜଣଙ୍କୁ ୮୧୫ ଭରଣ ଭୂମି ବନ୍ଦୋବସ୍ତ କରିଥିଲେ । ୮-୩-୧୬୭୧ ତାରିଖରେ ସବୁ ମିଳିଯାଉଛି ।

(୩) ମୁକୁନ୍ଦଦେବଙ୍କ ୫ ଅଙ୍କ ବୈଶାଖ, କୃଷ୍ଣ ଦ୍ୱିତୀୟା, ରବିବାର ଦିନ ଶ୍ରୀ ରାମଚନ୍ଦ୍ର ସୁର ମହାରଥୀ ମହାପାତ୍ର ସେବକ ଜଗନ୍ନାଥ ପଣ୍ଡାଙ୍କୁ କେତେକ ଜମି ଦାନ କରିଥିଲେ । ୭ ୪-୧୬୭୧ ତାରିଖରେ ସବୁ ମିଳିଯାଉଛି ।

(୪) ମୁକୁନ୍ଦଦେବଙ୍କ ୫ ଅଙ୍କ ମେଷ ୧୯, ଜ୍ୟେଷ୍ଠ, କୃଷ୍ଣ ୭, ଶୁକ୍ରବାର ଦିନ ନାରାୟଣ ଦାସଙ୍କୁ ରମ୍ଭା ଗ୍ରାମରେ କେତେକ ଜମି ଦାନ କରିଥିଲେ । ଲିପି ପାଠରେ ଭ୍ରମ ଥିବାର ମନେହୁଏ ।

(୫) ୫ ଅଙ୍କ, ୨୫ ଦିନ,? ବୈଶାଖ, ଶୁକ୍ଳ ୧୫, ଶନିବାର ଦିନ ଆଠଗଡ଼ ରାଜ୍ୟାଧିପତି ଶ୍ରୀ ହରିଚନ୍ଦନ ଜଗଦେବ ରାମଚନ୍ଦ୍ରପୁର ଶାସନକୁ ୮୩ ଭାଗ କରି ପୁରୁଷୋତ୍ତମ ଭଟ୍ଟ ଓ ଅନ୍ୟ ବ୍ରାହ୍ମଣ ମାନଙ୍କୁ ଦାନ କରିଥିଲେ । ୪-୫-୧୬୭୧ ବୃଷ ୫ ଦିନ ହେବ ।

(୬) ୧୦ ଅଙ୍କ; କୁମ୍ଭ ୧୯ ? ଶୁକ୍ଳ ୫, ଶୁକ୍ରବାର ଦିନ ବୀର ଶ୍ରୀ ମୁକୁନ୍ଦ ଦେବ ଜଗନ୍ନାଥ ରଥଙ୍କୁ କେତେକ ଭୂମି ଦାନ କରିଥିଲେ । ୧୦-୨-୧୬୭୫ ଫାଲ୍ଗୁନ ଶୁକ୍ଳ ୫, କୁମ୍ଭ ୧୪ ଦିନ ହେବ ।

(୭) ୧୧ ଅଙ୍କ ? ତୁଳ ୨୪, କାର୍ତ୍ତିକ ଶୁକ୍ଳ ୧୫, ଗୁରୁବାର ଦିନ ଧଳ୍ପାକୋଟ ରାଜା କୁଞ୍ଜବିହାରୀ ସିଂହଦେବ ଦିବ୍ୟସିଂହ ମହାପାତ୍ରଙ୍କ ନାତି ବିଲୋଚନ ମହାପାତ୍ରଙ୍କ ପୁଅ ଗୋପୀନାଥ ମହାପାତ୍ରଙ୍କୁ କୁଞ୍ଜବିହାରୀପୁର ଗ୍ରାମ ଦାନ କରିଥିଲେ । ୨୮-୧୦-୧୬୭୯ ତାରିଖ, ୧୫ ଅଙ୍କ ହେବ ।

(୮) ୧୨ ଅଙ୍କ ବୃଷ ୩, ପ୍ରଭବ, ବୈଶାଖ, ଶୁକ୍ଳ ୭, ଗୁରୁବାର ଦିନ ଗୋବିନ୍ଦ ତିଅଡ଼ି ଘଣ୍ଟ ରାମଦାସ ପାତ୍ରଙ୍କୁ କେତେକ ଭୂମି ବନ୍ଦୋବସ୍ତ କରିଥିଲେ । ଏହା ପ୍ରଭବ

ସମ୍ବତ୍ସର ନୁହେଁ । ତାଙ୍କ ବାର ଅଙ୍କରେ ପରାଭବ ସମ୍ବତ୍ସର ପଡ଼ିଥିଲା । ୩-୫-୧୬୭୭ ତାରିଖରେ ଗୁରୁବାର ବୈଶାଖ ଶୁକ୍ଳ ୯ ବା ୧୦, ବୃଷ ୫ ହେଉଛି ।

(୯) ୧୪ ଅଙ୍କ ବୃଷ ୨୯, ଆଷାଢ଼ ଶୁକ୍ଳ ୧୨ ଶୁକ୍ରବାର ଦିନ ଧରାକୋଟ ରାଜା ଜଗନ୍ନାଥ ସିଂହ ଶ୍ରାବଣ ଓ ପୌଷ ପୂର୍ଣ୍ଣିମା ଦୁଇ ଦିନ ରାଜାଙ୍କୁ ସୁନା ପଇତା ଭେଟି ଦେବାପାଇଁ ଗୁଣୁପଡ଼ା ଗ୍ରାମରେ ଅନାମ ପାଢ଼ୀଙ୍କୁ କେତେକ ଭୂମି ଦାନ କରିଥିଲେ ।

(୧୦) ଶ୍ରୀ ମୁକୁନ୍ଦ ଦେବଙ୍କ ସମସ୍ତ ୧୪ ଅଙ୍କ ବିଛା ୨୭ ଆଷାଢ଼ ବହୁଳ ୧୨, ଶୁକ୍ରବାର ଦିନ ଗଙ୍ଗାଧର ଦାସ ଓ ପୀତାମ୍ବର ଦାସଙ୍କୁ କେତେକ ଜମି ଦିଆ ଯାଇଥିଲା । ବିଛା ମାସରେ ଆଷାଢ଼ ପଡ଼ିବା ସମ୍ଭବ ନୁହେ । ତେଣୁ ପାଠ ବା ଲେଖାରେ ଭୁଲ ଅଛି ।

(୧୧) ମୁକୁନ୍ଦ ଦେବଙ୍କ ୧୫ଅଙ୍କ ଆଷାଢ଼ ଶୁଦ୍ଧ ୨ ବୁଧବାର, ମିଥୁନ,୧୩? ଧରାକୋଟ ରାଜା ପୁରୁଷୋତ୍ତମ ସିଂହଦେବ ପୁରୁଷୋତ୍ତମପୁର ଗ୍ରାମ କେତେକ ବ୍ରାହ୍ମଣ ମହାଜନଙ୍କୁ ଦାନ କରିଥିଲେ । ୮-୬-୧୬୭୦ରେ ୫ ଅଙ୍କ ଆଷାଢ଼ ଶୁଦ୍ଧ ୨ ବୁଧବାର, ମିଥୁନ ୧୦ ହୋଇଥିଲା ।

(୧୨) ୧୯ ଅଙ୍କ କୁମ୍ଭ ୨୯ ଦିନ, ଫାଲ୍‌ଗୁନ କୃଷ୍ଣ ୧୨, ?ଫାଲ୍‌ଗୁନ ବହୁଳ ୧୨ ଶନିବାର ଦିନ ମଦନ ନାରାୟଣ ଦାସଙ୍କୁ କେତେକ ଭୂମି ଦିଆଗଲା । ୧୫-୨-୧୬୭୩ କୁମ୍ଭ, ୧୯, ଶନିବାର, ଫାଲଗୁନ ଶୁକ୍ଳ ୯ ପଡ଼ୁଛି ।

(୧୩) ୨୧ ଅଙ୍କ ?; ଚୈତ୍ର ଶୁଦ୍ଧ ୧୪ ସୋମବାର ଦିନ, ହୁମା ରାଜ୍ୟାଧି- ପତି ସୁର ଶ୍ରୀ କୃଷ୍ଣଚନ୍ଦ୍ର ସାମନ୍ତରାୟ ମହାପାତ୍ର ଗୁଣ୍ଡମଲ୍ଲ ସୀତାରାମ ପାଢ଼ୀଙ୍କୁ ୧୫ ଭରଣ ଭୂମି ଦାନ କରିଥିଲେ । ୨୯ ୩-୧୬୭୫ରେ ଚୈତ୍ର, ଶୁଦ୍ଧ ୧୩. ସୋମବାର ହେବ ।

(୧୪) ୨୩ଅଙ୍କ, ମକର ୨୩ ? ପୁଷ୍ୟ, ଶୁକ୍ଳ ୧୩, ଶୁକ୍ରବାର ଦିନ ଧରାକୋଟ ରାଜା ପୁରୁଷୋତ୍ତମ ସିଂହଦେବ ଗୁଡ଼ସାହି ଗ୍ରାମ ଦୁଇଜଣଙ୍କୁ ଦାନ କରିଥିଲେ । ୫-୧-୧୬୭୭ତାରିଖରେ ଶୁକ୍ରବାର, ପୁଷ୍ୟ, ଶୁକ୍ଳ ୧୨ ମକର ୮ ହେଉଛି ।

୧୫) ୨୭ଅଙ୍କ ମେଷ ୧୭ ବୈଶାଖ ଅମାବାସ୍ୟା, ରବିବାର ଦିନ ସୂର୍ଯ୍ୟପରାଗ ସମୟରେ ଗୁରୁକାଧିପତି ଗୋସାଇଁ ପ୍ରଭୃତି ଛଅଜଣଙ୍କୁ ଲୋକନାଥ ରାଜତ ଲୋକନାଥ- ପୁରକୁ ଛଅଭାଗ କରି ଦାନ କରିଥିଲେ । ଏହି ଗ୍ରାମ ଇଚ୍ଛାପୁର ତାଲୁକରେ ଅବସ୍ଥିତ । ତାରିଖ ଗଣି ହେଉନାହିଁ ।

(୧୬) ମୁକୁନ୍ଦ ଦେବଙ୍କ ୨୩ ଅଙ୍କ ଶ୍ରାବ ପୁଷ୍ୟ, ବହୁଳ ୧୧, ଶୁକ୍ରବାର ଦିନ **ଶ୍ରୀ ନାରାୟଣ ପୁର ହରିଚନ୍ଦନ ଦେବ** ଲୋକନାଥପୁର ଗ୍ରାମ କୌଣ୍ଡିନ୍ୟ-ସଗୋତ୍ର ଯଜୁର୍ବେଦୀ ମାଳକଣ୍ଠ ପଣ୍ଡାଙ୍କୁ ଦାନ କରିଥିଲେ । ମୁକୁନ୍ଦ ଦେବଙ୍କ ରାଜତ୍ୱରେ ଶ୍ରାବ ସମ୍ବତ୍ସର ପଡ଼ୁ ନ ଥିଲା । ୧୬୬୭ ପରାଭବ, ୧୬୮୭ରେ ପ୍ରଭବ, ୧୬୮୮ରେ ବିଭବ ସମ୍ବତ୍ସର ପଡ଼ିଥିଲା, ତେଣୁ ତାରିଖ ଗଣି ହେଉନାହିଁ ।

(୧୭) ୪ ଅଙ୍କ ? ମୀନ ୩୦; ଚୈତ୍ର ଶୁଦ୍ଧ ୫ ରବିବାର ଦିନ ମୁକ୍ତାମାଳା ଶ୍ରୀ ପାଟ ମହାଦେବୀ ଭରଦ୍ୱାଜସଗୋତ୍ର ଋକ୍‌ବେଦୀ ହରିସେବକ ସାମନ୍ତରାୟଙ୍କୁ ମୁକ୍ତାପୁର ଗ୍ରାମ ଦାନ କରିଥିଲେ । ୨୮-୩-୧୬୫୬ ତାରିଖରେ ମୀନ ୩୦, ଚୈତ୍ର ଶୁଦ୍ଧ ୧୪, ରବିବାର ପଡ଼ିଥିଲା । କିନ୍ତୁ ଏହା ମୁକୁନ୍ଦ ଦେବଙ୍କ ୪ ଅଙ୍କ ନୁହେ ।

(୧୮) ମୁକୁନ୍ଦ ଦେବଙ୍କ ୭୦ ଅଙ୍କ, ମିଥୁନ, ୨୨, ଶ୍ରାବଣ ବହୁଳ ୩, ସୋମବାର ସାମନ୍ତରାୟ ଜଗନ୍ନାଥ ପଣ୍ଡାଙ୍କୁ ୨୦ ଭରଣ ଭୂମି ବିକ୍ରୟ କରିଥିଲେ । ୭୦ ଅଙ୍କ ଗଣନା ହୁଏ ନାହିଁ କି ମୁକୁନ୍ଦ ଦେବଙ୍କ ୭୦ ଅଙ୍କ ନାହିଁ । ତେଣୁ ଠିକ୍ ତାରିଖ ଜାଣି ହେଉନାହିଁ । ତାଙ୍କ ରାଜତ୍ୱ କାଳର ଏତେଗୁଡ଼ିଏ ଦାନ ପତ୍ର ମିଳିଥିଲେ ମଧ୍ୟ ପାଠ ଦୋଷ ଓ ଲିପିକାର ପ୍ରମାଦ ଯୋଗୁଁ ସେଗୁଡ଼ିକର ଦିନ ଓ ତାରିଖ ଅଭ୍ରାନ୍ତ ରୂପେ ସ୍ଥିର କରି ହେଉନାହିଁ ।(୨୬)

## ରାଜତ୍ୱର ଅଙ୍କ ଗଣନା

| ସୁନିଆର ତାରିଖ | | ରାଜତ୍ୱର ଅଙ୍କ | ପ୍ରସିଦ୍ଧ ଘଟଣା |
|---|---|---|---|
| ୨୧-୮-୧୬୫୭ ସୁନିଆ ଦିନ ପରେ ତାଙ୍କର ଦୁଇ ଅଙ୍କ ଆରମ୍ଭ ହୋଇଥିଲା । | | | |
| ୨୯-୮-୧୬୫୮ | ତାରିଖ ସୁନିଆ ଦିନ ଠାରୁ | ୩ ଅଙ୍କ | |
| ୧୯-୮-୧୬୫୯ | " | ୪ " | |
| ୭-୯-୧୬୬୦ | " | ୫ " | କଟକ ସୁବାଦାର |
| ୨୭-୮-୧୬୬୧ | " | ୬ " | ଖାନ୍-ଇ-ଦୁରାନ୍‌ଙ୍କ ଖୁର୍ଦ୍ଧା ରାଜ୍ୟ ଆକ୍ରମଣ ୭-୨-୧୬୬୧ |

(26) Inscriptions of the Madras Presidency, Vol. I, Nos. 126, 40, 87, 117, 110, 113, 42, 19, 39, 118, 53, 85, 103, 34, 274, 10€, 275, 93.

| ସୁନଆର ତାରିଖ | | ରାଜତ୍ୱର ଅଙ୍କ | ପ୍ରସିଦ୍ଧ ଘଟଣା |
|---|---|---|---|
| ୧୬-୮-୧୭୬୨ | ତାରିଖ ସୁନଆ ଦିନ ଠାରୁ | ୮ ଅଙ୍କ | |
| ୪-୯-୧୭୬୩ | ,, | ୯ ,, | |
| ୨୩-୮-୧୭୬୪ | ,, | ୧୦ ,, | |
| ୧୧-୯-୧୭୬୫ | ,, | ୧୧ ,, | |
| ୩୧-୮-୧୭୬୬ | ,, | ୧୨ ,, | |
| ୨୦-୮-୧୭୬୭ | ,, | ୧୩ ,, | |
| ୭-୯-୧୭୬୮ | ,, | ୧୪ ,, | |
| ୨୮-୮-୧୭୬୯ | ,, | ୧୫ ,, | |
| ୧୭-୮-୧୭୭୦ | ,, | ୧୭ ,, | |
| ୫-୯-୧୭୭୧ | ,, | ୧୮ ,, | |
| ୨୫-୮-୧୭୭୨ | ,, | ୧୯ ,, | |
| ୧୨-୯-୧୭୭୩ | ,, | ୨୧ ,, | |
| ୧-୯-୧୭୭୪ | ,, | ୨୨ ,, | |
| ୨୨-୮-୧୭୭୫ | ,, | ୨୩ ,, | |
| ୮-୯-୧୭୭୬ | ,, | ୨୪ ,, | |
| ୨୯-୮-୧୭୭୭ | ,, | ୨୫ ,, | |
| ୧୯-୮-୧୭୭୮ | ,, | ୨୭ ,, | |
| ୭-୯-୧୭୭୯ | ,, | ୨୮ ,, | |
| ୨୬-୮-୧୭୮୦ | ,, | ୨୯ ,, | |
| ୧୫-୮-୧୭୮୧ | ,, | ୩୧ ,, | |
| ୩-୯-୧୭୮୨ | ,, | ୩୨ ,, | |
| ୨୩-୯-୧୭୮୩ | ,, | ୩୩ ,, | |
| ୧୦-୯-୧୭୮୪ | ,, | ୩୪ ,, | |
| ୩୦-୮-୧୭୮୫ | ,, | ୩୫ ,, | |
| ୨୦-୮-୧୭୮୬ | ,, | ୩୭ ,, | ଆବୁନସର ଖାଁଙ୍କ ପୁଣ୍ୟ |
| ୮-୯-୧୭୮୭ | ,, | ୩୮ ,, | ମଦର ଅଭିଯାନ । |
| ୨୮-୮-୧୭୮୮ | ,, | ୩୯ ,, (୨୭) | |



(୨୭) ସୁନଆ ତାରିଖ ଗୁଡ଼ିକ ସ୍ୱାମୀ କାନ୍ନୁ ପିଲ୍ଲଇଙ୍କ 'An Indian Ephemeris, Vol. VI ରୁ ଗୃହୀତ ।

## ପଞ୍ଚମ ଅଧ୍ୟାୟ

# ଗଜପତି ଦିବ୍ୟସିଂହ ଦେବ

(୧୬୮୮—୧୭୧୬ ଖ୍ରୀଷ୍ଟାବ୍ଦ)

(୧)

### ସିଂହାସନ ଆରୋହଣ

ଗଜପତି ମୁକୁନ୍ଦ ଦେବଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ଦିବ୍ୟସିଂହ ଦେବ ଖୋର୍ଦ୍ଧା ରାଜ୍ୟର ଶାସକ ପଦରେ ଅଧିଷ୍ଠିତ ହୋଇଥିଲେ । ମାଦଳାପାଞ୍ଜି ଅନୁସାରେ ବିଛା ୨୩ଦିନରେ ମୁକୁନ୍ଦ ଦେବ ବସନ୍ତ ରୋଗରେ ଯାଜପୁରଠାରେ ପ୍ରାଣତ୍ୟାଗ କରିଥିଲେ । ତାହାର ଦୁଇଦିନ ପରେ ଦିବ୍ୟସିଂହ ଦେବଙ୍କ ଅଭିଷେକ ହୋଇଥିଲା । ଯଥା—

"ଏଥି ଉତ୍ତାରେ ଏହାଙ୍କ ପୁଅ ଦିବ୍ୟସିଂଘ ରାଏ ଗୋସାଇଁ ରାଜା ହୋଇଲେ । ବିଛା ଦି ୨୩ ନେ ଦିଆନ ପରମାନନ୍ଦ ପଟ୍ଟନାୟକଙ୍କ ପୁଅ ରାମଚନ୍ଦ୍ର ପଟ୍ଟନାୟକେ ଯାଇ ଦିବ୍ୟସିଂଘ ରାଏ ଗୋସାଇଂଙ୍କି ବରପଦା ଗଡ଼ରୁ ଆଣି ରଥିପୁର କଟକେ ବିଜେ କରାଇ ରାଜ ଖଟର ଠାରେ ଅଭିଷେକ ହୋଇ ଦେବାଚିନ କଲେ । କଟକ ବୁଲି ଶ୍ରୀ ନଅରେ ବିଜେକଲେ । ଏଦିନୁ ଅଙ୍କ ହୋଇଲା ।" (୧)

ଗଣନା ଅନୁସାରେ ୧୬୮୮ ଖ୍ରୀଷ୍ଟାବ୍ଦ, ନଭେମ୍ବର ମାସ ତା ୨୨ ରିଖ ମାର୍ଗଶୀର ଶୁକ୍ଳ ଦଶମୀ ଗୁରୁବାର ଦିନ ରାତିରେ ରଥିପୁର କଟକରେ ତାଙ୍କର ଅଭିଷେକ ହୋଇଥିଲା । ପୈତୃକ ରାଜଧାନୀ ଖୋର୍ଦ୍ଧା ଦୁର୍ଗ ପରିବର୍ତ୍ତେ ରଥିପୁର ଗଡ଼ରେ ତାଙ୍କର ଅଭିଷେକ ହେବାର କାରଣ ଜଣାଯାଉ ନାହିଁ । ସମସାମୟିକ କବି ଭୂପତି ପଣ୍ଡିତଙ୍କ 'ପ୍ରେମ ପଞ୍ଚାମୃତ' ଗ୍ରନ୍ଥରୁ ମଧ୍ୟ ଜଣାଯାଏ ଯେ କବି ରଥିପୁର କଟକରେ ଦିବ୍ୟସିଂହ ଦେବଙ୍କ ଦର୍ଶନ ଲାଭ କରିଥିଲେ ଏବଂ ରାଜା ତାଙ୍କ

(୧) ମାଦଳାପାଞ୍ଜି, ପୃ ୭୦

କବିତ୍ୱରେ ପ୍ରସନ୍ନ ହୋଇ ତାଙ୍କୁ ରଥିପୁର କଟକରେ ଘରବାଡ଼ି ଦେଇ ରଖାଇଥିଲେ । "କଟକ ନାମେରଥିପୁର, ନଗର ପଶ୍ଚିମେ ମୋ ଘର" (୨) ରଥିପୁରକୁ ନବ୍ୟସିଂହ ଦେବ ରାଜଧାନୀ ଘୁଞ୍ଚାଇ ଥିବାର କାରଣନିର୍ଣ୍ଣୟ ଅନୁସନ୍ଧାନ ସାପେକ୍ଷ ।

## ଜଗନ୍ନାଥ ମନ୍ଦିର ଆକ୍ରମଣ—

ମୋଗଲ ସେନାଦ୍ୱାରା ଜଗନ୍ନାଥ ମନ୍ଦିର ଆକ୍ରମଣ ତାଙ୍କ ରାଜତ୍ୱର ଏକ ପ୍ରସିଦ୍ଧ ଘଟଣା । ଏହାର ଗୁରୁତ୍ୱ ଉପଲବ୍ଧି କରିବାପାଇଁ ସମସାମୟିକ ଇତିହାସର ଅନୁଧ୍ୟାନ ଆବଶ୍ୟକ । ଗଜପତି ମୁକୁନ୍ଦ ଦେବ (୧୬୫୮-୧୬୮୮) ଓ ତାଙ୍କ ପୁତ୍ର ନବ୍ୟସିଂହ ଦେବ ଉଭୟେ ବହୁ ହିନ୍ଦୁକୀର୍ତ୍ତି ବିଧ୍ୱଂସୀ ଔରଙ୍ଗଜେବଙ୍କ ସମକାଳୀନ ଥିଲେ । ଉକ୍ତ ବାଦସାହଙ୍କ ରାଜତ୍ୱ ଆରମ୍ଭରୁ ଭାରତର ଅନ୍ୟାନ୍ୟ ପ୍ରାନ୍ତରେ ଅବସ୍ଥିତ ବହୁ ପ୍ରସିଦ୍ଧ ଦେବାଳୟ ପରି ଓଡ଼ିଶାର ଅନେକ ଦେବ ମନ୍ଦିର ଧ୍ୱସ୍ତ ବିଧ୍ୱସ୍ତ କରାଯାଇ ପ୍ରତ୍ୟେକ ପୀଠ ନିକଟରେ ଗୋଟିଏ ଲେଖାଏଁ ମସଜିଦ ନିର୍ମିତ ହୋଇଥିଲା । ଗଜପତି ମୁକୁନ୍ଦ ଦେବଙ୍କ ରାଜତ୍ୱ କାଳରେ କେନ୍ଦ୍ରାପଡ଼ାର ବଳଦେବଜୀ ମନ୍ଦିର, ଚିଲିକାର ବହୁ ଦେବାଳୟ, ଝଙ୍କଡ଼ର ପ୍ରସିଦ୍ଧ ସାରଳାପୀଠ, ଯାଜପୁରର ଅନେକ ଦେବାଳୟ ଧ୍ୱଂସ କରାଯାଇ ପ୍ରତ୍ୟେକ ସ୍ଥାନରେ ଗୋଟିଏ ଗୋଟିଏ ମସଜିଦ୍ ନିର୍ମିତ ହୋଇଥିବା ପୂର୍ବେ ବର୍ଣ୍ଣିତ ହୋଇଅଛି ।

ବିଚକ୍ଷଣ ଯୋଦ୍ଧା, ଓ କ୍ଷମତାଶାଳୀ ସୁବାଦାର ଖାନ୍-ଇ-ଦୁରାନ (୧୬୬୦-୧୬୬୭) ଗଜପତି ମୁକୁନ୍ଦଦେବ ଏବଂ ତାଙ୍କର ଅନୁଗତ ରାଜନ୍ୟ ମଣ୍ଡଳୀଙ୍କ ପ୍ରବଳ ପ୍ରତିରୋଧର ସମ୍ମୁଖୀନ ହେବାରୁ ଜଗନ୍ନାଥ ମନ୍ଦିର ଆକ୍ରମଣ କରି ପାରିନଥିଲେ । ସାରଳାପୀଠ ଓ ବିରଜାପୀଠ ଧ୍ୱଂସକାରୀ ସୁବାଦାର ଆବୁନସର ଖାଁଙ୍କ (୧୬୮୩-୧୬୮୭) ପୁରୀ ମନ୍ଦିର ବିରୁଦ୍ଧରେ ଅଭିଯାନ ପିପିଲି ଠାରେ ତାଙ୍କ ଦେହ ଉପରେ ଚଡ଼କ ପଡ଼ିବାରୁ ବ୍ୟର୍ଥ ହୋଇଗଲା । ତାଙ୍କ ପରବର୍ତ୍ତୀ ସୁବାଦାର ନବାବ ଏକରାମ ଖାଁ ବାଦସାହ ଔରଙ୍ଗଜେବଙ୍କ ଆଦେଶରେ ଜଗନ୍ନାଥ ମନ୍ଦିରର ଧ୍ୱଂସ ସାଧନ ଦ୍ୱାରା ଯଶଲାଭ କରିବା ପାଇଁ ଦୃଢ଼ ସଂକଳ୍ପ ହେଲେ ।

ନବାବ ଏକରାମ ଖାଁଙ୍କ ବିଷୟ କଟକ ବାଲୁବଜାର ମସଜିଦ୍‌ରେ ଥିବା ଏକ ପାରସି ଲେଖରୁ ଜଣାଯାଏ । ଏଥିରେ ଲେଖାଅଛି ଯେ "ଆଲମଗିର (ଔରଙ୍ଗଜେବ)ଙ୍କ ରାଜତ୍ୱରେ [illegible] ମୁସଲମାନ ଓଡ଼ିଶାର ନାଜିମ ନବାବ

(୨) 'ପ୍ରେମପଞ୍ଚାମୃତ' ପ୍ରାଚୀ ସଂସ୍କରଣ

ଏକ୍‌ରାମ ଖାଁ ଖାନ୍-ଇ ଖାନନ୍ ବାଲୁବଜାରରେ ଥିବା ମସଜିଦ୍ ୧୧୦୨ ହିଜିରୀସନରେ ସାହାଜାଦୀବେଗମ (ଜେବୁନସା)ଙ୍କ ନାମରେ ଉତ୍ସର୍ଗ କରିଥିଲେ"(୩) ତେଣୁ ଏପରି ବିଶ୍ୱସ୍ତ କର୍ମଚାରୀଙ୍କ ଉପରେ ଜଗନ୍ନାଥ ମନ୍ଦିର ଭାଙ୍ଗିବା ଭାର ଦିଆଗଲା ।

ମୋଗଲ ଯୁଗର ଏକ ଇତିହାସରେ ଏହି ଆକ୍ରମଣର ନିମ୍ନଲିଖିତ ବିବରଣ ମିଳେ—

"He (Mir Sayyid Mahmud of Bilgram) was a man held in great respect and served under Nawab Ikram in Orissa. When Aurangzeb had sent orders to the Nawab to destroy the temple of Jagannatha, Raja Durup Singh Deo who had the temple under him asked the Mir to introduce him to the Nawab. The Raja promised to break the temple and to send the big idol to the Emperor. He actually did break the statue of Rakas which stood over the entrance of the temple; and also two battlements over the door. The idol which was made of sandal wood and which had two valuable jewels set in the eyes, was carried off and sent to Aurangzeb at Bijapur, where it was thrown by order on the steps of the mosque" (4)

ଅର୍ଥାତ୍ ବିଲଗ୍ରାମ୍‌ବାସୀ ମୀର ସୟଦ୍ ମହାମୁଦ୍ ଜଣେ ସମ୍ମାନାସ୍ପଦ ବ୍ୟକ୍ତି ଥିଲେ । ଏବଂ ସେ ଓଡ଼ିଶାର ନବାବ ଇକ୍‌ରାମଙ୍କ ଅଧୀନରେ କାର୍ଯ୍ୟକରୁଥିଲେ । ଔରଙ୍ଗଜେବ ନବାବଙ୍କ ନିକଟକୁ ଜଗନ୍ନାଥ ମନ୍ଦିର ଧ୍ୱଂସ କରିବା ନିମିତ୍ତ ଆଦେଶ ପଠାଇବାରୁ ମନ୍ଦିର ତତ୍ତ୍ୱାବଧାରକ ରାଜା ଦିବ୍ୟସିଂହ ଦେବ ମୀରଙ୍କୁ ନବାବଙ୍କ ସହିତ ମୁଲାକାତ୍ କରାଇଦେବା ପାଇଁ ଅନୁରୋଧ କରିଥିଲେ । ରାଜା ମନ୍ଦିର ଭାଙ୍ଗି ବଡ଼ ମୂର୍ତ୍ତିଟି ବାଦସାହଙ୍କ ନିକଟକୁ ପଠାଇବା ପାଇଁ ପ୍ରତିଶ୍ରୁତି ଦେଇଥିଲେ । ସେ ପ୍ରକୃତରେ ମନ୍ଦିରର ପ୍ରବେଶ ଦ୍ୱାର, ବୋଧହୁଏ ସିଂହଦ୍ୱାର ଉପରେ ଥିବା ରାକ୍ଷସ ମୂର୍ତ୍ତି ଓ ଦୁଇଟି butilements (ଗୁମ୍ବଟ) ଭାଙ୍ଗି ପକାଇଲେ । ଚନ୍ଦନ କାଠରେ ନିର୍ମିତ ଓ

---

(3) Notices of some Persian inscriptions in Orissa O.H.R.J. Vol VI, No. 4, pp 285-286

(4) 'Tabsirat ul-Naizirin' ରାଜେନ୍ଦ୍ରଲାଲ ମିତ୍ରଙ୍କ Antiquities of Orissa Vol II p 112 ରେ ଉଦ୍ଧୃତ

ନୈବେଦ୍ୟସ୍ୱରେ ମୂଲ୍ୟବାନ ରତ୍ନଖଚିତ ଏକ ଦେବବିଗ୍ରହ ଶଜାପୁରରେ ଥିବା ସମ୍ରାଟ ଔରଙ୍ଗଜେବଙ୍କ ନିକଟକୁ ପଠାଯାଇଥିଲା । ସେଠାରେ ଏହି ବିଗ୍ରହଟି ମସଜିଦ୍‌ର ପାହାଚ ତଳେ ପକାଯାଇଥିଲା ।"

ମାଦଳାପାଞ୍ଜିରେ ଏହି ଆକ୍ରମଣର ନିମ୍ନଲିଖିତ ବିବରଣ ମିଳେ ! "ଏ ମହାରାଜାଙ୍କ ଅ୬ଙ୍କ ବୃଷଭ ବ ୮ ନ ମୁଗଲ ଗୋଳରେ ଏଦିନ ପଳାଉଣି ନିମନ୍ତେ ରାତ୍ର ତିନିପ୍ରହର ଠାରେ ପରମେଶ୍ୱରେ ଚତୁର୍ଦ୍ଧା ମୂରତି ପହଣ୍ଡି ବିଜେ କଲେ । ଭିତର ବେଢାରେ ବିମଳାଇଙ୍କ ପଛଆଡ ବେଢ଼ାରେ ବିଜେକଲେ । ଦକ୍ଷିଣଘରୁ ଦେବତାମାନେ ପୋକଳ (କୋ'କଲ ଗଡ଼କୁ ବିଜେକଲେ । ଏଦିନ ପାହାନ୍ତ ଅବକାଶେ ଦୁଇପହର ଧୂପ ବଢିଲା ଉତ୍ତାରୁ ବଡ଼ଠାକୁରଙ୍କ ବାଡରୁ ଆଜ୍ଞାମାଳ ହୋଇଲେ । ଏ ଦୁଇମାଳ ଦଣ୍ଡ ଛଡା ନୋହୁ । ଚନ୍ଦନପୁର କଅରକୁ ବିଜେ କଲେ । ବୃଷଭ ୧୯ ଦିନେ ହରଣ ଏକାଦଶୀ ଦିନ ପାତିଶା ଆଉରଙ୍ଗ ସାହାଙ୍କ ନବାବ ଏକରାମ ଖାଁ । ଏହାଙ୍କ ଠାରୁ ଅଇଲା । ଏହା ଭାଇ ମରମସ୍ତ ଖାଁ । ଜମ ଉଲା ଏ ସଙ୍ଗେ ଇମାମ କୋଲି ଅସୁଆର ଗୋଟାଏ ଘେନ । ରାଜା ଦିବ୍ୟସିଂହ ଦେବେ ବାରୁ ଲାଗି ହୋଇ-ଥାଇ ସିଂହଦ୍ୱାର ଗୁମୁଟ ଭାଙ୍ଗିଲେ । ଭୋଗମଣ୍ଡପରୁ ଟେକି ନେଲେ । **କାଠର ଜଗନ୍ନାଥ ପ୍ରତିମାକୁ ମୁଗଲେ ନେଲେ ।** ଦେଉଳ ସିଂହାସନ ଉପରକୁ ନବାବ ଭାଇ ଗଲା । ଦେଉଳ ସିଂହଦ୍ୱାର ଦକ୍ଷିଣଦ୍ୱାର ମୁଦ କଲା । ପରମେଶ୍ୱରେ ବିମଳାଇଙ୍କ ପିଠିଆଡ ବେଢ଼ାରେ ବିଜେ କରିଥିଲେ । ବେଳ ଦ୍ୱି ପ୍ରହର ସରିକି ନବାବ ଭାଇ ଜମାଉଲା ମଧ୍ୟ ଗଦାଧର ରାଏଙ୍କ ଉଆସେ ଥିଲେ । ରାଜା ଜଗନ୍ନାଥ ବିଦ୍ୟାଧର ମାପାତ୍ରଙ୍କ ଉଆସେ ବିଜେ କରିଥିଲେ । ସମସ୍ତେ ବେଳବୁଡ଼ି ସରିକି ନନ୍ଦନ ପୁର ଗଲେ । (୫)

* ଚକଡ଼ା ପୋଥିରେ ମଧ୍ୟ ଏ ଆକ୍ରମଣର ନିମ୍ନଲିଖିତ ବିବରଣ ମିଳେ:— "ଅ୬ଙ୍କ ବୃଷଭ ଦ ୧୭ ନ ଗୁରୁବାରେ ଏକରାମ . ଭାଇ ଜମାଲ ଓ ଅବଦୁଲା ଖା ଦୁଇଜଣ ବାଦସାହଙ୍କ ହଜୁରରୁ ଆସି ରଜାଙ୍କୁ ସଙ୍ଗେ ଘେନି ପୁରୁଷୋତ୍ତମ ପଇଠ ହୋଇଲେ । ଦେଉଳ ମୁଖଶାଳା ଭଙ୍ଗାଇ ସିଂହଦ୍ୱାର ମୁଦାଇଲେ । ପରମେଶ୍ୱରଙ୍କ ସ୍ୱରୂପେ ତିନିମୂର୍ତ୍ତି ଚଢ଼ାଇଲେ । ବଳଭଦ୍ର ସୁଭଦ୍ରାଙ୍କୁ କୋକୋଳେ ବସାଇଲେ ।

---

(୫) ମାଦଳାପାଞ୍ଜି ପୃ ୭୦-୭୧

* ସ୍ୱର୍ଗତଃ ମନମୋହନ ଚକ୍ରବର୍ତ୍ତୀ ସଂଗ୍ରହ କରିଥିବା ଏକ ମାଦଳାପାଞ୍ଜିରେ ଟିକିଏ ପାର୍ଥକ୍ୟ ଦେଖାଯାଏ । ହରଣଏକାଦଶୀ ପରିବର୍ତ୍ତରେ ଏ ଦିନ 'ଦେବବିଗ୍ର' 'ମରମସ୍ତ ଖାଁ' ବଦଳରେ 'ସରମସ୍ତ ଖାଁ ଲେଖାଯାଇଛି । J,A,S,B. 1898,P 281

ଜଗନ୍ତ ମୂର୍ତ୍ତିକୁ ଜମାଲେଲଙ୍କୁ ସମର୍ପିଦେଲେ । ସେ ଚମ ଦଉଡ଼ିରେ ବାନ୍ଧି ଗାଡ଼ିରେ ପକାଇ କଟକ ନେଇ ବାଦସାହଙ୍କ ହଜୁରକୁ ପଠାଇ ଦେଲେ । ପରମେଶ୍ୱରଙ୍କୁ କମଳାକ୍ଷୀଙ୍କ ବେଢ଼ା ପଶ୍ଚିମେ ରଖିଦେଲେ । ସିଂହାସନେ ବଜେ କସାଇ ଦକ୍ଷିଣଦ୍ୱାର ବେଶ୍ୟା କବାଟ ବାଟେ ଯାଇ ପୂଜାକଲେ । ଛତିଶା ନିଯୋଗ ବାହାର ଭୋଗ ମନାକଲେ । ନିଯୋଗ ବ୍ରାହ୍ମଣ ସତର ଜଣ ଗଣିକା କରି ଛାଡ଼ିଲେ । ନିତ୍ୟ ସାତ କାହାଣ ଭୋଗ ହୋଇ ସେମାନେ ପାରନ୍ତି । ବାହାରକୁ ମହାପ୍ରସାଦ ନ ଆଣନ୍ତି । ଏ ରୂପେ ହୋଇଥିଲା ।" (୬)

ପାଞ୍ଜି ଓ ଚକଡ଼ା ବର୍ଣ୍ଣିତ ନବାବ ଇକ୍ରାମ ଖାଁଙ୍କ ଆଦେଶରେ ଜଗନ୍ନାଥ ମନ୍ଦିର ଆକ୍ରମଣ ହୋଇଥିବା ମୋଗଲ ଇତିହାସ ଦ୍ୱାରା ସମର୍ଥିତ ହୁଏ । ମୋଗଲ ଇତିହାସର ମୀର ସୟଦ୍ ମହମୁଦ, ଏକ ପାଞ୍ଜିକାର ମର୍ମସ୍ତ ଖାଁ ଓ ଅନ୍ୟ ପାଞ୍ଜିକାର 'ସରମଣ୍ଡ ଖାଁ, ବୋଲି ଲେଖିଛନ୍ତି । ଉମାମ ବୋଲିର ଅର୍ଥ ଜଣାଯାଉ ନାହିଁ । ଚକଡ଼ାରୁ ଜମାଲ ଓ ଅବଦୁଲ ଖାଁ ଦୁଇଜଣଙ୍କ ନାମ ମିଳେ । ଉକ୍ତ ତିନୋଟି ଯାକ ବିବରଣରୁ ଜଣାଯାଏ ଯେ ରାଜା ଦିବ୍ୟସିଂହ ଦେବ କୌଣସି ପ୍ରତିରୋଧ କରିନଥିଲେ । ମୋଗଲ ବିବରଣ ଅନୁସାରେ ରାଜା ଦେଉଳ ଭାଙ୍ଗିବା ଜବାବ ଦେଇ ସିଂହଦ୍ୱାରରେ ଥିବା ଏକ ରାକ୍ଷସମୂର୍ତ୍ତି ଓ ଗୁମୁଟ ଭାଙ୍ଗିଦେଲେ ଏବଂ ଚନ୍ଦନ କାଠରେ ତିଆରି ରତ୍ନଖଚିତନେତ୍ର ଏକ ବିଗ୍ରହକୁ ମୋଗଲ ସେନାପତିଙ୍କୁ ଦେଲେ ସେ ଏହାକୁ ବାଦସାହଙ୍କ ବିଜାପୁର ମୁକାମକୁ ପଠାଇ ଦେଲେ ।

ପାଞ୍ଜିରେ ଅଛି ସିଂହଦ୍ୱାର ଗୁମୁଟ ଭଙ୍ଗାଗଲା, ଭୋଗମଣ୍ଡପରୁ ଚନ୍ଦ୍ର ନେଲେ । କାଠର ଜଗନ୍ନାଥ ପ୍ରତିମାକୁ ମୋଗଲ ସେନାପତିଙ୍କୁ ଦିଆଗଲା । ପ୍ରକୃତ ଜଗନ୍ନାଥ ବିଗ୍ରହଙ୍କୁ ପ୍ରଥମେ ବିମଳାଙ୍କ ପଛଆଡ଼ ବେଢ଼ାରେ ଲୁଚାଇ ରଖି ପରେ ସ୍ଥାନାନ୍ତରିତ କରିଥିଲେ । ଦେଉଳ ସିଂହଦ୍ୱାର ଓ ଦକ୍ଷିଣଦ୍ୱାର ମୁଦାଗଲା । ବିଜୟ ପ୍ରତିମା ସମୂହ ଦକ୍ଷିଣଘରୁ କୋକନ ଗଡ଼କୁ ପଠାଇ ଦିଆଗଲା । ନବାବଙ୍କ ଭାଇ (ପ୍ରକୃତରେ ନବାବଙ୍କ କର୍ମଚାରୀ) ମୀର ସୟଦ ମହମଦ ରତ୍ନସିଂହାସନ ଉପରେ ଚଢ଼ିଗଲେ ।" ମୋଗଲ ବିବରଣ ଅପେକ୍ଷା ଏ କ୍ଷେତ୍ରରେ ପାଞ୍ଜିର ବର୍ଣ୍ଣନା ଅଧିକ ସ୍ପଷ୍ଟ ଓ ଯୁକ୍ତିସଙ୍ଗତ ।

ମୁସଲମାନ ଐତିହାସିକ ଏହି ଆକ୍ରମଣର ସମୟ ଦେଇନାହାନ୍ତି । କିନ୍ତୁ ପାଞ୍ଜିରେ ଦିଆଯାଇଥିବା ଋଷଭ (ବୃଷ) ୧୯ ହରଣ ଏକାଦଶୀ ତିଥି ୧୬୯୨ **୧୬୯୨ ମସିହା ମେ ମାସ ୧୬ ତାରିଖ ସହିତ ସଂପୂର୍ଣ୍ଣ ରୂପେ ମେଳ**

---

(୬) ଚକଡ଼ା ପୋଥି, ପୃ ୨୦

ଖାଉଛି । (୭) ଏ ତାରଖରେ ଜ୍ୟେଷ୍ଠ ଶୁକ୍ଳ ଏକାଦଶୀ, ସୋମବାର, ବୃଷ, ୧୮ଦିନ ହୋଇଥିଲା । ପାଞ୍ଜିରେ ୧୯ଦିନ ଥିବାରୁ ଦିନକର ପାର୍ଥକ୍ୟ ଧର୍ତ୍ତବ୍ୟ ନୁହେଁ । ସ୍ୱର୍ଗୀୟ ଐତିହାସିକ ସାର୍ ଯଦୁନାଥ ସରକାରଙ୍କ ଇତିହାସରୁ ଜଣାଯାଏ ଯେ ବାଦସାହ ଔରଙ୍ଗଜେବ ୧୬୯୧ ମାର୍ଚ୍ଚ ମାସରୁ ୧୬୯୨ ମେ ମାସ ପର୍ଯ୍ୟନ୍ତ ବିଜାପୁରରେ ଅବସ୍ଥାନ କରୁଥିଲେ । (୮) ତେଣୁ ମେ ମାସରେ କାଠର ଜଗନ୍ନାଥ ପ୍ରତିମାକୁ ତାଙ୍କ ବିଜାପୁର ମୁକାମକୁ ପଠାଇଥିବା ମଧ୍ୟ ପ୍ରମାଣିତ ହୋଇଯାଉଛି ।

ଏହି ସ୍ମରଣୀୟ ଅବସରରେ ଜଣେ ମୁସଲମାନ ସେନାପତି ପ୍ରଥମଥର ହିନ୍ଦୁ ସମାଜର ପୂଜ୍ୟ ଓ ନମସ୍ୟ ଜଗନ୍ନାଥ ମହାପ୍ରଭୁଙ୍କ ରତ୍ନସିଂହାସନ ଉପରେ ସଗର୍ବରେ ଦଣ୍ଡାୟମାନ ହେବାପାଇଁ ସମର୍ଥ ହୋଇଥିଲେ । ପ୍ରବଳ ପରାକ୍ରାନ୍ତ ଅତି ନିର୍ମମ ଆକ୍ରମଣକାରୀ ସମଗ୍ର ଭାରତର ଏକଛତ୍ର ଶାସକ ବାଦସାହ ଔରଙ୍ଗଜେବଙ୍କ ବିରୁଦ୍ଧରେ ଅସ୍ତ୍ରଧାରଣ କରିବାକୁ ଅସମର୍ଥ ଥିବାରୁ ଦିବ୍ୟସିଂହଦେବ ହିନ୍ଦୁ ସମାଜର ପ୍ରଧାନ ଆରାଧ୍ୟ ଦେବତାଙ୍କ ପ୍ରତି ଏପରି ତୀବ୍ର ଅପମାନ ଅମ୍ଳାନ ବଦନରେ ସହ୍ୟ କରିବାପାଇଁ ବାଧ୍ୟ ହୋଇଥିଲେ । ତାଙ୍କର ଏହି ସହିଷ୍ଣୁତା ଫଳରେ ଜଗନ୍ନାଥ ମନ୍ଦିର ନିଶ୍ଚିତ ଧ୍ୱଂସମୁଖରୁ ରକ୍ଷାପାଇଗଲା ।

## ଶ୍ରୀକ୍ଷେତ୍ରର ଦୁର୍ଦ୍ଦଶା—

ଏହି ଆକ୍ରମଣ ଫଳରେ ଭାରତବନ୍ଦିତ ଜଗନ୍ନାଥ ଧାମର ଦୁର୍ଦ୍ଦଶା ଚରମ ସୀମାରେ ଉପନୀତ ହେଲା । ଏହାର ଏକ କରୁଣ ଚିତ୍ର ମାଦଳାପାଞ୍ଜିରେ ଦିଆଯାଇଛି । ଯଥା :—

"ଏହିକି ଚନ୍ଦନଯାତ୍ରା ନୋହିଲେ । ଏହିକି ରୁକ୍ମିଣୀ ହରଣ ନୋହିଲେ । ଏକାଦଶୀ ମହାଦୀପ ନୋହିଲେ । ବଡ଼ଜାତ ନୋହିଲେ । ଋଷଭ ଅଙ୍କ (୨୧ଦିନ ହେବ) ଭିତର ବେଢ଼ାରେ ଉତ୍ତରବାଡ଼ ଜଗମ ଚକଡ଼ାରେ କାଠ ସିଂହାସନରେ ଦେବସ୍ନାହାନ ଯାତ୍ରା ହୋଇଲେ । ଧୂପମାନଙ୍କରେ ଘଣ୍ଟା ନ ବାଜିଲା । ଗୁଣ୍ଡିଚାଯାତ୍ରା ଭୋଗ ମଣ୍ଡପରେ ହୋଇଲେ ।" ଚକଡ଼ା ବିବରଣ ଅନୁସାରେ ପୁରୀରେ ମହାପ୍ରସାଦ ରନ୍ଧା ଏକାବେଳକେ ବନ୍ଦ ହୋଇଗଲା । ଶ୍ରୀଗୁଣ୍ଡିଚା, ଦେବସ୍ନାନ, ଚନ୍ଦନଯାତ୍ରା, ରୁକ୍ମିଣୀ ହରଣ, ବିବାହଯାତ୍ରା ପ୍ରଭୃତି ଜଗନ୍ନାଥ ମହାପ୍ରଭୁଙ୍କ ଯାତ୍ରା ଉପଯାତ୍ରା ପ୍ରଭୃତି ନହେବା ଫଳରେ ବିଭିନ୍ନ ପ୍ରାନ୍ତରୁ ଆଗତ

(7) An Indian Ephemeris by Pillai, Vol. VI, P. 186.
(8) History of Aurangzeb, Vol. V p. 6.

ଯାତ୍ରୀମାନଙ୍କ ସମାଗମ ବନ୍ଦ ହୋଇଯାଇ ଶ୍ରୀକ୍ଷେତ୍ର ଶ୍ମଶାନାକାର ଧାରଣ କରିଥିବ । ଧୂପମାନଙ୍କରେ ଘଣ୍ଟି ଘଣ୍ଟା ବାଜିବା ଓ ପ୍ରତି ଏକାଦଶୀରେ ମହାଦୀପ ଉଠିବା ବନ୍ଦହେବାରୁ ସହସ୍ର ସହସ୍ର ଭକ୍ତଙ୍କ ହୃଦୟରେ ଦାରୁଣ ଆଘାତ ଲାଗିଥିବ ।

## ବାଣପୁରରେ ଜଗନ୍ନାଥ ମହାପ୍ରଭୁଙ୍କ ଅବସ୍ଥାନ—

ଜାତିର ଏହି ଘୋର ଦୁର୍ଦ୍ଦିନରେ ସ୍ୱୟଂ ଜଗନ୍ନାଥ ମହାପ୍ରଭୁ ମଧ୍ୟ ସୁଖ ମନ୍ଦିରରେ ନିଶ୍ଚିନ୍ତରେ ରହି ପାରି ନଥିଲେ । ମୋଗଲ ଆକ୍ରମଣ ଆସନ୍ନ ହେବାରୁ ଗର୍ଭ ରତ୍ନପ୍ରସ୍ତର ଠାରେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ପହଣ୍ଡି ବିଜେ କରାଯାଇ ପ୍ରଥମେ ବିମଳା ଠାକୁରାଣୀଙ୍କ ପଛପଟ ବେଢ଼ାରେ ଲୁଗ୍ଗାଇଥିଲେ ଏବଂ ତତ୍ପରେ ପ୍ରତିମାମାନ ଗଡ କୋକ୍‌କଳକୁ ସ୍ଥାନାନ୍ତରିତ ହୋଇଥିଲେ । ଏହା ପରେ ଚତୁର୍ଦ୍ଧାମୂର୍ତ୍ତି କେଉଁ ସ୍ଥାନରେ ସଂରକ୍ଷିତ ହେଲେ, ସେ ସମ୍ବନ୍ଧରେ ପାଞ୍ଜି ଓ ଚକଡ଼ା ନୀରବ କିନ୍ତୁ ରାଜା ଦିବ୍ୟସିଂହଙ୍କ ପାତ୍ର ଜଗନ୍ନାଥ ବିଦ୍ୟାଧର ମହାପାତ୍ରଙ୍କ ପୁତ୍ର କବି ଲୋକନାଥ ବିଦ୍ୟାଧର କୃତ 'ସର୍ବାଙ୍ଗ ସୁନ୍ଦରୀ' କାବ୍ୟରୁ ଚତୁର୍ଦ୍ଧା ମୂର୍ତ୍ତିଙ୍କ ବାଣପୁର ରାଜ୍ୟରେ ଅବସ୍ଥିତି ବିଷୟ ନିଃସନ୍ଦେହରେ ଜଣାଯାଏ । ସେ ସମୟରେ ବାଣପୁରର ରାଜା ଥିଲେ ଜଗନ୍ନାଥ ହରିଚନ୍ଦନ । ବାଣପୁର ରାଜ୍ୟର ଦୁର୍ଭେଦ୍ୟ ବଙ୍କାଡ଼ ଗଡ ନିକଟବର୍ତ୍ତୀ ଏକ ସ୍ଥାନରେ ଚତୁର୍ଦ୍ଧାମୂର୍ତ୍ତି ନିରାପଦରେ ରକ୍ଷିତ ଓ ପୂଜିତ ହେଲେ । ପରେ ଏ ସ୍ଥାନର ନାମ ହେଲା 'ମାଳାଦ୍ରି ପ୍ରସାଦ' ଯଥା—

"ଯେଉଁ ଜଗନ୍ନାଥ ପଦ ଧ୍ୟାନେ, ଦେଖି ନାହାନ୍ତି ଯୋଗୀନ୍ଦ୍ର ଜନେ,
**ଯେଉଁ ବାଣପୁର ନୃପ ପରସାଦେ,** ଦେଖିଲେ ସକଳ ଜନେ ହୋ ସୁଜନେ,
**ନାମ ଜଗନ୍ନାଥ କାନ୍ତ ମୂର୍ତ୍ତି** କୀର୍ତ୍ତି ବୃନ୍ଦେ ଧବଳିତ କ୍ଷିତି,
ସେ ହରିଚନ୍ଦନ ଶାନ୍ତ, ଗୋପୀଜନବଲ୍ଲଭ ସେବାରେ ମତି ହେ ସୁଜନେ" (୭୨)

## ପୁରୀରେ ଶ୍ରୀ ଜଗନ୍ନାଥଙ୍କ ପୁନଃପ୍ରତିଷ୍ଠା—

ବାଣପୁରର ମାଳ ମଧ୍ୟରେ ଜଗନ୍ନାଥ ମହାପ୍ରଭୁ କେତେକାଳ ରହିଥିଲେ ତାହାର କୌଣସି ଉଲ୍ଲେଖ ପାଞ୍ଜିରେ ନାହିଁ । କିନ୍ତୁ ଉପରୋକ୍ତ କବି ଲୋକନାଥ ବିଦ୍ୟାଧର ନୀଳାଦ୍ରିନାଥଙ୍କ ସ୍ୱପୀଠରେ ପୁନଃପ୍ରତିଷ୍ଠା ଉପଲକ୍ଷରେ 'ନୀଳାଦ୍ରି ମହୋତ୍ସବ' ନାମକ ଏକ ଗ୍ରନ୍ଥ ରଚନା କରିଥିଲେ । ଏହା ଦିବ୍ୟସିଂହଙ୍କ ୧୪ ଅଙ୍କରେ ବିରଚିତ ହୋଇଥିଲା । ଯଥା—

"ନୃପତିତିଳକ ସିନ୍ଧୁରତିଳକନାୟକ ମହାଦ୍‌ଜନ,
ଆଜ୍ଞା ଦିବ୍ୟସିଂହ ଦେବ ଦିବ୍ୟସିଂହ ପଦ୍ମ ବାରଣ ଧାରଣ,

ଏ ନରେଶ, ଚତୁର୍ଦ୍ଦଶ ଅଙ୍କରେ ଯେ ଗୀତ
ଜମୁକଟକ କଟକରେ ହୋଇଛି ବିରଚିତ" (ଦ୍ୱିତୀୟ ଛାନ୍ଦ ଶେଷ)

ଦିବ୍ୟସିଂହ ଦେବଙ୍କ ଚତୁର୍ଦ୍ଦଶ ଅଙ୍କ ୧୬୯୯-୧୭୦୦ ଖ୍ରୀଷ୍ଟାବ୍ଦରେ ପଡ଼ିଥିଲା । ଏହି ସମୟରେ ଗ୍ରନ୍ଥ ରଚିତ ହୋଇଥିବାରୁ ଏହା ପୂର୍ବରୁ ନିଶ୍ଚୟ ଚତୁର୍ଦ୍ଧା ମୂର୍ତ୍ତି ରତ୍ନ ସିଂହାସନରେ ପ୍ରତିଷ୍ଠିତ ହୋଇଥିବେ । ୧୬୯୮ ଜୁନ୍ ମାସରେ ହିନ୍ଦୁବିଦ୍ୱେଷୀ ଏକରାମ ଖାଁ ସୁବାଦାର ପଦରୁ ବିଦାୟ ନେବା ପରେ ଏବଂ ୨୭-୮-୧୬୯୯ ତାରିଖ ସୁନିଆ ଦିନ ଦିବ୍ୟସିଂହଙ୍କ ଚଉଦ ଅଙ୍କ ଆରମ୍ଭ ହେବା ପୂର୍ବରୁ ଅସୀମ ଭକ୍ତବୃନ୍ଦଙ୍କ ଆହ୍ଲାଦଦାୟକ ଓ ଶାନ୍ତିପ୍ରଦ ଏହି ଘଟଣା ଘଟିଥିବ ।

## ପ୍ରବଳ ଝଡ଼ (୭-୧୦-୧୬୯୪)

ପାଞ୍ଜିରେ ଲେଖାଅଛି ଯେ ୯ ଅଙ୍କେ ତୁଳ ୨ ଦିନେ ଶନିବାର ବଡ଼ ବତାସ ହୋଇଥିଲା । **୧୬୯୪ ଅକଟୋବର ମାସ ୭ ତାରିଖରେ** ତୁଳ ୫, କାର୍ତ୍ତିକ, କୃଷ୍ଣ ତ୍ରୟୋଦଶୀ ଶନିବାର ପଡ଼ିଥିଲା । ଏ ତାରିଖରେ ମାସ, ଦିନ, ବାର, ତିଥି ପ୍ରଭୃତି ସବୁ ମିଳିଯାଉଥିବାରୁ ଏହାକୁ ବାତ୍ୟାର ନିର୍ଦ୍ଦିଷ୍ଟ ଦିନ ରୂପେ ଗ୍ରହଣ କରାଯାଇ ପାରେ (୯) ଏହା ଫଳରେ "ବଡ଼ଦେଉଳ ଉପରୁ ନୀଳଚକ୍ର ଭାଙ୍ଗି ଭଣ୍ଡ ଗଣପତିଙ୍କ ଆଗେ ତଳେ ପଡ଼ିଲା । ସବୁ ଦେଉଳମାନଙ୍କରୁ ପଥର ଚକ୍ରମାନ ପଡ଼ିଲା । ଦୁଇ ବେଢ଼ାରୁ କାଙ୍ଗୁରାମାନ ପଡ଼ିଲା । ବଟଗଛରୁ ଡାଳମାନ ଭାଙ୍ଗିଲା । ସବୁ ଲୋକମାନଙ୍କ ଘରଦ୍ୱାର ଭାଙ୍ଗିଲା । ଗାଈ ମନୁଷ ଅନେକ ମଲେ । ମନୁଷ ମଲେ" ଏହି ପ୍ରବଳ ବାତ୍ୟାଫଳରେ ଶସ୍ୟହାନି ଘଟିଥିବାରୁ ତତ୍ପର ବର୍ଷ ଘୋର ଦୁର୍ଭିକ୍ଷ ପଡ଼ିଥିଲା । "୧୦ ଅଙ୍କରେ ମହଙ୍ଗ କଲା । ଧାନ ଭରଣ କା ୨୫ ହାଣ ହୋଇଲା ! ମନୁଷ ମାଂଆସ ମନୁଷ ଖାଇଲା ।"

## ଅନ୍ୟାନ୍ୟ ସୁବାଦାର ଗଣ—

ଏକରାମ ଖାଁଙ୍କ ପରେ ଗଜନଫର ଖାଁ ୧୬୯୮ ଜୁନ୍ ମାସ ଠାରୁ ୧୭୦୦ ପର୍ଯ୍ୟନ୍ତ ଓ ତାଙ୍କ ପରେ ଅସଖର ଖାଁ ୧୭୦୦ ସେପ୍ଟେମ୍ବର ଠାରୁ ୧୭୦୨ ପର୍ଯ୍ୟନ୍ତ କଟକର ସୁବାଦାର ଥିଲେ । ଉଭୟେ ଏ ପ୍ରଦେଶରେ ମୃତ୍ୟୁମୁଖରେ ପଡ଼ିଥିଲେ । ୧୭୦୩ରୁ ୧୭୧୦ ପର୍ଯ୍ୟନ୍ତ ପ୍ରସିଦ୍ଧ ମୁର୍ଶିଦ କୁଲିଫର ଖାଁ ଓଡ଼ିଶାର ସୁବାଦାର ପଦରେ ଅଧିଷ୍ଠିତ ହୋଇଥିଲେ । ସେ ହିନ୍ଦୁମାନଙ୍କ ପ୍ରତି ଉଦାର ଥିବା କଥା ଇତିହାସରୁ ଜଣାଯାଏ । ତାଙ୍କ ସୁବାଦାରି ସମୟରେ ଔରଙ୍ଗଜେବ ଅହମଦନଗର

(9) An Indian Ephemeris. Vol VI. P. 191

ଠାରେ ଅବସ୍ଥାନ କରୁଥିବା ସମୟରେ ୧୭୦୭ମସିହା ଫେବୃୟାରୀ ୨୦ତାରିଖରେ ପ୍ରାଣତ୍ୟାଗ କଲେ ।

## ଜଗନ୍ନାଥଙ୍କ ଯାତ୍ରାପର୍ବ ପ୍ରଭୃତିର ପୁନଃ ପ୍ରଚଳନ—

ଔରଙ୍ଗଜେବଙ୍କ ମୃତ୍ୟୁ ପରେ ଦିବ୍ୟସିଂହ ଦେବ ଅଠର ଗଡଜାତ ରାଜାଙ୍କୁ ମେଳାଇ ମୋଗଲ ସେନାକୁ ବିତାଡ଼ନ ପୂର୍ବକ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଯାତ୍ରାପର୍ବ ପ୍ରଭୃତି ପୁନର୍ବାର ମହାସମାରୋହରେ ପ୍ରଚଳନ କରିଥିବା ମାଦଳା ପାଞ୍ଜିରୁ ଜଣାଯାଏ । ଯଥା :—

"ଅ୨୪ଙ୍କେ ନବାବ ସୁଜାଖାଁ ସଙ୍ଗେ ଗୋଳ କରି ଲଡ଼ାଇ କଲେ । ଅ୨୪ଙ୍କେ କନ୍ୟା ବ୯ ୦ନ କୃଷ୍ଣ ଏକାଦଶୀ ଗୁରୁବାର ଏ ମହାରାଜାଙ୍କ ଆଜ୍ଞାପ୍ରମାଣେ ଗ ଡ଼ ଙ୍କଣ୍ଡାଏତଙ୍କୁ ଦେଖାଇ ଅଧିରାମ ଚିତାମହ ? ଆସି ବଡ଼ଦେଉଳ ସିଂହଦ୍ୱାର ଫିଟାଇ ଦେଲେ । ପଥର ବାନ୍ଧ ମୁହଁ ଭଙ୍ଗ ପକାଇଲା । ଏହିଦିନ ପୁରୁଷୋତ୍ତମ ବଳିଭ ଅବକାଶ ବେଶ ବଢଲା ଉତ୍ତାରୁ ପରମେଶ୍ୱରଙ୍କ ବାଡ଼ୁ ଅଙ୍କମାଳ ହୋଇଲେ । ଏ ଦିନ ସଞ୍ଜ ଧୂପରେ ଘଣ୍ଟ ବାଜଲା । ବଡ଼ଦେଉଳ ଉପରେ ମହାଦୀପ ଜଳଲା । ଏ ଅଙ୍କେ ଗୁଣ୍ଡିଚ୍ଚ ଯାତ୍ରା ହୋଇଲେ ।"

ପାଞ୍ଜି ବର୍ଣ୍ଣିତ ସୁଜାଖାଁ ହେଉଛନ୍ତି ୧୭୦୭ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ନାଏବ ନାଜିମ ରୂପେ ନିଯୁକ୍ତ ହୋଇଥିବା (୧୦) ସୁଜାଉଦ୍ଦିନ ମହମ୍ମଦ ଖାଁ । ଏଥିରେ ବର୍ଣ୍ଣାଯାଇଥିବା ଦିନ, ବାର, ତିଥି ପ୍ରଭୃତି ୧୭୦୭ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ମାସ ୧୧ ତାରିଖ ସହିତ ଆଶ୍ଚର୍ଯ୍ୟ ଭାବରେ ମିଳିଯାଉଛି । ସେ ତାରିଖରେ କନ୍ୟା ବ୧୦ଦ ଆଶ୍ୱିନ କୃଷ୍ଣ ଏକାଦଶୀ ପଡ଼ିଥିଲା । (୧୧) ଦିବ୍ୟସିଂହ ଦେବ ଅଠରଗଡ଼ ରାଜାଙ୍କୁ ମିଳାଇ ମୋଗଲ ଅତ୍ୟାଚାର ବିରୁଦ୍ଧରେ ବିଦ୍ରୋହ କରିଥିଲେ । ସେମାନେ ଏକରାମ ଖାଁଙ୍କ ଅମଳରୁ ବନ୍ଦଥିବା ସିଂହଦ୍ୱାର ଖୋଲିଦେଲେ । ଔରଙ୍ଗଜେବଙ୍କ ଆଦେଶରେ ନିଷିଦ୍ଧ ହୋଇଥିବା ମହାପ୍ରଭୁଙ୍କ ଧୂପ ଅବକାଶ ପ୍ରଭୃତି ଯଥାବିଧି ଚାଲିତ ହେଲା । ସଞ୍ଜ ଧୂପରେ ଘଣ୍ଟ ବାଜିଲା । ବଡ଼ଦେଉଳରେ ପୂର୍ବପରି ପ୍ରତି ଏକାଦଶୀ ଦିନ ମହାଦୀପ ଉଠିଲା । ଶ୍ରୀଜଗନ୍ନାଥଙ୍କ ଗୁଣ୍ଡିଚ୍ଚ ଯାତ୍ରା ମହାସମାରୋହରେ ଅନୁଷ୍ଠିତ ହେଲା । ୧୬୯୨ରୁ ପ୍ରାୟ ୧୫ବର୍ଷ କାଳ ଘୋର ବିଷାଦ ଓ ଅଶାନ୍ତିରେ କାଳଯାପନ କରୁଥିବା ଉତ୍କଳର ନିର୍ଯ୍ୟାତିତ ହିନ୍ଦୁମାନଙ୍କ ହୃଦୟରେ ନବଜୀବନର

---

(10) History of Orissa Vol II. by R. D. Banerjee. P. 71-72

(11) An Indian Ephemeris Vol VI. P. 217

ହେଲା । ସମଗ୍ର ହିନ୍ଦୁଜଗତ ଆଶ୍ୱସ୍ତି ଲାଭ କଲା । ବୋଧହୁଏ ସୁବାଦାର ମୁର୍ଶିଦ କୁଲି ଖାଁଙ୍କ ସାଧାରଣ ମତ ଯୋଗୁଁ ଏହା ସମ୍ଭବପର ହେଲା ।

## ଦେଶରେ ଶାନ୍ତି ପ୍ରତିଷ୍ଠା—

ମୁର୍ଶିଦ କୁଲି ଖାଁଙ୍କ ଶାସନ ଆରମ୍ଭରୁ (୧୭୦୩) ଓଡ଼ିଶାରେ ଶାନ୍ତି ପ୍ରତିଷ୍ଠିତ ହୋଇଥିଲା । ତାଙ୍କ ପରବର୍ତ୍ତୀ ସୁବାଦାର ଖାନ-ଇ-ଆଲମ୍ ବା ଖାନ୍-ଇ ଜାହାନ୍ ବାହାଦୁର (୧୭୧୧-୧୭୧୪) ମଧ୍ୟ ସାଧାରଣ ଶାସକ ଥିଲେ । ସେ ଯିବା ପରେ ମୁର୍ଶିଦ କୁଲି ଖାଁ । ୧୭୧୪ ଖ୍ରୀଷ୍ଟାବ୍ଦରୁ ୧୭୨୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ୧୩ବର୍ଷ କାଳ କଟକର ସୁବାଦାର ଥିଲେ । ଏ ସମୟରେ ଲୋକେ ସୁଖଶାନ୍ତିରେ କଟାଇଥିଲେ ।

## ଜଗନ୍ନାଥଙ୍କ ମନ୍ଦିରରେ ନୀଳଚକ୍ରର ପୁନଃ ପ୍ରତିଷ୍ଠା—

ଦିବ୍ୟସିଂହ ଦେବଙ୍କ ଅଙ୍କରେ ୧୬୯୪ ଅନ୍ତାବଡ ମାସ ୬ତାରିଖରେ ଭୟଙ୍କର ଝଡ଼ତୋଫାନ ହୋଇ ବଡ଼ଦେଉଳ ଉପରୁ ନୀଳଚକ୍ର ଉପୁଡ଼ି ପଡ଼ି ଭଣ୍ଡ ଗଣପତିଙ୍କ ଆଗେ ତଳେ ପଡ଼ିଯାଇଥିଲା । ସେହିକାଳରୁ ଶ୍ରୀମନ୍ଦିର ନୀଳଚକ୍ର ଶୂନ୍ୟ ଥିଲା । ଦିବ୍ୟସିଂହ ଦେବଙ୍କ ରାଜତ୍ୱର ୧୩ଅଙ୍କ ମକର ବାଇଶି ଦିନ ମନ୍ଦିର ଶିଖରରେ ନୀଳଚକ୍ର ପୁନଃ ପ୍ରତିଷ୍ଠିତ ହୋଇଥିବ ସେଥିରେ ଥିବା ଅଭିଲେଖରୁ ଜଣାଯାଏ ।

"ଶ୍ରୀ ଦିବ୍ୟସିଂହ ଦେବ ମହାରାଜାଙ୍କ ୧୩ଅଙ୍କ ମକର ବାଇଶି ଦିନ ଶ୍ରୀ ନୀଳଚକ୍ର ତିଆର ହୋଇ ବିଜେ ହୋଇଲେ ।" (୧୨) ଗଣନା ଅନୁସାରେ ଏହି ସ୍ମରଣୀୟ ଘଟଣା ଘଟିଥିଲା ୧୭୧୫ମସିହା ଜାନୁୟାରୀ ମାସ ତା ୨୬ରିଖରେ । ସେ ଦିନ ମକର ବାଇଶି ମାଘ ଶୁକ୍ଳ ଦ୍ୱାଦଶୀ ବୁଧବାର ପଡ଼ିଥିଲା । ମାଦଳା ପାଞ୍ଜି ଅନୁସାରେ ପରମାନନ୍ଦ ପଟ୍ଟନାୟକଙ୍କ ପୁଅ ଧରମୁ ହରିଚନ୍ଦନ ମହାପାତ୍ର ନୂଆହୋଇ ଗଢ଼ା ହୋଇଥିବା ନୀଳଚକ୍ରକୁ ବଡ଼ଦେଉଳ ଉପରେ ଉଚ୍ଚସ୍ଥାନରେ ବା ସିଂହାସନଲଗ୍ନ ଭାବରେ ବସାଇଥିଲେ । ପ୍ରାୟ ୨୦ବର୍ଷ ପରେ ନୀଳଚକ୍ରରେ ପୁନର୍ବାର ବାନା ଉଡ଼ିଥିବାରୁ ସମଗ୍ର ହିନ୍ଦୁସମାଜର ମନ ବିମଳାନନ୍ଦ ରସରେ ଆପ୍ଲୁତ ହୋଇଥିବ । ଲକ୍ଷ ଲକ୍ଷ ଭକ୍ତ ଭକ୍ତିଗଦ୍‌ଗଦ ହୃଦୟରେ ନାଚିଉଠିଥିବେ ।

## ଦିବ୍ୟସିଂହ ଦେବଙ୍କ ମୃତ୍ୟୁ—

ତାଙ୍କ ନୀଳଚକ୍ର ଲେଖରୁ ସେ ୧୩ଅଙ୍କ ପର୍ଯ୍ୟନ୍ତ ରାଜତ୍ୱ କରିଥିବା ନିଶ୍ଚିତ

---

(୧୨) ସ୍ୱର୍ଗତଃ ମନମୋହନ ଚକ୍ରବର୍ତ୍ତୀଙ୍କ ପାଠରୁ ଗୃହୀତ J. A. S. B. 1898.

ଖବରରେ ଜଣାଯାଏ । ପାଞ୍ଜି ଅନୁସାରେ ସେ ୩୪ଅଙ୍କ ମେଷ ଦି୩୧ନ ପୁରୁଷୋତ୍ତମ କ୍ଷେତ୍ରର ଉତ୍ତର ପାର୍ଶ୍ୱରେ ଥିବା ବଡ ସନ୍ଥ ଦାସଙ୍କ ମଠ ନଅର ମଧ୍ୟରେ ପ୍ରାଣତ୍ୟାଗ କରିଥିଲେ । ଗଣନା ଅନୁସାରେ ତାଙ୍କ ମୃତ୍ୟୁ ଦିବସ ହେଉଛି ୧୭୧୬ ମସିହା ଏପ୍ରିଲ ମାସ ୨୮ତାରିଖ ।

## ଦିବ୍ୟସିଂହଙ୍କ କୀର୍ତ୍ତି କଳାପ–

ତାଙ୍କ ରାଜତ୍ୱ କାଳର କୀର୍ତ୍ତିକଳାପ ସମ୍ବନ୍ଧରେ ମାଦଳା ପାଞ୍ଜିରେ ନିମ୍ନଲିଖିତ ବିବରଣ ମିଳେ । “ଏ ରାଜା ଖଡ଼ିକଟା ମଣ୍ଡପ କଲେ । ଜଗନ୍ନାଥ ରାଉତରାଏ ମହାପାତ୍ରେ ଶ୍ରେଷ୍ଠ ଅଙ୍ଗ ଚୂନ ମଣ୍ଡପ କଲେ । ଗୋବିନ୍ଦ ଚତୁର୍ଦ୍ୱାରେ କ୍ଷେତ୍ରପାଳଙ୍କ ଦେଉଳ ମଣ୍ଡପ କଲେ, ବିମଳାକ୍ଷୀଙ୍କ ପାଖ ମଣ୍ଡପ କଲେ, ଦକ୍ଷିଣ ଘର ମଦନଗୋପାଳ ଦେବଙ୍କ ପା ଭାଗ କଲେ । ଛତଳା ଖଣ୍ଡାଇତ ସରସ୍ୱତୀଙ୍କ ମୋହନ କଲେ । ରାଜେନ୍ଦ୍ର ମହାଶୟ ଶ୍ରେଷ୍ଠ ଆଡରେ ଭେଟ ମଣ୍ଡପ କଲେ । ଟୋଳା ବେନୁ ଗ୍ଲେଟରାଏ ସ୍ନାହାନ ମଣ୍ଡପ ଦକ୍ଷିଣେ ବ୍ରହ୍ମାଣି ମଣ୍ଡପ କଲେ ।” (୧୩)

## ଓଡ଼ିଆ ସାହିତ୍ୟ ଚର୍ଚ୍ଚା

ଦିବ୍ୟସିଂହଙ୍କ ରାଜତ୍ୱ କାଳରେ ଲୋକନାଥ ବିଦ୍ୟାଧର, ଦୀନକୃଷ୍ଣ, କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଓ ବିଶ୍ୱନାଥ ଖୁଣ୍ଟିଆ ପ୍ରଭୃତି ବହୁ କବିଙ୍କ ଆବିର୍ଭାବ ଯୋଗୁ ଓଡ଼ିଆ ସାହିତ୍ୟ ଇତିହାସରେ ଏକ ଗୌରବୋଜ୍ଜ୍ୱଳ ନବଯୁଗ ଆରମ୍ଭ ହୋଇଥିଲା । ତାଙ୍କ ରାଜତ୍ୱ କାଳର ନିମ୍ନଲିଖିତ କବିମାନଙ୍କ ସମ୍ବନ୍ଧରେ ନିର୍ଦ୍ଦିଷ୍ଟ ବିବରଣ ମିଳେ ।

### ଭୀମ ଦାସ:

ଭୀମ ଦାସ ଦିବ୍ୟସିଂହଙ୍କ ରାଜତ୍ୱର ପ୍ରଥମ ପ୍ରସିଦ୍ଧ କବି । ସେ ମଲ୍ଲିପଡ଼ା ଗଡ଼ରେ କରଣ କୁଳରେ ଜାତ ହୋଇଥିଲେ । ତାଙ୍କ ପିତାଙ୍କ ନାମ ଚନ୍ଦ୍ରଶେଖର ମହାପାତ୍ର ବା ଚନ୍ଦ୍ରଶେଖର ଦାସ ଓ ପିତାମହଙ୍କ ନାମ ଜଗନ୍ନାଥ ଦାସ । ସେ ଏକ ପ୍ରଖ୍ୟାତ କବିକୁଳରେ ଜନ୍ମ ହୋଇଥିଲେ । ସେ “ହରିଭକ୍ତି ଚନ୍ଦ୍ରୋଦୟ” ଓ ‘ଭକ୍ତି ରତ୍ନାବଳୀ’ ନାମକ ଦୁଇଟି ଗ୍ରନ୍ଥର ଅନୁବାଦ ରଚନା କରିଥିଲେ । ଉଭୟ ଗ୍ରନ୍ଥ ମୁଦ୍ରିତ ଓ ପ୍ରକାଶିତ ହୋଇଛି । ହରିଭକ୍ତି ରତ୍ନାବଳୀ ମିଥିଳା ନିବାସୀ ଭାଗବତ ଧର୍ମ ପ୍ରବର୍ତ୍ତକ ବିଷ୍ଣୁପୁରୀଙ୍କ ଦ୍ୱାରା ରଚିତ ହୋଇଥିଲା । ନବାକ୍ଷରୀ ଭାଗବତ

(୧୩) ମାଦଳା ପାଞ୍ଜି ପୃ୭୧

ବୃତ୍ତରେ ଏହାର ଅନୁବାଦ କରିଥିଲେ । ଗ୍ରନ୍ଥ ରଚନା ସମୟ ଦେଉଛୁ—

'ଶକାବ୍ଦ ଷୋଡ଼ଶ ଶତ, ଚଉଦ ବରଷ ଯୁଗତ ।
ବୈଶାଖ ମାସ ଶୁକ୍ଳପକ୍ଷ, ତୃତୀୟା ତିଥି ବିଶାଖା ଋକ୍ଷ ।
ଥାଇଣ ମଳପଡ଼ା ପୁରୀ, କୃଷ୍ଣମଣ୍ଡପେ ବସି କରି ।
ରଚନା କଲି ଏହୁ ଗୀତ, କୃଷ୍ଣ ଚରଣେ ଦେଇ ଚିତ୍ତ

× × ×

ଶ୍ରୀକୃଷ୍ଣ ଚରଣେ ମାନସ, କହଇ କହଇ ଖ୍ରୀମ ଦାସ ।' ଭକ୍ତିରତ୍ନାବଳୀ

ଶକାବ୍ଦ ୧୬୧୪ ବା ୧୬୯୨ ଖ୍ରୀଷ୍ଟାବ୍ଦ ଏପ୍ରିଲ ୯ ତାରିଖ ଦିନ ବୈଶାଖ, ଶୁକ୍ଳ ତୃତୀୟା ପଡ଼ିଥିଲା । କିନ୍ତୁ ସେ ଦିନ ନକ୍ଷତ୍ର ବିଶାଖା ନ ହୋଇ କୃତ୍ତିକା ହୋଇଥିଲା । ନକ୍ଷତ୍ର ଗଣନାରେ ଏହି ଭ୍ରମ ଧର୍ତ୍ତବ୍ୟ ନୁହେଁ ।

## ବୃନ୍ଦାବତୀ ଦାସୀ :—

ବୃନ୍ଦାବତୀ ଦାସୀ କୃତ 'ପୂର୍ଣ୍ଣତମ ଚନ୍ଦ୍ରୋଦୟ' ଗ୍ରନ୍ଥ ପ୍ରାଚୀ ସମିତି ଦ୍ୱାରା ମୁଦ୍ରିତ ଓ ପ୍ରକାଶିତ ହୋଇଅଛି । ସେଥିରୁ କବିଙ୍କ ବଂଶ ପରିଚୟ ଓ ଉକ୍ତ ଗ୍ରନ୍ଥ ରଚନା କାଳ ସ୍ପଷ୍ଟ ଭାବରେ ଜଣାଯାଏ । ଯଥା –

ମଳପଡ଼ା ଗଡ଼ ନିବାସୀ ପରମ ବୈଷ୍ଣବ ଜଗନ୍ନାଥ ଦାସ
|
ଚନ୍ଦ୍ରଶେଖର ଦାସ 'ଶ୍ରୀକୃଷ୍ଣ ଭକ୍ତିଚନ୍ଦ୍ରୋଦୟ'ର ପ୍ରଣେତା
ସ୍ତ୍ରୀ ବୃନ୍ଦାବତୀ ଦାସୀ 'ପୂର୍ଣ୍ଣତମ ଚନ୍ଦ୍ରୋଦୟ'ର ଲେଖିକା
|
ଖ୍ରୀମ ଦାସ 'ହରିଭକ୍ତି ଚନ୍ଦ୍ରୋଦୟ' ଓ 'ଭକ୍ତିରତ୍ନାବଳୀର' ରଚୟିତା
|
କୃପାସିନ୍ଧୁ ଦାସ 'ଉପାସନା ଚନ୍ଦ୍ରୋଦୟ'ର ପ୍ରଣେତା

ଗ୍ରନ୍ଥ ରଚନା ସମୟ—"ଶକ ଅବଦ ଛଉଶତ, ଶତ ଏକବିଂଶ ବରଷ ।
ଦିବ୍ୟସିଂହ ଦେବ ରାଜନ, ଦ୍ୱାଦଶ ଅଙ୍କେ ଏ ରଚନ ।
ବୈଶାଖ ମାସ ଶୁକ୍ଳ ପକ୍ଷେ, ପଞ୍ଚମୀ ମୃଗଶିର ଋକ୍ଷେ ।
ଶୁଭେ ହୋଇଲା ଗ୍ରନ୍ଥ ଶେଷ, ଶୁଣି ସକଳ ପାପ ନାଶ ।
କହଇ ଦାସୀ ବୃନ୍ଦାବତୀ, କୃଷ୍ଣ ଚରଣେ ଦେଇ ମତି । (୧୪କ)
(ପୂର୍ଣ୍ଣତମ ଚନ୍ଦ୍ରୋଦୟ)

୧୬୨୧ଶକାବ୍ଦ ବା ୧୬୯୯ ଖ୍ରୀଷ୍ଟାବ୍ଦରେ ଦିବ୍ୟସିଂହ ଦେବଙ୍କ ତେର ଅଙ୍କରେ ଉକ୍ତ ଗ୍ରନ୍ଥ ରଚିତ ହୋଇଥିଲା । ଗଣନା ଅନୁସାରେ ୨୩-୪-୧୬୯୯ ତାରିଖରେ ବୈଶାଖ ଶୁକ୍ଳ, ଚତୁର୍ଥୀ ଯୁକ୍ତ ପଞ୍ଚମୀ ମୃଗଶିର ନକ୍ଷତ୍ର-ଯୁକ୍ତ ଥିଲା । ବୃନ୍ଦାବତୀ ବାସୀଙ୍କ ଗ୍ରନ୍ଥ କଲବେଳକୁ ତାଙ୍କ ପୁଅ ଶ୍ୟାମ ଦାସ 'ହରିଭକ୍ତି ଚନ୍ଦ୍ରୋଦୟ' ଓ 'ଭକ୍ତି ରତ୍ନାବଳୀ' ଓ ତାଙ୍କ ନାତି କୃପାସିନ୍ଧୁ ଦାସ 'ଉପାସନା ଚନ୍ଦ୍ରୋଦୟ' ଗ୍ରନ୍ଥ ରଚନା କରି ସାରିଥିଲେ । ତେଣୁ ସେ ବୃଦ୍ଧାବସ୍ଥାରେ ନିଜର କୁଟୁମ୍ବ ଜଞ୍ଜାଳ ମଧ୍ୟରେ ବାଣୀ ଆରାଧନାରେ ମନୋନିବେଶ କରିଥିବା ପ୍ରକାଶ କରିଛନ୍ତି । ଏପରି ବିଦୁଷୀ, ଭକ୍ତିମତୀ ଓ ସୌଭାଗ୍ୟବତୀ ନାରୀ କବିଙ୍କ ଯୋଗୁଁ ଉତ୍କଳ ଜନନୀ ଧନ୍ୟ ହୋଇଥିଲା ।

"ଏ ଭାବେ ସତ ପୁତ୍ର ନାତି, ସମସ୍ତେ କୃଷ୍ଣ ପାଦେ ଭକ୍ତି । ୭୧
ହେତୁରେ କୃଷ୍ଣକଥା ଗୀତେ, ରଚନା କରନ୍ତି ସମସ୍ତେ । ୭୨
ଏ ଦେଖି ମୁହିଁ ସେ ଶ୍ରଦ୍ଧାରେ, ଶ୍ରୀକୃଷ୍ଣ ଭକ୍ତି କାରଣରେ । ୭୩
ରଚନା କଲଇ ଏ ଗୀତ, କୃଷ୍ଣ ଚରଣେ ଦେଇ ଚିତ୍ତ ।" ୭୪ (୧୪ ଖ)

ତାଙ୍କ ସ୍ୱାମୀ, ପୁତ୍ର ଓ ପୌତ୍ରଙ୍କ ଦ୍ୱାରା ପ୍ରଣୀତ ଓ ସ୍ୱକୃତ ଗ୍ରନ୍ଥ ଗୁଡ଼ିକର ନାମକରଣ ପ୍ରତି ଦୃଷ୍ଟିପାତ କଲେ ଜଣାଯାଏ ଯେ ସପ୍ତଦଶ ଶତାବ୍ଦୀର ମଧ୍ୟଭାଗରୁ ଶ୍ରୀ ଚୈତନ୍ୟ ଦେବ ପ୍ରବର୍ତ୍ତିତ ବୈଷ୍ଣବ ଧର୍ମ ଉତ୍କଳରେ କ୍ରମଶଃ ଆଦର ଓ ପ୍ରଚାର ଲାଭ କରୁଥିଲା ।

## ଭୂପତି ପଣ୍ଡିତ :–

କବି ଭୂପତି ପଣ୍ଡିତ 'ପ୍ରେମ ପଞ୍ଚାମୃତ' ଗ୍ରନ୍ଥର ଦଶମ ଅଧ୍ୟାୟରେ ନିଜର ପରିଚୟ, ସାହିତ୍ୟ ସାଧନା, ପୃଷ୍ଠପୋଷକ ଦିବ୍ୟସିଂହ ଦେବ ଓ ଗ୍ରନ୍ଥ ରଚନା କାଳ ସମ୍ବନ୍ଧରେ ଉଲ୍ଲେଖ କରିଛନ୍ତି । ଯଥା—

"ଏ ମନ ହୋଇଲା ମଧୁପ, ବୈଷ୍ଣବ ଦାସ କବି ଭୂପ ।
ପଣ୍ଡିମା ବିପ୍ର ସାରସ୍ୱତ, ନାମ ଯେ ଭୂପତି ପଣ୍ଡିତ ।
ଶ୍ରୀ ଗଜପତି ଗୌଡ଼େଶ୍ୱର, ଉତ୍କଳ ଦେଶର ଠାକୁର ।
× × ×
ଏ ଖାଉବର ବଇଷ୍ଣବ, ନାମ ଶ୍ରୀ ଦିବ୍ୟସିଂହ ଦେବ ।
ଲକ୍ଷେ ରଜାଙ୍କ ମୌଡ଼ମଣି, ସୁନ୍ଦର ପଣେ ଅଗ୍ରଗଣି ।

---

(୧୪ କ ଓ ଖ) 'ପୁରୁଷୋତ୍ତମ ଚନ୍ଦ୍ରୋଦୟ'; ପ୍ରାଚୀ ସଂସ୍କରଣ ପୃ ୭୩-୭୪

× × ×

ପଣ୍ଡିତ ଧାର୍ମିକ ବିବେକ, ସଙ୍ଗୀତ ବିଦ୍ୟା ସୁରସିକ ।
କାମ ଶାହାସ୍ତ୍ର ଅନୁଭବ, ଶ୍ରୀକୃଷ୍ଣ ରସ ବାକ୍ୟ କବି ।

× × ×

ଏତେ ଲକ୍ଷଣ ସେ ରାଜନ, ତାହାଙ୍କୁ କରି ଦରଶନ ।
କୀର୍ତ୍ତି କବିଭି ବର୍ଣ୍ଣିବାଇ, ଶୁଣି ସନ୍ତୋଷ ନୃପବର ।
ଧନ ବସନ ଭୂମିଦାନ, ଦେଲେ ସେ ହୋଇ ସୁପ୍ରସନ୍ନ ।
ଦେଖି ଅନୁଗ୍ରହ ବିଶେଷ, ଗୁଡ଼ି ଅଇଲୁ ନିଜ ଦେଶ ।
ତାହାଙ୍କ ଅନ୍ନ ଜଳ ଖାଇ, ସୁଖେ ତାହାଙ୍କ ରାଜ୍ୟେ ଥାଇ ।
**କଟକ ନାମେ ରଥିପୁର, ନଗର ପଶ୍ଚିମେ ମୋ ଘର ।**
ପଶ୍ଚିମା ଭାଷାରେ କବିତ୍ଵ, ବଙ୍ଗଳା ଭାଷା ତିଅହୋହ ।
ଉତ୍କଳ ଭାଷା ନବ ଶିକ୍ଷା, ଆମ୍ଭର ବଇଷ୍ଣବ ଦୀକ୍ଷା ।"

ପୁରୀ-ବାସୀ ମହାନ୍ତ ଚୈତନ୍ୟ ଦାସଙ୍କ ଦ୍ଵାରା ପ୍ରୋତ୍ସାହିତ ହୋଇ ସେ ଓଡ଼ିଆ ଭାଷାରେ ବ୍ୟୁତ୍ପତ୍ତି ଲାଭ ପୂର୍ବକ ଏଥିରେ ବିଭିନ୍ନ ଚଉପଦୀ, ଚୌତିଶା ଓ ଗ୍ରନ୍ଥ ରଚନା କରିଥିବା ପୂର୍ବେ ବର୍ଣ୍ଣିତ ହୋଇଅଛି । ତେଣୁ ଏଠାରେ ପୁନରୁକ୍ତି ଅନାବଶ୍ୟକ । ନିମ୍ନ ଉଦ୍ଧୃତ ଅଂଶରୁ ଗ୍ରନ୍ଥ ସମାପ୍ତି ସମୟ ନିର୍ଦ୍ଦିଷ୍ଟ ଭାବରେ ଜଣାଯାଏ ।

"ଶ୍ରୀ ଦିବ୍ୟସିଂହ ରାଜାଙ୍କର, ସମସ୍ତ ଅଷ୍ଟମ ଅଙ୍କର ।
ମକର ମାସ ଶୁକ୍ଳପକ୍ଷ, ତିଥି ତ୍ରୟୋଦଶୀ ପ୍ରତ୍ୟକ୍ଷ ।
ଗୋଧୂଳି ସୋମବାର ଦିନ, ଏ ପୋଥି ହୋଇଲା ସଂପୂର୍ଣ୍ଣ ।"

ଗଣନା ଅନୁସାରେ ୨୯-୧-୧୭୧୪ ତାରିଖ ମାଘ, ଶୁକ୍ଳ ତ୍ରୟୋଦଶୀ ସୋମବାର ଦିନ ପଡ଼ିଥିଲା ଏବଂ ଏହି ଦିନଟି ଦିବ୍ୟସିଂହ ଦେବଙ୍କ ଆଠ ଅଙ୍କରେ ପଡ଼ିଥିଲା । ଓଡ଼ିଆ ଭାଷା ନୂତନ ଭାବରେ ଶିକ୍ଷା କରି ପାଞ୍ଚ ଛଅ ବର୍ଷ ମଧ୍ୟରେ ଏପରି ଉପାଦେୟ ଗ୍ରନ୍ଥ ରଚନା କରି ପାରିବା ଭୂପତି ପଣ୍ଡିତଙ୍କ ବୁଦ୍ଧିମତ୍ତା ଓ କବି ପ୍ରତିଭାର ପରିଚାୟକ ! ଏହି ଗ୍ରନ୍ଥର ଉତ୍କର୍ଷ ଅବବୋଧ ପାଇଁ ପ୍ରାଚୀ ସଂସ୍କରଣର ଦୀର୍ଘ ମୁଖବନ୍ଧ ଦ୍ରଷ୍ଟବ୍ୟ ।

## ଲୋକନାଥ ବିଦ୍ୟାଧର :—

ଲୋକନାଥ ବିଦ୍ୟାଧର ଗଜପତି ଦିବ୍ୟସିଂହଙ୍କ ପାତ୍ର ଜଗନ୍ନାଥ ବିଦ୍ୟାଧର ମହାପାତ୍ରଙ୍କ ପୁତ୍ର ଥିବା ତତ୍‌କୃତ 'ମାଳାବୃତ୍ତ ମନୋହର' ଗ୍ରନ୍ଥର ଚତୁର୍ଥ ଛାନ୍ଦ ଭଣିତାରୁ ଜଣାଯାଏ । ଯଥା —

"ଜଗନ୍ନାଥ ବିଦ୍ୟାଧର ନନ୍ଦନ, ଲୋକନାଥ ବିଦ୍ୟାଧର ରଞ୍ଜନ ।
ଜଗନ୍ନାଥ ବିଦ୍ୟାଧର ଅଗ୍ରଜ ସୁତ, ଲୋକନାଥ ବିଦ୍ୟାଧର
ଆଖ୍ୟା ବିଖ୍ୟାତ ।" (ରସକଳା, ପ୍ରଥମ ଛାନ୍ଦ)

"ଶିଷ୍ଟ ଜଗନ୍ନାଥ ପାଦ ଜଗନ୍ନାଥ ବିଦ୍ୟାଧର ବରସୁତ
ଲୋକନାଥ ବିଦ୍ୟାଧର 'ପଦ୍ମାବତୀ ପରିଣୟ' ବିରଚିତ ।"
'ପଦ୍ମାବତୀ ପରିଣୟ' ତୃତୀୟ ଛାନ୍ଦ

ତାଙ୍କ ଦ୍ୱାରା ବିରଚିତ ତିନିଖଣ୍ଡ ଗ୍ରନ୍ଥ ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇ-ଅଛି । ସେଥି ମଧ୍ୟରେ 'ସର୍ବାଙ୍ଗ ସୁନ୍ଦରୀ' ପ୍ରଥମେ ରଚିତ ହୋଇଥିଲା । କବି କାଣପୁର ରାଜା ଜଗନ୍ନାଥ ହରିଚନ୍ଦନଙ୍କ ପୃଷ୍ଠପୋଷକତା ଲାଭ କରି ସେଠାରେ ଉକ୍ତ ଗ୍ରନ୍ଥ ପ୍ରଣୟନ କରିଥିଲେ । ଏଥିରେ ରଚନା କାଳ ଦିଆଯାଇ ନ ଥିଲେ ମଧ୍ୟ ଜଗନ୍ନାଥ ମହାପ୍ରଭୁଙ୍କ କାଣପୁର ଅବସ୍ଥାନ ବିଷୟ ବର୍ଣ୍ଣିତ ହୋଇଥିବାରୁ ଏହା ପ୍ରାୟ ୧୫୯୨-୯୩ ଖ୍ରୀଷ୍ଟାବ୍ଦରେ ସମାପ୍ତ ହୋଇଥିଲା । ଏହା ଏକ କାଳ୍ପନିକ କାବ୍ୟ ।

ତାଙ୍କ କୃତ ଅନ୍ୟ ଦୁଇଗ୍ରନ୍ଥ ଗଜପତି ଦିବ୍ୟସିଂହ ଦେବଙ୍କ ୧୪ ଅଙ୍କରେ ପ୍ରଣୀତ ହୋଇଥିବା ଉଭୟ ଗ୍ରନ୍ଥରେ ଉଲ୍ଲେଖ ଅଛି ।

(କ) "ଆଗ୍ରୁ ଦିବ୍ୟସିଂହ ଦେବ ଦିବ୍ୟସିଂହ ଛତ୍ରଧାରଣ ଭାରଣ
ଏ ନରେଶ, ଚତୁର୍ଦ୍ଦଶ ଅଙ୍କରେ ସ୍ୱେ
କମ୍ବୁ କଟକ କଟକରେ ହୋଇଛି ବିରଚିତ ।"
(ନୀଳାଦ୍ରିମହୋଦୟ, ୨୧ ଛାନ୍ଦ ଭଣିତା)

(ଖ) "ମୁକୁନ୍ଦଦେବ ରାଜନ ନନ୍ଦନ ଗୁଣଭାଜନ
ଦିବ୍ୟସିଂହ ଦେବ ଜନପତି ଗଜେଶ,
ଚତୁର୍ଦ୍ଦଶ ଅଙ୍କେ ଗୀତ ହୋଇଛି ଏ ବିରଚିତ ।"

ଦିବ୍ୟସିଂହ ଦେବଙ୍କ ୧୪ ଅଙ୍କ ୨୭-୮-୧୬୯୯ ଠାରୁ ୧୬-୮-୧୭୦୦ ପର୍ଯ୍ୟନ୍ତ ଚାଲିଥିଲା । ଏହି ସମୟ ମଧ୍ୟରେ ଉକ୍ତ ଗ୍ରନ୍ଥଦ୍ୱୟ କବିଙ୍କ ପୁରୀ (କମ୍ବୁକଟକ କଟକ) ଅବସ୍ଥାନ କାଳରେ ରଚିତ ହୋଇଥିଲା । ଜଗନ୍ନାଥ ମହାପ୍ରଭୁଙ୍କ ପୁଣ୍ୟ ନୀଳାଚଳ ଧାମରେ ପୁନରଧିଷ୍ଠାନ ଉପଲକ୍ଷ୍ୟେ ଉକ୍ତ ଗ୍ରନ୍ଥ ରଚିତ ହୋଇଥିଲା । କବି ଗଜପତିଙ୍କ ସହିତ ଘନିଷ୍ଠ ଭାବରେ ସଂପୃକ୍ତ ଥିବାରୁ ଉକ୍ତ ସ୍ମରଣୀୟ ଘଟଣାକୁ କବିତା ମାଧ୍ୟମରେ ଲୋକପ୍ରିୟ କରିବା ପାଇଁ ଉଦ୍ୟମ କରିଥିଲେ ।

ଏତଦ୍‌ବ୍ୟତୀତ 'ଛନ୍ଦକଳା' ଓ 'ରସକଳା' ନାମକ ଅନ୍ୟ ଦୁଇଟି କାବ୍ୟ ସେ ରଚନା କରିଥିବାର ଜଣାଯାଏ । (୧୫)

**କାହ୍ନୁଦାସ :—**

କବି କାହ୍ନୁଦାସ ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ମଙ୍ଗଳପୁର ଗ୍ରାମରେ ରଘୁନାଥ ମହାପାତ୍ର ନାମକ ଜନୈକ ବ୍ରାହ୍ମଣ ଗୃହରେ ଖୁର୍ଦ୍ଧା ଗଜପତି ପ୍ରଥମ ମୁକୁନ୍ଦଦେବଙ୍କ ୨୫ ଅଙ୍କ ଶ୍ରାବଣ ଶୁକ୍ଳ, ଏକାଦଶୀ ରବିବାର ଦିନ ଜନ୍ମଗ୍ରହଣ କରିଥିଲେ । ସେ ଓଡ଼ିଶାରେ ବିଶେଷ ଲୋକପ୍ରିୟ ଭଗବତ ବାଣୀରେ 'ରାମରସାମୃତ ସିନ୍ଧୁ' ଗ୍ରନ୍ଥ ରଚନା କରିଥିଲେ । ଗ୍ରନ୍ଥର ନାମକରଣରେ ପ୍ରସିଦ୍ଧ ବୈଷ୍ଣବ ଗ୍ରନ୍ଥ 'ଭକ୍ତିରସାମୃତ ସିନ୍ଧୁ'ର ପ୍ରଭାବ ସ୍ପଷ୍ଟ ଲକ୍ଷିତ ହୁଏ । କବି ଗ୍ରନ୍ଥର ରଚନା କାଳ ସମ୍ବନ୍ଧରେ ଲେଖିଛନ୍ତି—

"ତ୍ରିଂଶ ଅବଦ ବୟସ, କାଳରେ ଏ ଗ୍ରନ୍ଥ ପ୍ରକାଶ ।
କଲି ସଂସାର ଜନ ହିତେ, ଶୁଣି ହରଷ ଲଭ ଚିତ୍ତେ ।
**ଶ୍ରୀ ଦିବ୍ୟସିଂହ ଦେବଙ୍କ ରାଜ୍ୟେ,** ଗଜପତିଙ୍କ ଶୁଭ ରାଜେ ।
**ବିଜୟ ତ୍ରୟୋଦଶ ଅଙ୍କେ,** ଆଷାଢ଼ ମାସ ସିତ ପକ୍ଷେ ।
ଦୁତିୟା ଶ୍ରୀଗୁଣ୍ଡିଚା ଦିନ, ଏ ରାମ ରସାମୃତ ପୂର୍ଣ୍ଣ ।"

ଅତଏବ ୧୬୯୯ ଖ୍ରୀଷ୍ଟାବ୍ଦ ଜୁନ୍ ମାସ ୧୯ତାରିଖରେ ପଡ଼ିଥିବା ଶ୍ରୀଗୁଣ୍ଡିଚା ଦିନ ଉକ୍ତ ଗ୍ରନ୍ଥ ସମାପ୍ତ ହୋଇଥିଲା ।

**ବିପ୍ର କଣ୍ଠ ଦାସ:—**

ବିପ୍ରକଣ୍ଠ ଦାସଙ୍କ କୃତ 'ନଅପୋଇ' ଗ୍ରନ୍ଥରୁ ତାଙ୍କର କୌଣସି ବଂଶ ପରିଚୟ ବା ଆବିର୍ଭାବ କାଳର ସୂଚନା ମିଳେନାହିଁ । କିନ୍ତୁ ତାଙ୍କର ଶିଷ୍ୟ ଦାଶରଥି ଦାସ ସ୍ୱକୃତ 'ବ୍ରଜବିହାର' ଗ୍ରନ୍ଥରେ ତାଙ୍କ ଗୁରୁ କଣ୍ଠଦାସ ଗୋସାଇଁଙ୍କ ନାମ ଅତ୍ୟନ୍ତ ଭକ୍ତି ସହକାରେ ଉଲ୍ଲେଖ କରିଛନ୍ତି ।

"ଗୁରୁଦେବ କଣ୍ଠଦାସ ପଦେ ସେବ (ଏଥୁ ବୋଲି)
କଣ୍ଠଦାସ ଗୋସାଇଁଙ୍କ ଚରଣ ଆଶ୍ରୟେ

---

(୧୫) କବିଙ୍କ ସମ୍ବନ୍ଧରେ ଅଧିକ ତଥ୍ୟ ଜାଣିବା ପାଇଁ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ କୃତ 'ଓଡ଼ିଆ ସାହିତ୍ୟର ଇତିହାସ' ଦ୍ୱିତୀୟ ଭାଗ ପୃ ୧୧୧—୧୨୫ ଦ୍ରଷ୍ଟବ୍ୟ ।

ଦାଶରଥି ଦାସର ଯେ ସ୍ମୃତ ହୃଦୟେ (୪ର୍ଥ ବୋଲି) ।
ଶ୍ରୀଗୁରୁ କଣ୍ଠଦାସ ଗୋସାଇଁ ଚରଣ ପ୍ରସାଦୁ (୭ମ ବୋଲି)"

ଦାଶରଥି ଦାସ ଗଜପତି ଗୋପୀନାଥ ଦେବଙ୍କ ରାଜତ୍ୱର ୩ଅଙ୍କରେ ବା ୧୭୨୦ ଖ୍ରୀଷ୍ଟାବ୍ଦରେ ଏହାର ଚତୁର୍ଥ ବୋଲି ପର୍ଯ୍ୟନ୍ତ ଶେଷ କରିଥିଲେ । ଦିବ୍ୟସିଂହ ଦେବ ୧୭୧୭ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଏପରି ଅବସ୍ଥାରେ ବିପ୍ରକଣ୍ଠ ଦାସଙ୍କୁ ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଦଶକର କବିରୂପେ ଗ୍ରହଣ କରିବା ସର୍ବଥା ସଙ୍ଗତ । ଏହା କୃଷ୍ଣଲୀଳା ବିଷୟକ ଏକ ଗ୍ରନ୍ଥ ଏବଂ ଏପର୍ଯ୍ୟନ୍ତ ସନ୍ଧାନ ମିଳିଥିବା 'ପୋଇ' ଗୁଡ଼ିକ ମଧ୍ୟରେ ପ୍ରାଚୀନତମ । 'ସ୍ମରଣ ମଙ୍ଗଳ' ନାମକ ଗୋଟିଏ ପୁସ୍ତକ ଜନୈକ ବିପ୍ରକଣ୍ଠ ଦାସଙ୍କ ଦ୍ୱାରା ରଚିତ ହୋଇଥିବାର ଜଣାଯାଏ । ଯଥା:- "କହଇ ବିପ୍ରକଣ୍ଠ ଦାସ, ନିତ୍ୟ ତାହାର ଅଧ୍ୟାଶେଷ ।' ଏହାର ଗୃରି ଅଧ୍ୟାୟ ମାତ୍ର ମିଳିଛି । ଚତୁର୍ଥ ଅଧ୍ୟାୟର ପୁଷ୍ପିକା ଦେଉଛି "ଇତି ଶ୍ରୀ ଚତୁର୍ଭୁଜପଦେଶେ ବ୍ରଜ ଚରିତ କଥନେ ଶ୍ରୀ ଗୋବିନ୍ଦ ଲୀଳାମୃତ ସ୍ମରଣ ମଙ୍ଗଳ ୭୪ଦଣ୍ଡ ତ୍ୟାଗର ମାନସି ସେବା ଲକ୍ଷଣେ ନାମ ଚତୁର୍ଥୋଽଧ୍ୟାୟଃ । ଉଭୟ ବିପ୍ରକଣ୍ଠ ଦାସ ଏକ ଓ ଅଭିନ୍ନ ଥିବାର ମନେହୁଏ ।

## କେଶବରାଜ ହରିଚନ୍ଦନ:—

ଗଞ୍ଜାମ ଅନ୍ତର୍ଗତ ସୁରଙ୍ଗୀ ରାଜ୍ୟର ଅଧିପତି କେଶବରାଜ ହରିଚନ୍ଦନ 'ରସସିନ୍ଧୁ ସୁଲକ୍ଷଣା' ନାମକ ଏକ କାଳ୍ପନିକ କାବ୍ୟ ଦିବ୍ୟସିଂହ ଦେବଙ୍କ ଅ୨୭ଙ୍କ ରେ ରଚନା କରିଥିଲେ । ଏ ଗ୍ରନ୍ଥଟି ଏ ପର୍ଯ୍ୟନ୍ତ ଅପ୍ରକାଶିତ ତଥା ଅଜ୍ଞାତ ଅବସ୍ଥାରେ ରହିଛି । ମିଉଜିୟମ ପୋଥିଭଣ୍ଡାରରେ ସଂରକ୍ଷିତ ଏହାର ଖଣ୍ଡିଏ ପୋଥିରେ ଗ୍ରନ୍ଥରଚନା କାଳ ସମ୍ବନ୍ଧରେ ନିମ୍ନଲିଖିତ ବିବରଣ ମିଳେ—

"ବୀର ଶ୍ରୀଦିବ୍ୟସିଂହ ଗଜେଶ, ସପ୍ତବିଂଶ ଅଙ୍କେ ମାଘ ମାସ ।
ଶୁକ୍ଳପକ୍ଷେ ଦଶମୀ ବୁଧବାରେ । ରସସିନ୍ଧୁ ସୁଲକ୍ଷଣା ପ୍ରକାଶ ହେ ।"

ଗଣନା ଅନୁସାରେ ୧୭୧୯ମସିହା ଜାନୁୟାରୀ ୨୪ତାରିଖ ଦିନ ମାଘ ଶୁକ୍ଳ ଦଶମୀ ବୁଧବାର ପଡ଼ିଥିଲା । ସେ ତାରିଖ ଦିବ୍ୟସିଂହ ଦେବଙ୍କ ୨୭ ଅଙ୍କ (୪-୯-୧୭୦୯ରୁ ୨୪-୮-୧୭୧୦)ର ଅନ୍ତର୍ଭୁକ୍ତ । ତାଙ୍କ କୃତ ଅନ୍ୟକୌଣସି ରଚନାର ସନ୍ଧାନ ଏପର୍ଯ୍ୟନ୍ତ ମିଳିନାହିଁ । କେଶବରାଜ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ସମକାଳୀନ ଥିଲେ ।

## ଦୀନକୃଷ୍ଣ ଦାସ :—

ଓଡ଼ିଆ ସାହିତ୍ୟଭଣ୍ଡାରକୁ ସ୍ୱୀୟ ବହୁ କୃତି ସମ୍ଭାର ଦ୍ୱାରା ସମୃଦ୍ଧ କରିଥିବା ଦୀନକୃଷ୍ଣ ଦାସ ଏ ଜାତିର ଚିରସ୍ମରଣୀୟ । ସେ ଜାତରେ ଥିଲେ ରାଜପୁତ

ଓ ତାଙ୍କ ପୂର୍ବପୁରୁଷମାନେ ସୁବର୍ଣ୍ଣରେଖା ନଦୀ ତୀରବର୍ତ୍ତୀ ଜଳେଶ୍ୱର ଅଞ୍ଚଳରେ ସ୍ଥାୟୀ ଭାବରେ ବସବାସ କରୁଥିଲେ । ସେ ମଧୁସୂଦନ ଦାସଙ୍କ ଜ୍ୟେଷ୍ଠ ପୁତ୍ର ଥିଲେ । ତାଙ୍କର ଜ୍ଞାତି ଭାଇମାନେ ତାଙ୍କର ଜନ୍ମଭୂର ଆଦର ନ କରିବାରୁ ସେ ଗୃହ ତ୍ୟାଗ ପୂର୍ବକ ଓଡ଼ିଶା ବା ଖୁରୁଧା ରାଜାଙ୍କ ରାଜ୍ୟକୁ ପୃଷ୍ଠପୋଷକତା ଲାଭ ଆଶାରେ ଆସିଥିଲେ । ସେ ଗ୍ରାମନଗରୀ ଦଣ୍ଡପାଟ ବା ଅଧୁନା ଢେଙ୍କାନାଳ ରାଜ୍ୟରେ ପ୍ରବେଶ କରି ବ୍ରାହ୍ମଣୀ ନଦୀ କୂଳବର୍ତ୍ତୀ ଏକଘରିଆ ଗ୍ରାମରେ କନକେଶ୍ୱର ମହାଦେବଙ୍କ ସମୀପବର୍ତ୍ତୀ ଏକ ସ୍ଥାନରେ ବାସ କରିଥିଲେ । ପ୍ରାଚୀନ ଗ୍ରାମନଗରୀ ଦୁର୍ଗର ଧ୍ୱଂସାବଶେଷର ପୂର୍ବଆଡ଼କୁ ଅନତିଦୂରରେ ରାମଚଣ୍ଡୀ ଠାକୁରାଣୀ ଓ କନକେଶ୍ୱର ମହାଦେବଙ୍କ ଦେଉଳଦ୍ୱୟ ଓ କବିଙ୍କ ବାସସ୍ଥାନ ଏକଘରିଆ ଗ୍ରାମ ବ୍ରାହ୍ମଣୀ ନଦୀକୂଳରେ ବିଦ୍ୟମାନ । ସେଠାରେ ସେ ଢେଙ୍କାନାଳ ବା ଗ୍ରାମନଗରୀ ରାଜ୍ୟର ଅଧିପତି ବଳରାମ ସାମନ୍ତସିଂହାରଙ୍କ ଆଶ୍ରୟ ଲାଭ କରି ବାଣୀ ଆରାଧନାରେ ନିରତ ହୋଇଥିଲେ । ଉକ୍ତ ବଳରାମ ଖୁରୁଧା ରାଜା ବଳଭଦ୍ର ଦେବଙ୍କ ସମସାମୟିକ ଥିଲେ ।

"ତାହାଙ୍କ ଅନ୍ତେ ନୃପମଣି, ଓଡ଼ିଶା ରାଜ୍ୟକୁ କାରେଣି ।
**ବଳଭଦର ଦେବ ନାମ,** ଖୋରଧା କଟକେ ବିଶ୍ରାମ ।
× × ×
**ସେ ରାଜା ପାଞ୍ଚ ଅଙ୍କ ଠାରେ,** ଥିଲା ସୁବ୍ରହ୍ମ ନଦୀ ତୀରେ
ଗ୍ରାମ ଯେ ନଗ୍ରୀ ଦଣ୍ଡପାଟ, ଖୋର୍ଧାକୁ ଦ୍ୱିଶତକୋଶ ବାଟ ?
ସେ ହଦଗଡ଼େ କରି ଘର, **ପୁରୁଷୋତ୍ତମ** ବିଦ୍ୟାଧର ।
ତାହାଙ୍କ ପୁତ୍ର ଅନୁପମ, ଯୁଜନ୍ତେ **ନୀଳକଣ୍ଠ ନାମ** ।
ଏ କଛି ଦିନ ରାଜ୍ୟ କଲେ, ବୈକୁଣ୍ଠ ଭୁବନକୁ ଗଲେ ।
ତାହାଙ୍କ ପୁତ୍ର ଅନୁପମ, ସାମନ୍ତ **ସଦାଶିବ** ନାମ ।
× × ×
ଧର୍ମ କୀରତି ମାନ କଲେ, ସ୍ୱର୍ଗ ଭୁବନକୁ ସେ ଗଲେ ।
ତାହାଙ୍କ ପୁତ୍ର ଅନୁପମ, ଯୁଜନ୍ତେ **ବଳରାମ** ନାମ
ପଦ ଯେ **ସାମନ୍ତ ସିଂହାର,** ବାସନା ଅଛି ଅଗୋଚର ।
× × ×
ଯାହାକୁ ମୋର ପ୍ରତିଆଶା, ତେଣୁଟି କହିଲି ଏ ଭାଷା ।
× × ×
ଯାହାର ଅନ୍ନ ବସ୍ତ୍ର ଖାଇ, ତା ସୁଖ ଚିନ୍ତା କରୁଥାଇ ।" (୧୬)

(୧୬) ପ୍ରବନ୍ଧାବଳୀ, ୮ ଶ୍ୟାମସୁନ୍ଦର ରାଜଗୁରୁ, ପୃ ୭୪ ୭୫ ।

## ଢେଙ୍କାନାଳ ରାଜବଂଶ

ପୁରୁଷୋତ୍ତମ ବିଦ୍ୟାଧର

|

ନୀଳକଣ୍ଠ ବିଦ୍ୟାଧର

|

ସଦାଶିବ ସାମନ୍ତ

|

ବଳରାମ ସାମନ୍ତସିଂହାର

ବଳରାମଙ୍କ ପ୍ରପୌତ୍ର ନରସିଂହ ଭ୍ରମରବର ରାୟ ଗଜପତି ମୁକୁନ୍ଦଦେବଙ୍କ ରାଜତ୍ୱର ଶେଷ ଭାଗରେ (୧୬୮୦-୧୬୮୮) ରାଜତ୍ୱ କରୁଥିବାରୁ ବଳରାମ ସାମନ୍ତ ସିଂହାର ବଳଭଦ୍ର ଦେବଙ୍କ ୫ ଅଙ୍କ ଅର୍ଥାତ୍ ୧୬୫୦-୧୬୫୧ରେ ରାଜତ୍ୱ କରୁଥିବା ଅସମ୍ଭବ ନୁହେଁ । ବୋଧହୁଏ ନରସିଂହଙ୍କ ପିତା ଓ ପିତାମହଙ୍କ ରାଜତ୍ୱ ଅଳ୍ପ କାଳ ସ୍ଥାୟୀ ଥିଲା । ଅତଏବ ୧୬୫୦ ଖ୍ରୀଷ୍ଟାବ୍ଦ ପରେ ଦୀନକୃଷ୍ଣ ଦାସ ନିଶ୍ଚିନ୍ତରେ ରସ ବାଣୀ ଆରାଧନାରେ ମନୋନିବେଶ କରିଥିଲେ ।

'ରସକଲ୍ଲୋଳ'ର ପ୍ରଥମ ଅଧ୍ୟାୟରେ ସେ ତାଙ୍କ କୃତ ଗ୍ରନ୍ଥ ଗୁଡ଼ିକର ନାମ ଓ ପ୍ରତ୍ୟେକର ପଦ ସଂଖ୍ୟା ପ୍ରଦାନ କରିଛନ୍ତି । ସେ ଗୁଡ଼ିକ ନାମ ନିମ୍ନରେ ଉଲ୍ଲେଖ କରାଗଲା । 'ଗୁଣସାଗର' ତାଙ୍କର ପ୍ରଥମ ରଚନା । ତତ୍ପରେ ସେ ଯଥାକ୍ରମେ 'ଭାବ ସମୁଦ୍ର'; 'ଭୂତ କେଳି'; 'ସଂସାର ବୋଧନ'; 'ଅମୃତ ସାଗର'; 'ମୁକୁତି ସାଗର'; 'ପ୍ରସ୍ତାବ ସାଗର' ବା 'ପ୍ରସ୍ତାବ ସିନ୍ଧୁ'; 'ତତ୍ତ୍ୱ ସାଗର'; 'ଜଗମୋହନ ଛାନ୍ଦ'; ଜାମ୍ବୁବତୀ ବିଭା'; 'ବୃନ୍ଦାବନ ରାସ' 'କଂସ ବଧ'; 'ଜ୍ଞାନ ସାଗର'; 'ଧର୍ମସାଗର'; 'ସତ୍ୟବତୀ ବିଭା'; ନାମରତ୍ନ ଗୀତା' ଓ 'ରସ କଲ୍ଲୋଳ' ରଚନା କରିଥିଲେ । ଏହି ଗ୍ରନ୍ଥ ତାଲିକା, 'ମିଡ଼୍‌କେଞ୍ଜି ସଂଗ୍ରହ' ତଥା ପୁରୀର 'ରଘୁନନ୍ଦନ ପୁସ୍ତକାଗାର'ରେ ରକ୍ଷିତ 'ରସକଲ୍ଲୋଳ' ଗ୍ରନ୍ଥରେ ଦେଖାଯାଏ । କିନ୍ତୁ ସ୍ୱର୍ଗତଃ ଶ୍ୟାମସୁନ୍ଦର ରାଜଗୁରୁଙ୍କ ଦ୍ୱାରା ଉଦ୍ଧୃତ ଅଂଶରେ 'ଭକ୍ତିସାଗର' ଓ 'ମହିମା ସାଗର' ନାମକ ଅନ୍ୟ ଦୁଇଟି ଗ୍ରନ୍ଥର ନାମ ମିଳେ । (୧୭)

କବିଙ୍କ ଭାଷା ସରଳ, ସହଜ, ଆଡ଼ମ୍ବର ଓ ଅଳଙ୍କାରବତା ବର୍ଜିତ । ସେ ସାଧାରଣତଃ ଅତି ସଂକ୍ଷିପ୍ତ ଓ ସଂଯତ ଭାବରେ ଏବଂ ଦୁଇ ଚାରି ପଦରେ

---

(୧୭) ପ୍ରବନ୍ଧାବଳୀ, ୬ ଶ୍ୟାମସୁନ୍ଦର ରାଜଗୁରୁ, ପୃ ୭୨-୭୮ ।

କୁନ୍ତୀ; ମାଦ୍ରୀ; ଚନ୍ଦ୍ରାବଳୀ ପ୍ରଭୃତି ନାୟିକାମାନଙ୍କର ବର୍ଣ୍ଣନା ଶେଷ କରିଛନ୍ତି । ସେ ବହୁ ସଂସ୍କୃତ ଶ୍ଳୋକ ଉଦାହରଣ ସ୍ୱରୂପ ପ୍ରଦାନ କରିଥିବାରୁ ସଂସ୍କୃତ ସାହିତ୍ୟରେ ତାଙ୍କର ପ୍ରବେଶ ଥିବାର ଜଣାଯାଏ ।

ସେ ଦିବ୍ୟସିଂହ ଦେବଙ୍କ ସପ୍ତଦଶ ଅଙ୍କରେ ତାଙ୍କ 'ନାମରତ୍ନ ଗୀତା' ସମାପ୍ତ କରିଥିଲେ । ଯଥାଃ—

"ଯେଉଁକାଳେ ସପ୍ତଦଶ ଅଙ୍କ ହେବ ଜାଣ, ଯୁଧିଷ୍ଠିର ନାମେ ଥିବ ଦିବ୍ୟସିଂହ ଗଣ' ୨-୯-୧୭୦୧ରୁ ୨୩-୮-୧୭୦୨ ପର୍ଯ୍ୟନ୍ତ ଗଜପତି ଦିବ୍ୟସିଂହ ଦେବଙ୍କ ସପ୍ତଦଶ ଅଙ୍କ ପ୍ରଚଳିତ ଥିଲା । 'ନାମରତ୍ନ ଗୀତା' ରଚନା ପୂର୍ବରୁ ସେ ପ୍ରାୟ ଅର୍ଦ୍ଧ ଶତାବ୍ଦୀ ବ୍ୟାପୀ କବିଜୀବନ ମଧ୍ୟରେ ୧୫/୨୦ ଖଣ୍ଡ ଗ୍ରନ୍ଥ ରଚନା କରି ସାରିଥିବେ । ସେ ସପ୍ତଦଶ ଶତାବ୍ଦୀର ଜଣେ ପ୍ରସିଦ୍ଧ ଲେଖକ ହେଲେ ମଧ୍ୟ ତାଙ୍କର ଅଧିକାଂଶ ରଚନା ଏପର୍ଯ୍ୟନ୍ତ ଅପ୍ରକାଶିତ ଅବସ୍ଥାରେ ରହିବା ଦୁଃଖ ଓ ପରିତାପର ବିଷୟ ।

## କବିସମ୍ରାଟ୍ ଉପେନ୍ଦ୍ରଭଞ୍ଜଃ—

କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ଘୁମୁସରର ପ୍ରସିଦ୍ଧ ରାଜକବି ଧନଞ୍ଜୟ ଭଞ୍ଜଙ୍କର ପୌତ୍ର ଓ ନୀଳକଣ୍ଠ ଭଞ୍ଜଙ୍କର ପୁତ୍ର ଥିଲେ । ନୀଳକଣ୍ଠ ନିଜ ପିତା ଷଷ୍ଠି ବର୍ଷ ବୟସ୍କ ବୃଦ୍ଧ ଧନଞ୍ଜୟଙ୍କୁ ମଗଚ ୧୭୦୧ରେ ରାଜପଦରେ ଅଭିଷିକ୍ତ ହୋଇଥିଲେ । କିନ୍ତୁ ତିନିବର୍ଷ କାଳ ରାଜସୁଖ ଉପଭୋଗ କରି ଖ୍ରୀଷ୍ଟ ୧୭୦୪ରେ ଭଞ୍ଜବଂଶୀୟ ଘନ ଭଞ୍ଜଙ୍କ ଦ୍ୱାରା ରାଜ୍ୟରୁ ବିତାଡ଼ିତ ହୋଇଥିଲେ । ଘନଭଞ୍ଜ ୧୭୦୬ ରୁ ୧୭୫୦ ପର୍ଯ୍ୟନ୍ତ ଘୁମୁସର ଶାସନ କରିଥିଲେ । ବିତାଡ଼ିତ ନୀଳକଣ୍ଠ ଓ ତଦୀୟ ପୁତ୍ର ଉପେନ୍ଦ୍ର ନୟାଗଡ଼ର ମାଳିସାହି ଗ୍ରାମରେ ବାସ କରିଥିଲେ । ସେଠାରେ ଅବସ୍ଥାନ ସମୟରେ 'ରାମତାରକ' ମନ୍ତ୍ର ଜପ ଦ୍ୱାରା ସିଦ୍ଧି ଲାଭ କରି ଅଦ୍ଭୁତ କବିତ୍ୱ ଶକ୍ତି ଲାଭ କରିଥିବାର ଜନଶ୍ରୁତି ରହିଛି । ନୟାଗଡ଼ର ତତ୍କାଳୀନ ରାଜା ପୁରୁଷୋତ୍ତମ ସିଂହ ମାନଧାତା ଉପେନ୍ଦ୍ରଙ୍କ କବିତ୍ୱ ଓ ପାଣ୍ଡିତ୍ୟରେ ମୁଗ୍ଧ ହୋଇ ତାଙ୍କୁ ଆଶ୍ରୟ ଦେଇଥିଲେ ।

ଉପେନ୍ଦ୍ରଙ୍କ ଜନ୍ମ ସମୟ ସ୍ଥିର ରୂପେ ନିର୍ଣ୍ଣୟ କରିବା ପାଇଁ କୌଣସି ବିଶ୍ୱାସଯୋଗ୍ୟ ଉପାଦାନ ମିଳିନାହିଁ । ଧନଞ୍ଜୟ ୯୦ ବର୍ଷରେ ୧୭୦୧ରେ ନିହତ ହୋଇଥିବାରୁ ସେ ସମୟକୁ ତାଙ୍କ ପୁତ୍ର ନୀଳକଣ୍ଠଙ୍କ ବୟସ ଅନ୍ତତଃ ୫୦/୬୦ ଓ ଉପେନ୍ଦ୍ରଙ୍କ ବୟସ ଅନ୍ତତଃ ୩୦ ବର୍ଷ ହୋଇଥିବାର ଧରିଗଲେ ଉପେନ୍ଦ୍ର ପ୍ରାୟ ୧୬୭୧ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିବେ । ଉପେନ୍ଦ୍ର ଭଞ୍ଜଙ୍କ 'ରସଲେଖା' ଦିବ୍ୟସିଂହ ଦେବଙ୍କ ୨୭ ଅଙ୍କରେ ସମାପ୍ତ ହୋଇଥିବାର ଜଣାଯାଏ ।

"ବିଜୟସିଂହ ଗଜପତି ଅଙ୍କ ସପତଚିଂଶତି ଶେଷ ଛନେ ଶେଷ ଏହୁ ଗୀତ" ତାଙ୍କର ୨୭ଅଙ୍କ ୪-୯-୧୭୦୯ରୁ ୨୪-୮-୧୭୮୦ପର୍ଯ୍ୟନ୍ତ ଚାଲିଥିଲା । ଉପେନ୍ଦ୍ରଙ୍କ ସମକାଳୀନ ବିଶ୍ୱନାଥ ଖୁଣ୍ଟିଆ ୧୭୦୯ରେ ରଚିତ ତାଙ୍କ "ବିଚିତ୍ର ରାମାୟଣରେ" ଭଞ୍ଜଙ୍କ 'ଚନ୍ଦ୍ରଚୋପାଭୂଷଣ'ର ନାମ ଉଲ୍ଲେଖ କରିଛନ୍ତି । ଅତଏବ ଉପେନ୍ଦ୍ର, ବିଜୟସିଂହଙ୍କ ରାଜତ୍ୱ ମଧ୍ୟରେ ବହୁ ଉପାଦେୟ କାବ୍ୟ, ଚଉପଦୀ, ଚଉତିଶା ପ୍ରଭୃତି ରଚନା କରି ଅକ୍ଷୟ ଯଶଃ ଲାଭ କରିଥିଲେ ।

କବିବର ଉପେନ୍ଦ୍ର ଭଞ୍ଜଙ୍କ ରଚନାବଳୀ ସାଧାରଣତଃ ପାଞ୍ଚଟି ଶ୍ରେଣୀରେ ବିଭକ୍ତ କରାଯାଇଛି ।

**ଗୀତିକା:**— ଛ ପୋଇ, ଷୋଳ ପୋଇ, ଗାହାଣିଦହା, ଚଉତିଶା ସମୂହ, ଚଉପଦୀ ଭୂଷଣ, ଚଉପଦୀଚନ୍ଦ୍ର ।

**ପୌରାଣିକ କାବ୍ୟ:**— ଦ୍ୱାଦଶାକ୍ଷରସ୍ତବ, ଅବନାରସତରଙ୍ଗ, ବ୍ରଜଲୀଳା, ରାମଲୀଳାମୃତ, କୃଷ୍ଣବିହାର, ରହାସ ଲୀଳା, କଳାକଉତୁକ, ବୈଦେହୀଶ ବିଳାସ ।

**କାଳ୍ପନିକ କାବ୍ୟ:**— ପ୍ରେମମଞ୍ଜରୀ, ରସମଞ୍ଜରୀ, ଚିତ୍ରଲେଖା, ରସଲେଖା, ସୁବର୍ଣ୍ଣ ରେଖା, ଚନ୍ଦ୍ରରେଖା, ଲାବଣ୍ୟବତୀ, ସୁବତୀ, ମୁକ୍ତାବତୀ, ଇଚ୍ଛାବତୀ, କଳାବତୀ, ଶୋଭାବତୀ, ଚନ୍ଦ୍ରକଳା, କାମକଳା ମନୋରମା, ପ୍ରେମଲତା, ପ୍ରେମସୁଧାନିଧି, ରସିକହାରାବଳୀ, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ତ୍ରୈଲୋକ୍ୟ ମୋହିନୀ ।

**ଆଳଙ୍କାରିକ କାବ୍ୟ:**— ଛାନ୍ଦଭୂଷଣ, ଚିତ୍ରକାବ୍ୟବନ୍ଧୋଦୟ, ରସପଞ୍ଚକ ।

**ବିବିଧ ରଚନା:**— ଷଡ଼ଋତୁ, ଗୀତାଭିଧାନ ଓ ପୁରୁଷୋତ୍ତମ ମାହାତ୍ମ୍ୟ, (୧୮) ତାଙ୍କର ପୌରାଣିକ କାବ୍ୟ ସମୂହ ମଧ୍ୟରେ 'ବୈଦେହୀଶ ବିଳାସ' କାବ୍ୟ ଓ କାଳ୍ପନିକ କାବ୍ୟଗୁଡ଼ିକ ମଧ୍ୟରେ 'ଲାବଣ୍ୟବତୀ' ଓ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟ ଦ୍ୱୟ ଅଦ୍ୱିତୀୟ । ତାଙ୍କ ପିତାମହ କୃତ 'ରଘୁନାଥ ବିଳାସ'; 'ବୈଦେହୀଶ ବିଳାସ' ଦ୍ୱାରା ଲୋକନାଥ ବିଦ୍ୟାଧର କୃତ 'ସର୍ବାଙ୍ଗ ସୁନ୍ଦରୀ' କାବ୍ୟ, ଭଞ୍ଜଙ୍କ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' ଦ୍ୱାରା, କବିବର ବିଷ୍ଣୁଦାସ କୃତ ଓ ବାଣପୁର ରାଜା ରଘୁନାଥ ହରିଚନ୍ଦନଙ୍କ

---

(୧୮) ପଣ୍ଡିତ ଶ୍ରୀ ବିନାୟକ ମିଶ୍ରଙ୍କ ପ୍ରଣୀତ ଓଡ଼ିଆ ସାହିତ୍ୟର ଇତିହାସ ପୃ ୧୨୪ ।

ନାମରେ ଭଣିତ ପ୍ରସିଦ୍ଧ 'ଲୀଳାବତୀ' କାବ୍ୟ ଭଞ୍ଜଙ୍କ ଲାବଣ୍ୟବତୀ ଦ୍ୱାରା ମ୍ଳାନ ଲାଭ କରିଥିଲା। ଭଞ୍ଜଙ୍କ 'ବ' ଅକ୍ଷର ଆଦ୍ୟରେ ରଖିଥିବା ବିରାଟ 'ବୈଦେହୀଶ ବିଳାସ' କାବ୍ୟ 'ସ' ଅକ୍ଷରରେ ଆରମ୍ଭ ହୋଇଥିବା 'ସୁଭଦ୍ରା ପରିଣୟ' ଓ ଆଦ୍ୟ ଓ ପ୍ରାନ୍ତରେ 'କ' ଥିବା 'କଳାକଉତୁକ' କାବ୍ୟଦ୍ୱୟର ଆବିର୍ଭାବରେ ଦୀନକୃଷ୍ଣଙ୍କ 'କ' ଅକ୍ଷରରେ ଆରମ୍ଭ 'ରସକଲ୍ଲୋଳ' କାବ୍ୟର ଗୌରବ ଓ ଖ୍ୟାତି ଅନେକ ପରିମାଣରେ ହ୍ରାସ ଲାଭ କରିଥିଲା। ଭଞ୍ଜଙ୍କ 'ରସପଞ୍ଚକ' ଓଡ଼ିଆ ଭାଷାରେ ରଚିତ ପ୍ରଥମ ଅଳଙ୍କାର ଗ୍ରନ୍ଥ। ଭଞ୍ଜବରଙ୍କ 'ଗୀତାଭିଧାନ' ପ୍ରଥମ ଓଡ଼ିଆ ଶବ୍ଦକୋଷ, ତାଙ୍କର 'ଚିତ୍ର କାବ୍ୟ ବନ୍ଧୋଦୟ' ଓଡ଼ିଆ ଭାଷାରେ ଏକ ନୂତନ ରଚନା ଶୈଳୀର ପ୍ରବର୍ତ୍ତକ।

ଅନନ୍ୟସାଧାରଣ "ଶବ୍ଦ ବୈଭବ, ବିଶାଳ ସଂସ୍କୃତ ସାହିତ୍ୟରେ ବ୍ୟବହୃତ ବହୁବିଧ ଅଳଙ୍କାରର ସମାବେଶ, ବିଚିତ୍ର ରଚନା ଭଙ୍ଗୀ, ବିରାଟ କଳ୍ପନା ବିଳାସ, ଭାଷାର ଚମତ୍କାରିତା, ନାନାବିଧ ରାଗ ଓ ବୃତ୍ତର ପ୍ରୟୋଗ ଦ୍ୱାରା ଭଞ୍ଜକବି ସଂସ୍କୃତ ପାଣ୍ଡିତ୍ୟାଭିମାନୀ ସୁଧୀବର୍ଗଙ୍କ ଚିତ୍ତ ରଞ୍ଜନ କରିଥିଲେ। ସେ ନିଜର ମହନୀୟ କୃତି ସମୂହ ଦ୍ୱାରା ଓଡ଼ିଆ ଭାଷାର ଶବ୍ଦାଡମ୍ବର ପ୍ରକାଶ କ୍ଷମତା, ଆଳଙ୍କାରିକତ ଓ ସଙ୍ଗୀତ ପ୍ରାଣତା ସମ୍ୟକ୍ ବିକାଶ ସାଧନ ପୂର୍ବକ ଏହାକୁ ବହୁ ପରିମାଣରେ ସଂସ୍କୃତ ସାହିତ୍ୟର ସମକକ୍ଷ କରିବା ପାଇଁ କ୍ଷମ ହୋଇଥିଲେ। ସେ ପାରିବାରିକ ଚକ୍ରାନ୍ତ ଫଳରେ କ୍ଷୁଦ୍ର ଘୁମୁସର ରାଜ୍ୟ ଉପରେ ନଶ୍ୱର ଅଧିକାର ହରାଇ ବିରାଟ ଓଡ଼ିଆ ସାହିତ୍ୟ ରାଜ୍ୟର ଶାଶ୍ୱତ ସାର୍ବଭୌମତ୍ୱ ଲାଭ କରି ପାରି- ଥିଲେ। ତେଣୁ ତାଙ୍କର କବି ସମ୍ରାଟ୍ ପଦବୀ ଯଥାର୍ଥ। କିନ୍ତୁ ଏହି ବାଣୀ ବରପୁତ୍ରଙ୍କର ଅଧିକାଂଶ ରଚନା ଏ ପର୍ଯ୍ୟନ୍ତ ଅଜ୍ଞାତ ଅବସ୍ଥାରେ ରହି ଓଡ଼ିଆ ଜାତି ତାଙ୍କ ପ୍ରତିଭାର ଯଥୋଚିତ ସମ୍ମାନ ପ୍ରଦର୍ଶନ କରିନାହିଁ।

## ପୁରୁଷୋତ୍ତମ ସିଂହ ମାନଧାତା—

ସେ ନୟାଗଡ଼ର ରାଜା ଥିଲେ। ତାଙ୍କ କୃତ 'ଶୋଭାବତୀ' ନାମକ ଦଶ ଛାନ୍ଦ ବିଶିଷ୍ଟ ଖଣ୍ଡିଏ କାବ୍ୟ ଏ ପର୍ଯ୍ୟନ୍ତ ମିଳିଛି। ଏହାର ଦ୍ୱିତୀୟ ଛାନ୍ଦ ଶେଷରେ ଉକ୍ତି 'ବଘେଲା କୁଳ ଈଶ ମାନଧାତା ଭଣି ହେ' ଅର୍ଥାତ୍ ସେ ବଘେଲ କୁଳ ସମ୍ଭୂତ ଥିଲେ। ଏହାର ନବମ ଛାନ୍ଦ ଭଣିତାରେ ନୟାଗଡ଼ର ପ୍ରସିଦ୍ଧ ଶିବ ଲଡ଼ୁକେଶ୍ୱରଙ୍କ ସ୍ତୁତି ରହିଛି—

"ପୂର୍ବେ ଯେ ରାମଚନ୍ଦ୍ରରେ ପୂଜିତ, ଲଡ଼ୁକେଶ୍ୱର ନାମରେ ସାକ୍ଷାତ୍
ନବ ଦୁର୍ଗର ପାଳନ କରିତା, ପରଂପର ସେହୁ ଇଷ୍ଟ ଦେବତା

ତାଙ୍କ ପାଦ ଚନ୍ଦ
ଭଣିଲେ ପୁରୁଷୋତ୍ତମ ନୃପତି ।"

ଗ୍ରନ୍ଥ ଶେଷ ବା ଦଶମ ଛାନ୍ଦ ଭଣିବାବେଳେ ରାମଚନ୍ଦ୍ରଙ୍କୁ ସ୍ତୁତି କରାଯାଇଛି ।

"ହିମଶିର ଶିରଧର କାଣ୍ଡକୋଦଣ୍ଡଧର ହରରୂପ କୋଦଣ୍ଡଖଣ୍ଡନକାରୀ
ସୀତା ଶୀତାଂଶୁମୁଖୀ ସଙ୍ଗେ ନର ଉପେକ୍ଷି ହୋଇଲେ ବନ ବେହାରୀ
ସାଧୁ ଜନେ
ଚଢ଼େ ଚନ୍ଦ୍ର ସେ ଯେମଣି ପାଷାଣ କଲେ ସେ ତରୁଣୀ
ଧ୍ୟାୟି ସେ ପଦଯୁଗ ପୁରୁଷୋତ୍ତମ ସିଂହ ମାନଧାତା ଭଣି ଯେ ।"

କିମ୍ବଦନ୍ତୀ ଅନୁସାରେ କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ସ୍ୱରାଜ୍ୟରୁ ନିର୍ବାସିତ ହୋଇ ଏହାଙ୍କ ଆଶ୍ରୟରେ ବାଣୀ ଆରାଧନାରେ ଜୀବନଯାପନ କରିଥିଲେ । ମୋର ମନେହୁଏ ଉକ୍ତ 'ଶୋଭାବତୀ' କାବ୍ୟ ଭଞ୍ଜଙ୍କ ଦ୍ୱାରା ରଚିତ ଏବଂ ସେ ସ୍ୱପୃଷ୍ଠ-ପୋଷକଙ୍କ ନାମରେ ଏହାକୁ ଭଣିତ କରିଥିଲେ ।

## ବିଶ୍ୱନାଥ ଖୁଣ୍ଟିଆ :—

ପୁରୁଷୋତ୍ତମ କ୍ଷେତ୍ର ବାସୀ ବିଶ୍ୱନାଥ ଖୁଣ୍ଟିଆ ଜଗନ୍ନାଥ ମହାପ୍ରଭୁଙ୍କ ଜଣେ ସେବକ ଥିଲେ । ତାଙ୍କ କୃତ ବିଚିତ୍ର ରାମାୟଣ' ବା ବିଶି ରାମାୟଣ ଓଡ଼ିଆ ସାହିତ୍ୟ ଭଣ୍ଡାରରେ ଏକ ଅମୂଲ୍ୟ ରତ୍ନ । ସେ ସ୍ୱୀୟ ଗ୍ରନ୍ଥର ଆଦି କାଣ୍ଡ ପ୍ରଥମ ଛାନ୍ଦରେ ଦିବ୍ୟସିଂହ ଦେବଙ୍କ ସ୍ତୁତି କରିଛନ୍ତି । ଯଥା—

"ଦିବ୍ୟସିଂହ ଦେବ ନୃପ ଗଜପତି ରାଜନେ
ମାନାଦ୍ରିପତି ଦର୍ଶନେ ଦୃଷ୍ଟି ପାକଶାସନେ ।
ସେ ନୃପ [illegible] ଅଙ୍କେ ଜଗନ୍ନାଥ ପ୍ରସନ୍ନେ ।
ସପ୍ତକାଣ୍ଡ ରାମାୟଣ ବିଶ୍ୱନାଥ ରଞ୍ଜନେ ।"

ଅର୍ଥାତ୍ ଦିବ୍ୟସିଂହ ଦେବଙ୍କ ୨୫ ଅଙ୍କରେ ଅର୍ଥାତ୍ ୧୭-୮-୧୭୦୮ରୁ ୪-୧-୧୭୦୯ ମଧ୍ୟରେ ବିଚିତ୍ର ରାମାୟଣ ସମାପ୍ତ ହୋଇଥିଲା । ବିଶ୍ୱନାଥ ଉପେନ୍ଦ୍ର ଭଞ୍ଜଙ୍କ ସମକାଳୀନ ଥିଲେ ମଧ୍ୟ ଉକ୍ତ ଗ୍ରନ୍ଥ ରଚନା କରିବା ସମୟକୁ ଭଞ୍ଜ ବହୁ କାବ୍ୟର ପ୍ରଣେତା ରୂପେ ବିଶେଷ ଖ୍ୟାତି ଲାଭ କରିଥିବାରୁ ସେ ସ୍ୱଗ୍ରନ୍ଥର ଆରଣ୍ୟକ କାଣ୍ଡର ବୃତ୍ତ ନିର୍ଦ୍ଦେଶ ସମ୍ପର୍କରେ 'ଭଞ୍ଜଙ୍କ ଚତୁପଦୀ ଭୂଷଣ; ନଅକ୍ଷରୀ ବୃତ୍ତି' ବୋଲି ଉଲ୍ଲେଖ କରିଛନ୍ତି । ବିଭିନ୍ନ ମନୋହାରିଣୀ ରାଗ ରାଗିଣୀରେ ରଚିତ ବୋଲି କବି କାବ୍ୟର ନାମ ବିଚିତ୍ର ରାମାୟଣ ଦେଇଥିଲେ । ଏହାର ଭାଷା

ଅତ୍ୟନ୍ତ ସରଳ ଓ ହୃଦୟସ୍ପର୍ଶୀ ଥିବାରୁ ଏହା ଓଡ଼ିଶାରେ ବିଶେଷ ଲୋକପ୍ରିୟତା ଅର୍ଜନ କରିଛି ।

**କୃପାସିନ୍ଧୁ ଦାସ :—**

ସେ 'ଉପାସନା ଦୀପିକା' ନାମକ ଗ୍ରନ୍ଥର ପ୍ରଣେତା । ଗ୍ରନ୍ଥପାଠରୁ ଜଣାଯାଏ ଯେ ନୃସିଂହ ଗୋସ୍ୱାମୀ ଶ୍ରୀକ୍ଷେତ୍ରକୁ ଦର୍ଶନ ଉଦ୍ଦେଶ୍ୟରେ ଆସିଥିବା ସମୟରେ ଖେମୁଣ୍ଡି ରାଜା ପୀତାମ୍ବର ଦେବ ତାଙ୍କୁ ସ୍ୱରାଜଧାନୀକୁ ନିମନ୍ତ୍ରଣ କରି ନେଇଥିଲେ । ସେଠାରେ ତାଙ୍କ ଅବସ୍ଥାନ ସମୟରେ କୃପାସିନ୍ଧୁ ତାଙ୍କ ଠାରୁ ଦୀକ୍ଷା ଗ୍ରହଣ କରିଥିଲେ । ଏହାର କିଛିଦିନ ପରେ ସେ ଉକ୍ତ ଗ୍ରନ୍ଥ ରଚନା କରିଥିଲେ । ଯଥା—

"ଋଷିକୋଟିଙ୍କ ନଗ୍ର ତଟ, ମହେନ୍ଦ୍ର ତନୟା ନିକଟ ।
ଖେମୁଣ୍ଡି ମଣ୍ଡଳର ରାଜା, ସ୍ୱଧର୍ମେ ପାଳନ୍ତି ପରଜା ।
ଗଙ୍ଗବଂଶର ଅବତାର, ନାମ ଅଟଇ ପୀତାମ୍ବର ।
ସେ ରାଜା କୃଷ୍ଣରେ ଭକତ, ବିଶୁଦ୍ଧ ପ୍ରେମରେ ତା ମତ ।
ଶୁଣିଲେ ଗୋସ୍ୱାମୀ ଗମନ, ଦର୍ଶନ ଅର୍ଥେ ନିମନ୍ତ୍ରଣ ।
× × ×
କଟକ ଭିତରେ ରଖିଲେ, ଅଦ୍ଭୁତ ଧନବସ୍ତ୍ର ଦେଲେ ।
× × ×
ଏମନ୍ତେ ଦିନ କେତେ ଗଲି, ରହିଲେ ସ୍ୱାମୀ ଦୟା କରି ।
ସେ ସ୍ୱାମୀ ମୋତେ ଦେଲେ ଦୀକ୍ଷା, ସକଳ ତତ୍ତ୍ୱ କଲି ଶିକ୍ଷା ।
ପୁଣିହିଁ କେତେଦିନ ଶେଷେ, ଗୋସ୍ୱାମୀ ଗଲେ ନିଜ ଦେଶେ ।
କଶ୍ୟପ କୁଳେ ଉତପନ, ଦାସ କୃପାସିନ୍ଧୁ ମୋ ନାମ ।"

'ଗଙ୍ଗବଂଶାନୁଚରିତଂ ଚମ୍ପୂ' କାବ୍ୟରୁ ଜଣାଯାଏ ପୁରୁଷୋତ୍ତମ ଅନଙ୍ଗ-ଭୀମଦେବଙ୍କ ରାଜତ୍ୱ ପୂର୍ବରୁ ( ୭୨୮ ଖ୍ରୀଷ୍ଟାବ୍ଦ ପୂର୍ବରୁ) ତାଙ୍କ ପିତା ବାସୁଦେବ କିଛିକାଳ ରାଜ୍ୟଶାସନ କରିଥିଲେ । ତାଙ୍କ ପୂର୍ବବର୍ତ୍ତୀ ଖେମୁଣ୍ଡି ରାଜ୍ୟର ରାଜା ହେଉଛନ୍ତି 'ପୀତାମ୍ବର ଅନଙ୍ଗଭୀମଦେବ' । ତାଙ୍କର ରାଜତ୍ୱ କାଳ ପ୍ରାୟ ୧୭୦୦ରୁ ୧୭୨୦ ପର୍ଯ୍ୟନ୍ତ ଧରାଯାଇପାରେ । ସେ ଗଜପତି ଦିବ୍ୟସିଂହ ଦେବଙ୍କ ସମକାଳୀନ ଥିଲେ ।

**ଈଶ୍ୱର ବ୍ରହ୍ମା:—**

ଈଶ୍ୱର ବ୍ରହ୍ମା କୃତ ଭାଗବତ ବୃତ୍ତରେ ରଚିତ 'ନାମାମୃତ ମହାଭାରତ' ଏକ ବିଶାଳ ଗ୍ରନ୍ଥ । ତାହାର 'ସ୍ୱର୍ଗାରୋହଣ ପର୍ବ'ର ପୋଥି ଏପର୍ଯ୍ୟନ୍ତ ଉପଲବ୍ଧ

ହୋଇଅଛି । ଏହା ଉଣେଷରେ କବି ନିଜର ବଂଶ ପରିଚୟ ଓ ବାସସ୍ଥାନ ସମ୍ବନ୍ଧରେ ଉଲ୍ଲେଖ କରିଛନ୍ତି । ସେଥିରୁ ଜଣାଯାଏ ଯେ କଉଣ୍ଡିନ ସଗୋତ୍ର ଦ୍ୱିଜ ଭୁବନାନନ୍ଦ ଜଣେ ପ୍ରଖ୍ୟାତ ପଣ୍ଡିତ ଥିଲେ । ତାଙ୍କର ସଜ୍ଞା ଥିଲା ନନ୍ଦ ଏବଂ ବାସସ୍ଥାନ ଥିଲା ଶ୍ରୀକ୍ଷେତ୍ର । ପରେ ତାଙ୍କର କୌଣସି ବଂଶଧର ବୀର ରାମଚନ୍ଦ୍ର ପୁର ଶାସନରେ ବାସ କରିଥିଲେ । କାଳକ୍ରମେ ଏହି ବଂଶୀୟ କୌଣସି ବ୍ୟକ୍ତି ସେଠାରୁ ଉଠିଯାଇ ଖେମୁଣ୍ଡି ରାଜ୍ୟର ରାଜଧାନୀ ବିଜୟ ନଗରରେ ଅବସ୍ଥାନ କରିଥିଲେ ଏବଂ ଦାଶ ସଂଜ୍ଞା ଗ୍ରହଣ କରିଥିଲେ । ତାଙ୍କ ବଂଶଧର ମୁରାରି ନିଜର ପାଣ୍ଡିତ୍ୟ ଓ ଚରିତ୍ରବତ୍ତା ଯୋଗୁଁ ଖେମୁଣ୍ଡିର ଗଙ୍ଗରାଜାଙ୍କ ଠାରୁ 'ପରମଗୁରୁ' ପଦବୀ ପ୍ରାପ୍ତ ହୋଇଥିଲେ । ମୁରାରିଙ୍କ ପୁତ୍ର କାମପାଳ 'ପରମଗୁରୁ' ପୀତାମ୍ବର ଅନଙ୍ଗଭୀମ ପ୍ରତିଷ୍ଠିତ ପୀତାମ୍ବର-ପୁର ଶାସନର ଦାନାଧ୍ୟକ୍ଷ ହୋଇଥିଲେ । ଉକ୍ତ ଶାସନ ୧୭୦୦ରୁ ୧୭୨୦ ମଧ୍ୟରେ ପ୍ରତିଷ୍ଠିତ ହୋଇଥିଲା । ତାଙ୍କର ପୁତ୍ର ଈଶ୍ୱର ବ୍ରହ୍ମା ଉକ୍ତ 'ନାମାମୃତ ମହାଭାରତ' ପ୍ରଣେତା । ଗ୍ରନ୍ଥର ନାମକରଣରେ ଗୌଡ଼ୀୟ ଗୋସ୍ୱାମୀ କୃତ 'ହରି ନାମାମୃତ ବ୍ୟାକରଣ'ର ପ୍ରଭାବ ସୁସ୍ପଷ୍ଟ ।

**ଦ୍ୱିଜ ଈଶ୍ୱର ଦାସ:—**

ମିଉଜିୟମ ପୋଥି ଭଣ୍ଡାରରେ ଅନେକ କବି ଦ୍ୱିଜ ଈଶ୍ୱର ଦାସ କୃତ 'ରାମଲୀଳାମୃତ' ଗ୍ରନ୍ଥର ପୋଥି ରହିଛି । ଯଥା "କହଇ ଦ୍ୱିଜ ଈଶ୍ୱର ରାମ-ଲୀଳାମୃତ; । ଜ୍ଞାନ ହରଇଣ ଯେ ପଢ଼ିଲେ ନୃପନାଥ ।" ଉକ୍ତ ଗ୍ରନ୍ଥରେ ବଙ୍ଗ ଭାଷାର ପ୍ରଭାବ ସ୍ପଷ୍ଟ ଭାବରେ ଅଙ୍କିତ, କାରଣ କବି ସ୍ଥାନେ ସ୍ଥାନେ ଉଚ୍ଚାରଣରେ ବଙ୍ଗଳା ମିଶା ଓଡ଼ିଆ ବ୍ୟବହାର କରିଛନ୍ତି । 'ନାମାମୃତ ମହାଭାରତ' ଓ 'ରାମଲୀଳାମୃତ' ଉଭୟ ଗ୍ରନ୍ଥର ପ୍ରଣେତା ଦାଶ ସଜ୍ଞାଧାରୀ ବ୍ରାହ୍ମଣ । ଉଭୟେ ଗୌଡ଼ୀୟ ଗୋସ୍ୱାମୀ ସାହିତ୍ୟ ଦ୍ୱାରା ବିଶେଷ ଭାବରେ ପ୍ରଭାବିତ । ତେଣୁ ଅନ୍ୟ ବିରୁଦ୍ଧ ପ୍ରମାଣ ନ ପାଇବା ପର୍ଯ୍ୟନ୍ତ ଉଭୟଙ୍କୁ ଏକ ଓ ଅଭିନ୍ନ ରୂପେ ଗ୍ରହଣ କରାଯାଇ ପାରେ । ପୂର୍ବୋକ୍ତ କବି କୃପାସିନ୍ଧୁଙ୍କ ଜୀବନୀ ଆଲୋଚନା କଲେ ଜଣାଯାଏ ଯେ ଶ୍ରୀକ୍ଷେତ୍ର ବାସୀ ନୃସିଂହ ଦେବ ଗୋସ୍ୱାମୀ କେତେକାଳ ପୀତାମ୍ବରଙ୍କ ପୃଷ୍ଠପୋଷକତା ଲାଭ କରି ସେଠାରେ ଥିଲେ । ତେଣୁ ଖେମୁଣ୍ଡି ରାଜ୍ୟ ଶ୍ରୀଚୈତନ୍ୟ ଧର୍ମ ପ୍ରଚାରର ଏକ ପ୍ରଧାନ କେନ୍ଦ୍ର ହୋଇଥିଲା ।

**ଈଶ୍ୱର ଦାସ:—**

ଈଶ୍ୱର ଦାସଙ୍କ 'ଶ୍ରୀଚୈତନ୍ୟ ଭାଗବତ' ଶ୍ରୀଚୈତନ୍ୟ ଚରିତାମୃତ [illegible] 'ଶ୍ରୀ ଜଗନ୍ନାଥ ଚରିତାମୃତ' ପରି ଏକ ମହାପୁରୁଷ ଚରିତ ବର୍ଣ୍ଣନାତ୍ମକ ଗ୍ରନ୍ଥ । ଏହି ଗ୍ରନ୍ଥ [illegible] ଶ୍ରୀଚୈତନ୍ୟ [illegible] ଓ ମାଧ [illegible]

ପ୍ରଭୃତିଙ୍କ ବିବରଣ ମିଳେ । ଶ୍ରୀ ଚୈତନ୍ୟଙ୍କ କେତେକ ଗୌଡ଼ୀୟ ଭକ୍ତ ଓ ଉତ୍କଳୀୟ ପଞ୍ଚସଖାଙ୍କ ସମ୍ବନ୍ଧରେ ଏଥିରୁ କେତେକ ନୂତନ ତଥ୍ୟ ଜଣାଯାଏ । ପଞ୍ଚସଖାଙ୍କ ମଧ୍ୟରେ ଏକତମ ଅନନ୍ତ ଦାସ ବା ଅନନ୍ତ ଶିଶୁଙ୍କ ନାମ ଯାହା ଏଥିରେ ଗୁରୁତ୍ୱପୂର୍ଣ୍ଣ ଭାବରେ ବର୍ଣ୍ଣିତ ହୋଇଥିବାରୁ କବି ଶିଶୁ ସଂପ୍ରଦାୟଭୁକ୍ତ ଥିବାର ମନେହୁଏ । ଏହା ଭାଗବତ ପରି ନବାକ୍ଷରୀ ବୃତ୍ତରେ ଲିଖିତ ଏବଂ ଏହାର ପ୍ରତ୍ୟେକ ଅଧ୍ୟାୟ ଭଣିତାରେ ଶ୍ରୀ ଚୈତନ୍ୟ ବୌଦ୍ଧାବତାର ରୂପେ କଳ୍ପିତ ହୋଇଛନ୍ତି । ଏହା ଏକ ଉପଦେଷ୍ଟା ଗ୍ରନ୍ଥ ହେଲେ ମଧ୍ୟ କବି ଗ୍ରନ୍ଥ ରଚନାର କାଳ କୁତ୍ରାପି ଉଲ୍ଲେଖ କରି ନାହାନ୍ତି । କେବଳ ଏହା ଶ୍ରୀ 'ଜଗନ୍ନାଥ ଚରିତାମୃତ' ରଚିତ ହେବା ପରେ ଲିଖିତ ହୋଇଥିବାର ଜଣାଯାଏ । ତେଣୁ ଏହା ୧୬୩୦-୧୬୪୦ ଖ୍ରୀଷ୍ଟାବ୍ଦର ପରବର୍ତ୍ତୀ । ଗ୍ରନ୍ଥ ରଚନା ପରେ ଈଶ୍ୱର ଦାସ ଏହାକୁ ପରୀକ୍ଷା ନିମିତ୍ତ ମୁକ୍ତି ମଣ୍ଡପ ପଣ୍ଡିତ ସଭାକୁ ଆଣିଥିବାର ଉଲ୍ଲେଖ କରିଛନ୍ତି । ସେହି ସଭାରେ ପ୍ରଖ୍ୟାତ ପଣ୍ଡିତ ବାସୁଦେବ ତୀର୍ଥ ଉପସ୍ଥିତ ଥିଲେ । ଶ୍ରୀ ଚୈତନ୍ୟ ଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀବିଗ୍ରହରେ ଲୀନ ହେବା ବର୍ଣ୍ଣନାକୁ ସେ ଅସ୍ୱୀକାର କରିଥିଲେ ଏବଂ ବୈଷ୍ଣବ ମାନଙ୍କ ବହୁତ ଯୁକ୍ତି ସତ୍ତ୍ୱେ ଉକ୍ତ ମତକୁ ଅଗ୍ରାହ୍ୟ କରିଥିଲେ । ତେଣୁ ବାସୁଦେବ ତୀର୍ଥଙ୍କ ସମୟରେ ଏହା ସଂପୂର୍ଣ୍ଣ ହୋଇଥିଲା (୧୯) । ୧୫୮୯ ଶକାବ୍ଦ ବା ୧୬୬୭ ଖ୍ରୀଷ୍ଟାବ୍ଦରେ ପୁରୀ ବାସୀ ସନ୍ନ୍ୟାସୀ ରଘୁତ୍ତମ ତୀର୍ଥ ପ୍ରସିଦ୍ଧ ଥିଲେ । ବାସୁଦେବ ରଘୁତ୍ତମଙ୍କ ପରବର୍ତ୍ତୀ ପରି ମନେ ହୁଅନ୍ତି । ତେଣୁ ଉକ୍ତ ଗ୍ରନ୍ଥ ସପ୍ତଦଶ ଶତାବ୍ଦୀର ଶେଷ ଭାଗରେ ରଚିତ ହୋଇଥିବାର ଆପାତତଃ ସ୍ଥିର କରାଯାଇପାରେ ।

## ଶିଶୁ ଈଶ୍ୱର ଦାସ :—

ଶିଶୁ ଈଶ୍ୱର ଦାସ 'ନଳଚରିତ' ବା ନଳରାମଚରିତ ନାମକ ଖଣ୍ଡିଏ ଗ୍ରନ୍ଥ ରଚନା କରିଥିଲେ । ଏହା ମୁଦ୍ରିତ ଓ ପ୍ରକାଶିତ ହୋଇଛି । ସଂସ୍କୃତ 'ଦ୍ୱିସନ୍ଧାନ' କାବ୍ୟ ପରି ଏଥିରେ ନଳ ତଥା ରାମଚନ୍ଦ୍ରଙ୍କ ବନବାସ ଜୀବନର ଦୁଃଖ ସରଳ ଭାଷାରେ ବର୍ଣ୍ଣିତ ହୋଇଅଛି । କିନ୍ତୁ ଗ୍ରନ୍ଥ ରଚନା କାଳ ଏଥିରେ ଉଲ୍ଲେଖ ନାହିଁ । ମେଦିନୀପୁର କଲେଜ ସଂଗୃହୀତ ଗୋଟିଏ ନଳଚରିତ ପୋଥି ୧୧୮୫ ସାଲ ଜୁନ ୧୧ ଦିନ ନକଲ ହୋଇଥିବାର ପୁଷ୍ପିକାରୁ ଜଣାଯାଏ । ତାହା ହେଉଛି [illegible]
ଅନ୍ତ [illegible]
ଅଷ୍ଟ [illegible]

(19) The History of Mediaeval Vaishnavism in Orissa, [illegible]

**ଦ୍ୱିଜ ଶ୍ରୀଧର :—**

ଦ୍ୱିଜ ଶ୍ରୀଧର କୃତ 'କାଞ୍ଚନଲତା' ନାମକ ଏକ କାଳ୍ପନିକ କାବ୍ୟର ସନ୍ଧାନ ମିଳୁଛି । କିନ୍ତୁ ଏଥିରେ କବି ନିଜ ପରିଚୟ ବା ସମୟ ସମ୍ବନ୍ଧରେ କୌଣସି ଉଲ୍ଲେଖ କରିନାହାନ୍ତି । କେବଳ କବି ଏକ ସ୍ଥାନରେ ଲେଖିଛନ୍ତି—

"ସହଜେ ଦ୍ୱିଜକନ୍ୟା ତେଜଧାମା କନକକାନ୍ତି ।
କଳା **କେନ୍ଦୁଲୀ ଶାଢ଼ୀଏ** ଭିଡ଼ି ପିନ୍ଧିଛି ମୋତିଦନ୍ତୀ ।"

ପୁରୀ ଜିଲ୍ଲା ବାଲିଅନ୍ତା ଥାନା ଅନ୍ତର୍ଗତ ଭକ୍ତ କବିରାଜ ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁବିଲ୍ୱ ବା କେନ୍ଦୁଲି ପୂର୍ବେ ଶାଢ଼ୀ ତିଆରି ପାଇଁ ବିଶେଷ ପ୍ରସିଦ୍ଧି ଲାଭ କରିଥିଲା । ଜଗନ୍ନାଥ ମନ୍ଦିରରେ କେନ୍ଦୁଲୀ ଫେଟା ଛଡ଼ା ଅନ୍ୟ ଲୁଗା ଜନ୍ମ ବାସରରେ ଲାଗି ହୁଏ ନାହିଁ । କେନ୍ଦୁଲୀ ଶାଢ଼ୀର ଗୌରବ ପ୍ରଖ୍ୟାପନ କରିଥିବାରୁ କବିଙ୍କୁ ପୁରୀ ଜିଲ୍ଲା ବାସୀ ରୂପେ ଗ୍ରହଣ କରାଯାଇପାରେ । ଗୁଣା, ନାକଚଣା, ଛାଡ଼, ଗୁଞ୍ଜରିଖଣ୍ଡ, ଚୁଲ୍ଲିତ ପୁରୀ ଜିଲ୍ଲା ଓ ଆଖପାଖ ଅଞ୍ଚଳରେ ବିଶେଷ ଭାବରେ ପ୍ରଚଳିତ ଥିଲା । ଏହି ଗବେଷକ ପ୍ରମାଣ ଦ୍ୱୟ ସାହାଯ୍ୟରେ କବିଙ୍କୁ ପୁରୀ ଜିଲ୍ଲା ବା ଚିଲିକା ତଟବର୍ତ୍ତୀ ଅଞ୍ଚଳବାସୀ ରୂପେ ଗ୍ରହଣ କରାଯାଇପାରେ । ଐତିହାସିକ ହଣ୍ଟର ଜନଶ୍ରୁତି ଉପରେ ନିର୍ଭର କରି କବିଙ୍କୁ ବାଙ୍କୀ ରାଜ୍ୟବାସୀ ବୋଲି ଉଲ୍ଲେଖ କରିଛନ୍ତି । (୨୦) ଏହା ସମ୍ଭବପର ।

ଭଞ୍ଜଙ୍କ 'ଲାବଣ୍ୟବତୀ' ସହିତ 'କାଞ୍ଚନଲତା' କାବ୍ୟର ବିଶେଷ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ଲାବଣ୍ୟବତୀର ପ୍ରଥମ ଛାନ୍ଦରେ ଭଞ୍ଜ କବି ରାମ ଓ ଶିବଙ୍କୁ ଦ୍ୱ୍ୟର୍ଥଗର୍ଭିତ ଶ୍ଲେଷରେ ସ୍ତୁତି କରି ଲାବଣ୍ୟବତୀର ପୂର୍ବଜନ୍ମର ସୂଚନା ଦେଇଛନ୍ତି । ଠିକ୍ ସେହିପରି ଦ୍ୱିଜ ଶ୍ରୀଧର ପ୍ରଥମ ଛାନ୍ଦରେ ଦ୍ୱ୍ୟର୍ଥଗର୍ଭିତ ବିଷ୍ଣୁ ଓ ଶିବ ସ୍ତୁତି ପରେ ନାୟିକା କାଞ୍ଚନଲତାର ପୂର୍ବ ଜନ୍ମର ସୂଚନା ଦେଇଛନ୍ତି । ଦୁଇଟି ଯାକ କାବ୍ୟରେ ଦ୍ୱିତୀୟ ଛାନ୍ଦରେ ପୂର୍ବଜନ୍ମ ବୃତ୍ତାନ୍ତ ବର୍ଣ୍ଣିତ ହୋଇଛି । ତୃତୀୟ ଛାନ୍ଦଟି ଦୁଇଟି ଯାକ କାବ୍ୟରେ ରାଗ କେଦାର ଚକ୍ରକେଳି ବାଣୀରେ ରଚିତ । ବିଷୟବସ୍ତୁ ମଧ୍ୟ ଉଭୟରେ ସମାନ, ଯୌବନ ପ୍ରାପ୍ତି ଓ ଯୌବନ ବର୍ଣ୍ଣନା । ଉଭୟ କାବ୍ୟର ଚତୁର୍ଥ ଛାନ୍ଦରେ ନାୟିକାର ଅଙ୍ଗ ପ୍ରତ୍ୟଙ୍ଗ ଓ ବେଶ ବର୍ଣ୍ଣନା ପ୍ରଦତ୍ତ ହୋଇଛି । ଏହିପରି ଭାବରେ 'କାଞ୍ଚନଲତା'ର ପ୍ରତି ଛାନ୍ଦେ ଛାନ୍ଦେ 'ଲାବଣ୍ୟବତୀ' ତଥା ଭଞ୍ଜୀୟ କାବ୍ୟକଳାର ପ୍ରଭାବ ପ୍ରତିଫଳିତ । ଏହାର ଭାଷାରେ

---

(20) Hunter's Orissa, Vol. II, Appendix IX, P. 208.

ମଧ୍ଯ ପ୍ରାଚୀନ ଶବ୍ଦ ପ୍ରୟୋଗ ପ୍ରାୟ ପରିଦୃଷ୍ଟ ହୁଏ ନାହିଁ । ଭଞ୍ଜ ଯୁଗର ଭାଷା ପରି ଏହାର ଭାଷା ପରିମାର୍ଜିତ ଓ ବହୁ ଅଳଙ୍କାର ମଣ୍ଡିତ । ଏ ସମସ୍ତ ବିଚାରରୁ ବଳେ 'ଲାବଣ୍ୟବତୀ' ରଚନା ପରେ ଏହା ପ୍ରଣୀତ ହୋଇଥିବାର ସ୍ଥିର କରାଯାଇପାରେ । ଅତଏବ କବି ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଭାଗରେ ଆବିର୍ଭୂତ ହୋଇଥିବାର ମନେହୁଏ । (୨୧)

## ପୁରୁଷୋତ୍ତମ ଦାସ :—

ସୂର୍ଯ୍ୟ ବଂଶୀୟ ଗଜପତି ପୁରୁଷୋତ୍ତମ ଦେବଙ୍କ ଇତିହାସ ପ୍ରସିଦ୍ଧ କାଞ୍ଚୀ ଅଭିଯାନ ବିଷୟ ଅବଲମ୍ବନରେ ପୁରୁଷୋତ୍ତମ ଦାସ 'କାଞ୍ଚୀକାବେରୀ' ନାମକ ଗ୍ରନ୍ଥ ରଚନା କରିଥିଲେ । ଏହା ସମଗ୍ର ଉତ୍କଳରେ ସୁପ୍ରଚଳିତ ଥିଲା । ତାଙ୍କ ପିତାଙ୍କ ନାମ ଭଗୀରଥି ଓ ପିତାମହଙ୍କ ନାମ ବରୁଣଦାସ । ସେ ଜଗନ୍ନାଥଙ୍କ ପରମ ଭକ୍ତ ଥିବାର ଜଣାଯାଏ । ଯଥା—

"ସେ କାଳିଆ ସାଉଁତଙ୍କ ଭୃତ୍ୟଙ୍କ ଭୃତ୍ୟ ଦାସ
ବରୁଣ ଦାସଙ୍କ ନାତି ମୁଁ ଯେ ଭଗୀରଥି ସୁତ ।
ଯେ ଜଗନ୍ନାଥ ବଳଭଦ୍ର ସୁଭଦ୍ରା ସୁଦର୍ଶନ
ଏହୁ ଚାରି ଧାମନ୍ତରୁ ନ ଜାଣଇ ଆନ ।
× × ×
ଶ୍ରୀ ଜଗନ୍ନାଥଙ୍କ କାଞ୍ଚୀ କାବେରୀ ରସ
ପୁରୁଷୋତ୍ତମ ଦାସ ସେବା ସାଉଁତଙ୍କ ପାଶ ।"

ଏହାର ଗୋଟିଏ ପୋଥିର ନକଲ ସମୟ ହେଉଛି ବୀରକେଶରୀ ଦେବଙ୍କ ୪ ଅଙ୍କ ମିଥୁନ ୧୧ ଦିନ ସୋମବାର । ଖ୍ରୀଷ୍ଟାବ୍ଦ ଗଣନାରେ ଏହା ହେଉଛି ୧୧-୪-୧୭୩୯ ତାରିଖ । ତେଣୁ ଉକ୍ତ ଗ୍ରନ୍ଥ ଦିବ୍ୟସିଂହ ଦେବଙ୍କ ରାଜତ୍ୱରେ ବା ତତ୍ପୂର୍ବରୁ ରଚିତ ହୋଇଥିବାର ସ୍ଥିର କରାଯାଇପାରେ ।

## ବୈଶ୍ୟ ସଦାଶିବ :—

ବୈଶ୍ୟ ସଦାଶିବ କୃତ 'ଶ୍ରୀରାମଲୀଳା' ଗଞ୍ଜାମ ଠାରୁ ସମ୍ବଲପୁର ପର୍ଯ୍ୟନ୍ତ ସମ୍ପୂର୍ଣ ଉତ୍କଳର ପଶ୍ଚିମାଞ୍ଚଳରେ ବିଶେଷ ଭାବରେ ପ୍ରଚଳିତ । ରାମନବମୀ ଯାତ୍ରା ସମୟରେ ଉକ୍ତ ରାମଲୀଳା ଦେଖିବା ପାଇଁ ବହୁ ରାତି ପର୍ଯ୍ୟନ୍ତ ସହସ୍ର ସହସ୍ର

---

(୨୧) ଝଙ୍କାର, ତ୍ରୟୋଦଶ ବର୍ଷ, ୭ମ ସଂଖ୍ୟା, ପୃ ୫୦୭-୫୧୨ ।

ନର ନାଗଙ୍କ ସମାଗମ ହୁଏ । ଓଡ଼ିଆ ଭାଷାରେ ରଚିତ 'ରାମଲୀଳା' ଗ୍ରନ୍ଥ ମଧ୍ୟରେ ଏହାର ଲୋକପ୍ରିୟତା ସର୍ବାଧିକ ହେଲେ ମଧ୍ୟ କବି ଉକ୍ତ ଗ୍ରନ୍ଥରେ ନିଜ ବଂଶର ପରିଚୟ, ବାସସ୍ଥାନ ବା ରଚନା କାଳ ସମ୍ବନ୍ଧରେ କୌଣସି ଉଲ୍ଲେଖ କରିନାହାନ୍ତି । ତେଣୁ ପରୋକ୍ଷ ପ୍ରମାଣ ସାହାଯ୍ୟରେ ଏହାର ସମୟ ନିର୍ଦ୍ଧାରଣ କରାଯାଇ ପାରେ । ଏଥିରେ ପ୍ରଦତ୍ତ ଗଙ୍ଗା ପାର ସମୟରେ ଶ୍ରୀ ରାମଚନ୍ଦ୍ର ଓ ନାବିକଙ୍କ କଥୋପକଥନରେ ଭଞ୍ଜଙ୍କ 'ବୈଦେହୀଶବିଳାସ'ର ଚତୁସ୍ତ୍ରିଂଶ ଛାନ୍ଦସ୍ଥ ଆଳାପର ଏବଂ ମାୟା ରାମଙ୍କ ଛିନ୍ନ ମୁଣ୍ଡ ଦର୍ଶନରେ ସୀତାଙ୍କ ବିଳାପରେ 'ବିଚି ରାମାୟଣ'ର ତଦ୍ବିଷୟକ ପ୍ରାଣସ୍ପର୍ଶୀ ବର୍ଣ୍ଣନାର ସ୍ପଷ୍ଟ ପ୍ରଭାବ ପରିଲକ୍ଷିତ ହୁଏ ।' ବିଚି ରାମାୟଣ' ୧୭୦୮ ୧୭୦୯ରେ ରଚିତ ହୋଇଥିଲା । ଭଞ୍ଜଙ୍କ 'ବୈଦେହୀଶ ବିଳାସ' ଏହାର କିଞ୍ଚିତ୍ ପରବର୍ତ୍ତୀ ଅତ୍ୟଳ୍ପ ସମୟ ବ୍ୟବଧାନରେ ରଚିତ । ସର୍ବଜନସମାଦୃତ ଏହି ଦୁଇଟି ପ୍ରସିଦ୍ଧ ରାମ କାବ୍ୟର ଲୋକପ୍ରିୟତାରେ ଉତ୍ସାହିତ ଓ ଅନୁପ୍ରାଣିତ ହୋଇ ବୈଶ୍ୟ ସଦାଶିବ ଯେ ଉକ୍ତ ରାମଲୀଳା ରଚନା କରିଥିଲେ ଏଥିରେ ସନ୍ଦେହର ଅବକାଶ ନାହିଁ । ତେଣୁ ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟ ବା ତୃତୀୟ ଶତକରେ ଏହା ରଚିତ ହୋଇଥିବାର ଆପାତତଃ ସ୍ଥିର କରାଯାଇ ପାରେ ।

ତାଙ୍କର ବାସସ୍ଥାନ ନିର୍ଣ୍ଣୟ ମଧ୍ୟ ଅନୁମାନ ସାପେକ୍ଷ । ଦଣ୍ଡକାରଣ୍ୟ ଯାତ୍ରା ପୂର୍ବରୁ ଶ୍ରୀ ରାମଚନ୍ଦ୍ର କୋଣାର୍କ ଚଣ୍ଡୀ, ରାମଚଣ୍ଡୀ, ଚିଲିକାପୂଳ ସ୍ଥିତବର୍ତ୍ତୀ ବିଶ୍ୱନାଥ, ଏକାମ୍ର କାନନସ୍ଥ ରାମେଶ୍ୱର ଓ ବିନ୍ଦୁସାଗର ପୂର୍ବର ଦାରୁବ୍ରହ୍ମ, ଋଷିକୁଲ୍ୟା ତୀରବର୍ତ୍ତୀ ଭୁମ୍ବେଶ୍ୱର ଓ ଅଖଣ୍ଡେଶ୍ୱର ପ୍ରଭୃତି ପରିଦର୍ଶନ କରିଥିବା ଏଥିରେ ବର୍ଣ୍ଣିତ ହୋଇଅଛି । ଋଷିକୁଲ୍ୟା ନଦୀ ଓ ତତ୍ତୀରବର୍ତ୍ତୀ ଅଖଣ୍ଡେଶ୍ୱର ଓ ଭୁମ୍ବେଶ୍ୱର ନାମକ ଅପ୍ରସିଦ୍ଧ ଶିବଦ୍ୱୟଙ୍କ ପ୍ରତି କବିଙ୍କ ବିଶେଷ ଗୁରୁତ୍ୱ ଆରୋପ ଦ୍ୱାରା କବି ଉକ୍ତ ଶିବଦ୍ୱୟ ଅଧିଷ୍ଠିତ ଅଞ୍ଚଳର ଅଧିବାସୀ ଥିବାର ସ୍ଥିର କରାଯାଇପାରେ ।

ଏଥିରେ ଗଦ୍ୟରେ ଲିଖିତ ରାବଣ ପ୍ରତି ଶ୍ରୀରାମଙ୍କ ଶ୍ରୀମୁଖ ବା ଚିଠାଉତ୍ତରେ ରାବଣଙ୍କୁ 'ଲଙ୍କା ମାଝି' ବୋଲି କୁହାଯାଇଛି । ଶ୍ରୀରାମଚନ୍ଦ୍ରଙ୍କର ଲଙ୍କାମାଝି ରାବଣଙ୍କୁ ଆଜ୍ଞା । କନ୍ଧ ଅଧ୍ୟୁଷିତ ଅଞ୍ଚଳରେ ଶାସକମାନେ ସାଧାରଣତଃ ମାଝି ଆଖ୍ୟାରେ ଅଭିହିତ ହେଉଥିଲେ । ଉକ୍ତ ଅର୍ଥରେ 'ମାଝି' ପଦ ବ୍ୟବହାର ଯୋଗୁଁ କବିଙ୍କୁ ଗଞ୍ଜାମ ଜିଲ୍ଲାର ଉତ୍ତରାଂଶର ଅଧିବାସୀ ରୂପେ ଆପାତତଃ ଗ୍ରହଣ କରାଯାଇ ପାରେ । 'ଆଣ୍ଟେ' (ଜୋରରେ) **ଆଟ୍ରେଣ୍ଟେ ଦେଲା ଡାକ**' ଅଗି (ନିଆଁ) ପ୍ରଭୃତି କେତେକ ପଦର ବ୍ୟବହାର ଉପରୋକ୍ତ ନିର୍ଦ୍ଧାରଣକୁ ସମର୍ଥନ କରେ । ଏହାର ଭାଷା ସରଳ, ସାବଲୀଳ ଓ ହୃଦୟସ୍ପର୍ଶୀ ଏଥିରେ ଅନେକ ପ୍ରାଚୀନ ପ୍ରୟୋଗ ବ୍ୟବହୃତ ହୋଇଥିଲେ ମଧ୍ୟ 'ହୁସିଆର' ବ୍ୟତୀତ ଅନ୍ୟ କୌଣସି ଯାବନିକ ଶବ୍ଦ ମିଳେ ନାହିଁ ।

## ଭକ୍ତ ହରିଦାସ:—

ଭକ୍ତ ହରିଦାସଙ୍କୁ ହିନ୍ଦୁ ବିଦ୍ୱେଷୀ ବାଦଶାହ ଔରଙ୍ଗଜେବଙ୍କ ସମୟରେ ହରିବୋଲ ପରିବର୍ତ୍ତେ କଲମା ଭଣିବା ପାଇଁ ବାଧ୍ୟ କରାଯାଇଥିବା ବିଷୟ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ସ୍ୱୀୟ 'ନାମଚିନ୍ତାମଣି' ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି । ଯଥା:—

"ହରିଦାସଙ୍କୁ ଯେ ବାଦଶା ଚହଲ, ହରି ନ ବୋଲ, କଲମା ଭଣରେ ।"

ଅତଏବ ତାଙ୍କୁ ନିଃସନ୍ଦେହରେ ଓଡ଼ିଶାରେ ମୋଗଲ ଅତ୍ୟାଚାର ଯୁଗ ବା ୧୬୭୭ରୁ ୧୬୯୮ ମଧ୍ୟରେ ଅବସ୍ଥାପିତ କରାଯାଇ ପାରେ । ଏହି ଅତ୍ୟାଚାର ଦିବ୍ୟସିଂହ ଦେବଙ୍କ ରାଜତ୍ୱର କଞ୍ଚା ପୁରୁଷଙ୍କୁ ଓ ପ୍ରଥମ ଭାଗରେ ଅତି ଉତ୍କଟ ଆକାର ଧାରଣ କରିଥିବାରୁ ଭକ୍ତ ହରିଦାସ ୧୬୮୭-୧୬୯୮ ମଧ୍ୟରେ 'ମୟୂର ଚନ୍ଦ୍ରିକା' ଗ୍ରନ୍ଥ ରଚନା କରିଥିବାର ସ୍ୱୀକାର କରାଯାଇ ପାରେ । (୨୨)

କବି ଜାତିରେ ଗୋପାଳ ଥିଲେ ଏବଂ ତାଙ୍କ ପିତାଙ୍କ ନାମ ରାମକୃଷ୍ଣ 'ଯଥା— ଗୋପାଳ କୁଳରେ ଜନମ ମୋର, ଶ୍ରୀ ରାମକୃଷ୍ଣଙ୍କ କୁମର । ଶ୍ରୀକୃଷ୍ଣ ମୟୂର ଚନ୍ଦ୍ରିକା ମସ୍ତକରେ ଧାରଣ କରୁଥିବାରୁ ହରିଦାସ ତାଙ୍କୁ 'ମୟୂର ଚନ୍ଦ୍ରିକା' ନାମରେ ଅଭିହିତ କରି ଶ୍ରୀକୃଷ୍ଣ ଲୀଳାତତ୍ତ୍ୱ ଉକ୍ତ ଗ୍ରନ୍ଥରେ ସନ୍ନିବେଶିତ କରିଛନ୍ତି । ଏହାର ପ୍ରତ୍ୟେକ ଅଧ୍ୟାୟ 'ଚନ୍ଦ୍ରିକା' ନାମରେ ଅଭିହିତ । ଏ ସମ୍ପର୍କରେ 'ଗୋପୀଭାଷା'ର ଅଷ୍ଟମ ଛାନ୍ଦରେ ଶ୍ରୀକୃଷ୍ଣଙ୍କ ନିମ୍ନଲିଖିତ ବର୍ଣ୍ଣନା ସ୍ମରଣୀୟ ।

"ବାଳକମାନଙ୍କୁ ଘେନି ସଙ୍ଗରେ, ଲୀଳା କରୁଛନ୍ତି ରଙ୍ଗ ମଧ୍ୟରେ
**ମୟୂର ଚନ୍ଦ୍ରିକା ଚୂଳରେ ଅଛି; ଢଳି ଢଳିଣ ନାଚେ ଶିରୀବଛି"**

ଶ୍ରୀଚୈତନ୍ୟ ଶ୍ରୀରାଧାଙ୍କ ଅବତାର ବୋଲି କବି ଗ୍ରନ୍ଥର ବିଂଶ ଚନ୍ଦ୍ରିକାରେ ଉଲ୍ଲେଖ କରିଛନ୍ତି । ଏଥିରେ ଉଭୟ ମଧୁର ପ୍ରେମରେ ମୁକ୍ତି ବ୍ରହ୍ମ ଦର୍ଶନ ଲାଭ ତଥା ଯୋଗ ସାଧନ ଦ୍ୱାରା ଜୀବ ପରମ ସ୍ୱରୂପ ଶ୍ରୀରାଧା-ଗୋବିନ୍ଦଙ୍କ ଦର୍ଶନ ସ୍ୱୀକୃତ ହୋଇଅଛି । ଭକ୍ତ ହରିଦାସ ସ୍ୱକୃତିରେ ବୈଷ୍ଣବ ଧର୍ମ ତତ୍ତ୍ୱ ପ୍ରାଞ୍ଜଳ ଭାବରେ ବୁଝାଇ ଏହାର ଉତ୍କର୍ଷ ଓ ଉପାଦେୟତା ବୃଦ୍ଧି କରିଛନ୍ତି ।

## ମହାଦେବ ଦାସ:—

ମହାଦେବ ଦାସ ଜଣେ ପୁରାଣକାର କବି ରୂପେ ଉତ୍କଳରେ ପ୍ରସିଦ୍ଧ । ତାଙ୍କ କୃତ 'ମାର୍କଣ୍ଡେୟ ପୁରାଣ', 'ପଦ୍ମ ପୁରାଣ', 'ବିଷ୍ଣୁକେଶରୀ ପୁରାଣ', 'ମାଘ ମାହାତ୍ମ୍ୟ'

---

(୨୨) ପଣ୍ଡିତ ବିନାୟକ ମିଶ୍ରଙ୍କ ଓଡ଼ିଆ ସାହିତ୍ୟର ଇତିହାସ, ପୃ ୮୦-୮୩

ଓ 'କାର୍ତ୍ତିକ ମାହାତ୍ମ୍ୟ'ର ସନ୍ଧାନ ମିଳୁନାହିଁ । ଏତଦ୍‌ବ୍ୟତୀତ ସେ ବୈଶାଖ ମାହାତ୍ମ୍ୟ, ଆଷାଢ଼ ମାହାତ୍ମ୍ୟ, ଦ୍ୱାଦଶୀ ମାହାତ୍ମ୍ୟ, 'ମାଳାଦ୍ରି ମହୋଦୟ' ଓ 'ଇତିହାସ' ନାମକ ଗ୍ରନ୍ଥ ରଚନା କରିଥିବାର ଜଣାଯାଏ । ଏଥି ମଧ୍ୟରେ କାର୍ତ୍ତିକ ମାହାତ୍ମ୍ୟ କାର୍ତ୍ତିକ ମାସରେ ପ୍ରତିଦିନ ନୈଷ୍ଠିକ ହବିଷ୍ୟ ପରିବାରରେ ଭକ୍ତି ସହକାରେ ପଠିତ ହୁଏ । ଏହାଙ୍କ ପିତାଙ୍କ ନାମ ଲକ୍ଷ୍ମଣ ଦାସ ଓ ମାତାଙ୍କ ନାମ ମୁକ୍ତା ଦେଈ । ମାର୍କଣ୍ଡ ପୁରାଣରେ ସେ ମାର୍କଣ୍ଡଙ୍କ ପଦ ଆଶ୍ରାରେ ଦିନ ବଞ୍ଚିବା ବିଷୟ ଉଲ୍ଲେଖ କରିଛନ୍ତି । ଯଥା—"ମାର୍କଣ୍ଡ ପଦ ଆଶାରେ ମୁଁ ବଞ୍ଚଇ ଦିନ ।" ଏଥିରୁ ଅନୁମିତ ହୁଏ ଯେ କବି ପୁରୀବାସୀ ଥିଲେ ଅଥବା ଜୀବନର କେତେକାଂଶ ପୁରୀରେ ରହି ପ୍ରସିଦ୍ଧ ମାର୍କଣ୍ଡେଶ୍ୱରଙ୍କ ସେବାରେ କାଳାତିପାତ କରିଥିଲେ । ତାଙ୍କ ସମୟ ସମ୍ବନ୍ଧରେ ପ୍ରତ୍ୟକ୍ଷ ପ୍ରମାଣ ମିଳୁନାହିଁ । କିନ୍ତୁ ବିରାଟ ନୃସିଂହ ପୁରାଣ ନିର୍ମାତା ବିପ୍ର ପୀତାମ୍ବର ଦାସ ଷଷ୍ଠ ଜନ୍ମରେ ମହାଦେବ ଦାସ ରୂପେ ଜନ୍ମ ଲାଭ କରିଥିବା ସ୍ୱୀୟ ନୃସିଂହ ପୁରାଣ ଦ୍ୱିତୀୟ ରତ୍ନାକରରେ ଉଲ୍ଲେଖ କରିଛନ୍ତି । ଯଥା—

"ଆଦ୍ୟ ଜନ୍ମେ ବୋଲାଇଲି ନାମ କାଳିଦାସ
× × ×
ଦ୍ୱିତୀୟ ଜନ୍ମେ ହୋଇଲି ଜଗନ୍ନାଥ ଦାସ
× × ×
ତୃତୀୟ ଜନ୍ମରେ ବଳରାମ ଦାସ ହେଲି ।
× × ×
ଚତୁର୍ଥ ଜନ୍ମରେ ହେଲି ନାରାୟଣ ଦାସ
ତହିଁ ଉତ୍ତାରେ ପଞ୍ଚମ ଜନ୍ମେ ଯାଇ ପୁଣ
ଶ୍ରୀ ସାରଳା ଦାସ କବି ହେଲି ଜଗତେଣ
× × ×
ଷଷ୍ଠ ଜନ୍ମେ ମହାଦେବ ଦାସ ହେଲି ମୁହିଁ
ବିଷ୍ଣୁ କେଶରୀ ଯେ ବିଷ୍ଣୁ ପୁରାଣକୁ କହି ।
ଏ ଅନ୍ତେ ପଦ୍ମ ପୁରାଣ କରିଣ କହିଲି
ଶ୍ରୀଗୋବିନ୍ଦ କୃପାରୁ ମୁଁ ପଦ ନିର୍ବାହ କଲି ।
ସପ୍ତମ ଜନ୍ମ ଶୁଣିମା ମୋର ସାଧୁଜନେ ।
× × ×
ବିପ୍ର କୁଳେ ଜନ୍ମି ବୋଲାଇଲି ପର୍ଦ୍ଦୁବେଦୀ
କଷ୍ଟେ ନୃସିଂହ ପୁରାଣ କଲି ବଂଶ ଭେଦି ।" (୨୩)

(୨୩) ନୃସିଂହପୁରାଣ, ଦ୍ୱିତୀୟ ରତ୍ନାକର, ରାଧାରମଣ ପୁସ୍ତକାଳୟ ସଂସ୍କରଣ, ପୃ ୨୩୫

ପୀତାମ୍ବର ଦାସ ସୁପ୍ରସିଦ୍ଧ କବି ରୂପେ ବିବେଚନା କରୁଥିବା କାଳିଦାସ ପ୍ରଭୃତିଙ୍କ ଯେଉଁ ସମୟକ୍ରମ ପ୍ରକାଶ କରିଛନ୍ତି ତାହା ଭ୍ରମାତ୍ମକ । ତଥାପି ଏଥିରୁ ଏତିକି ବିଶ୍ୱାସଯୋଗ୍ୟ ତଥ୍ୟ ମିଳେ ଯେ ପୁରାଣକାର ମହାଦେବ ଦାସ, ସାରଳା ଦାସ, ବିପ୍ର ନାରାୟଣ ଦାସ, ବଳରାମ ଦାସ, ଜଗନ୍ନାଥ ଦାସଙ୍କ ପରି କବିଙ୍କ ଆବିର୍ଭାବ ପୂର୍ବରୁ ବିଶେଷ ଖ୍ୟାତି ଲାଭ କରିଥିବାରୁ କବି ନିଜକୁ ପୂର୍ବ ଜନ୍ମରେ ମହାଦେବ ଦାସ ରୂପେ ଜନ୍ମ ଲାଭ କରିଥିବା ପ୍ରକାଶ କରି ବିଶେଷ ଗର୍ବ ଓ ଗୌରବ ଅନୁଭବ କରିଛନ୍ତି । ଅତଏବ ମହାଦେବ ଦାସଙ୍କୁ ନିଃସନ୍ଦେହରେ ଦିବ୍ୟସିଂହ ଦେବଙ୍କ ସମକାଳୀନ ରୂପେ ଗ୍ରହଣ କରାଯାଇପାରେ । ସେ ମଧ୍ୟ ଏହାଙ୍କ ପୂର୍ବବର୍ତ୍ତୀ ହେବା ଅସମ୍ଭବ ନୁହେଁ ।

## ବିପ୍ର ନୀଳାମ୍ବର ଦାସ :—

ସେ ପଦ୍ମପୁରାଣ ଅନ୍ତର୍ଗତ 'ବିଷ୍ଣୁଯୋଗସାର'ର ଓଡ଼ିଆ ପଦ୍ୟାନୁବାଦ କରି ଏହାର ନାମ 'ହରିଭକ୍ତି ରତ୍ନମାଳା' ଦେଇଥିଲେ । ଏହା ଦିବ୍ୟସିଂହ ଦେବଙ୍କ ସାତ ଅଙ୍କରେ ସମାପ୍ତ ହୋଇଥିବା ଗ୍ରନ୍ଥର ଶେଷ ଆଡ଼କୁ ବର୍ଣ୍ଣିତ ହୋଇଅଛି । ଯଥା :—

"ଶ୍ରୀହରି ଭକ୍ତି ଶାସ୍ତ୍ର ପରମ ସୁଗତ, ପଦ୍ମ ପୁରାଣ ବେଖତ କରି ହୃଦଗତ ।
ହରିଭକ୍ତି ରତ୍ନମାଳା ବୋଲି ସାର, କଥା ପ୍ରବନ୍ଧେ ରଚିଲା ଦ୍ୱିଜ ନୀଳାମ୍ବର ।
× × ×
ହରିଭକ୍ତି ବିଷ୍ଣୁ ଯୋଗ ସାର ହୃଦେ ଘେନ,
ଭକ୍ତି ଭାବେ ନିତ୍ୟ ସେବା କର ଭଗବାନ ।
× × ×
**ଦିବ୍ୟସିଂହ ଦେବଙ୍କର ସପ୍ତମ ଅଙ୍କରେ,**
**ଏ ଗୀତ କଲଇ ମୁହିଁ ଥାଇ ନୀଳଗିରେ ।**
ନୀଳଗିରି ପ୍ରଭୁ ଜଗନ୍ନାଥଙ୍କ ଚରଣେ,
ଦ୍ୱିଜ ନୀଳାମ୍ବର ଦାସ ପଶିଲା ଶରଣେ ।"
(ବିଷ୍ଣୁ ଯୋଗସାର ବା ହରିଭକ୍ତି ରତ୍ନମାଳା, ଶେଷ ଅଧ୍ୟାୟ)

ଦିବ୍ୟସିଂହ ଦେବଙ୍କ ସାତଅଙ୍କ ୧୨-୯-୧୬୯୨ରୁ ୧-୯-୬୯୩ ପର୍ଯ୍ୟନ୍ତ ଚାଲିଥିଲା । ତେଣୁ ଉକ୍ତ ସମୟ ମଧ୍ୟରେ ସେ ଉକ୍ତ ଗ୍ରନ୍ଥ ସମାପ୍ତ କରିଥିଲେ । ସେ ମଧ୍ୟ ସ୍ୱୀୟ 'ଜୈମିନି ମହାଭାରତ'ରେ ନିଜକୁ ନୀଳଗିରି ନିବାସୀ ବା ପୁରୀବାସୀ ରୂପେ ପରିଚିତ କରିଛନ୍ତି । ତେମୁଣ୍ଡାରୁ ମିଳିଥିବା ଏକ 'ହରିଭକ୍ତି ରତ୍ନମାଳା' ପୋଥିରୁ ବିପ୍ର ନୀଳାମ୍ବର ନିମ୍ନଲିଖିତ ଗ୍ରନ୍ଥ ରଚନା କରିଥିବାର ଜଣାଯାଏ ।

"ବଡ଼ ମାଳାମ୍ବର ଦାସ ପଶିଲ ଶରଣ
ଏ ଗୀତ କଲି ମୁଁ ରେବୁଣା ଗ୍ରାମେ ଥାଇ
ସାଧୁଜନେ ଦୋଷ ମୋର ନ ଧରିବ କେହି ।
ଆବର କଲଇ ଜାଣ ଜୈମୁନି ଭାରତ
ଦଶ ଅବତାର କଲି କଳଙ୍କି ସହିତ ।
ହରିଭକ୍ତିଉପଦେଶ କଲି ରସିକମଞ୍ଜରୀ
ରାମଲୀଳା, କୃଷ୍ଣଲୀଳା ଛାନ୍ଦ ରୂପେ କରି ।
ଶ୍ରୀହରି ଭକତ ହେ ରସିକ ଜନେ ଶୁଣ
ଗାୟନେ ମୋହର ଦୋଷ ନ ଧରିବ ପୁଣ ।"

ପୋଥିର ଲେଖନକାର ରେବୁଣା ବା ବାଲେଶ୍ୱର ଜିଲ୍ଲାର ରେମୁଣା ନିବାସୀ ଥିବାରୁ 'ମାଳଗିରି' ସ୍ଥାନରେ ରେବୁଣା ବୋଲି ଲେଖିଛନ୍ତି । କିନ୍ତୁ ଅନ୍ୟ ପୋଥି ଗୁଡ଼ିକରେ ଏହା 'ମାଳଗିରି' ବା ପୁରୀରେ ରଚିତ ହୋଇଥିବାର ସ୍ପଷ୍ଟ ଉଲ୍ଲେଖ ଅଛି । ତାଙ୍କ କୃତ 'ଦଶଅବତାର'; 'ହିତୋପଦେଶ'; 'ରସିକମଞ୍ଜରୀ'; 'ରାମଲୀଳା' ଓ କୃଷ୍ଣଲୀଳା'ର ସନ୍ଧାନ ଏ ପର୍ଯ୍ୟନ୍ତ ମିଳିନାହିଁ ।

'ଦାର୍ଢ୍ୟତାଭକ୍ତି'ରେ ବଡ଼ ମାଳାମ୍ବର ଦାସ ନାମକ ଉତ୍ତର ଖଣ୍ଡ ବାସୀ ଭକ୍ତ ପୁରୀକୁ ଜଗନ୍ନାଥ ଦର୍ଶନ ନିମିତ୍ତ ଆସି ସେଠାରେ ମାନବଲୀଳା ସମ୍ବରଣ କରିଥିବାର ବିବରଣ ମିଳେ । ପୁରୀ ନିବାସୀ ଓଡ଼ିଆ ଭକ୍ତକବି ମାଳାମ୍ବରଙ୍କୁ ରାମ ଦାସ ବୋଧହୁଏ ଶୁଣାକଥା ଉପରେ ନିର୍ଭର କରି ଉତ୍ତର ଖଣ୍ଡର ଲୋକ ବୋଲି ଲେଖିଛନ୍ତି । 'ବ୍ରହ୍ମସ୍ତୁତି' ଓ 'ପୁରୁଷୋତ୍ତମ ଦେଉଳ ତୋଳା' ତାଙ୍କ ଦ୍ୱାରା ରଚିତ ହୋଇଥିବାର ଜଣାଯାଏ । ଜନୈକ ବଡ଼ ମାଳାମ୍ବର ଦାସଙ୍କ ଦ୍ୱାରା ରଚିତ ହରିବଂଶ ପୋଥି ମିଳୁଅଛି । ଏହାର ଭାଗବତର ଅଂଶ ବିଶେଷ । ଯଥା —

"ଶ୍ରୀକମଳଦେବଙ୍କ ଚରଣେ, ଶରଣ ବଡ଼ ମାଳା ହୀନ ।
ସେ ପ୍ରଭୁ ଚରଣ ପଙ୍କଜେ, ମାଳାର ମନଭୃଙ୍ଗ ଭଜେ ।"

ଇତି ଶ୍ରୀମଦ୍ ଭାଗବତେ ଦଶମସ୍କନ୍ଧେ ହରିବଂଶ ଚରିତେ ହାସ୍ୟକାଳୀକା ଗ୍ରନ୍ଥ ସଂପୂର୍ଣ୍ଣ ନାମ ସପ୍ତତ୍ରିଂଶ ଅଧ୍ୟାୟ" । 'ହରିବଂଶ' ପ୍ରଣେତା ବଡ଼ ମାଳାମ୍ବର ଓ ''ହରିସ୍ମୃତିଯୋଗ ସାର' ରଚୟିତା ବଡ଼ ମାଳାମ୍ବର ଏକ ଓ ଅଭିନ୍ନ ଥିବାର ମନେହୁଏ । ପଣ୍ଡିତ ବିନାୟକ ମିଶ୍ର ତାଙ୍କୁ ପଞ୍ଚଦଶ ଶତାବ୍ଦୀର କବି ରୂପେ ଗ୍ରହଣ କରିଛନ୍ତି । କିନ୍ତୁ କବିଙ୍କ ଉକ୍ତି ଅନୁଯାୟୀ ସେ ସପ୍ତଦଶ ଶତାବ୍ଦୀର ଶେଷ ଭାଗରେ ଆବିର୍ଭୂତ ହୋଇଥିଲେ । ତେଣୁ ପଣ୍ଡିତ ମିଶ୍ରଙ୍କ ସମୟ ନିର୍ଦ୍ଧାରଣ ଗ୍ରହଣୀୟ ନୁହେଁ । (୨୪)

(୨୪) ଓଡ଼ିଆ ସାହିତ୍ୟର ଇତିହାସ, ପୃ ୩୦

**ନାରାୟଣ ଦାସ:—**

ନାରାୟଣ ଦାସ ଶ୍ରୀରାଧା କୃଷ୍ଣ ଲୀଳା ସମ୍ବନ୍ଧରେ 'ପଞ୍ଚାମୃତସିନ୍ଧୁ ବା 'ପ୍ରେମ ପଞ୍ଚାମୃତସିନ୍ଧୁ' ନାମକ ଖଣ୍ଡିଏ ଗ୍ରନ୍ଥ ରଚନା କରିଥିଲେ । ଏହା ତେତିଶଟି ଅଧ୍ୟାୟ ବା ବନ୍ଧରେ ବିଭକ୍ତ । ଏହା ଶେଷରେ ପୁଷ୍ପିକା ହେଉଛି "ଇତି ଶ୍ରୀ ପଞ୍ଚାମୃତସିନ୍ଧୁ ରାଧାକୃଷ୍ଣ ମିଳନେ ନାରାୟଣ ଦାସ ବିରଚିତେ ତ୍ରୟୋଦଶ ବନ୍ଧଃ ।" ଶ୍ରୀ ଦିବ୍ୟସିଂହ ଦେବଙ୍କ ୩୩ଅଙ୍କେ ଆଶ୍ୱିନ କୃଷ୍ଣ ପଞ୍ଚମୀ ମଙ୍ଗଳବାରେ ଏ ପୁସ୍ତକ ସଦା ଜୟେ ସଂପୂର୍ଣ୍ଣ ହେଲା । ଗଣନା ଅନୁସାରେ ୧୭୧୫ ଖ୍ରୀଷ୍ଟାବ୍ଦ ସେପ୍‌ଟେମ୍ବର ମାସ ୭ତାରିଖରେ ପ୍ରଥମ ଦିବ୍ୟସିଂହ ଦେବଙ୍କ ୩୩ଅଙ୍କ ଆଶ୍ୱିନ, କୃଷ୍ଣ ପଞ୍ଚମୀ ମଙ୍ଗଳବାର ପଡ଼ିଥିଲା । (୨୫) ପ୍ରକୃତରେ ୩୦.୮ ୧୭୧୫ରୁ ତାଙ୍କର ୩୩ଅଙ୍କ ସରିଯାଇଥିଲା । ଲିପିକାର ଅଜ୍ଞତା ଯୋଗୁଁ ଏଠାରେ ୩୩ଅଙ୍କ ଲେଖିଛି । ଏହା ଗ୍ରନ୍ଥର ରଚନା ବା ନକଲ ସମୟ ତାହା ଠିକ୍ ରୂପେ ଜଣାଯାଉ ନାହିଁ । ନକଲ ସମୟ ହୋଇଥିଲେ ଉକ୍ତ ଗ୍ରନ୍ଥ ଏହା ପୂର୍ବରୁ ନିଶ୍ଚୟ ରଚିତ ହୋଇଥିବ । ରଚନା କାଳ ହୋଇଥିଲେ କବି ପ୍ରଥମ ଦିବ୍ୟସିଂହ ଦେବଙ୍କ ରାଜତ୍ୱର ଶେଷ କାଳରେ ଉକ୍ତ ଗ୍ରନ୍ଥ ରଚନା କରିଥିଲେ । ଜନୈକ କବିଶେଖର ନାରାୟଣ ଦାସ ପାଞ୍ଚ ପଟଳରେ ସଂପୂର୍ଣ୍ଣ 'ପଞ୍ଚଶାୟକ ଗ୍ରନ୍ଥ' ଅନୁବାଦ କରିଥିବାର ଜଣାଯାଏ ।

**ପୀତାମ୍ବର ଦେବ:—**

ପୀତାମ୍ବର ଦେବ 'ଅଖିଳ ରସ ଚିନ୍ତାମଣି' ନାମକ ଏକ କାବ୍ୟ ରଚନା କରିଥିଲେ । ଏହାର ପ୍ରତ୍ୟେକ ପାଦ 'ଅ' ଅକ୍ଷରରେ ଆରମ୍ଭ ହୋଇଛି । ଏହା ଅଷ୍ଟାଦଶ 'କରଣ' ବା ଅଧ୍ୟାୟରେ ବିଭକ୍ତ । ଏହାର ଶେଷ କରଣରେ କବି ନିଜର ବଂଶ ପରିଚୟ ଦେଇଛନ୍ତି ।

"ଅବନୀଧର **ଶ୍ରୀ ରାମଚନ୍ଦ୍ର ଦେବ ଶ୍ରୀ କୃଷ୍ଣଦେବ ତେଜ୍ୟଷ୍ଟାତ୍ମଜ ।**
**ଅମଳ ଶଙ୍କର ବଂଶ ସୁଧାକର** ନୃପକୁଳ ଅମର ରାଜ ।
ତାହାଙ୍କ ଅନୁଜ ଇତି ଅଧମ
ଅଗ୍ରଦେବ ପଦ ଆଶ୍ରିତ ପ୍ରସିଦ୍ଧ, **ପୀତାମ୍ବର ଦେବ ମୋ ନାମ"**

ଶଙ୍କର ବଂଶୀୟ କୃଷ୍ଣଦେବ ମହାରାଜା
|
(ପ୍ରଥମ) ରାମଚନ୍ଦ୍ର ଦେବ — ପୀତାମ୍ବର ଦେବ

(25) An Indian Ephemeris Vol. VI, P-233

ପ୍ରାଚୀନ ଉତ୍କଳରେ କେବଳ ନନ୍ଦପୁର ବା ଜୟପୁର (ବର୍ତ୍ତମାନ କୋରାପୁଟ ଜିଲ୍ଲା) ରାଜ୍ୟରେ ଶଙ୍କର ବଂଶ ରାଜତ୍ଵ କରୁଥିଲେ । ଉକ୍ତ ବଂଶୀୟ ରଘୁନାଥ କୃଷ୍ଣ ବା ସାନ କୃଷ୍ଣ ଦେଓ ୧୬୮୬ରୁ ୧୭୦୮ ପର୍ଯ୍ୟନ୍ତ ରାଜତ୍ଵ କରିଥିଲେ । ତତ୍ ପରେ ତାଙ୍କ ପୁତ୍ର ପ୍ରଥମ ରାମଚନ୍ଦ୍ର ଦେବ ନନ୍ଦପୁର ବା ଜୟପୁରର ଅଧିପତି ହେଲେ (୧୭୦୮-୧୭୧୧) (୨୬) କବି ଗୀତମ୍ବର ଦେବ ନିଜର ଜ୍ୟେଷ୍ଠ ଭ୍ରାତା ବା ଅଗ୍ରଦେବଙ୍କ ଆଶ୍ରିତରେ ରହି ଗ୍ରନ୍ଥ ରଚନା କରିଥିବା ଉକ୍ତ । ଏକ ପଂକ୍ତିରେ ସ୍ଵୀକାର କରିଛନ୍ତି । ଅନ୍ୟତ୍ର ମଧ୍ୟ ସେ ଲେଖିଛନ୍ତି **'ଅଗ୍ରଦେବ ପଦ ରାଜୀବ ପଦକ କରିହୃଦେ"** । ଅତଏବ ତାଙ୍କର ଅଗ୍ରଜ ରାମଚନ୍ଦ୍ର ଦେବଙ୍କ ରାଜତ୍ଵ କାଳ ମଧ୍ୟରେ (୧୭୦୮-୧୭୧୧) ଉକ୍ତ ଗ୍ରନ୍ଥ ରଚିତ ହୋଇଥିଲା । କିନ୍ତୁ କୁମାର ବିଦ୍ୟାଧର ସିଂହଙ୍କ ଦ୍ଵାରା ନିର୍ଦ୍ଧାରିତ ରାଜତ୍ଵ କାଳ ଅଭ୍ରାନ୍ତ ନୁହେଁ । କାରଣ ମହାରାଜ କୃଷ୍ଣଦେବ ଈଶ୍ଵର, ବହୁଧାନ୍ୟ ଓ ଶର୍ବରୀ ନାମକ ତିନୋଟି ବାର୍ହସ୍ପତ୍ୟ ସମ୍ବତ୍ସରରେ ତିନଖଣ୍ଡ ତମ୍ବାପଟା ଦାନ କରିଥିଲେ । ସେଗୁଡ଼ିକର ସମୟ ହେଉଛି ଯଥାକ୍ରମେ ୧୬୯୭, ୧୬୯୮ ଓ ୧୭୧୦ ଖ୍ରୀଷ୍ଟାବ୍ଦ । ତେଣୁ ୧୭୧୦ ଖ୍ରୀଷ୍ଟାବ୍ଦ ପୂର୍ବରୁ ଉକ୍ତଗ୍ରନ୍ଥ ରଚିତ ହୋଇଥିଲା । ଉକ୍ତ ଗ୍ରନ୍ଥର ପ୍ରକୃତ ପ୍ରଣେତା ହେଉଛନ୍ତି 'ରାମଦାସ' ନାମକ ଜନୈକ କବି । ଯଥା— "ଅଠଷଠି ପଦେ ଶ୍ରୀ ରାମ ଦାସ ଭଣିଲ ମୋଦେ ।" କବି ଶ୍ରୀରାମ ଦାସଙ୍କ ପରିଚୟ ଏପର୍ଯ୍ୟନ୍ତ ଜଣା ଯାଇନାହିଁ । ଗୀତାମ୍ବର ଦେବ ଜୟପୁର ଅଞ୍ଚଳର ଏପର୍ଯ୍ୟନ୍ତ ଜ୍ଞାତ କବିମାନଙ୍କ ମଧ୍ୟରେ ପ୍ରାଚୀନତମ ।

## ରାଜକବି ଯଦୁମଣି ରାଉତରାୟ:—

ଯଦୁମଣି ରାଉତରାୟ ଗଞ୍ଜାମ ଜିଲ୍ଲାସ୍ଥ ଟିକିଟୀ ରାଜବଂଶର ଜଣେ ପ୍ରାଚୀନ ନରପତି । ଉକ୍ତ ରାଜବଂଶରେ ସେ ପ୍ରଥମେ ଓଡ଼ିଆ ସାହିତ୍ୟର ଉନ୍ନତି ପାଇଁ ଉଦ୍ୟମ କରି ଅକ୍ଷୟ ଯଶଃ ଅର୍ଜନ କରିଥିଲେ । ସେ ଓଡ଼ିଆ ଓ ସଂସ୍କୃତ ଭାଷାରେ **'କବି କଳ୍ପଦ୍ରୁମ'** ନାମକ ଏକ ଅଭିନବ ଅଳଙ୍କାର ଗ୍ରନ୍ଥ ରଚନା କରିଥିଲେ । ତାଙ୍କ ବହୁ ପୂର୍ବରୁ ଭାରତ ପ୍ରସିଦ୍ଧ ଉତ୍କଳୀୟ ପଣ୍ଡିତଶିରୋମଣି ବିଶ୍ଵନାଥ କବିରାଜ କୃତ 'ସାହିତ୍ୟ ଦର୍ପଣ' ଶ୍ରେଷ୍ଠ ଅଳଙ୍କାର ଗ୍ରନ୍ଥ ରୂପେ ଉତ୍କଳୀୟ ତଥା ଭାରତୀୟ ସଂସ୍କୃତ ପଣ୍ଡିତ ମଣ୍ଡଳୀରେ ବିଶେଷ ଆଦୃତ ହୋଇଥିଲା । ରାଜକବି ଯଦୁମଣି ଓଡ଼ିଆ ଭାଷାରେ ଅଳଙ୍କାର ଶାସ୍ତ୍ରର ଏକାନ୍ତ ଅଭାବ ଲକ୍ଷ୍ୟ କରି ସ୍ଵଦେଶ ଭାଷାରେ 'କବିକଳ୍ପଦ୍ରୁମ' ରଚନା କରିଥିଲେ । ଯଥା:—

"ପ୍ରକଟ ଟିକିଟୀ ରାଜ୍ୟ ରାଜା କବିବର
ସକଳ ଶାସ୍ତ୍ର କୁଶଳ ଧୀର ମହାବୀର ଯେ

---

(26) Nandapur by Kumar Bidyadhar Singh Deo

ରାଜଉତଗସ୍ତ ବବେକ ନାମ ଯଦୁମଣି
ସର୍ବ କାବ୍ୟ ଶାସ୍ତ୍ର କବ ଶିଷା ମନେ ଗୁଣି ହେ
କବ ଜନ ହତେ 'କବକଳ୍ପଦ୍ରୁମ ନାମ'
ସ୍ୱଦେଶ ଭାଷାରେ କଲେ ଏ ଗ୍ରନ୍ଥ ଉତ୍ତମ ଯେ ।"

ଯଦୁମଣି ମୁଖ୍ୟତଃ 'ସାହିତ୍ୟ ଦର୍ପଣ' ଅବଲମ୍ବନରେ ଉକ୍ତ ଗ୍ରନ୍ଥ ପ୍ରଣୟନ କରିଥିଲେ ମଧ୍ୟ ବାମନ ପ୍ରମୁଖ ଅନ୍ୟାନ୍ୟ ପ୍ରସିଦ୍ଧ ଆଳଙ୍କାରିକମାନଙ୍କ ମତ ମଧ୍ୟ ଆଲୋଚନା କରିଛନ୍ତି । ନୃତ୍ୟ ନିରୂପଣ ପ୍ରସଙ୍ଗରେ ସେ ଷୋଡ଼ଶ ଶତାବ୍ଦୀରେ ଆବିର୍ଭୂତ ଉତ୍କଳୀୟ କୃଷ୍ଣଦାସ ବଡ଼ଜେନା ମହାପାତ୍ରଙ୍କ ରଚିତ 'ଗୀତପ୍ରକାଶ' ଓ ଉତ୍କଳରେ ରଚିତ 'ସଂଗୀତ କୌମୁଦୀ' ଗ୍ରନ୍ଥର ସାହାଯ୍ୟ ଗ୍ରହଣ କରିଛନ୍ତି । ଗ୍ରନ୍ଥଟି ଆଠଟି ପ୍ରକାଣ୍ଡ ବା ଭାଗରେ ବିଭକ୍ତ । ପ୍ରଥମ ଛଅଟି ପ୍ରକାଣ୍ଡ ଓଡ଼ିଆ ଭାଷାରେ ଯଥାକ୍ରମେ ମଙ୍ଗଳ ଗୁର୍ଜରୀ, ବସନ୍ତ, ଗୈରୀ, ମାଳିଗୌଡ଼ା, ବଙ୍ଗାଳ ଶ୍ରୀ ଚକ୍ରକେଳୀ ରାଗରେ ରଚିତ । (ଷଷ୍ଠ ପ୍ରକାଣ୍ଡର ଶେଷ ଅଂଶକୁ ବାଦ୍ ସଂସ୍କୃତ ଶ୍ଳୋକ ଅଛି ) ଏବଂ ସପ୍ତମ ଓ ଅଷ୍ଟମ ପ୍ରକାଣ୍ଡ ବିଭିନ୍ନ ସଂସ୍କୃତ ଛନ୍ଦରେ ରଚିତ । ଗ୍ରନ୍ଥଟିର ଆଠଟି ପ୍ରକାଣ୍ଡ ମଧ୍ୟରୁ ପ୍ରଥମ ପ୍ରକାଣ୍ଡରେ କାବ୍ୟସ୍ୱରୂପନିରୂପଣ, ଦ୍ୱିତୀୟ ପ୍ରକାଣ୍ଡରେ ଗୁଣାଦି ନିରୂପଣ, ତୃତୀୟ ପ୍ରକାଣ୍ଡରେ ଶବ୍ଦର ବୈଶିଷ୍ଟ୍ୟ ନିରୂପଣ, ଚତୁର୍ଥ ପ୍ରକାଣ୍ଡରେ ବର୍ଣ୍ଣନୀୟ ବସ୍ତୁ ନିରୂପଣ, ପଞ୍ଚମ ପ୍ରକାଣ୍ଡରେ ବର୍ଣ୍ଣ୍ୟ ବର୍ଣ୍ଣନ ନିରୂପଣ, ଷଷ୍ଠ ପ୍ରକାଣ୍ଡରେ ରାଗ ସଙ୍ଗୀତର ଭେଦ ବିଶେଷ ନିରୂପଣ, ସପ୍ତମ ପ୍ରକାଣ୍ଡରେ ଗୀତ ନିରୂପଣ ଓ ଅଷ୍ଟମ ପ୍ରକାଣ୍ଡରେ ନୃତ୍ୟ ନିରୂପଣ କରାଯାଇଛି । 'କବିକଳ୍ପଦ୍ରୁମ' ରାଜକବି ଯଦୁମଣିଙ୍କର ଏକ ଅନବଦ୍ୟ କୃତି । ଏଥିରେ ଲକ୍ଷଣ ଗୁଡ଼ିକର ଉଦାହରଣ ଦିଆଯାଇଥିଲେ ଏହା ଏକ ପୂର୍ଣ୍ଣାଙ୍ଗ ଓଡ଼ିଆ ଅଳଙ୍କାର ଗ୍ରନ୍ଥ ରୂପେ ବିବେଚିତ ହୋଇଥାନ୍ତା । ପୂର୍ଣ୍ଣାଙ୍ଗ ନହେଲେ ମଧ୍ୟ ଏହା ଓଡ଼ିଆ ଭାଷାରେ ରଚିତ ସର୍ବପ୍ରଥମ ଅଳଙ୍କାର ଗ୍ରନ୍ଥ ରୂପେ ବର୍ତ୍ତମାନ ଗ୍ରହଣୀୟ ।

କବି ଯଦୁମଣି ଏହି ମହନୀୟ କୃତିର ରଚନା କାଳ କୁଆପି ଉଲ୍ଲେଖ କରିନାହାନ୍ତି । ତେଣୁ ପରୋକ୍ଷ ପ୍ରମାଣ ବଳରେ ତାଙ୍କର କାଳ ନିରୂପଣ କରାଯାଇ ପାରେ । ତାଙ୍କ ପୌତ୍ର କୁଳମଣି ରାଜେନ୍ଦ୍ରଙ୍କ ରାଜତ୍ୱ କାଳରେ ପ୍ରଦତ୍ତ ଦୁଇଖଣ୍ଡ ତମ୍ବାପଟାର ସମୟ ହେଉଛି ଯଥାକ୍ରମେ ୧୭୮୧ ଖ୍ରୀଷ୍ଟାବ୍ଦ ଓ ୧୭୬୮ ଖ୍ରୀଷ୍ଟାବ୍ଦ । ତେଣୁ ତାଙ୍କର ପିତାମହ ଯଦୁମଣିଙ୍କୁ ନିଃସନ୍ଦେହରେ ଗଜପତି ଦିବ୍ୟସିଂହ ଦେବଙ୍କ ସମକାଳୀନ ରୂପେ ଗ୍ରହଣ କରାଯାଇପାରେ । ସେ ପ୍ରଥମେ ରାଜେନ୍ଦ୍ର ଦେବ ପଦବୀରେ ମଣ୍ଡିତ ହୋଇଥିଲେ । ବୋଧହୁଏ ଗଜପତି ଦିବ୍ୟସିଂହ ଦେବଙ୍କୁ ଅସମୟରେ ସାହାଯ୍ୟ କରିଥିବାରୁ ତାଙ୍କୁ ଏହି ଗୌରବାସ୍ପଦ ପଦବୀ ପ୍ରଦତ୍ତ ହୋଇଥିଲା ।

ନୃସିଂହ ରାଉତରାୟ
|
ଲୋକନାଥ ରାଉତରାୟ
|
ଯଦୁମଣି ରାଉତରାୟ (ପରେ ରାଜେନ୍ଦ୍ର ଦେବ ପଦବୀ ଧାରଣ କରିଥିଲେ )
|
ମଧୁସୂଦନ ରାଜେନ୍ଦ୍ର ଦେବ
|
କୁଳମଣି ରାଜେନ୍ଦ୍ର ଦେବ (୧୭୪୪, ୧୭୬୮)
|
କବି କୃଷ୍ଣଚନ୍ଦ୍ର ରାଜେନ୍ଦ୍ର ଦେବ (୧୭୬୮, ୧୭୮୦)
|
କବି ପୀତାମ୍ବର ରାଜେନ୍ଦ୍ର ଦେବ

ଉକ୍ତ ଗ୍ରନ୍ଥ ପାଠରୁ ଜଣାଯାଏ ଯେ ଗଦାଧର ଦାସ ନାମକ ଜନୈକ ପଣ୍ଡିତ ତାଙ୍କୁ ଗ୍ରନ୍ଥ ରଚନାରେ ସାହାଯ୍ୟ କରିଥିଲେ । ଯଥା—

"ସେ ପ୍ରଭୁ ଚରଣ ପଙ୍କଜ ବେନି
**ଗଦାଧର ଦାସ** ମସ୍ତକେ ଘେନି ।"

(ଷଷ୍ଠ ପ୍ରକାଣ୍ଡ, ପଞ୍ଚମ ପଦ)

"ଶୁଦ୍ଧ ଗୀତମାନ ଏସନ ଖ୍ୟାତ
ଗୀତେ **ଗଦାଧର** ଦାସ ଭଣନ୍ତ ।"

(ଷଷ୍ଠ ପ୍ରକାଣ୍ଡ, ୪୦ଶ ପଦ)

ଚୈତନ୍ୟଗୀତା ପ୍ରଣେତା ଦେବାନନ୍ଦ ଦାସ ଜନୈକ ଗଦାଧରଙ୍କ ଶିଷ୍ୟ ଥିଲେ (ମୁଁ **ଗଦାଧର ଦାସ** ଶିଷ୍ୟ, ଶ୍ରୀରାମ ଚରଣେ ମୋ ଆଶ) । ଦେବାନନ୍ଦଙ୍କ ଗୁରୁ ଗଦାଧର ଦାସ ଓ ଯଦୁମଣିଙ୍କ ଆଶ୍ରିତ ଗଦାଧର ଦାସଙ୍କ ଅଭିନ୍ନତ୍ୱ ପ୍ରତିପାଦନ ଅଧିକ ଗବେଷଣା ସାପେକ୍ଷ ।

**କୁଞ୍ଜବିହାରୀ ଭ୍ରମରବର :—**

କୁଞ୍ଜବିହାରୀ ଭ୍ରମରବର ରାୟ ଢେଙ୍କାନାଳ ରାଜା କବି ନୃସିଂହ ଭ୍ରମରବରଙ୍କ ପୁତ୍ର ଥିଲେ । ସେ କବିବର 'ବନ୍ଧୁ ଦାସ' କୃତ 'ପ୍ରେମଲୋଚନା' କାବ୍ୟର ଗୌରବ ବୃଦ୍ଧି କରିବା ପାଇଁ ୨୮ ଛାନ୍ଦ ବିଶିଷ୍ଟ 'ପ୍ରେମଶୀଳା' ନାମକ

ଏକ ବୃହତ୍ କାଳ୍ପନିକ କାବ୍ୟ ରଚନା କରିଥିଲେ । ଏହି ଅପ୍ରକାଶିତ ଗ୍ରନ୍ଥର ପୋଥି ପ୍ରାଦେଶିକ ମିଉଜିୟମରେ ସଂରକ୍ଷିତ । ଏହା ଭବ୍ୟସିଂହ ଦେବଙ୍କ ରାଜତ୍ୱରେ ବୋଧହୁଏ ମଧ୍ୟ ଭାଗରେ ରଚିତ ହୋଇଥିଲା । କବି ନିଜର ପରିଚୟ ବିଭିନ୍ନ ଛାନ୍ଦର ଶେଷ ଆଡ଼କୁ ଦେଇଛନ୍ତି । ସେଥିରୁ କେତେକ ଉପଯୋଗୀ ଅଂଶ ନିମ୍ନରେ ଉଦ୍ଧାର କରାଗଲା । ଯଥା :—

"ସିଂହ ବିଦ୍ୟାଧର କୁଳ ଜଳନିଧି ଚନ୍ଦ୍ର,
ଭୀମପୁର ଗିରିଦରୀ ସମର ପାରୀନ୍ଦ୍ର ହେ ।
ନୃସିଂହ ଭ୍ରମରବର ରାଜପ୍ରିୟ ସୁତ
ଧର୍ମ ବିଷୟରେ ଅବିରତ ଦତ୍ତଚିତ୍ତ ।
ଗୋବ୍ରାହ୍ମଣ ବଇଷ୍ଣବ ପୂଜନେ ତତ୍ପର
ଶ୍ରୀଗୁରୁ ଆଜ୍ଞା ପାଳନେ ଅତି ତତ୍ପର ହେ ।
ରାଧାକୃଷ୍ଣ ଚରଣାରବିନ୍ଦ ମଧୁକର
ନୃପତି ଗଣ କୁମୁଦବୃନ୍ଦ ଚନ୍ଦ୍ରକର ହେ ।
ଜଗତ ବିଦିତ କୀର୍ତ୍ତି ଗୁଣ ଅଭିଳାଷୀ
ନ୍ୟାୟରେ ପ୍ରଜା ପାଳନ ଅନ୍ୟାୟ ବିନାଶି ହେ ।
କୁଞ୍ଜବିହାରୀ ଭ୍ରମରବର ବିପ୍ର ମନ
ରାଧାକୃଷ୍ଣ ବିନା ଆଉ ନ ଜାଣଇ ଆନ ହେ ।
(ପ୍ରଥମ ଛାନ୍ଦ ଶେଷ)

କୁଞ୍ଜବିହାରୀ ଚିନ୍ତି ଭୀମପୁର ନୃପତି
କୁଞ୍ଜବିହାରୀ ରତିପୂତ । (ଏକାଦଶ ଛାନ୍ଦ ଭଣିତା)

ଢେଙ୍କାନାଳ ନରେଶ ଭ୍ରମରବର
ଚିନ୍ତା କରଇ ରାଧାକୃଷ୍ଣ ପୟର ହେ । (ଦ୍ୱାଦଶ ଛାନ୍ଦ ଭଣିତା)

"ବିଷ୍ଣୁଦାସ ଆଦି ଯେତେ ଛାନ୍ଦକାରୀ କବି
ତାହାଙ୍କ ଶବ୍ଦ ପଦ୍ଧତି ଖଣ୍ଡ କରି ପଦ ।
କୃଷ୍ଣ ଆଶ୍ରୟରୁ ଯାର ବଶୀଭୂତ ବାଣୀ
କୁଞ୍ଜବିହାରୀ ଭ୍ରମରବର ରାୟେ ଭଣି ।"
(ଷୋଡ଼ଶ ଛାନ୍ଦ ଭଣିତା)

ଭୀମନଗରୀ ଗିରିଦର ପାରୀନ୍ଦ୍ର
ସିଂହକୁଳ ଜଳଧି ସଂପୂର୍ଣ୍ଣଚନ୍ଦ୍ର ଯେ ।

ରଚିଲେ ଗ୍ରନ୍ଥ ଚନ୍ଦ୍ର ଶ୍ରୀଧର
**କୁଞ୍ଜବିହାରୀ ଭ୍ରମରବର ରାୟେ**
**ଅନୁଜ ଗଜପତିର ନୃପତିଇନ୍ଦ୍ର ଯେ**
(ଏକବିଂଶ ଗ୍ରନ୍ଥ ଭଣିତା)

କୁଞ୍ଜ ବିହାରୀ ନରପତିବର, **ପଦବୀରେ ରାୟ ଭ୍ରମରବର**
**ବ୍ରଜବିହାରୀ ବୀରସିଂହ ଯାର,** ଆତ୍ମଜ ଆତ୍ମବତ ପ୍ରିୟବ୍ରତର ।
ଯେ ଗ୍ରନ୍ଥ ରଚନା
କଲେ ହୋଇଣ ସେ କୃଷ୍ଣୈକମନା ।
(ସପ୍ତବିଂଶ ଗ୍ରନ୍ଥ ଭଣିତା)

ଉଦ୍ଧୃତ ପଦ୍ୟାଂଶ ଗୁଡିକରୁ ଜଣାଯାଏ ଯେ ଗ୍ରନ୍ଥ କର୍ତ୍ତା କୁଞ୍ଜବିହାରୀ ଭ୍ରମରବର ରାୟ ସିଂହବିଦ୍ୟାଧର କୁଳ ପ୍ରସୂତ ନୃସିଂହ ଭ୍ରମରବରଙ୍କ ପୁତ୍ର ଥିଲେ ଏବଂ ତାଙ୍କ ପୁତ୍ରଙ୍କ ନାମ ବ୍ରଜବିହାରୀ ବୀରସିଂହ । କୁଞ୍ଜବିହାରୀ ଖୁର୍ଦ୍ଧା ଗଜପତିଙ୍କ ଦୂର ସଂପର୍କୀୟ ଅନୁଜ ବା ସାନଭାଇ ଥିଲେ । କାରଣ ଉଭୟ ଉତ୍କଳର ପ୍ରସିଦ୍ଧ ବିଦ୍ୟାଧର ବଂଶରେ ଜାତ । ଢେଙ୍କାନାଳ ରାଜା ଶ୍ରୀମନଗରୀ ବା ଶ୍ରୀମପୁର ରାଜା ରୂପେ ପରିଚିତ ଥିଲେ । କାରଣ ଗଙ୍ଗ ରାଜତ୍ୱ କାଳରୁ ଢେଙ୍କାନାଳ ଅଞ୍ଚଳର ନାମ ଥିଲା 'ଶ୍ରୀମନଗରୀ ଦଣ୍ଡପାଟ' । କୁଞ୍ଜବିହାରୀ ଜଣେ ଶକ୍ତିଶାଳୀ, ନ୍ୟାୟବନ୍ତ, କୃଷ୍ଣୈକମନା ସୁଶାସକ ଥିଲେ ।

## ରତ୍ନାକର ଦାସ ବା ରତ୍ନ ଦାସ :—

ରତ୍ନାକର ଦାସ 'ସାରସ୍ୱତଗୀତା'ର ପ୍ରଣେତା ରୂପେ ପ୍ରଖ୍ୟାତ । ଏଥିରେ ସେ ଯୋଗଶାସ୍ତ୍ର ଓ ଧର୍ମତତ୍ତ୍ୱ ସମ୍ବନ୍ଧୀୟ ନିଗୂଢ଼ ବିଷୟ ଅତି ସରଳ ନବାକ୍ଷରୀ ବୃତ୍ତରେ ବୁଝାଇ ଦେଇଛନ୍ତି । କବି ନିଜର ନିମ୍ନୋକ୍ତ ବଂଶ ପରିଚୟ ପ୍ରଦାନ କରିଛନ୍ତି —

"ଶ୍ୟାମସୁନ୍ଦର ପୁତ୍ର ମୂର୍ତ୍ତି, ହୀନ ରତ୍ନ ଦାସ ବୋଲଇ ।
ମାତାଙ୍କ ନାମେ ଅପଦାସୀ, ଶ୍ରୀଧର ପାଦେ ଦାସ-ଦାସୀ ।
ତାହାଙ୍କ ଗର୍ଭ ଜାତ ମୂର୍ତ୍ତି, ଜାତିରେ ଭୁଲିଆ ଅଟଇ ।

× × ×

ମୁଁ ଗୁରୁ ଜାତି ଲୁଗାବୁଣା, ପୂଜା ମୋ'ରେ ଚଳମନା । (୧୪ଶ ଅଧ୍ୟାୟ)
କହଇ ହୀନ ରତ୍ନ ଦାସ, ଶ୍ୟାମ ଦାସର ଜ୍ୟେଷ୍ଠ ଶିଷ୍ୟ ।
(୧୮ଶ ଅଧ୍ୟାୟ)

ଲୁଗାବୁଣାଳୀ ଭୂଲିଆ ମାନେ ସମ୍ବଲପୁର ପାଟଣା- ସୋନପୁର ଅଞ୍ଚଳରେ ବହୁ ସଂଖ୍ୟାରେ ଦେଖାଯାନ୍ତି । ତେଣୁ କବିଙ୍କୁ ଉକ୍ତ ଅଞ୍ଚଳର ଅଧିବାସୀ ରୂପେ ଗ୍ରହଣ କରିବା ସର୍ବଥା ଯୁକ୍ତିଯୁକ୍ତ ।

ତାଙ୍କ ସମୟ ସମ୍ବନ୍ଧରେ ଗ୍ରନ୍ଥରେ କୁତ୍ରାପି ଉଲ୍ଲେଖ ନାହିଁ । କିନ୍ତୁ ମିଉଜିୟମରେ ଥିବା ଖଣ୍ଡିଏ ପୋଥିରେ ଜନୈକ କୃଷ୍ଣଦାସ ରତ୍ନାକର ଦାସଙ୍କ ଶିଷ୍ୟ ରୂପେ ବର୍ଣ୍ଣିତ ହୋଇଛନ୍ତି ।

"ଷୋଳପଦ୍ମ ଗୀତ ଏ ଗୁରୁ ଉପଦେଶ
**କୃଷ୍ଣଦାସ ଆଗରେ ଫେଡ଼େ ରତ୍ନାକର ଦାସ ।"**

ଓଡ଼ିଆ ସାହିତ୍ୟ ଇତିହାସରେ ଏକାଧିକ ଘନକୃଷ୍ଣଙ୍କ ନାମ ମିଳେ— 'ରସକଲ୍ଲୋଳ' ପ୍ରଣେତା ଘନକୃଷ୍ଣ, ଜଳେଶ୍ୱରବାସୀ ରାଜପୁତ ଜାଗିର ମଧୁସୂଦନଙ୍କ ଜ୍ୟେଷ୍ଠ ପୁତ୍ର 'ରସବିନୋଦ' ପ୍ରଭୃତି ବହୁ ଗ୍ରନ୍ଥ ପ୍ରଣେତା କୃଷ୍ଣ ଦାସ, ଏକାଦଶୀ ମାହାତ୍ମ୍ୟ ପ୍ରଣେତା **ନୃସିଂହ** ଦାସଙ୍କ ପୁତ୍ର କୃଷ୍ଣଦାସ, 'ରତ୍ନମାଳିକା' ପ୍ରଣେତା **ଅନନ୍ତ** ଦାସଙ୍କ ପୁତ୍ର କୃଷ୍ଣଦାସ । ଏମାନଙ୍କ ମଧ୍ୟରୁ 'ରସକଲ୍ଲୋଳକାର' ପ୍ରଥମ କୃଷ୍ଣଦାସ ରତ୍ନାକର ଦାସଙ୍କ ଠାରୁ ବହୁ ପ୍ରାଚୀନ । ଅବଶିଷ୍ଟ ତିନିଜଣଙ୍କ ମଧ୍ୟରୁ 'ରତ୍ନମାଳିକା' କୃଷ୍ଣଦାସ ତାଙ୍କର ଶିଷ୍ୟ ହୋଇଥିବାର ଅନୁମିତ ହୁଏ । "କରଯୋଡ଼ି ଆଣ କହେ କୃଷ୍ଣଦାସ **ଅନନ୍ତ** ଦାସ କୁମର" । ତାଙ୍କୁ ବୀରକେଶରୀ ଦେବଙ୍କ ସମକାଳୀନ ରୂପେ ଗ୍ରହଣ କଲେ ତାଙ୍କ ଗୁରୁ ରତ୍ନାକର ଦାସଙ୍କୁ ଦିବ୍ୟସିଂହଙ୍କ ରାଜତ୍ୱ ଶେଷ ଭାଗରେ ଅବସ୍ଥାପିତ କରାଯାଇପାରେ ।

## ଶିଶୁ ରାମ ଦାସ :—

ଶିଶୁ ରାମ ଦାସ କୃତ 'ଦେଉଳତୋଳା'ର ଏକ ପୋଥିର ନକଲ ସମୟ ହେଉଛି ବୀରକେଶରୀ ଦେବଙ୍କ ୩୩ ଅଙ୍କ, ଆଷାଢ଼, ଶୁକ୍ଳ ତୃତୀୟା, ବୁଧବାର ମିଥୁନ ୩୧ ଦିନ । ଖ୍ରୀଷ୍ଟାବ୍ଦ ଗଣନାରେ ଏହା ହେଉଛି ୧୩-୭-୧୭୬୩ ତାରିଖ । ତେଣୁ ଉକ୍ତ ଗ୍ରନ୍ଥ ବୀରକେଶରୀ ଦେବଙ୍କ ରାଜତ୍ୱର ପ୍ରଥମ ଭାଗରେ ବା ତତ୍ପୂର୍ବରୁ ରଚିତ ହୋଇଥିବା ସୁନିଶ୍ଚିତ । 'ଦାରୁବ୍ରହ୍ମ ଗୀତା' ମଧ୍ୟ ଜନୈକ ରାମ ଦାସଙ୍କ ଦ୍ୱାରା ରଚିତ । ଉଭୟ ଗ୍ରନ୍ଥର କବି ଏକ ଓ ଅଭିନ୍ନ ଥିବାର ଆପାତତଃ ସ୍ଥିର କରାଯାଇପାରେ । ରାମ ଦାସଙ୍କ କୃତ ଅନେକ ଗୁଡ଼ିଏ ଭଜନ ମିଳେ । ଅନ୍ୟ ବିରୁଦ୍ଧ ପ୍ରମାଣ ନ ମିଳିବା ପର୍ଯ୍ୟନ୍ତ ରାମ ଦାସଙ୍କୁ ଦିବ୍ୟସିଂହ ଦେବଙ୍କ ରାଜତ୍ୱର ଶେଷ କାଳରେ ଅବସ୍ଥାପିତ କରାଯାଇପାରେ ।

**ଗୋପୀନାଥ ଦାସ:—**

'ମୋହନଲତା' ନାମକ ଷୋଡ଼ଶ ଛାନ୍ଦ ବିଶିଷ୍ଟ ଏକ କାଳ୍ପନିକ କାବ୍ୟ, ଓ 'ଗୋବିନ୍ଦ ବିଳାସ' ନାମକ ସାତ ଛାନ୍ଦ ବିଶିଷ୍ଟ ରାଧାକୃଷ୍ଣ ଲୀଳା ବର୍ଣ୍ଣନାତ୍ମକ ଅନ୍ୟ ଏକ କ୍ଷୁଦ୍ର କାବ୍ୟ କବି ଗୋପୀନାଥ ଦାସଙ୍କ ଦ୍ୱାରା ରଚିତ ହୋଇଥିବାର ଜଣାଯାଏ । ଖଣ୍ଡିଏ 'ଗୋବିନ୍ଦ ବିଳାସ' ପୋଥିର ନକଲ ସମୟ ବୀରକେଶରୀ ଦେବଙ୍କ ୪୪ ଅଙ୍କ ବା ୧୭ ୭ ଖ୍ରୀଷ୍ଟାବ୍ଦ ହୋଇଥିବାରୁ କବିଙ୍କୁ ନିଃସନ୍ଦେହରେ ଏହାର ପୂର୍ବବର୍ତ୍ତୀ ରୂପେ ଗ୍ରହଣ କରାଯାଇ ପାରେ । କବି ସ୍ୱକୃତିରେ କୌଣସି ଠାରେ ନିଜର ପରିଚୟ ଜ୍ଞାପକ ଓ ସମୟସୂଚକ ଆଭାସ ଦେଇନାହାନ୍ତି । କିନ୍ତୁ 'ମୋହନଲତା'ରେ 'ରସକଲ୍ଲୋଳର ପ୍ରଭାବ ପରିଲକ୍ଷିତ ହେଉଥିବାରୁ କବିଙ୍କୁ ଦିବ୍ୟସିଂହଙ୍କ ରାଜତ୍ୱକାଳୀନ ରୂପେ ଗ୍ରହଣ କରାଯାଇପାରେ । ମୋହନଲତା ଗ୍ରନ୍ଥ ପାଠକଲେ କବି ଗ୍ରନ୍ଥରଚନା ସମୟରେ ଶ୍ରୀକ୍ଷେତ୍ରରେ ବାସ କରୁଥିବାର ମନେହୁଏ ।

## ସଂସ୍କୃତ ସାହିତ୍ୟ ଚର୍ଚ୍ଚା

ଦିବ୍ୟସିଂହ ଦେବଙ୍କ ରାଜତ୍ୱରେ ଆବିର୍ଭୂତ କେତେଜଣ ବିଶିଷ୍ଟ ପଣ୍ଡିତଙ୍କ ଅବଦାନ ଦ୍ୱାରା ସଂସ୍କୃତ ସାହିତ୍ୟ ମଧ୍ୟ ସମୃଦ୍ଧ ହୋଇଥିଲା । ସେମାନଙ୍କ ମଧ୍ୟରେ ନିମ୍ନଲିଖିତ କେତେଜଣଙ୍କ ସମ୍ବନ୍ଧରେ ବିଶ୍ୱାସଯୋଗ୍ୟ ବିବରଣ ମିଳେ ।

**ରଘୁନାଥ ରଥ:—**

ରଘୁନାଥ ରଥ ଜଣେ ପ୍ରସିଦ୍ଧ ସଂଗୀତ ଶାସ୍ତ୍ର ପ୍ରଣେତା ଥିଲେ । ତାଙ୍କର ସଂଗୀତ ଜ୍ଞାନ ଓ ପାଣ୍ଡିତ୍ୟରେ ମୁଗ୍ଧ ହୋଇ ସୁଦୂର କେରଳ ରାଜ୍ୟର ଅଧିପତି ମାଳକଣ୍ଠ ତାଙ୍କୁ ନିଜ ସଭା ପଣ୍ଡିତ ରୂପେ କିଛି କାଳ ରଖିଥିଲେ । ସେଠାରେ ଅବସ୍ଥାନ ସମୟରେ ସେ 'ନାଟ୍ୟମନୋରମା' ନାମକ ସଂଗୀତ ଗ୍ରନ୍ଥ ରଚନା କରି ନିଜ ପୃଷ୍ଠପୋଷକ ମାଳକଣ୍ଠଙ୍କ ନାମରେ ଭଣିତା କରିଥିଲେ । ଏହା ରଚନା କରିବା ପୂର୍ବରୁ ସେ 'ସଙ୍ଗୀତାର୍ଣ୍ଣବ ଚନ୍ଦ୍ରିକା' ନାମକ ଏକ ବିଶାଳ ଗ୍ରନ୍ଥ ରଚନା କରିଥିଲେ । କିନ୍ତୁ ଏହି ଗ୍ରନ୍ଥର ପାଣ୍ଡୁଲିପି ଏପର୍ଯ୍ୟନ୍ତ ମିଳିନାହିଁ । ରଘୁନାଥ କେରଳ ରାଜସଭାରେ ଥାଇ ମଧ୍ୟ ଗ୍ରନ୍ଥ ଆରମ୍ଭ ଓ ସମାପ୍ତି ସମୟ ତାଙ୍କ ସମକାଳୀନ ଗଜପତି ଦିବ୍ୟସିଂହ ଦେବଙ୍କ ଅଙ୍କରେ ଅଭ୍ରାନ୍ତ ଭାବରେ ପ୍ରକାଶ କରିଛନ୍ତି ଏବଂ ଅନ୍ୟ ଏକ ଶ୍ଳୋକରେ ନିଜର ପରିଚୟ ପ୍ରଦାନ କରିଛନ୍ତି । ଗୁରୁତ୍ୱ ଦୃଷ୍ଟିରୁ ଶ୍ଳୋକଦ୍ୱୟ ନିମ୍ନରେ ଉଦ୍ଧାର କରାଗଲା । (୬୭)

---

(୬୭) ଉକ୍ତ ସଂଗୀତ ଗ୍ରନ୍ଥଟି ଓଡ଼ିଶା ସଂଗୀତ ନାଟକ ଏକାଡେମୀ ଦ୍ୱାରା ନାଗରାକ୍ଷରରେ ମୁଦ୍ରିତ ପ୍ରକାଶିତ ହୋଇଅଛି ।

"ଅଙ୍କେ ଭର୍ଗମିତେ ଗଜେଶ ନୃପତେ ର୍ମାସେ ତୁ ମେଷେ ସିତେ
ପକ୍ଷେ ପଞ୍ଚଦଶ୍ୟାଂ ତିଥୌ ଶ୍ରୀ ଦିବ୍ୟସିଂହସ୍ୟତ ।
ଚକ୍ରେ ନାଟ୍ୟମନୋରମା ତୁ ଭରତଃ ଶ୍ରୀ କେରଳୋର୍ବୀପତିଃ
ସଂଗୀତାର୍ଣ୍ଣବଚନ୍ଦ୍ରକାନ୍ତିରଗତାଂ ଶ୍ରୀ ନୀଳକଣ୍ଠ କୃଷ୍ଣ ।
କେରଳାବନୀପ କଳ୍ପପାଦପଂ
ନୀଳକଣ୍ଠ ନୃପଜୀବ୍ୟ ଭୂମୁରଃ
ମନମାକ୍ଷିପତି ସର୍ବଦା ରଥୋ
ଯସ୍ତୁ ନାମ୍ନି ରଘୁନାଥ ଷଣ୍ଡୁ ଭୂଃ"

ପୁଷ୍ପିକା "କାରେ ଭୂମିସୁତସ୍ୟ ମାସି ତ ମଧୌ ପକ୍ଷେ କ୍ଷେପେଶୋଦୟେ
ଲକ୍ଷ୍ମୀନାଥ୍ଵକବାସରେ ଗଜପତେଃ ଶ୍ରୀ ଦିବ୍ୟସିଂହସ୍ୟତ
ଅଙ୍କେ ସୂର୍ଯ୍ୟ ମିତେ ତଏକ ରଘୁଣା ଶ୍ରୀ କେରଳକ୍ଷ୍ମାପତେ
ର୍ବାଚ୍ୟା ନାଟ୍ୟମନୋରମା ତୁ ଲିଖିତା ଶ୍ରୀ ନୀଳକଣ୍ଠସ୍ୟ ଚ"

ଅର୍ଥାତ୍ କେରଳରାଜ ନୀଳକଣ୍ଠ ଗଜପତି ଦିବ୍ୟସିଂହ ଦେବଙ୍କ (ଭର୍ଗ) ଅ୧୧ଙ୍କରେ ମେଷ ମାସ ଶୁକ୍ଳପକ୍ଷ ପଞ୍ଚଦଶୀ ତିଥିରେ ସଙ୍ଗୀତାର୍ଣ୍ଣବ ଚନ୍ଦ୍ରିକାର ସାର ସ୍ବରୂପ ନାଟ୍ୟ ମନୋରମା ଗ୍ରନ୍ଥ ରଚନା କରିଥିଲେ । ବିଖ୍ୟାତ ରଘୁନାଥ ରଥ କଳ୍ପବୃକ୍ଷ ସ୍ବରୂପ ନୀଳକଣ୍ଠଙ୍କ ଆଶ୍ରୟ ଗ୍ରହଣ କରିଥିଲେ । ପୁଷ୍ପିକାରେ ପ୍ରଦତ୍ତ ଶ୍ଳୋକରୁ ଜଣାଯାଏ ଯେ କେରଳରାଜ ନୀଳକଣ୍ଠଙ୍କ ଆଦେଶରେ ଉକ୍ତ ରଘୁନାଥ ରଥ ଗଜପତି ଦିବ୍ୟସିଂହ ଦେବଙ୍କ ସୂର୍ଯ୍ୟ ବା ବାର ଅଙ୍କରେ ଚୈତ୍ରମାସ, ଶୁକ୍ଳପକ୍ଷ ଏକାଦଶୀ ମଙ୍ଗଳବାର ଦିନ ସମାପ୍ତ କରିଥିଲେ । ପ୍ରଥମଟିର ତାରିଖ ହେଉଛି ୭-୪-୧୬୯୭ ମେଷ ମାସ ଚୈତ୍ର ପୂର୍ଣ୍ଣିମୀ ମଙ୍ଗଳବାର । ସମାପ୍ତି ଦିବସ ହେଉଛି ୨୩-୩ ୧୬୯୭ତାରିଖ ଚୈତ୍ର ଶୁକ୍ଳ ଏକାଦଶୀ ମଙ୍ଗଳବାର । ତାଙ୍କର ଅନ୍ୟ କୌଣସି ରଚନା ଏପର୍ଯ୍ୟନ୍ତ ମିଳନାହିଁ ।

## ରଘୁନାଥ ଦାସ:—

ରଘୁନାଥ ଦାସ କୌଣ୍ଡିନ୍ୟସ ଗୋତ୍ର ପୁରୁଷୋତ୍ତମ କ୍ଷେତ୍ର ବାସୀ ଜଣେ ପ୍ରସିଦ୍ଧ ପଣ୍ଡିତ ଥିଲେ । ତାଙ୍କ କୃତ 'ଉତ୍ପାତ ତରଙ୍ଗିଣୀ', 'କାଳନିର୍ଣ୍ଣୟ' 'ଉଦ୍ଧୀଠୀକା' ଓ 'ରଘୁବଂଶ ଟୀକା'ର ପୋଥିଗୁଡ଼ିକ ରାଜ୍ୟ ସଂଗ୍ରହାଳୟ ପୋଥି ଭଣ୍ଡାରରେ ସଂରକ୍ଷିତ । ସେ ଏକ ବିଖ୍ୟାତ ପଣ୍ଡିତ ପରିବାରରେ ଜନ୍ମଗ୍ରହଣ କରିଥିଲେ । 'ଉତ୍ପାତ ତରଙ୍ଗିଣୀ'ର ପ୍ରାରମ୍ଭରେ ସେ ତାଙ୍କର ପୂର୍ବପୁରୁଷମାନଙ୍କ ଯେଉଁ ପରିଚୟ ଦେଇଛନ୍ତି ସେଥିର ସାରାଂଶ ନିମ୍ନରେ ପ୍ରଦତ୍ତ କରାଗଲା । କୌଣ୍ଡିନ୍ୟ ବଂଶରେ ବହୁ ଶାସ୍ତ୍ରଜ୍ଞାତା ଜନାର୍ଦ୍ଦନ ନାମକ ପଣ୍ଡିତ ଜନ୍ମଗ୍ରହଣ କରିଥିଲେ ।

ତାଙ୍କର ମୀମାଂସା ନ୍ୟାୟ ଓ ବେଦାନ୍ତବିତ ପୁତ୍ର **ବାଚସ୍ପତି** ରାଜସଭାରେ ବିଶେଷ ସମ୍ମାନିତ ହୋଇଥିଲେ । ତାଙ୍କ ପୁତ୍ରଙ୍କ ନାମ **ହରିହର** । ହରିହରଙ୍କ ପୁତ୍ର ନାମ **ଦେବଦାଶ** । ଦେବଦାଶଙ୍କ ପୁତ୍ର **ଗଦାଧର,** ପୌତ୍ର **ସୁଧାକର** ଓ ପ୍ରପୌତ୍ର **ସିଦ୍ଧେଶ୍ୱର** । ସିଦ୍ଧେଶ୍ୱରଙ୍କ ପୁତ୍ରର ନାମ **ନରସିଂହ** । ତାଙ୍କର ପୁରାଣ ଶାସ୍ତ୍ରାଗମ ପାରଙ୍ଗମ ପୁତ୍ର **ଶ୍ରୀନିବାସ** ଶ୍ରୀକ୍ଷେତ୍ରରେ ବାସ କରୁଥିଲେ । ତାଙ୍କର ପୁତ୍ର ନୃସିଂହ ଭକ୍ତ **ବାସୁଦେବ** ପୁରୀ ମୁକ୍ତିମଣ୍ଡପରେ ପୁରାଣବକ୍ତା ଥିଲେ । ଏଠାରେ ଆଲୋଚ୍ୟ ପଣ୍ଡିତ ରଘୁନାଥ ଦାସ, ପିତାଙ୍କ ପରି ଶ୍ରୀ ନୃସିଂହଙ୍କର ଏକନିଷ୍ଠ ଭକ୍ତ ଥିଲେ ଏବଂ ତାଙ୍କ ପ୍ରସାଦରୁ ବହୁ ଗ୍ରନ୍ଥ ରଚନା କରିଥିଲେ ।

ରଘୁନାଥକୃତ 'ଉତ୍ପାତ ତରଙ୍ଗିଣୀ' ଓ 'କାଳନିର୍ଣ୍ଣୟ' ଦୁଇଟି ଉପାଦେୟ ଗ୍ରନ୍ଥ । ଗୋଟିଏ କାଳନିର୍ଣ୍ଣୟ ପୋଥି ଗଜପତି ଦ୍ୱିତୀୟ ରାମଚନ୍ଦ୍ର ଦେବଙ୍କ ୪ ଅଙ୍କ, କାର୍ତ୍ତିକ କୃଷ୍ଣ ତ୍ରୟୋଦଶୀ, ଶନିବାର ଅର୍ଥାତ୍ ୧୯-୧୦-୧୭୨୮ରେ କୌଣ୍ଡିନ୍ୟକୁଳସମ୍ଭୂତ ଅନନ୍ତ ଦାସଙ୍କ ଦ୍ୱାରା ନକଲ ହୋଇଥିବାରୁ ଗ୍ରନ୍ଥକର୍ତ୍ତା ରଘୁନାଥ ଦାସଙ୍କୁ ନିଃସନ୍ଦେହରେ ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଦଶକରେ ଅବସ୍ଥାପିତ କରାଯାଇପାରେ । କାଳନିର୍ଣ୍ଣୟ ଗ୍ରନ୍ଥରୁ ପୁରୀ ଭୁବନେଶ୍ୱର ଓ କୋଣାର୍କର ଯାତ୍ରା ସମ୍ବନ୍ଧରେ ଅନେକ ନୂତନ ତଥ୍ୟ ମିଳେ । (୨୮) ଏହି ଉଭୋଟି ଗ୍ରନ୍ଥ ପାଠ କଲେ କବିଙ୍କ ସାହିତ୍ୟ, ଜ୍ୟୋତିଷ, ଓ ଧର୍ମଶାସ୍ତ୍ରରେ ଅଗାଧ ପାଣ୍ଡିତ୍ୟ ଥିବାର ଜଣାଯାଏ । ତାଙ୍କ ପିତା ବାସୁଦେବ ଦାସ, 'ଜ୍ୟୋତିଷ ତତ୍ତ୍ୱ କୌମୁଦୀ' ଓ ପିତାମହ ଶ୍ରୀନିବାସ 'ଜ୍ୟୋତିଷ ରତ୍ନ' ନାମକ ଦୁଇଟି ଗ୍ରନ୍ଥ ଲେଖିଥିବାର ମନେହୁଏ । କିନ୍ତୁ ଏ ସମ୍ପର୍କରେ ଅକାଟ୍ୟ ପ୍ରମାଣ ଏପର୍ଯ୍ୟନ୍ତ ମିଳିନାହିଁ ।

## ପରମେଶ୍ୱର ସାମନ୍ତରାୟ:—

ପରମ ଭାଗବତ ଓ ପ୍ରଖ୍ୟାତ ପଣ୍ଡିତ ପରମେଶ୍ୱର ସାମନ୍ତରାୟ ଖେମୁଣ୍ଡି ରାଜ୍ୟର ଗଙ୍ଗବଂଶୀୟ ଅଧିପତି ଭବ୍ୟସିଂହ ଦେବଙ୍କ ସମକାଳୀନ ପୀତାମ୍ବର ଅନଙ୍ଗ ଭୀମ ଦେବଙ୍କ ସଭାପଣ୍ଡିତ ଥିଲେ । ସେ ଗୋବିନ୍ଦରାମ ଭଟ୍ଟାଚାର୍ଯ୍ୟ ନାମକ ଗୌଡ଼ୀୟ ପଣ୍ଡିତଙ୍କୁ ଖେମୁଣ୍ଡି ରାଜଧାନୀ ବିଜୟନଗର ପଣ୍ଡିତ ସଭାରେ ନିଜର ଅକାଟ୍ୟ

---

(୨୮) ମୋ ଦ୍ୱାରା ପ୍ରଣୀତ
(କ) Descriptive Catalogue. of Sanskrit Manuscripts, Vol. I, preface pp XXXIV-XXXV, & pp 16-17
(ଖ) Descriptive Catalogue. of Sanskrit Manuscripts, Vol. II, preface pp CLX-CLXI ଓ p 81 ଦ୍ରଷ୍ଟବ୍ୟ ।

ସ୍ତୁତିସମୂହ ଦ୍ୱାରା ପରାସ୍ତ କରି 'ସାମନ୍ତରାୟ' ପଦବୀ ପ୍ରାପ୍ତ ହୋଇଥିଲେ । ସେ 'ବୈଷ୍ଣବ ତୋଷଣୀ' ଟୀକା ସାହାଯ୍ୟରେ ଭାଗବତର ପ୍ରାଞ୍ଜଳ ବ୍ୟାଖ୍ୟା କରିବେଳେ ନାସ୍ତିକର ହୃଦୟ ମଧ୍ୟ ଭକ୍ତିରସରେ ଆପ୍ଲୁତ ହେଉଥିଲା । ରାଜା ପୀତାମ୍ବରଙ୍କ ନିର୍ଦ୍ଦେଶରେ ସେ ବିଖ୍ୟାତ ଅମରକୋଷ ପରି ଖଣ୍ଡିଏ 'କୋଷ' ଏବଂ ଶ୍ରୀରାଧାକୃଷ୍ଣ ଲୀଳାସମ୍ବଳିତ 'ମଥୁରାପ୍ରୟାଣ' ନାମକ ଚଣ୍ଡୁକାବ୍ୟ ରଚନା କରିଥିଲେ । ତାଙ୍କର ଜ୍ୟେଷ୍ଠ ଭ୍ରାତା ଦାମୋଦର, ନିଜର ପାଣ୍ଡିତ୍ୟ ଓ ଆଶୁକବିତ୍ୱ ହେତୁ ରାଜାଙ୍କ ଠାରୁ 'ପଞ୍ଚଜ୍ୟୋତିଷ' ପଦବୀ ଲାଭ କରିଥିଲେ । ଖେମୁଣ୍ଡି ଅଧିପତି ମହାରାଜାଧିରାଜ ପୁରୁଷୋତ୍ତମ ଦେବଙ୍କ ଅନୁରୋଧରେ ସେ ପ୍ରସିଦ୍ଧ ବୈଷ୍ଣବଶାସ୍ତ୍ର 'ଭକ୍ତିରସାମୃତସିନ୍ଧୁ'ର ଟୀକା ପ୍ରଣୟନ କରି ବିଶେଷ ଖ୍ୟାତି ଅର୍ଜନ କରିଥିଲେ । କିନ୍ତୁ ପରମେଶ୍ୱର ସାମନ୍ତରାୟ କିମ୍ବା ଦାମୋଦର ପଞ୍ଚଜ୍ୟୋତିଷଙ୍କ କୌଣସି ଗ୍ରନ୍ଥ ଏ ପର୍ଯ୍ୟନ୍ତ ଉପଲବ୍ଧ ହୋଇନାହିଁ । (୨୯)

## ବିକ୍ରମସିଂହଙ୍କ ରାଜତ୍ୱକାଳର ଦାନପତ୍ର ସମୂହ :—

ଏପର୍ଯ୍ୟନ୍ତ ବିକ୍ରମସିଂହ ଦେବଙ୍କ ରାଜତ୍ୱକାଳର ତଳଲିଖିତ ଦାନପତ୍ର ସମୂହ ଗଞ୍ଜାମ ଅଞ୍ଚଳରୁ ଉପଲବ୍ଧ ହୋଇଅଛି । ପ୍ରତ୍ୟେକଟିରେ ପ୍ରଦତ୍ତ ବିବରଣ ନିମ୍ନରେ ଉଲ୍ଲେଖ କରାଗଲା :—

୧) ବିକ୍ରମସିଂହ ଦେବଙ୍କ ୩ ଅଙ୍କ ବୈଶାଖ ଶୁଦ୍ଧ ୧୫ ସୋମବାର ଦିନ ଧରାକୋଟ ରାଜା ଶ୍ରୀ ପୁରୁଷୋତ୍ତମ ସିଂହ ଦେବ ସର୍ବ କବିଚନ୍ଦ୍ରଙ୍କୁ ପାଞ୍ଚସିଂହପୁର (ଭାରିଗୁଡ଼ା) ଗ୍ରାମ ଦାନ କରିଥିଲେ । ୧୨·୫-୧୬୯୦ ; ତାରିଖରେ ମାସ, ବାର, ତିଥି ପ୍ରଭୃତି ମିଳିଯାଉଛି ।

୨) ବିକ୍ରମସିଂହ ଦେବଙ୍କ ୫ ଅଙ୍କ ମକର ୨୯ ଦିନ, ମାଘ ଶୁଦ୍ଧ ୧୫, ବୁଧବାର ଚନ୍ଦ୍ରଗ୍ରହଣ ସମୟରେ ଆଠଗଡ଼ ରାଜା ଗୁରୁସାମନ୍ତରାୟଙ୍କୁ ଚଣ୍ଡୀ ରାମଚନ୍ଦ୍ରପୁର ଗ୍ରାମ ଦାନ କରିଥିଲେ । ତାଙ୍କ ରାଜତ୍ୱକାଳ ମଧ୍ୟରେ କେବଳ

---

(୨୯) ଏହି ଦୁଇ କବିଙ୍କ ବିବରଣ ପରମେଶ୍ୱରଙ୍କ ପୁତ୍ର କବିରତ୍ନ ହରିସେବକ ସାମନ୍ତରାୟ କୃତ 'ଗୋବିନ୍ଦଲୀଳାମୃତ'ର 'ବୈଷ୍ଣବହ୍ଲାଦିନୀ ଟୀକା'ରୁ ମିଳେ ।

Descriptive Catalogue of Sanskrit Manuscripts, Vol. II; preface p. CLXXII-CLXXIII & p. 51-54.

୨୭-୧-୧୭୧୭ ତାରିଖ ମକର ୨୧ ଦିନ ବୁଧବାର ମାଘ ପୂର୍ଣ୍ଣମୀ ପଡ଼ିଥିବାରୁ ଅଙ୍କ ପାଠ ବା ଲେଖାରେ ଭ୍ରମ ଅଛି ।

୩) ଦିବ୍ୟସିଂହ ଦେବଙ୍କ ୯ ଅଙ୍କ ସିଂହ ୨? (୨୦ ଦିନ ହେବ) ଭାଦ୍ର ଶୁକ୍ଳ ୧୦, ସୋମବାର ଦିନ ସବାପଡ଼ା ପାଣିଗ୍ରାହୀ ନୀଳକଣ୍ଠ ଧାଷିତଙ୍କ ନାତି କେଶବ ଧାଷିତଙ୍କ ପୁଅ ଜଗନ୍ନାଥ ରଥଙ୍କୁ ବାଛି ଭୂମି ଦିଆଯାଇଥିଲା । ୨୦ । ୮ । ୧୬୯୪ ତାରିଖ ଭାଦ୍ର ଶୁକ୍ଳ ଦଶମୀ ସୋମବାର ତାଙ୍କ ୮ ଅଙ୍କରେ ପଡ଼ିଥିଲା । ୯ ଅଙ୍କ ପାଠ ଭୁଲ ।

୪) ଦିବ୍ୟସିଂହ ଦେବଙ୍କ ୯ ଅଙ୍କ ତୁଳ ୧୫ ଦିନ, କାର୍ତ୍ତିକ ବହୁଳ ୧୫, ଶନିବାର ଦିନ ଆଠଗଡ଼ ରାଜ୍ୟାଧିପତି ରାମଚନ୍ଦ୍ର ହରିଚନ୍ଦନ ଜଗଦେବ ବନମାଳୀ ଶତପଥିଙ୍କୁ କେମାଦେଇପୁର ଗ୍ରାମ ଦାନ କରିଥିଲେ ।

୫) ଦିବ୍ୟସିଂହ ଦେବଙ୍କ ୧୭ ଅଙ୍କ କୁମ୍ଭ ୧୮ (୧୫ ଦିନ ହେବ) ଶୁକ୍ଳ ୧୪, ମଙ୍ଗଳବାର ଦିନ ଧରାକୋଟ ରାଜା ରାମଚନ୍ଦ୍ର ସିଂହଦେବ ବୃଦ୍ଧ ପିତାମହଙ୍କ ଆଦେଶରେ ନୀଳାମ୍ବର ଦାସଙ୍କୁ ଭୂମିଦାନ କରିଥିଲେ ।

୬) ଉକ୍ତ ଦିବସରେ ରାମଚନ୍ଦ୍ର ସିଂହଦେବ ଓଡ଼ିଶା ରାଜ୍ୟର ବୀର-ବଳଭଦ୍ରପୁର ଶାସନ ନିବାସୀ କପିଳ ଦାସଙ୍କ ପୁଅ ନୀଳାମ୍ବର ଦାସଙ୍କୁ କେତେକ ଭୂମି ଦାନ କରିଥିଲେ ।

୭) ଉକ୍ତ ଦିବସରେ ରାମଚନ୍ଦ୍ର ସିଂହ (ଭୁଲରେ ରାଜେନ୍ଦ୍ର ସିଂହ ପଢ଼ା ଯାଇଛି) ହରି ରଥଙ୍କୁ ? କେତେକ ଭୂମି ଦାନ କରିଥିଲେ । ଏ ତିନୋଟି ଦାନପତ୍ରର ସମୟ ହେଉଛି ୧୧-୨-୧୭୦୧ ତାରିଖ; କୁମ୍ଭ ୧୫, ଚୈତ୍ର ଶୁକ୍ଳ ଚତୁର୍ଦ୍ଦଶୀ ଯୁକ୍ତ ପୂର୍ଣ୍ଣମୀ ମଙ୍ଗଳବାର । ସେଦିନ ଚନ୍ଦ୍ରଗ୍ରହଣ ମଧ୍ୟ ହୋଇଥିଲା ।

୮) ୨୯ ଅଙ୍କ, କୁମ୍ଭ ୧୦ ଦିନ, ହୁମା ରାଜା ସାମନ୍ତରାୟ ମହାପାତ୍ର ରାମଚନ୍ଦ୍ର ଗୋହରଙ୍କୁ ୩୦ ଭରଣ ଭୂମି ଦାନ କରିଥିଲେ ।

୯) ୩୧ ଅଙ୍କ, ବୃଷ ୩୦, ଜ୍ୟେଷ୍ଠ ଶୁକ୍ରବାର ଚନ୍ଦ୍ରଗ୍ରହଣ ସମୟରେ ହୁମା ରାଜ୍ୟାଧିପତି ସୁର ଶ୍ରୀ ଭଗୀରଥି ସାମନ୍ତ ମହାପାତ୍ର ଭଗୀରଥିପୁର ଗ୍ରାମକୁ ସ୍ୱୀୟ ମୃତ ପୁତ୍ରର ଅନ୍ତ୍ୟେଷ୍ଟି କ୍ରିୟା ସମୟରେ ଦାନ କରିଥିଲେ । ୨୮-୫-୧୭୧୩ ତାରିଖରେ ଦିନ, ବାର, ତିଥି, ଗ୍ରହଣ ଆଦି ଅଭ୍ରାନ୍ତ ଭାବରେ ମିଳିଯାଉଥିବାରୁ ଏହା ତାଙ୍କ ରାଜତ୍ୱର ଅଙ୍କ ଗଣନା ପାଇଁ ଏକ ଅକାଟ୍ୟ ପ୍ରମାଣ ରୂପେ ଗୃହୀତ ହୋଇପାରେ ।

୧୦) ଉକ୍ତ ଅବସରେ ଦିବ୍ୟସିଂହ ସାମନ୍ତରାୟ ମହାପାତ୍ର ଦିବ୍ୟସିଂହପୁର ଶାସନରେ କେତେକ ଜମି ମହାଦେବଙ୍କ ସେବା ପୂଜା ଓ ବ୍ରାହ୍ମଣ ଭୋଜନ ନିମିତ୍ତ ଦୁଇଜଣ ଗୋସାଇଙ୍କୁ ଦାନ କରିଥିଲେ । (୩୦)

## ଦିବ୍ୟସିଂହ ଦେବଙ୍କ ରାଜତ୍ୱର ଅଙ୍କ ଗଣନା

୨୬-୧୧-୧୬୮୮ ରୁ ତାଙ୍କର ଦୁଇଅଙ୍କ ଗଣନା କରାଗଲା ।

| ସୁନିଆ ତାରିଖ | ଅଙ୍କ | ପ୍ରସିଦ୍ଧ ଘଟଣା |
|---|---|---|
| ୧୭-୮-୧୬୮୯ | ୩ | |
| ୫-୯-୧୬୯୦ | ୪ | |
| ୨୫-୮-୧୬୯୧ | ୫ | |
| ୧୨-୯-୧୬୯୨ | ୭ | ନବାବ ଏକରାମ ଖାଁଙ୍କ ପୁରୀ ମନ୍ଦିର ଆକ୍ରମଣ ଓ ଜଗନ୍ନାଥଙ୍କ ସ୍ଥାନାନ୍ତରୀକରଣ । |
| ୧-୯-୧୬୯୩ | ୮ | |
| ୨୧-୮-୧୬୯୪ | ୯ | |
| ୯-୯-୧୬୯୫ | ୧୦ | |
| ୧-୯-୧୬୯୬ | ୧୧ | |
| ୧୯-୮-୧୬୯୭ | ୧୨ | |
| ୭-୯-୧୬୯୮ | ୧୩ | |
| ୨୭-୮-୧୬୯୯ | ୧୪ | |
| ୧୬-୮-୧୭୦୦ | ୧୫ | |
| ୨-୯-୧୭୦୧ | ୧୭ | |
| ୨୩-୮-୧୭୦୨ | ୧୮ | |
| ୧୧-୯-୧୭୦୩ | ୧୯ | |
| ୩୦-୮-୧୭୦୪ | ୨୧ | |
| ୨୦-୮-୧୭୦୫ | ୨୨ | |
| ୮-୯-୧୭୦୬ | ୨୩ | |

(30) Inscriptions of the Madras Presidency. Vol. I, Ganjam District, Nos. 52, 282, 35, 284, 30, 26, 32, 97, 89, 81.

| ସୁନିଆଁ ତାରିଖ | ଅଙ୍କ | ପ୍ରସିଦ୍ଧ ଘଟଣା |
|---|---|---|
| ୨୮-୮-୧୭୦୭ | ୨୪ | ୨୦-୨-୧୭୦୭ରେ ଔରଙ୍ଗଜେବଙ୍କ ମୃତ୍ୟୁ ପରେ ଦିବ୍ୟସିଂହ ଅଠର ଗଡ଼ଜାତ ରାଜାଙ୍କୁ ମିଳାଇ ସିଂହଦ୍ୱାର ପଥର ମୁଦ ଭାଙ୍ଗି ଦେଲେ । (୧୧-୯-୧୭୦୭)ରୁ ଜଗନ୍ନାଥଙ୍କ ଯାତ୍ରା ପର୍ବ ପ୍ରଭୃତି ଯଥାବିଧି ଚାଲିଲା । |
| ୧୭-୮-୧୭୦୮ | ୨୫ | |
| ୪-୧-୧୭୦୯ | ୨୭ | |
| ୧୪-୮-୧୭୧୦ | ୨୮ | |
| ୧୨-୯-୧୭୧୧ | ୨୯ | |
| ୧-୯-୧୭୧୨ | ୩୧ | |
| ୨୧-୮-୧୭୧୩ | ୩୨ | |
| ୯-୯-୧୭୧୪ | ୩୩ | |
| ୩୦-୮-୧୭୧୫ | ୩୪ | |

୨୮-୪-୧୭୧୬ତାରିଖ ବା ୩୪ ଅଙ୍କ ମେଷ ୩୧ ଦିନରେ ତାଙ୍କର ମୃତ୍ୟୁ ଘଟିଥିଲା । ଦିବ୍ୟସିଂହ ଦେବଙ୍କ ଅଙ୍କ ଗଣନା ପ୍ରାୟ ଅଭ୍ରାନ୍ତ ଭାବରେ ମିଳିଯାଉଛି । ମାଦଳା ପଞ୍ଜିରେ ତାଙ୍କ ରାଜତ୍ୱ କାଳ ବ୨୭ର୍ଷ, ୫ମାସ, ଦ୧୧ନ ବୋଲି ଲେଖା ଯାଇଛି । ମୋର ଗଣନା ଅନୁସାରେ ହେଉଛି ୨୭ବର୍ଷ, ୫ମାସ, ୨ଦିନ । ଏହି ୯ଦିନ ପାର୍ଥକ୍ୟର କାରଣ ଜାଣି ହେଉନାହିଁ ।



## ସପ୍ତମ ଅଧ୍ୟାୟ

# ଗଜପତି ହରେକୃଷ୍ଣ ଦେବ

(୧୭୧୭-୧୭୨୦)



### ସିଂହାସନ ଆରୋହଣ:—

ଋଦ୍ୟସିଂହ ଦେବଙ୍କ ମୃତ୍ୟୁ ପରେ ତାଙ୍କ ସାନ ଭାଇ ହରେକୃଷ୍ଣ ଭ୍ରମରବର ରାଏଙ୍କୁ ପ୍ରଧାନ ଗୋପୀନାଥ ବିଦ୍ୟାଧର ମହାପାତ୍ର ବୃଷ ୧୧ ଦିନ, ଗଜନଅର ମଧ୍ୟରେ ଅଭିଷିକ୍ତ କରାଇଥିଲେ । ତାଙ୍କ ଅଭିଷେକର ତାରିଖ ହେଉଛି ୯-୫-୧୭୧୭ ଜ୍ୟେଷ୍ଠ କୃଷ୍ଣ ଚତୁର୍ଦ୍ଦଶୀ ବୁଧବାର, । ସେ ଋଦ୍ୟସିଂହ ଦେବଙ୍କ ଅନୁଜ ହୋଇଥିବାରୁ ରାଜ୍ୟାଭିଷେକ ସମୟରେ ତାଙ୍କର ଅଧିକ ବୟସ ହୋଇଯାଇଥିଲା । ତେଣୁ ସେ ପ୍ରାୟ ପାଞ୍ଚବର୍ଷ ରାଜତ୍ୱ କରି ମୃତ୍ୟୁ ମୁଖରେ ପଡ଼ିଥିଲେ ।

### ବୈଦିକ ଧର୍ମର ପୁନରୁତ୍‌ଥାନ ଉଦ୍ୟମ :—

ଭୋଇ ବଂଶର ରାଜାମାନଙ୍କ ମଧ୍ୟରେ ହରେକୃଷ୍ଣ ଦେବଙ୍କ ରାଜତ୍ୱକାଳ ସ୍ୱଳ୍ପ କାଳ ସ୍ଥାୟୀ ହେଲେ ମଧ୍ୟ ଉତ୍କଳ ଇତିହାସରେ ଚିରସ୍ମରଣୀୟ । ତାଙ୍କ ଶାସନ କାଳ ମଧ୍ୟରେ ବୈଦିକ ଧର୍ମର ପୁନରୁତ୍‌ଥାନ ପାଇଁ ପ୍ରବଳ ଉଦ୍ୟମ ହୋଇଥିଲା । ଋଦ୍ୟସିଂହ ଦେବଙ୍କ ରାଜତ୍ୱ କାଳରେ ଆବିର୍ଭୂତ କୌଶିକ ସଗୋତ୍ର ଶ୍ରୀ କୃଷ୍ଣ ମହାପାତ୍ର ବାଜପେୟ ଯଜ୍ଞାନୁଷ୍ଠାନ କରି 'ବାଜପେୟୀ' ସଂଜ୍ଞା ଧାରଣ କରିଥିଲେ ଓ ନିଜର ପାଣ୍ଡିତ୍ୟ ଯୋଗୁଁ 'ବୃହତ୍ ପଣ୍ଡିତ' ପଦବୀ ପ୍ରାପ୍ତ ହୋଇଥିଲେ । ସେ 'ନୀତି ରତ୍ନାକର' ନାମକ ଧର୍ମଶାସ୍ତ୍ରର ପ୍ରଣେତା ଥିଲେ । ତାଙ୍କର ତିନ ପୁଅ ହେଉଛନ୍ତି ହଳଧର, ନୀଳାମ୍ବର ଓ ଯଜ୍ଞେଶ୍ୱର । ହଳଧର ରାଜଗୁରୁ ହରେକୃଷ୍ଣ ଦେବଙ୍କ ପାଟରାଣୀଙ୍କ ମନ୍ତ୍ରଦାତା ଥିଲେ ଏବଂ ବହୁକାଳରୁ ଲୁପ୍ତ ଶାରଦବାଜପେୟ ଯଜ୍ଞ ସଂପନ୍ନ କରିଥିଲେ ଏବଂ ରାଜାଙ୍କ ୩ ଅଙ୍କରେ ଶ୍ରୀକ୍ଷେତ୍ରର ଅଦୂରରେ ପ୍ରତିଷ୍ଠିତ ସାର ହରେକୃଷ୍ଣପୁର ଶାସନର ଦାନାଧ୍ୟକ୍ଷ ହୋଇଥିଲେ । ବେଦାନ୍ତ, ସ୍ମୃତି, ଜ୍ୟୋତିଷ, ସାହିତ୍ୟ, ବ୍ୟାକରଣ ଓ ନୀତିଶାସ୍ତ୍ରରେ ପ୍ରଗାଢ଼ ପାଣ୍ଡିତ୍ୟ ଅର୍ଜନ କରିଥିବା

ହଳଧରଙ୍କ କନିଷ୍ଠଭ୍ରାତା ମାଳାମ୍ବର, ହରେକୃଷ୍ଣ ଦେବଙ୍କ ରାଜଗୁରୁ ପଦରେ ଅଧିଷ୍ଠିତ ହୋଇଥିଲେ । ସେ 'ସ୍ନାନୋତ୍ସବସ୍ତୋତ୍ର'ର ପ୍ରଣେତା । ସେ ଚତୁର୍ମୁଖ ପ୍ରଭୃତି କେତେକ ଲୁପ୍ତପ୍ରାୟ ଯଜ୍ଞାନୁଷ୍ଠାନ ଦ୍ୱାରା ବୈଦିକ ଯୁଗର ସ୍ମୃତି ଜାଗ୍ରତ କରିଥିଲେ । ଯାଜ୍ଞିକ ବ୍ରାହ୍ମଣମାନଙ୍କର ନିବାସ ପାଇଁ ତାଙ୍କ ଉଦ୍ୟମରେ କେତେକ ଶାସନ ପ୍ରତିଷ୍ଠିତ ହୋଇଥିଲା । ମାଳାମ୍ବରଙ୍କ ଅଗାଧ ପାଣ୍ଡିତ୍ୟ, ଏକାନ୍ତ ଧର୍ମନିଷ୍ଠା, ସ୍ୱଧର୍ମର ଗୌରବ ବୃଦ୍ଧି ପାଇଁ ଆପ୍ରାଣ ପ୍ରଚେଷ୍ଟାରେ ମୁଗ୍ଧ ହୋଇ ଗଜପତି ତାଙ୍କୁ ସ୍ୱର୍ଣ୍ଣ ନିର୍ମିତ ତାରକା ଚତୁଷ୍ଟୟ ଓ ଶ୍ରୀକୃଷ୍ଣଙ୍କ ପାଦ ପଦ୍ମ ଖଚିତ ଏକ କୃଷ୍ଣାଜପତ୍ର (କଳାଛତା) ହସ୍ତୀ, ଚ୍ଛମର ପ୍ରଭୃତି ଉପଢୌକନ ପ୍ରଦାନ ଦ୍ୱାରା ବିଶେଷ ସମ୍ମାନିତ କରିଥିଲେ । ପରମେଶ୍ୱର ମଧ୍ୟ ପ୍ରସିଦ୍ଧ ବକ୍ତା ଓ ପଣ୍ଡିତ ଥିଲେ ।

## ଗଦାଧର ରାଜଗୁରୁ :—

ମାଳାମ୍ବରଙ୍କ ସୁଯୋଗ୍ୟ ଦାୟାଦ ଓ ଜାନକୀ ଦେବୀଙ୍କ ଗର୍ଭସମ୍ଭୂତ ଗଦାଧର ରାଜଗୁରୁ ସେ ସମୟର ଜଣେ ଭାରତ ପ୍ରସିଦ୍ଧ ଧର୍ମଶାସ୍ତ୍ର ପ୍ରଣେତା ଥିଲେ । ହିନ୍ଦୁ ଧର୍ମ ଓ ସମାଜର ସୁରକ୍ଷା ଓ ନିୟନ୍ତ୍ରଣ ନିମିତ୍ତ ସେ ପ୍ରସିଦ୍ଧ ଉତ୍କଳୀୟ ସ୍ମୃତିକାର ନରସିଂହ ବାଜପେୟୀ (୧୫୭୦-୧୭୦୦)ଙ୍କ ପର ଅଷ୍ଟାଦଶ ଧର୍ମଶାସ୍ତ୍ର ପ୍ରଣୟନ କରିଥିଲେ । ସେଥି ମଧ୍ୟରୁ ପ୍ରତ୍ୟେକଟିର ନାମ ଶେଷରେ 'ସାର' ପଦ ରହିଥିଲା । ଏହି ଅଷ୍ଟାଦଶ ଗ୍ରନ୍ଥ ମଧ୍ୟରୁ ନିମ୍ନଲିଖିତ କେତେକର ସନ୍ଧାନ ମିଳିଛି । ଯଥା— ଆଚାରସାର, କାଳସାର, ଶୁଦ୍ଧିସାର, ଦାନସାର, ବ୍ରତସାର, ବିବାହସାର, ସଂସ୍କାର ସାର, ସ୍ନାନସାର । ପ୍ରଥମ ଦୁଇଟି ମୁଦ୍ରିତ ଓ ପ୍ରକାଶିତ ହୋଇଛି । ଅବଶିଷ୍ଟ କୃତି ଗୁଡିକ ଏପର୍ଯ୍ୟନ୍ତ ଅଜ୍ଞାତ ଅବସ୍ଥାରେ ରହିଛି । ଉତ୍କଳୀୟ ସମାଜ ଏପର୍ଯ୍ୟନ୍ତ ତାଙ୍କର କାଳସାର ଓ ଆଚାର ସାର ଦ୍ୱାରା ନିୟନ୍ତ୍ରିତ ହେଉଅଛି ।

## ବାସୁଦେବ ରଥ :—

ସମସାମୟିକ ବାସୁଦେବ ରଥ ଧର୍ମଶାସ୍ତ୍ର ପ୍ରଣୟନ କ୍ଷେତ୍ରରେ ଗଦାଧର ରାଜଗୁରୁଙ୍କର ପ୍ରଧାନ ପ୍ରତିଦ୍ୱନ୍ଦୀ ଥିଲେ । ଜନଶ୍ରୁତିରୁ ଜଣାଯାଏ ଯେ ଉଭୟେ ଏକ ଗ୍ରାମବାସୀ ଥିଲେ ଏବଂ ସେ ମଧ୍ୟ ରାଜଗୁରୁଙ୍କ ପରି ଅଷ୍ଟାଦଶ ସ୍ମୃତି ଗ୍ରନ୍ଥ ରଚନା କରିଥିଲେ । ସେଥି ମଧ୍ୟରୁ କେତେକଙ୍କର ସନ୍ଧାନ ମିଳିଅଛି । ସ୍ମୃତି ପ୍ରକାଶ, ନ୍ୟାୟ ପ୍ରକାଶ, ମୀମାଂସା ପ୍ରକାଶ, ମଣ୍ଡଳପ୍ରକାଶ ଓ ଭୁବନେଶ୍ୱରୀ ପ୍ରକାଶ । ତାଙ୍କ କୃତ 'ସ୍ମୃତିପ୍ରକାଶ' ଗ୍ରନ୍ଥଟି ମୁଦ୍ରିତ ଓ ପ୍ରକାଶିତ ହୋଇଅଛି ।

## ଜଗନ୍ନାଥ ମିଶ୍ର:—

ପଣ୍ଡିତ ଜଗନ୍ନାଥ ମିଶ୍ରଙ୍କ 'ରସକଳ୍ପଦ୍ରୁମ' ଏକ ଅଦ୍ୱିତୀୟ ଅଳଙ୍କାର ଗ୍ରନ୍ଥ । ଏହା ଦଶ ଶାଖା ବା ଭାଗରେ ବିଭକ୍ତ । ପ୍ରତି ଭାଗରେ ୫ଟି ଉପବିଭାଗ ବା

ପଛିବ ଅଛି । ପ୍ରଥମ ମଞ୍ଜରୀ ଷବଗରେ ଶୃଙ୍ଗାର ପ୍ରଭୃତି ନବରସ ଓ ଶେଷରେ ଗ୍ରନ୍ଥକାର 'ସାଧାରଣରସ' ସମ୍ବନ୍ଧରେ ଅତି ପାଣ୍ଡିତ୍ୟ ପୂର୍ଣ୍ଣ ଆଲୋଚନା ହୋଇଅଛି । ଏହି ଗ୍ରନ୍ଥରେ ବେଦ, ଉପନିଷଦ୍, ଷଡ୍‌ଦର୍ଶନ, ବୌଦ୍ଧ, ଜୈନ, ଶୈବ, ପାଶୁପତ, କୌଳ, ଓ ଶାକ୍ତ ସଂପ୍ରଦାୟର ଦର୍ଶନ, ଶାସ୍ତ୍ର,ପ୍ରାୟ ସମସ୍ତ ବିଖ୍ୟାତ କାବ୍ୟ ଓ ଅଳଙ୍କାର ଗ୍ରନ୍ଥରୁ ଆଲୋଚନା ପ୍ରସଙ୍ଗରେ ଶ୍ଳୋକମାନ ଉଦ୍ଧାର କରାଯାଇଛି ।

ଏ ଗ୍ରନ୍ଥର ବୈଶିଷ୍ଟ୍ୟ ହେଉଛି ଏଥିରେ ଉଦାହରଣ ସ୍ୱରୂପ ପ୍ରଦତ୍ତ ଐତିହାସିକ ପ୍ରଶସ୍ତି ଶ୍ଳୋକମାନ । ସେଗୁଡିକ ନିମ୍ନଲିଖିତ ପ୍ରସିଦ୍ଧ ବ୍ୟକ୍ତିମାନଙ୍କ ସଂମ୍ପର୍କରେ ରଚିତ, ଯଥା— ନାଗରାଜ ? କପିଳେଶ୍ୱର ଦେବ, ପୁରୁଷୋତ୍ତମ ଦେବ, ପ୍ରତାପରୁଦ୍ର ଦେବ, (ରୁଦ୍ରମହାପ୍ରଭୁଙ୍କ) କୃଷ୍ଣଦେବ ରାୟ, ଭୁକାଧ୍ (ପ୍ରତାପରୁଦ୍ରଙ୍କ କନ୍ୟା),ଗୋବିନ୍ଦ ନନ୍ଦନ (ଚକ୍ରପ୍ରତାପ), ମୁକୁନ୍ଦଦେବ, ରାମଚନ୍ଦ୍ର ଦେବ, ମାନସିଂହ ଭୂପାଳ ସିଂହ, ଚମୂପତି, ବୀରେଶ୍ୱର, ରଙ୍ଗରାଜ, ନବାମ, ଜଲାଲୁଦ୍ଦିନ୍, ହରେକୃଷ୍ଣ ଦେବ । ଖୁର୍ଦ୍ଧା ଗଜପତି ହରେକୃଷ୍ଣ ଦେବଙ୍କ ପ୍ରଶସ୍ତି ଶ୍ଳୋକରେ ଏହା ସମାପ୍ତ ହୋଇଥିବାରୁ ତାଙ୍କ ରାଜତ୍ୱ କାଳରେ ଏହା ରଚିତ ହୋଇଥିବାର ସ୍ଥିର କରାଯାଇ ପାରେ । ଗ୍ରନ୍ଥରେ କବି ନିଜକୁ କେବଳ ଦୀକ୍ଷିତ ଅନନ୍ତ ମିଶ୍ରଙ୍କ ପୁତ୍ର ବୋଲି ଅଭିହିତ କରିଛନ୍ତି । ତାଙ୍କ କୃତ ଅନ୍ୟ କୌଣସି ଗ୍ରନ୍ଥର ସନ୍ଧାନ ଏପର୍ଯ୍ୟନ୍ତ ମିଳିନାହିଁ । (୧)

ଗଜପତି ହରେକୃଷ୍ଣ ଦେବଙ୍କ ରାଜତ୍ୱ କାଳରେ ଲିଖିତ କୌଣସି ଓଡ଼ିଆ ଗ୍ରନ୍ଥର ସନ୍ଧାନ ଏପର୍ଯ୍ୟନ୍ତ ମିଳିନାହିଁ ।

**କୀର୍ତ୍ତି କଳାପ:—**

ହରେକୃଷ୍ଣ ଦେବ ଧରମୂ ହରିଚନ୍ଦନ ମହାପାତ୍ରଙ୍କ ତତ୍ତ୍ୱାବଧାନରେ ଦଣ୍ଡଦେଉଳ ତୁଳ କରାଇଥିଲେ । ଉକ୍ତ ଧରମୂ ପରମେଶ୍ୱର ଦେବଙ୍କ ମୋହନ ମଣ୍ଡ ନିର୍ମାଣ କରିଥିଲେ । ଗଜପତିଙ୍କ ଆଦେଶ ଉପରେ ଭଗବାନ ଭ୍ରମରବର ବେଗ ଆସିବା ଆଗରୁ ବେଷଆଡ଼୍ ଉତ୍ତର ବେଢ଼ା ଦୁଆର ଜଗମୋହନ ପାଞ୍ଚେ ସରକ ଅନନ୍ତ ଗରାଶ, ଗଡ଼ାଇ ପ୍ରତିଷ୍ଠା କରିଥିଲେ । ଜଗନ୍ନାଥ ମନ୍ଦିରର ଜୀର୍ଣ୍ଣ ସଂସ୍କାର ଓ ଅନ୍ୟାନ୍ୟ କୀର୍ତ୍ତିର ନିର୍ମାଣ ଦ୍ୱାରା ଶ୍ରୀକ୍ଷେତ୍ରର ପୂର୍ବ ଗୌରବର ଉଦ୍ଧାର କରାଗଲା । ୧୭୨୦ ଖ୍ରୀଷ୍ଟାବ୍ଦରୁ ଉଦାରଚରିତାପନ୍ନ ମୁର୍ଶିଦକୁଲି ଖାଁ (ପ୍ରଥମ) କଟକର ସୁବାଦାର ଥିବାରୁ

(1) ମୋ କୃତ Des. Cat. of Sans Mss in Orissa, Vol II preface pp CL VIII to CLX

ପଣ୍ଡିତ ଶ୍ରୀ ବାନାମ୍ବର ଆଚାର୍ଯ୍ୟ ସାହିତ୍ୟାଚାର୍ଯ୍ୟଙ୍କ ସଂପାଦିତ 'ରସକଳ୍ପଦ୍ରୁମ' ଗ୍ରନ୍ଥ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପ୍ରକାଶିତ ହୋଇଅଛି ।

ବୈଦିକ ଧର୍ମର ପୁନରୁତ୍ଥାନ ଓ ଉପର ଉକ୍ତ କାର୍ତ୍ତିକଳାପର ନିର୍ମାଣ ସମ୍ଭବପର ହୋଇଥିଲା ।

## ଗଜପତିହରେକୃଷ୍ଣ ଦେବଙ୍କ ଅଙ୍କ ଗଣନା

ତାଙ୍କ ରାଜତ୍ୱର ତିନଖଣ୍ଡି ଦାନପତ୍ର ଗଞ୍ଜାମରୁ ମିଳିଛି । ସେଥିରୁ ନିମ୍ନୋକ୍ତ ତଥ୍ୟ ମିଳେ । (୧) ଗଜପତି ହରେକୃଷ୍ଣ ଦେବଙ୍କ ଅଙ୍କ, କୁମ୍ଭ ୧୫, ଫଗୁଣ ଶୁକ୍ଳ ୧୦ ସୋମବାର ଦିନ ପଦ୍ମନାଭ ସିଂହଦେବ ବାସୁଦେବ ରାଜଗୁରୁଙ୍କୁ ଯଜ୍ଞଦକ୍ଷିଣା ଅଭୟପୁର ଗ୍ରାମକୁ ୨୨ଭାଗ କରି ଦାନ କରିଥିଲେ । ଗଣନା ଅନୁସାରେ ୧୧-୨ ୧୭୧୭ତାରିଖରେ ମାସ, ବାର, ଦିନ, ତିଥି ପ୍ରଭୃତି ସବୁ ମିଳିଯାଉଛି । (୨) ତାଙ୍କ ରାଜତ୍ୱରେ ଖଲ୍ଲିକୋଟ ରାଜା ନଳନାଭ ମର୍ଦରାଜ ଦେବ ଆଶ୍ୱିନ, ଶୁଦ୍ଧ ୫, ବୁଧବାର ଦିନ ଜନାର୍ଦ୍ଦନ କରଗାରୁ (କରଙ୍କୁ, ବିଜୟ ନଳନାଭପୁର ଗ୍ରାମ ଦାନ କରିଥିଲେ । ୧୭-୯-୧୭୧୮ ତାରିଖ ବୁଧବାର ଦିନ ଆଶ୍ୱିନ, ଶୁକ୍ଳ, ପଞ୍ଚମୀ ତିଥି ପଡ଼ିଥିବାରୁ ଏହା ତାଙ୍କ ରାଜତ୍ୱର ୫ଅଙ୍କ ହେବ । (୩) ତାଙ୍କ ୫ଅଙ୍କ ଭୁନ ୨ଦିନ (୨୦-୧୦-୧୭୧୮ ତାରିଖ) ଧରାକୋଟ ରାଜା ରାମଚନ୍ଦ୍ର ସିଂହ ଦେବ ମହେଶ୍ୱର ତିଅଡ଼ିଙ୍କୁ ଭୂମି ଦାନ କରିଥିଲେ ।

ମିଉଜିୟମରେ ଥିବା ଧରଣୀଧର ମିଶ୍ର କୃତ ଅନୁବାଦ ସହ ଏକ ଗୀତ-ଗୋବିନ୍ଦ ପୋଥି ଶେଷରେ ତାଙ୍କ ଗୃହଅଙ୍କ ୧୬୩୯ଶକାବ୍ଦରେ ୧୦୧୭ଖ୍ରୀଷ୍ଟାବ୍ଦ ପଡ଼ିଥିବାର ଉଲ୍ଲେଖ ଅଛି ।

୯-୫ ୧୭୧୭ତାରିଖରୁ ୨ଅଙ୍କ ଗଣାଯାଇଥିଲା ।

| ନୂଆ ତାରିଖ | ଅଙ୍କ | ପ୍ରସିଦ୍ଧ ଘଟଣା |
|---|---|---|
| ୧୮-୮-୧୭୧୬ | ୩ | ଶ୍ରୀ ହରେକୃଷ୍ଣପୁର ଶାସନ ପ୍ରତିଷ୍ଠା |
| ୬-୯-୧୭୧୭ | ୪ | ବୈଦିକ ଧର୍ମର ପୁନରୁତ୍ଥାନ |
| ୨୬-୮-୧୭୧୮ | ୫ | |
| ୧୫-୮-୧୭୧୯ | ୭ | |

ମାଦଳାପାଞ୍ଜି ଅନୁସାରେ ୫୭ଙ୍କ ମୀନ ୨୧୯ନରେ ତାଙ୍କର ମୃତ୍ୟୁ ଘଟିଥିଲା । ତାହାହେଲେ ତାଙ୍କ ମୃତ୍ୟୁଦିବସ ହେଉଛି ୧୭-୩-୧୭୨୦ତାରିଖ । ତାଙ୍କର ସାତ ଅଙ୍କ ଗଣାଯାଇଥିଲେ ମଧ୍ୟ ସେ ପୂରା ଗୃରବର୍ଷ ରାଜତ୍ୱ କରିନାହାନ୍ତି ।



# ଗଜପତି ଗୋପୀନାଥ ଦେବ

(୧୭୨୦-୧୭୨୭ଖ୍ରୀଷ୍ଟାବ୍ଦ)



**ରାଜତ୍ୱ କାଳ:—**

ହରେକୃଷ୍ଣ ଦେବଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର 'ଗୋପୀନାଥ ରାଏ' ଗୋପୀନାଥ ଦେବ ନାମ ଧାରଣ କରି ଖୋର୍ଦ୍ଧା ସିଂହାସନ ଅଧିକାର କରିଥିଲେ । ତାଙ୍କ ସିଂହାସନ ଆରୋହଣ ସନ ପାଞ୍ଜିରେ ଦିଆଯାଇନାହିଁ । କିନ୍ତୁ ଦଶ ଅଙ୍କରେ ତାଙ୍କୁ ହତ୍ୟା କରାଯାଇଥିବା ପାଞ୍ଜିରୁ ଜଣାଯାଏ । ଗୋପୀନାଥ ଦେବଙ୍କ ରାଜତ୍ୱର ଶେଷ ପର୍ଯ୍ୟନ୍ତ ମୁର୍ଶିଦ କୁଲିଖାଁ କଟକର ସୁବାଦାର ଥିବାରୁ ଖୋର୍ଦ୍ଧା ରାଜ୍ୟର ଲୋକେ ସୁଖଶାନ୍ତିରେ କାଳ କାଟିଥିଲେ । ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଗୋପୀନାଥପୁର ଶାସନ ତାଙ୍କ ସ୍ମୃତି ରକ୍ଷାକରି ଏପର୍ଯ୍ୟନ୍ତ ଅବସ୍ଥିତ ଅଛି ।

## ସଂସ୍କୃତ ଓ ଓଡ଼ିଆ ସାହିତ୍ୟ ଚର୍ଚ୍ଚା

**ରାମଚନ୍ଦ୍ର ଖଡ୍‌ଗରାୟ:—**

ସେ ପ୍ରସିଦ୍ଧ ଉତ୍କଳୀୟ ଧର୍ମଶାସ୍ତ୍ର ପ୍ରଣେତା ଗଦାଧର ରାଜଗୁରୁଙ୍କ ପୁତ୍ର ଥିଲେ ଓ ତାଙ୍କର ମାତାଙ୍କ ନାମ ଲକ୍ଷ୍ମୀ ଦେବୀ । ସେ ଜଣେ ସୁକବି ଥିଲେ । ଏପର୍ଯ୍ୟନ୍ତ ତାଙ୍କ କୃତ 'ଅଳଙ୍କାର ଚିନ୍ତାମଣି' ନାମକ ଏକ ଗ୍ରନ୍ଥର ଛଅୋଟି ତରଙ୍ଗ ବା ଅଧ୍ୟାୟ ମାତ୍ର ଆବିଷ୍କୃତ ହୋଇଅଛି । ତତ୍‌କୃତ ଅନ୍ୟ ଗ୍ରନ୍ଥ ଗୁଡିକର ସନ୍ଧାନ ଭବିଷ୍ୟତରେ ମିଳିପାରେ । (୨) ସେ ଜଣେ ଉଚ୍ଚ କୁଳ ସମ୍ଭୂତ ଯାଜ୍ଞିକ ବ୍ରାହ୍ମଣ

---

(୨) ମିଉଜିୟମରେ ସଂରକ୍ଷିତ ପୋଥିରୁ ଉଦ୍ଧୃତ ।
"ଇତି ଶ୍ରୀମତ୍ କାଶ୍ୟପକୁଳ କମଳ ଦିନକର ଚତୁର୍ମୁଖମଖ ଶତସନ୍ତୋ-ଷିତାମର × × ଗଦାଧର ରାଜଗୁରୁ ତନୁଜନ୍ମନା ଲକ୍ଷ୍ମୀ ଦେବୀହୃଦୟନନ୍ଦନେନ ରାମଚନ୍ଦ୍ର ଖଡ୍‌ଗରାୟ ନାମଧେୟେନ ସୁକବିନା ବିରଚିତେଽଳଙ୍କାରଚିନ୍ତାମଣୌ ତୃତୀୟ ସ୍ତବକଃ"

ପଣ୍ଡିତ ହୋଇ ମଧ୍ୟ କ୍ଷତିପୂରଣ ‘ଖଡ୍‌ଗରାୟ’ ପଦବୀରେ ତାଙ୍କୁ ଭାଣ୍ଡିକ ମଣ୍ଡିତ କରାଯାଇଥିଲା, ତାହାର କାରଣ ଜଣାଯାଏ ନାହିଁ । ‘ନରହରି ଚରିତମ୍’ ନାମକ ଶ୍ରୀକୃଷ୍ଣ ଲୀଳା ବର୍ଣ୍ଣନାତ୍ମକ ଖଣ୍ଡିଏ କାବ୍ୟର ପ୍ରଣେତା ମଧ୍ୟ ଜଣେ ରାମଚନ୍ଦ୍ର ଖଡ୍‌ଗରାୟ । ଅଧ୍ୟାପକ କୁଳମଣି ମିଶ୍ରଙ୍କ ମତରେ ସେ ନନ୍ଦ ସାମନ୍ତ ବଂଶୀୟ ଏବଂ ତାଙ୍କଘର ଶ୍ରୀମୁକୁନ୍ଦପୁର ଶାସନରେ । (୩) ଉଭୟେ ଏକ ଓ ଅଭିନ୍ନ ଥିବାର ପ୍ରମାଣ ମିଳୁନାହିଁ ।

## ଦାଶରଥି ଦାସ:—

ଦାଶରଥି ଦାସ ରଣପୁର ରାଜ୍ୟର ଏକ ‘ଶିଷ୍ଟକରଣ ବା ଶ୍ରେଷ୍ଠ କରଣ ପରିବାରରେ ଜନ୍ମଗ୍ରହଣ କରିଥିଲେ ଏବଂ ତାଙ୍କର ଗୋତ୍ର ହେଉଛି କାଶ୍ୟପ । ଯଥା :—

“କାଶ୍ୟପ ଗୋତ୍ରେ ହୋଇ ଜାତ, ଶିଷ୍ଟକରଣ କୁଳେ ଖ୍ୟାତ
× × ×
ରଣପୁର ମଣ୍ଡଳେ ମୋର ବାସ, ନାମ ଅଟଇ ଦାଶରଥି ଦାସ ।”

ସେ ତାଙ୍କ ଗୁରୁ ବନ୍ଧୁକଣ୍ଠ ଦାସ ଗୋସାଇଁଙ୍କ ଦ୍ୱାରା ଅନୁପ୍ରାଣିତ ଓ ଉତ୍ସାହିତ ହୋଇ ଶ୍ରୀମଦ୍ ଭାଗବତ, ଦଶମସ୍କନ୍ଧ ଲୀଳାମୃତ, ବ୍ରହ୍ମବୈବର୍ତ୍ତ ପୁରାଣ ପ୍ରଭୃତିରୁ ସାର ସଂଗ୍ରହ କରି ‘ବ୍ରଜବିହାର’ ନାମକ ଏକ ବୃହତ୍ ଗ୍ରନ୍ଥ ରଚନା କରିଥିଲେ । ଏଥିରେ ଶ୍ରୀକୃଷ୍ଣଙ୍କ ବାଳଲୀଳା ସଂକ୍ଷିପ୍ତ ଭାବରେ ଏବଂ ଶ୍ରୀରାଧା ଓ ଗୋପୀମାନଙ୍କ ସହିତ ଲୀଳା ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଅଛି । ସମଗ୍ର ଗ୍ରନ୍ଥଟିରେ ପଦ ସଂଖ୍ୟା ୧୩୧୪୧ (ତେର ହଜାର ଏକଶହ ଏକଚାଳିଶ) । ସେ ଏହି ଗ୍ରନ୍ଥ ତୃତୀୟ ଓ ଚତୁର୍ଥ ବୋଲି ଗଜପତି ଗୋପୀନାଥ ଦେବଙ୍କ ତିନିଅଙ୍କରେ ଶେଷକରି ଥିଲେ । ଯଥା—

‘ଗୋପୀନାଥ ଦେବ ତିନିଅଙ୍କ ମାର୍ଗଶୀର, ପାଦ ଭଗବାନ ପଦ ଭ୍ରମରବନ୍ତ
ସଦାବର୍ତ୍ତି ସଦା ମତ୍ତ ହରିଭକତ, ଭୋଗମଣ୍ଡପ ଗୁଣ୍ଡିଚା ମୋହନ କୀର୍ତ୍ତି
ଏହି ସମସ୍ତେ ଏ ବୋଲି ହେଲା ସଂପୂର୍ଣ୍ଣ, × × ×
ସଂପୂର୍ଣ୍ଣ ଚତୁର୍ଥ ବୋଲି ସହସ୍ର ପଦରେ
ଗୋପୀନାଥ ଦେବଙ୍କ ତିନିଅଙ୍କ ଉତ୍ସବରେ ।

ଗୋପୀନାଥ ଦେବଙ୍କ ତିନିଅଙ୍କ ୨-୯-୧୭୨୦ ତାରିଖ ସୁନିଆଠାରୁ ୨୩-୮-୧୭୨୧ ତାରିଖ ସୁନିଆ ପର୍ଯ୍ୟନ୍ତ ଚାଲିଥିଲା ।

---

(୩) ‘ଚତୁରଙ୍ଗ’ ୨ୟ ବର୍ଷ, ଷଷ୍ଠ ସଂଖ୍ୟା ପୃ୨୬୪ ।

ଦାଶରଥି ଦାସ ଉକ୍ତ ଗ୍ରନ୍ଥ ରାମଚନ୍ଦ୍ରଙ୍କ ଆଠ ଅଙ୍କରେ ବା ୧୭୩୧ ଖ୍ରୀଷ୍ଟାବ୍ଦରେ ସମାପ୍ତ କରିଥିଲେ । (୪) ବୋଧହୁଏ କୌଣସି ବିଶେଷ ଅସୁବିଧା ଯୋଗୁଁ ଖଣ୍ଡିଏ ଗ୍ରନ୍ଥ ଶେଷ କରିବାପାଇଁ କବିଙ୍କୁ ଦଶବର୍ଷରୁ ଅଧିକ କାଳ ଲାଗିଥିଲା । ତାଙ୍କ ରଚିତ ଅନ୍ୟ କୌଣସି ଗ୍ରନ୍ଥର ସନ୍ଧାନ ମିଳିନାହିଁ ।

## ଗୋପୀନାଥ ଦେବଙ୍କ ରାଜତ୍ୱର ଅଙ୍କ ଗଣନା

(୧) ଅନ୍ୟ ଏକ ମାଦଳା ପାଞ୍ଜିରୁ ଜଣାଯାଏ ଯେ ତାଙ୍କ ୮ଅଙ୍କ ମକର, କୃଷ୍ଣ ତ୍ରୟୋଦଶୀ, ସୋମବାର ଦିନ ଗୋଟିଏ ପେଚା ଜଗନ୍ନାଥ ମହାପ୍ରଭୁଙ୍କ ମୁଣ୍ଡ ଉପରେ ବସିବାରୁ ତାଙ୍କର ତିନିଥର ମାଘ ସ୍ନାନ ହୋଇଥିଲା । ଗଣନା ଅନୁସାରେ ୧୩-୧ ୧୭୨୪ତାରିଖରେ ଏ ସମସ୍ତ ମିଳିଯାଉଛି ।

(୨) ନରସିଂହପୁର ନିବାସୀ ଶ୍ରୀ ଚନ୍ଦ୍ରଧର ମହାପାତ୍ରଙ୍କ ନିକଟରେ ଥିବା ଏକ ଦାନ ପତ୍ରରୁ ଜଣାଯାଏ ଯେ କନ୍ଧେଇସରୋଜ ରାଜଗୁରୁ ପରମାନନ୍ଦ ପାଟଯୋଷୀ ମହାପାତ୍ର ଗୋପୀନାଥ ଦେବଙ୍କ ଅ୧୦ଙ୍କ ମକର ୨ଦିନ ୧୧୩୩ଅମଲି ସନ ଜମାଦିଲ ଆଉଲ ମାସରେ ଦେଓୟାନ ମିର୍ଜା ମହମ୍ମଦ ସଫୁଦବେଗଙ୍କ ହାତ୍ରୁ ୨୫ବାଟୀ ଭୂମି ଦାନ ପାଇଥିଲେ । ଗଣନା ଅନୁସାରେ ଏହା ୩୧-୧୨-୧୭୨୭ ତାରିଖ ହେଉଛି ଏବଂ ଏହା ତାଙ୍କ ୧୦ଅଙ୍କରେ ପଡିଥିଲା ।

(୩) ଗଞ୍ଜାମ ଜିଲ୍ଲାରୁ ପ୍ରାପ୍ତ ତାଙ୍କର ଖଣ୍ଡିଏ ଦାନପତ୍ରରୁ ଜଣାଯାଏ ଯେ ତାଙ୍କ ୧୧ଅଙ୍କ ? (ଦଶଅଙ୍କ ହେବ ମେଷ ଦି୧୩ନ, ସୋମବାର, ବୈଶାଖ, ବହୁଳ୩୦ (ଅମାବାସ୍ୟା) ସୂର୍ଯ୍ୟୋପରାଗ ସମୟରେ ଗୋପୀନାଥ ଦେବ ତାଙ୍କୁ ଶୋଥ ରୋଗରୁ ଆରୋଗ୍ୟ ପ୍ରଦାନ କରିଥିବା ଧନଞ୍ଜୟ ନେଉଁନାଥ ରାଓ ନାମକ ଅନ୍ଧ୍ର କବିରାଜଙ୍କୁ ନୂଆଘାଟି ଗୋପୀନାଥପୁର ଗ୍ରାମ ଦାନ କରିଥିଲେ । (୫) ଗଣନା ଅନୁସାରେ

---

(୪) 'ବ୍ରଜବିହାର ରଚୟିତା ଦାଶରଥି ଦାସ, ନବଜୀବନ, ୨ୟ ବର୍ଷ ଏକାଦଶ ସଂଖ୍ୟା ।

"ଚାରିସହସ୍ର ଆଠଶତ ବତିଶ, କଳିଯୁଗ ଭୋଗ ଏତେ ଦିବସ ।
ଶକ ଅବଦ ଷୋଳଶ ତେପନ, ରାମଚନ୍ଦ୍ର ଦେବ ମହାରାଜନ,
ଆଠଅଙ୍କ କୁମାର ପୌର୍ଣ୍ଣମୀରେ, ବ୍ରଜବିହାର ଗ୍ରନ୍ଥ ସଂପୂର୍ଣ୍ଣରେ ।"

କଳିଯୁଗାବ୍ଦ ୪୮୩୨ ଶକାବ୍ଦ ୧୬୫୩ ବା ୧୭୩୧ଖ୍ରୀଷ୍ଟାବ୍ଦରେ ଉକ୍ତ ଗ୍ରନ୍ଥ ସଂପୂର୍ଣ୍ଣ ହୋଇଥିଲା ।

(5) Inscriptions of the Madras Presidency by Rangacharya Vol I, Ganjam. No. 286.

୧୦-୪-୧୭୨୭ତାରିଖରେ ବୈଶାଖ ଅମାବାସ୍ୟା ସୋମବାର ଓ ସୂର୍ଯ୍ୟପରାଗ ଘଟିଥିଲା । ଏ ଗ୍ରାମଟି ସେତେବେଳେ ଖୁର୍ଦ୍ଧା ରାଜାଙ୍କ ଅଧୀନରେ ଥିବା ଇଚ୍ଛାପୁର ତାଲୁକାରେ (ଏହା ୧୯୩୬ ଏପ୍ରିଲ ପହିଲାରୁ ଓଡ଼ିଶାରୁ ବିଚ୍ଛିନ୍ନ ହୋଇଛି) ଅବସ୍ଥିତ ଥିଲା ।

## ଗୋପୀନାଥ ଦେବଙ୍କ ହତ୍ୟା:—

ମାଦଳା ପାଞ୍ଜିରେ ଲେଖା ଅଛି ଯେ ତାଙ୍କ ଅ୧୦ଙ୍କ ମେଷ ୨୮ଦିନ ଦିଆନ ସସ୍ତୁବେଗ, ଖୋଜା କୃଷ୍ଣ ନରେନ୍ଦ୍ର ଓ ବେଲୁ ଭ୍ରମରବର ରାଏ; ଏ ତନିଜଣ ସୂର୍ଯ୍ୟ ଉଦୟୁ ବେଳକୁ ଖୁର୍ଦ୍ଧା ନହରରେ ପଶି ଗୋପୀନାଥ ଦେବଙ୍କୁ ହତ୍ୟା କରିଥିଲେ । (୭) ସେ ଇଚ୍ଛାପୁରରୁ ସ୍ୱରାଜଧାନୀକୁ ଫେରିବାର ଠିକ୍ ପନ୍ଦର ଦିନ ପରେ ୨୬-୪-୧୭୨୭ତାରିଖରେ ତାଙ୍କୁ ହତ୍ୟା କରାଯାଇଥିଲା । ସିଂହାସନ ଅଧିକାର ପାଇଁ ଷଡ଼ଯନ୍ତ୍ର ଫଳରେ ଏହି ନୃଶଂସ ହତ୍ୟାକାଣ୍ଡ ଘଟିଥିବା ସମ୍ଭବପର ।

| ଶୁନିଆ ତାରିଖ, | ଅଙ୍କ |
|---|---|
| ୨-୯-୧୭୨୦ ତାରିଖ ଶୁନିଆ ଦିନରୁ | ୩ |
| ୨୩-୮-୧୭୨୧ ” ” | ୪ |
| ୧୧-୯-୧୭୨୨ ” ” | ୫ |
| ୩୧-୮-୧୭୨୩ ” ” | ୭ |
| ୨୦-୮-୧୭୨୪ ” ” | ୮ |
| ୮-୯-୧୭୨୫ ” ” | ୯ |
| ୨୮-୮-୧୭୨୬ ” ” | ୧୦ |

୨୬-୪-୧୭୨୭ ଦଶଅଙ୍କରେ ତାଙ୍କର ମୃତ୍ୟୁ ।



(୭) ମାଦଳାପାଞ୍ଜି, ପ୍ରାଚୀ ସଂସ୍କରଣ, ପୃ ୭୩ ।

# ଗଜପତି ଦ୍ୱିତୀୟ ରାମଚନ୍ଦ୍ର ଦେବ

(୧୭୨୭-୧୭୩୬ ଖ୍ରୀଷ୍ଟାବ୍ଦ)



**ସିଂହାସନ ଆରୋହଣ:—**

ଗୋପୀନାଥ ଦେବଙ୍କ ହତ୍ୟା ଅବସରେ (୨୭-୪-୧୭୨୭) ତାଙ୍କ ସାନ ଭାଇ କେଶବ ରାଏ ରାମଚନ୍ଦ୍ର ଦେବ ନାମରେ ଖୁରୁଧା କଟକରେ ଅଭିଷିକ୍ତ ହୋଇଥିଲେ ଏବଂ ଏହି ଦିନଠାରୁ ୧୭-୮-୧୭୨୮ ସୁନିଆ ଦିନ ପର୍ଯ୍ୟନ୍ତ ତାଙ୍କର ୨ ଅଙ୍କ ଚାଲିଥିଲା । ତାଙ୍କ ଅଭିଷେକର ପ୍ରାୟ ଦୁଇମାସ ପରେ ଓଡ଼ିଶାର ଶାସକ ମୁର୍ଶିଦ କୁଲି ଜାଫର ଖାଁ (ପ୍ରଥମ)ଙ୍କ ମୃତ୍ୟୁ ଘଟିବାରୁ (୨୭-୬-୧୭୨୭ ତାରିଖ) ତାଙ୍କ ଜାମାତା ସୁଜାଉଦ୍ଦିନ୍ ମହମ୍ମଦ ଖାଁ ବଙ୍ଗ ଓ ଓଡ଼ିଶାର ସୁବାଦାର ହୋଇଥିଲେ ।

**ସୁଜାଉଦ୍ଦିନ୍‌ଙ୍କ ଶାସନ ନୀତି :—**

ମୁର୍ଶିଦ କୁଲି ଖାଁଙ୍କ ଶାସନ କାଳରେ ସୁଜାଉଦ୍ଦିନ୍ କଟକର ନାଏବ ନାଜିମ ଭାବରେ ୧୭୦୭ରୁ ୧୭୨୭ ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ । ସେ ଜଣେ ନୈଷ୍ଠିକ ମୁସଲମାନ ଓ ହିନ୍ଦୁଧର୍ମର ବିରୋଧୀ ଥିଲେ । କଟକର କଦମ-ଇ-ରସୁଲଠାରେ ତାଙ୍କର ଦୁଇଗୋଟି ଅଭିଲେଖ ଦେଖାଯାଏ । ସେଥିରୁ ଜଣାଯାଏ ଯେ ସୁଜାଉଦ୍ଦିନ୍ ୧୧୨୭ ହିଜ୍ରା ସନ ବା ୧୭୧୪-୧୫ ଖ୍ରୀଷ୍ଟାବ୍ଦରେ କଦମ-ଇ-ରସୁଲର ପ୍ରସିଦ୍ଧ ତୋରଣ ଓ ଜଳାଶୟ ଏବଂ ୧୧୩୦ ହିଜ୍ରା ସନରେ ବା ୧୭୧୭-୧୮ ଖ୍ରୀଷ୍ଟାବ୍ଦରେ ଏଠାରେ ମସଜିଦ୍ ନିର୍ମାଣ କରିଥିଲେ । (୭) ଅନେକ ହିନ୍ଦୁକୀର୍ତ୍ତିର ଧ୍ୱଂସାବଶେଷ ସାହାଯ୍ୟରେ ଏଗୁଡ଼ିକ ନିର୍ମିତ ହୋଇଥିବାର ମନେହୁଏ । ସେ କାଠଯୋଡ଼ିଠାରୁ ଦୁଇମାଇଲ ଦୂରରେ ସୁଜାଗଡ଼ ନାମକ ଏକ ଦୁର୍ଗ ନିର୍ମାଣ କରି

---

(7) Notices of some Persian Inscriptions in Orissa, Vol. VI, No. 4, pp. 287-288.

ସେଠାରେ ବହୁ ମୁସଲମାନ ସୈନ୍ୟ ରଖାଇଥିଲେ । ସେ ସମୟରେ କାକଟପୁର ପ୍ରସିଦ୍ଧ ମଙ୍ଗଳା ମନ୍ଦିର ଓ ଅନ୍ୟ ଦେବାଳୟମାନ ଧ୍ୱଂସ କରଯାଇଥିବାର ଅନୁମାନ କରଯାଏ । ସୁଜାଗଡ଼ର କିଲ୍ଲାଦାର ମିର୍ଜା ଖୋଦା ବକ୍‌ସଙ୍କୁ ମହମ୍ମଦ ତକିଖାଁ ପଠାଇଥିବା ପରୱାନା ଏ ପର୍ଯ୍ୟନ୍ତ ତାଙ୍କ ବଂଶଧରଙ୍କ ନିକଟରେ ଅଛି । (୮)

## ମହମ୍ମଦ ତକି ଖାଁଙ୍କ ଶାସନ :—

ସୁଜାଉଦ୍ଦିନ୍ ୧୭୨୭ ଖ୍ରୀଷ୍ଟାବ୍ଦରେ ବଙ୍ଗ ଓ ଓଡ଼ିଶାର ସୁବାଦାର ହେବା ପରେ ନିଜ ରକ୍ଷିତା ସ୍ତ୍ରୀର ପୁତ୍ର ମହମ୍ମଦ ତକି ଖାଁଙ୍କୁ କଟକର ନାଏବ ନାଜିମ ରୂପେ ନିଯୁକ୍ତ କରି ଉକ୍ତ ପ୍ରଦେଶର ଶାସନ ଭାର ତାଙ୍କ ହସ୍ତରେ ନ୍ୟସ୍ତ କଲେ । ତକି ଖାଁ ସ୍ବୀୟ ପିତାଙ୍କ ଠାରୁ ଅଧିକ ହିନ୍ଦୁ ବିଦ୍ୱେଷୀ ଥିଲେ । ପିତାଙ୍କ ନିର୍ମିତ କଟକର କଦମ ଇ-ରସୁଲ ଅନୁକରଣରେ ସେ ବାଲେଶ୍ୱରରେ କଦମ-ଇ-ରସୁଲ, ତନ୍ନିକଟବର୍ତ୍ତୀ ଜଳାଶୟ ଓ ଉଦ୍ୟାନ ପ୍ରଭୃତି ନିର୍ମାଣ କରିଥିବା ୯-୪-୧୭୩୨ ତାରିଖରେ ପ୍ରଦତ୍ତ ଏକ ସନନ୍ଦରୁ ଜଣାଯାଏ (J.A.S.B. Vol. IV, 1908 P 3.1 ) ସେ ରେମୁଣାରେ ମଧ୍ୟ କେତେକ ମୁସଲମାନ କୀର୍ତ୍ତି ପ୍ରତିଷ୍ଠା କରିଥିବାର ଜଣାଯାଏ । (୯) ଯାଜପୁରରେ ତାଙ୍କ ଦ୍ୱାରା ନିର୍ମିତ ମୁସଲମାନ କୀର୍ତ୍ତି ମୋଟେ ପରିବର୍ତ୍ତନ କରିଥିବା ତାଙ୍କ ବିବରଣୀରୁ ଜଣାଯାଏ । (୧୦) ମହମ୍ମଦ ସାହ ବାଦସାହ ଗାଜୀଙ୍କ ରାଜତ୍ୱର ଷୋଡ଼ଶ ବର୍ଷରେ ପବିତ୍ର ମହରମ ମାସର ୧୦ମ ଦିବସରେ * ନବାବ ମହମ୍ମଦ ତକି ଖାଁ ପିପିଲିଠାରେ ଗୋଟିଏ ଦରଘା ନିର୍ମାଣ କରିଥିଲେ । (୧୧) ଏତେଗୁଡ଼ିଏ ମୁସଲମାନ କୀର୍ତ୍ତି ନିର୍ମାତାଙ୍କ ପ୍ରଧାନ ଲକ୍ଷ୍ୟ ଥିଲା ଖୁର୍ଦ୍ଧା ରାଜାଙ୍କୁ ଅସ୍ତବ୍ୟସ୍ତ କରି ଭାରତ ପ୍ରସିଦ୍ଧ ଜଗନ୍ନାଥ ମନ୍ଦିରର ଆକ୍ରମଣ ।

## ପ୍ରଥମ ଖୁର୍ଦ୍ଧା ଆକ୍ରମଣ :—

ମାଦଳା ପାଞ୍ଜି ଅନୁସାରେ ରାମଚନ୍ଦ୍ର ଦେବଙ୍କ ୮ ଅଙ୍କରେ ବା ତକି ଖାଁ ଖୁର୍ଦ୍ଧା ରାଜ୍ୟ ଆକ୍ରମଣ କରିଥିଲେ । ତାଙ୍କ ୮ ଅଙ୍କ ୪୮୩୨ କଳିଯୁଗାବ୍ଦ ବା ୧୭୩୧

(8) Pipili O.H.R.J. Vol. II, No. 3 & 4, p 63.

(9) Notes on the History of Northirn Orissa by J. Beams, J.A.S. Bengal, 1883, No. 3, P. 238.

(10) Account of T. Motte, Vol. I, No. 3, Appendix p II.

* ୧୨-୬-୧୭୩୩ ବା ୧-୭-୧୭୩୪ ।

(11) O.H.R.J. Vol. VI, No. 4, p 290.

ଶକାବ୍ଦ ବା ୧୭୩୧ ଖ୍ରୀଷ୍ଟାବ୍ଦରେ ଘଟିଥିବା ଦାଶରଥି ଦାସଙ୍କ 'ବ୍ରଜବିହାରରୁ' ନିଃସନ୍ଦେହ ଭାବରେ ଜଣାଯାଏ । ଏହି ଆକ୍ରମଣର ନିମ୍ନଲିଖିତ ବିବରଣ ପାଞ୍ଜିରୁ ମିଳେ । 'ଏ ମହାରାଜାଙ୍କ ୮ ଅଙ୍କ ଧନୁ ୨୨ ଦିନେ ? (୨ଦିନ ହେବ) କଟକ ସୁବା ସୁଜା ଖାଁଙ୍କ ପୁଅ ମହମ୍ମଦ ତକି ଖାଁ ନବାବର ସୈନ ଶିଶୁପାଳଗଡ଼ ଖୋଳାଇ ଦେଲା । ଧଉଳି ଗଡ଼ ସୈନ ରଥିପୁର ସେନାଲା । ଖୋଜା ବକ୍ସି ବେଣୁ ଭ୍ରମରବର ରାଏଙ୍କୁ ଏହାଙ୍କ ପୁଅ ଦିଆନ ମାଳାମ୍ବର ହରିଚନ୍ଦନଙ୍କୁ ମଧ୍ୟ ସିପାହି ପାଇକେ ମେଳିଆ ହୋଇଲେ । କେହି ଲଢ଼େଇ ନ କଲେ । ବକ୍ସି ଦିଆନ ରଥିପୁରଠାରୁ ପଳାଇ ଗଲେ । ଶ୍ରୀଠାକୁରେ ଖୁର୍ଦ୍ଧା ବିଜେ କରିଥିଲେ । ଏ ପଳାଇବା ବାରତା ପାଇ ସେକ୍ ଅବଦୁଲ୍ଲ ସଲମ ସାନପୁଅ ନେଧୁମିଆଙ୍କୁ ଦିଆନ କଲେ । ଝଞ୍ଜିପା ଗଦାଧର ମଙ୍ଗରାଜଙ୍କୁ ବକ୍ସି କଲେ । ଏ ଦୁଇଜଣଙ୍କୁ ଦିଆନ ବକ୍ସି କରି ନବାବଙ୍କୁ ରଥିପୁର ଠାରେ ଭେଟ ହୋଇଲେ । ଭେଟରେ ନବାବ ସୁଖ କଲେ । ବକ୍ସି ବେଣୁ ଭ୍ରମରବର ରାଏଙ୍କୁ ମାଗିଲେ । ଶ୍ରୀଠାକୁରେ ଆଜ୍ଞା ଦେଲେ । ଏ ପଳାଇଅଛି ଧରା ପଡ଼ିଲେ ଦେବୁ । ଏମନ୍ତ କରି ବିଜେ କରି ଅଇଲେ । ଧନୁ ୨୦ ଦିନେ ବକ୍ସି ମୁଣ୍ଡ ଓ ଦିଆନମୁଣ୍ଡ କଟାଇ ଆଜ ନବାବଙ୍କୁ ପଠାଇଲେ । ନବାବ ରଥିପୁର ରହି ଖୁର୍ଦ୍ଧା ଗଙ୍ଗପଡ଼ା ଠାରେ ଲଢ଼ାଇ କଲେ । ମକର ୫ ଦିନେ ଶ୍ରୀଠାକୁରେ ନବାବଙ୍କ ଭେଟକୁ ଗଲେ । ଭେଟରେ ନବାବ ଶ୍ରୀଠାକୁରଙ୍କୁ ଦିଆନ ବକ୍ସି ଭଲ ଭଲ ଲୋକଙ୍କୁ ସମସ୍ତ ଧରିଲା । ଥୋକାଏ ମରିଗଲେ, ଥୋକାଏ ଲୋକ ପଳାଇ ଅଇଲେ ।" (୧୨)

ମହମ୍ମଦ ତକି ଖାଁ ୨-୧୨-୧୭୩୧ ତାରିଖରେ ଶିଶୁପାଳଗଡ଼ ଧ୍ୱଂସ କରିବା ପରେ ଧଉଳୀ ଓ ରଥିପୁର ଅଧିକାର କରିଥିଲେ । ରଥିପୁର ଗଡ଼ ଦାୟିତ୍ୱରେ ଥିବା ବକ୍ସି ବେଣୁ ଭ୍ରମରବର ରାଏ ଓ ତାଙ୍କ ପୁଅ ଦିଆନ ମାଳାମ୍ବର ହରିଚନ୍ଦନ ପଳାଇଗଲେ । ସିପାହି ଓ ପାଇକମାନେ ଏ ଦୁହିଁଙ୍କ ବିରୁଦ୍ଧରେ ମେଳିଆ ହୋଇ ଲଢ଼େଇ କରି ନ ଥିଲେ । ସେମାନେ କାହିଁକି ମେଳି କଲେ ତାହାର କାରଣ ଜଣାପଡ଼ୁ ନାହିଁ । ରାମଚନ୍ଦ୍ର ଦେବ ଏହି ଅନ୍ତଃବିପ୍ଳବ ସମୟରେ ନୂତନ ଦିଆନ ଓ ନୂତନ ବକ୍ସି ନିଯୁକ୍ତ କରିଥିଲେ ଏବଂ ସେ ଦୁହିଁଙ୍କୁ ନେଇ ନବାବଙ୍କୁ ରଥିପୁର ଠାରେ ଭେଟିଥିଲେ । ନବାବଙ୍କ ଆଦେଶ ମୁତାବକ ବିଦ୍ରୋହୀ ବକ୍ସି (ବେଣୁ) ଓ ଦିଆନ (ମାଳାମ୍ବର)ଙ୍କ ମୁଣ୍ଡକାଟି ଧନୁ ୨୦ ଦିନ ବା ୨୦-୧୨-୧୭୩୧ ତାରିଖରେ ନବାବଙ୍କ ନିକଟକୁ ପଠାଇଥିଲେ । ନବାବ ବାହ୍ୟତଃ ସନ୍ତୋଷ ପ୍ରକାଶ କଲେ ମଧ୍ୟ ରଥିପୁର ଠାରୁ ସୈନ୍ୟ ପଠାଇ ଗଙ୍ଗପଡ଼ା ଠାରେ ଖୁର୍ଦ୍ଧା

---

(୧୨) ମାଦଳା ପାଞ୍ଜି, ପୃ ୭୪-୭୫ ।

ରାଜାଙ୍କ ବିରୁଦ୍ଧରେ ଯୁଦ୍ଧ ଚଳାଇଲେ । ରାମଚନ୍ଦ୍ର ଦେବ ଉପରେ ସନ୍ଧ କରିବା ଉଦ୍ଦେଶ୍ୟରେ ଦିଆନ୍ ବକ୍‌ସି ଓ କେତେକ ସୈନ୍ୟଙ୍କୁ ସଙ୍ଗରେ ନେଇ ତକି ଖାଁଙ୍କୁ ରଥିପୁର ଠାରେ ଭେଟିଥିଲେ । ଏହି ଭେଟ ମକର ୫ ଦିନ ବା ୩-୧-୧୭୩୨ ତାରିଖରେ ହୋଇଥିଲା । କିନ୍ତୁ ତକି ଖାଁ ବିଶ୍ୱାସଘାତକତା କରି ରାଜା, ଦିଆନ ଓ ବକ୍‌ସି ପ୍ରଭୃତିଙ୍କୁ ଅଟକ କଲେ । ବହୁ ସୈନ୍ୟ ସାମନ୍ତଙ୍କୁ ହତ୍ୟା କରାଗଲା । ଅନେକ ପ୍ରାଣଭୟରେ ପଳାଇଗଲେ ।

## ରାଜକୁମାରମାନଙ୍କ ବିଦ୍ରୋହ ଓ କଟକରେ ରାମଚନ୍ଦ୍ର ବନ୍ଦୀ:—

ରାମଚନ୍ଦ୍ର, ତାଙ୍କ ଦିଆନ ଓ ବକ୍‌ସିଙ୍କୁ ତକିଖାଁ ରଥିପୁରଠାରେ ଅଟକ କରିବାର ପରଦିନ ଅର୍ଥାତ୍ ୪-୧-୧୭୩୨ ତାରିଖରେ ରାମଚନ୍ଦ୍ର ଦେବଙ୍କ ବଡ଼ପୁଅ କୃଷ୍ଣରାଏ ଜେନା ଓ ତାଙ୍କ ବଡ଼ପୁଅ ନରହରି କୁମାର ଏବଂ ରାମଚନ୍ଦ୍ରଙ୍କ ଅନ୍ୟ ପୁଅମାନେ, ଯଥା—ମୁକୁନ୍ଦ କୁମାର, ମଧୁସୂଦନ କୁମାର ଓ ଭଗୀରଥି କୁମାର ବିଦ୍ରୋହୀ ହୋଇ ବହୁ ସୈନ୍ୟସହ ନାଲ୍ଲିସିଂହ ଗଡ଼ରେ ରହିଲେ । ଖୁରୁଧାଗଡ଼ ତକି ଖାଁ ଦାଖ ଅଧିକୃତ ହେଲା । ସେ ବିଦ୍ରୋହୀ କୁମାରମାନଙ୍କ ବିରୁଦ୍ଧରେ ଅଭିଯାନ ଚଳାଇ ନାଲ୍ଲିସିଂହ ଗଡ଼ ମୀନ ୬୩୦ ବା ୨୮-୩-୧୭୩୨ରେ ଅଧିକାର କରିବାରୁ କୁମାରମାନେ କୋଦାଳା ଆଠଗଡ଼ ରାଜ୍ୟକୁ ପଳାଇଯାଇ ସେଠା ରାଜାଙ୍କ ଆଶ୍ରୟ ଗ୍ରହଣ କଲେ । ନବାବ ସେମାନଙ୍କର ପଶ୍ଚାତଧାବନ କରି କରି ବାଣପୁର ପର୍ଯ୍ୟନ୍ତ ଅଧିକାର କରିଥିଲେ । ବିଦ୍ରୋହୀ ରାଜକୁମାରମାନଙ୍କୁ ଖୁରୁଧା ରାଜ୍ୟରୁ ତଡ଼ିଦେବା ପରେ ବିଜୟମଦରେ ତକିଖାଁ । ବାଣପୁର ସୀମାରୁ ଫେରି ପୂର୍ବରୁ ରଥିପୁର ଗଡ଼ରେ ଅଟକ ଥିବା ରାମଚନ୍ଦ୍ର ଦେବଙ୍କୁ ସାଙ୍ଗରେ ନେଇ ବାରବାଟୀ ଦୁର୍ଗ ମଧ୍ୟରେ ବନ୍ଦୀଭାବରେ ରଖାଇଥିଲେ । ବୃଷଭ, ୬୨୫ନ ବା ୧୭୩୨ ମେ ମାସ ୨୩ତାରିଖରୁ ଗଜପତିଙ୍କ ବନ୍ଦୀଜୀବନ ଆରମ୍ଭ ହେଲା ।

## ଦ୍ୱିତୀୟ ଖୁରୁଧା ଆକ୍ରମଣ—

ଇତିମଧ୍ୟରେ ଭଗୀରଥି କୁମାର ଆଠଗଡ଼ ରାଜାଙ୍କଠାରୁ ସୈନ୍ୟ ସାହାଯ୍ୟ ଆଣି ପୁନର୍ବାର ପୁରୀ ଓ ଖୋରଧାରୁ ମୋଗଲ ଫୌଜକୁ ତଡ଼ିଦେଇଥିଲେ । ସେ ଜଗନ୍ନାଥ ମହାପ୍ରଭୁଙ୍କୁ ଦର୍ଶନ କରି ଶାଢ଼ୀ ବାନ୍ଧି ଖୁରୁଧା ଗଲେ ଏବଂ ନିଜକୁ ରାଜାବୋଲି ଘୋଷଣା କଲେ । ଏ ସମ୍ବାଦ ପାଇ ତକି ଖାଁ ଅଙ୍କ ବିଚ୍ଛମାସରେ ଅର୍ଥାତ ୧୭୩୨ ନଭେମ୍ବର ମାସରେ ବନ୍ଦୀ ରାମଚନ୍ଦ୍ରଙ୍କୁ ସାଙ୍ଗରେ ଆଣି ଗଙ୍ଗପଡ଼ାଠାରେ ବିଦ୍ରୋହୀ ନେତା ଭଗୀରଥି କୁମାରଙ୍କ ସଙ୍ଗେ ଲଢ଼େଇ କଲେ । କୁମାର ପରାସ୍ତ ହୋଇ ଦଶପଲ୍ଲା ରାଜ୍ୟକୁ ପଳାଇଗଲେ । ତକି ଖାଁ ରାମଚନ୍ଦ୍ର ଦେବଙ୍କୁ ଖୁରୁଧାରେ ନଜର ବନ୍ଦୀରେ ରଖି କଟକ ଫେରିଗଲେ । ଏହି ନଜର ବନ୍ଦୀ ଅବସ୍ଥାରେ

ରାମଚନ୍ଦ୍ର ଦେବ ଲୁକ୍‌କାୟିତ ଭାବରେ ହୋଳପାଣ୍ଡା ପ୍ରବରୁ ପୁରୀ ଯାଇ ସେଠାରେ ଗୁଣ୍ଡିଚାଯାତ୍ରା ବଢ଼ାଇ ଖୋର୍ଦ୍ଧା ଗଡ଼କୁ ଗୁପ୍ତ ଗୁପ୍ତ ଫେରିଆସିଥିଲେ ।

ମାଦଳର ଏକ କିମ୍ବଦନ୍ତୀ ଅନୁସାରେ ରାମଚନ୍ଦ୍ର ଦେବ କଟକରେ ୧୩ମାସ ୧୫ଦିନ ପର୍ଯ୍ୟନ୍ତ ବନ୍ଦୀ ଥିଲେ । ଆରବୀ ଭାଷାରେ ସୁପଣ୍ଡିତ ରାଜଗୁରୁ ପରମଲକ୍ଷ୍ମୀ ମହାପାତ୍ର ସଂସ୍କୃତ ଭଟ୍ଟୀ କାବ୍ୟର ଆରବୀ ଅନୁବାଦ ତକି ଖାଁଙ୍କୁ ଶୁଣାଇ ତାଙ୍କର ପ୍ରୀତିଭାଜନ ହୋଇଥିଲେ । ରାଜଗୁରୁଙ୍କ ଅନୁରୋଧରେ ତକି ଖାଁ ରାମଚନ୍ଦ୍ରଙ୍କୁ କଟକ ବନ୍ଦୀଶାଳାରୁ ମୁକ୍ତ କରିଥିଲେ । ଏହି କିମ୍ବଦନ୍ତୀକୁ ଏକ ସିଦ୍ଧାନ୍ତ ରୂପେ ଗ୍ରହଣ କରିବା ଅଧିକ ପ୍ରମାଣ ସାପେକ୍ଷ । କାରଣ ଷ୍ଟାଞ୍ଜି ଅନୁସାରେ ସେ ମେ ମାସରୁ ନଭେମ୍ବର ପର୍ଯ୍ୟନ୍ତ ପ୍ରାୟ ୭ ମାସ କାଳ କଟକରେ ବନ୍ଦୀ ଥିଲେ ।

## ଶ୍ରୀ ଜଗନ୍ନାଥଙ୍କୁ ବାଣପୁର ପ୍ରେରଣ:—

ଖୋର୍ଦ୍ଧା ଦୁର୍ଗରେ ନଜରବନ୍ଦୀ ଅବସ୍ଥାରେ ଥିବା ସମୟରେ ରାମଚନ୍ଦ୍ର ସର୍ବଦା ଜଗନ୍ନାଥ ମନ୍ଦିର ଆକ୍ରମଣର ଆଶଙ୍କା କରୁଥିଲେ । ତେଣୁ ଗଜପତିଙ୍କ ଆଦେଶରେ ତାଙ୍କ ବିଶ୍ୱସ୍ତ କର୍ମଚାରୀ ବଡ଼ପରୀକ୍ଷା ପଦ୍ମନାଭ କୁଅଁର ମହାପାତ୍ର ଓ ସାନପରୀକ୍ଷା ବିଷ୍ଣୁ ପଶ୍ଚିମ କବାଟ ସିଂହଦ୍ୱାର ଦେଇ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କୁ ଚଉଦୋଳାରେ ବସାଇ ଦୋହନ'ଠାକୁ ନେଲେ । ଏବଂ ସେଠାରେ ଗୁପ୍ତରେ ବସାଇ ଚିଲିକା ପାରକରାଇଲେ । ବାଣପୁର ନିକଟ ହରେଶ୍ୱର ମଣ୍ଡପରେ ବିଜେ କରାଇଲେ ।

## ତୃତୀୟ ଖୋର୍ଦ୍ଧା ଆକ୍ରମଣ:—

ଜଗନ୍ନାଥଙ୍କ ସ୍ଥାନାନ୍ତରୀକରଣ ସମ୍ବାଦ ପାଇ ତକି ଖାଁ ପୁନର୍ବାର ଖୋର୍ଦ୍ଧା ଆକ୍ରମଣ କରିବାରୁ (୧୦ଅଙ୍କ କୁମ୍ଭ ୧୬ଦିନ ବା ୧୭୩୩ରେ) ରାମଚନ୍ଦ୍ର ଦେବ ଖୋର୍ଦ୍ଧାରୁ ପଳାଇଯାଇ ପ୍ରଥମେ ନୟାଗଡ଼ରେ, ପରେ ଚଣ୍ଡୀଗଡ଼ା, ଓ ହୋଲଗଡ଼ରେ ଆଶ୍ରୟ ନେଇଥିଲେ । ଜଗନ୍ନାଥ ମହାପ୍ରଭୁଙ୍କୁ ନିରାପଦରେ ରଖିବା ନିମିତ୍ତ ହରେଶ୍ୱର ମଣ୍ଡପରୁ ଖଲିକୋଟ ସୀମା ଚିକିଲିଠାକୁ ପଠାଇ ଦିଆଗଲା । ତକି ଖାଁ ଭଗୀରଥି କୁମାରଙ୍କୁ ଦଶପଲ୍ଲାରୁ ଅଣାଇ ଖୋର୍ଦ୍ଧାରେ ରାଜା କରି ଓ ନିଜର ଫୌଜ ରଖି କଟକ ଫେରିଗଲେ । ସେଠାରୁ ସେ ମୁର୍ଶିଦାବାଦ ଗଲେ ।

## ଜଗନ୍ନାଥଙ୍କୁ ପୁରୀ ଆନୟନ:—

ଭଗୀରଥି କୁମାର ଖୋର୍ଦ୍ଧା ରାଜା ହେବା ପରେ ମହାଅଣସର ନିମନ୍ତେ ଦାରୁ ଅଣାଇ ଶ୍ରୀ ପୁରୁଷୋତ୍ତମ ବିଜେ କରାଇଥିଲେ । ୧୭୩୩ଖ୍ରୀଷ୍ଟାବ୍ଦରେ ଅଧିକ ଆଷାଢ଼ ମାସ ପଡ଼ିଥିବାରୁ ସେବର୍ଷ ନବକଳେବର ପାଇଁ ଦାରୁ ଅଣାଯାଇଥିଲା ।

ମିଥୁନ ୩୦ ଦିନ ( ୨୯-୬-୧୭୩୩ ? ) ରାମଚନ୍ଦ୍ର ଦେବ ପୁନର୍ବାର ବୋଲଗଡ଼ରୁ ଆସି ଖୋର୍ଦ୍ଧା ଅଧିକାର କଲେ । ତାଙ୍କ ପୁଅ ଭଗୀରଥି କୁମାର ମୋଗଲ ଫୌଜ ସେନ କଟକ ପଳାଇଗଲେ । ରାମଚନ୍ଦ୍ର ଦେବ ଚିକିଲିଠାରୁ ଶ୍ରୀବିଗ୍ରହ ମାନଙ୍କୁ ଶ୍ରୀକ୍ଷେତ୍ରକୁ ଆଣାଇ ଶ୍ରୀଗୁଣ୍ଡିଚା ଯାତ୍ରା କଲେ ( ୨ ୭-୧୭୩୩ ତାରିଖ ଦିନ ଗୁଣ୍ଡିଚା ଯାତ୍ରା ପଡ଼ିଥିଲା ) ।

## ଚତୁର୍ଥ ଖୋର୍ଦ୍ଧା ଆକ୍ରମଣ :—

ଶ୍ରୀଗୁଣ୍ଡିଚା ଯାତ୍ରା ମହାସମାରୋହରେ ସମ୍ପନ୍ନ ହେବାର ସମ୍ବାଦରେ ଉତ୍ତ୍ୟକ୍ତ ହୋଇ ପ୍ରଥମେ କଟକରୁ ନବାବ ଦଶରଥ ଖାଁ ? ଓ କିଛି ଦିନ ପରେ ନବାବ ଇସୁଣ ଖାଁ ଅଭିଯାନ ଚଳାଇ ପୁନର୍ବାର ଖୋର୍ଦ୍ଧା ଅଧିକାର କରିଗଲେ ।

## ଶ୍ରୀବିଗ୍ରହମାନଙ୍କ ଆଠଗଡ଼ ପ୍ରେରଣ :—

ପୁଣି ମନ୍ଦିର ଆକ୍ରମଣ ଆଶଙ୍କାରେ ପ୍ରଥମେ ଶ୍ରୀବିଗ୍ରହମାନେ ନଣ୍ଡିର ହରେଶ୍ୱର ମଣ୍ଡପରେ ରଖା ଯାଇଥିଲେ । ସେଠାରେ ମଧ୍ୟ ବିପଦର ସମ୍ଭାବନା ଦେଖି ଶ୍ରୀବିଗ୍ରହମାନଙ୍କୁ ଗଞ୍ଜାମ ଆଠଗଡ଼ ରାଜ୍ୟର ମାରଦା ନାମକ ସ୍ଥାନକୁ ୧୧ ଅଙ୍କ ଧନୁ ୨୯ଦିନ ବା ୨୯ ୧୨ ୧୭୩୩ ତାରିଖଠାରୁ ସୁରକ୍ଷିତ କରିଗଲା । ରାଜା ରାମଚନ୍ଦ୍ର ଦେବ ଖୋର୍ଦ୍ଧା ଜଙ୍ଗଲ ମଧ୍ୟରେ ଲୁଚି ରହିଲେ । ଆଠଗଡ଼ ରାଜ୍ୟସ୍ଥ ମଥୁରା ଗ୍ରାମର ବ୍ରାହ୍ମଣୀମାନେ ଦୁଇମାସ କାଳ ଦିନ ରାତି ପରିଶ୍ରମ କରି ମହାପ୍ରଭୁଙ୍କ ପାଇଁ ଏକ ମନ୍ଦିର ନିର୍ମାଣ କରିଥିଲେ । ତକିଖାଁ ମୁର୍ଶିଦାବାଦରୁ ଫେରି ପୁନର୍ବାର ଖୋର୍ଦ୍ଧା ଦୁର୍ଗ ଅଧିକାର କଲେ । ଏଥର ସେ ସମଗ୍ର ଖୋର୍ଦ୍ଧା ରାଜ୍ୟରେ ମୋଗଲ ଆଧିପତ୍ୟକୁ ସୁଦୃଢ଼ କରିବା ପାଇଁ କାଲିଅଗାଠାରୁ ବାଣପୁର ମଧ୍ୟରେ ୨୨ଟି ମୋଗଲ ଥାନା ସ୍ଥାପନ କରିଥିଲେ । ଏହାର କେତେ ଦିନ ପରେ ୧୧୪୭ ହିଜ୍ରୀ ସନ (୧୭୩୪ ମେ ମାସରୁ ୧୭୩୫ ମେ) ମଧ୍ୟରେ ତକିଖାଁଙ୍କ କଟକଠାରେ ମୃତ୍ୟୁ ଘଟିଥିଲା । କଟକ କଦମ୍-ଇ-ରସୁଲ ହତା ମଧ୍ୟରେ ତାଙ୍କୁ କବର ଦିଆଯାଇଥିବା ଏକ ଅଭିଲେଖରୁ ଜଣାଯାଏ ।

## ମୁର୍ଶିଦକୁଲିଖାଁଙ୍କ ଶାସନ :—

ମହମ୍ମଦ ତକିଖାଁଙ୍କ ମୃତ୍ୟୁ ପରେ ଢ଼ାକାର ଶାସକ ମୁର୍ଶିଦକୁଲିଖାଁ (ଦ୍ୱିତୀୟ) କଟକର ନାଏବ ନାଜିମ ହେଲେ । ସେ ନିଜ ସହିତ ଜଣେ ଅତ୍ୟନ୍ତ ବିଶ୍ୱସ୍ତ ଓ ସୁଦକ୍ଷ କର୍ମଚାରୀ ମୀର ହବିବଙ୍କୁ ମଧ୍ୟ ଢ଼ାକାରୁ କଟକ ଆଣିଥିଲେ । ସେ ପଦ ଧରୁ ହିଁ ହେବାମାତ୍ରେ ମୀର ହବିବଙ୍କ ସାହାଯ୍ୟରେ ଖୋର୍ଦ୍ଧା ଆକ୍ରମଣ କରି ଦଖଲ କରିନେଲେ । ରାମଚନ୍ଦ୍ର ଦେବ ଖୋର୍ଦ୍ଧା ଉଦ୍ଧାରରେ ବିଫଳମନୋରଥ ହୋଇ

ଆଠଗଡ଼ ରାଜ୍ୟର 'ରୁମାଗଡ଼' ନାମକ ସ୍ଥାନରେ ଆଶ୍ରୟ ଗ୍ରହଣ କରିଥିଲେ । ତହିଁରୁ ଜଗନ୍ନାଥ ମହାପ୍ରଭୁ ମାରଦା ନାମକ ସ୍ଥାନରେ ପ୍ରତିଷ୍ଠିତ ହୋଇଥିଲେ । ଆଠଗଡ଼ ରାଜ୍ୟର ମଥୁରା ଗ୍ରାମର ବ୍ରାହ୍ମଣୀମାନେ ଦୁଇମାସ କାଳ ଦିନରାତି ପରିଶ୍ରମ କରି ମହାପ୍ରଭୁଙ୍କ ପାଇଁ ଏକ ମନ୍ଦିର ନିର୍ମାଣ କରିଥିଲେ । ଜଗନ୍ନାଥଙ୍କ ଦୁର୍ଦ୍ଦଶାର ମୂକସାକ୍ଷୀ ସ୍ୱରୂପ ଉକ୍ତ ମନ୍ଦିର ଓ ବିଗ୍ରହତ୍ରୟଙ୍କ ଆସ୍ଥାନ ରୂପେ ବ୍ୟବହୃତ ହୋଇ-ଥିବା ଚକାପଥର ତିନୋଟି ଏ ପର୍ଯ୍ୟନ୍ତ ମାରଦା ଗ୍ରାମରେ ବିଦ୍ୟମାନ ।

## ଜଗନ୍ନାଥଙ୍କ ପୁନଃପ୍ରତି । —

ପୁରୀ ମନ୍ଦିରରୁ ବିଗ୍ରହତ୍ରୟଙ୍କ ଅପସାରଣ ଫଳରେ ଶ୍ରୀଗୁଣ୍ଡିଚା, ଦୋଳ, ଚନ୍ଦନ ପ୍ରଭୃତି ଠାକୁରଙ୍କ ସମସ୍ତ ଯାତ୍ରଯାତ୍ରା ବନ୍ଦ ହୋଇ ଯାଇଥିଲା । ଓଡ଼ିଶା ତଥା ଭାରତର ଅନ୍ୟାନ୍ୟ ପ୍ରାନ୍ତରୁ ଆସୁଥିବା ଲକ୍ଷ ଲକ୍ଷ ଯାତ୍ରୀ, ଶ୍ରୀ ଜଗନ୍ନାଥ ଦେବଙ୍କ ଦର୍ଶନର ଆଶା ନଥିବାରୁ ପୁରୀକୁ ଆସିଲେ ନାହିଁ । ଫଳରେ ବର୍ଷକୁ ଯାତ୍ରୀକର ରୂପେ ଆଦାୟ ହେଉଥିବା ନଅ ଲକ୍ଷ ଟଙ୍କା ମୋଗଲ ସରକାରଙ୍କୁ ହରାଇବାକୁ ପଡ଼ିଲା । ଏଥିରେ ସଙ୍କୋଚ ଅଚଳ ହୋଇଗଲା । ତେଣୁ ଉକ୍ତ ରାଜସ୍ୱ-ସଚିବ ମୀର ହବିବଙ୍କ ପରାମର୍ଶରେ ମୁର୍ଶିଦକୁଲିଖାଁ ବିଗ୍ରହ ତ୍ରୟଙ୍କୁ ପୁନର୍ବାର ଶ୍ରୀମନ୍ଦିରରେ ଅଧି-ଷ୍ଠିତ କରିବା ପାଇଁ ଆଦେଶ ଦେଲେ * । ମାଦଳାପାଞ୍ଜିରୁ ଜଣାଯାଏ ଯେ ରାମଚନ୍ଦ୍ର ଦେବଙ୍କ ୧୨ ଅଙ୍କ ଧନୁ ୨୯ ଦିନଠାରୁ ୧୩ ଅଙ୍କ ବୃଷ ୫ ଦିନ ପର୍ଯ୍ୟନ୍ତ ପ୍ରାୟ ୨ ବର୍ଷ ୪ ମାସ ପର୍ଯ୍ୟନ୍ତ ଜଗନ୍ନାଥ ମହାପ୍ରଭୁ ପୁରୀ କ୍ଷେତ୍ରରେ ବିରାଜମାନ ନ ଥିଲେ । ମୋଗଲ ଇତିହାସ ଦ୍ୱାରା ଏହା ପ୍ରାୟ ସମର୍ଥିତ ହୁଏ । ମୁର୍ଶିଦକୁଲିଖାଁ ଉଦାର ଶାସକ ଥିବାରୁ ତାଙ୍କ ଶାସନକାଳ ମଧ୍ୟରେ (୧୭୩୫-୧୭୪୧) ଜଗନ୍ନାଥଙ୍କ ଉପରେ ଆଉ ବିପତ୍ତି ପଡ଼ି ନ ଥିଲା ।

## ରାମଚନ୍ଦ୍ର ଦେବଙ୍କ ଇସଲାମ ଧର୍ମ ଗ୍ରହଣ —

ମାଦଳାପାଞ୍ଜିରୁ ଜଣାଯାଏ ଯେ ରାମଚନ୍ଦ୍ର ଦେବ କଟକରେ ଅବସ୍ଥାନ ସମୟରେ ମୁସଲମାନ ରାଜକୁମାରୀଙ୍କ ପ୍ରେମରେ ଲିପ୍ତ ହୋଇ ଜାତିଭ୍ରଷ୍ଟ ହୋଇ-ଥିଲେ । ଯଥା :—"ଏ ରାଜାଙ୍କ ଦିନରେ କଟକ ସୁବା ସୁଜ ଖାଁ ନସକର ଦେଇ ରାଜାଙ୍କ ସଙ୍ଗେ ଯୁଦ୍ଧ କରି ରାଜାଙ୍କୁ ଧରିଅଣି କଟକରେ ରଖିଲେ । ଏ ଉତ୍ତାରୁ କେତେକ ଦିନ ଗଲା ଉତ୍ତାରୁ ଏ ରାଜା ନବାବଙ୍କ ଝିଅଙ୍କୁ ହାରିଲେ । ଜାତିଭ୍ରଷ୍ଟ

---

4. History of Bengal, published by the Dacca University, Vol. II, p. 428.

ହୋଇଲେ । ପଠାଣଙ୍କ ସଙ୍ଗେ ଆତଯାତ ହେଲେ ।" ଅନ୍ୟ କୌଣସି ସୂତ୍ରରୁ ଏ ସମ୍ବନ୍ଧରେ ପ୍ରମାଣ ମିଳେ ନାହିଁ । ପାଞ୍ଜିବର୍ଣ୍ଣିତ ସୁଜାଖାଁଙ୍କୁ ସୁବାଦାର ସୁଜାଉଦ୍ଦିନ ଅହମଦଖାଁଙ୍କ ସହିତ ନିଃସନ୍ଦେହରେ ଚିହ୍ନିତ କରାଯାଇ ପାରେ । ସେ ଇସଲାମ ଧର୍ମ ପ୍ରଚାରର ବିଶେଷ ପକ୍ଷପାତୀ ଥିଲେ । ତେଣୁ ରାମଚନ୍ଦ୍ର ଦେବ କଟକରେ ବନ୍ଦୀ ଥିବା ସମୟରେ ତାଙ୍କୁ ମୁସଲମାନ ରାଜକନ୍ୟାଙ୍କ ସହିତ ଅବାଧ ମିଳନର ସୁଯୋଗ ଦେଇ ଇସଲାମ ଧର୍ମରେ ଦୀକ୍ଷିତ କରିବାପାଇଁ ଚେଷ୍ଟା ହୋଇଥିବା ସମ୍ପୂର୍ଣ୍ଣ ସମ୍ଭବପର । ଏହା ଫଳରେ ରକ୍ଷଣଶୀଳ ହିନ୍ଦୁମାନେ ତାଙ୍କୁ ନିଶ୍ଚୟ ଘୃଣା କରିଥିବେ । କିନ୍ତୁ ସେ ଇସଲାମ ଧର୍ମ ଗ୍ରହଣ କରିଥିବାର କୌଣସି ପ୍ରମାଣ ମିଳେନାହିଁ । ପରନ୍ତୁ ସେ ୧୭୩୩ରେ କଟକରୁ ମୁକ୍ତିଲାଭ କରି ହିନ୍ଦୁଜଗତର ପ୍ରଧାନ ଆରାଧ୍ୟ ଦେବତା ଜଗନ୍ନାଥଙ୍କ ସୁରକ୍ଷା ପାଇଁ ମୃତ୍ୟୁ ପର୍ଯ୍ୟନ୍ତ (୧୭୩୭) ବାରମ୍ବାର ଯୁଦ୍ଧ ଓ ବିଦ୍ରୋହ କରି ଯେପରି ଅଶେଷ ନିର୍ଯାତନା ବରଣ କରିଥିଲେ ତାହା ତାହାଙ୍କର ପ୍ରଗାଢ଼ ସ୍ୱଧର୍ମ ନିଷ୍ଠାର ପରିଚାୟକ । ସେ ଅଗତ୍ୟା ଯବନୀ-ପ୍ରେମ ପାଶରେ ଆବଦ୍ଧ ହୋଇଥିଲେ ମଧ୍ୟ ମୁସଲମାନୀୟ ନାମ ମଧ୍ୟ ଗ୍ରହଣ କରିନଥିଲେ । କାରଣ, କଟକରୁ ଆସିବା ପରେ ସେ ଆଠଗଡ଼ ରାଜାଙ୍କୁ ଦେଇଥିବା ପତ୍ର, ତାଙ୍କ ରାଜତ୍ୱର ଶେଷ-ପର୍ଯ୍ୟନ୍ତ ପ୍ରଦତ୍ତ ସମସ୍ତ ଦାନପତ୍ର ଓ ସମସାମୟିକ ଓଡ଼ିଆ ଓ ସଂସ୍କୃତ ଗ୍ରନ୍ଥମାନଙ୍କରେ ସେ ରାମଚନ୍ଦ୍ର ଦେବ ନାମରେହିଁ ପରିଚିତ ଥିଲେ । ସେ ଶ୍ରୀଜଗନ୍ନାଥଙ୍କ ଦର୍ଶନରୁ ବଞ୍ଚିତ ହୋଇ ସିଂହଦ୍ୱାରରେ ପ୍ରତିଷ୍ଠିତ ପତିତପାବନ ମୂର୍ତ୍ତି ଦର୍ଶନ ଦ୍ୱାରା ଶେଷଜୀବନ ଅତିବାହିତ କରିଥିବାର ଯେଉଁ କିମ୍ବଦନ୍ତୀ ପ୍ରଚଳିତ ତାହା ତାଙ୍କ ହିନ୍ଦୁତ୍ୱକୁ ସମର୍ଥନ କରେ ।

## ରାମଚନ୍ଦ୍ର ଦେବଙ୍କ ରାଜ୍ୟଚ୍ୟୁତି, ମୃତ୍ୟୁ—

ମୁଦ୍ରିତ ମାଦଳାପାଞ୍ଜି ଅନୁସାରେ ମୀର ହବିବ ଜଗନ୍ନାଥ ଦେବଙ୍କୁ ପୁରୀରେ ପୁନଃ ପ୍ରତିଷ୍ଠିତ କରିଥିଲେ ମଧ୍ୟ ପଟିଆ ରାଜା ପଦ୍ମନାଭ ଦେବଙ୍କୁ ରାମଚନ୍ଦ୍ରଙ୍କ ପରିବର୍ତ୍ତରେ ଖୁର୍ଦ୍ଧା ରାଜଗାଦିରେ ବସାଇଥିଲେ । ଏହା ସମ୍ପୂର୍ଣ୍ଣ ସତ୍ୟ ନୁହେଁ । କାରଣ ରାମଚନ୍ଦ୍ର ଦେବ ଆଠଗଡ଼ରୁ ଆସି ପୁଣି କେତେ ମାସ ଖୁର୍ଦ୍ଧା ସିଂହାସନରେ ବସିଥିବା ରାଜଗୁରୁ ପଦ୍ମଲକ୍ଷ୍ମୀ ମହାପାତ୍ରଙ୍କୁ ୨ଅଙ୍କରେ ଦିଆଯାଇଥିବା ଗୋଟିଏ ଦାନପତ୍ରରୁ ବିଶ୍ୱାସଯୋଗ୍ୟ ପ୍ରମାଣ ମିଳେ । ସେଥିମଧ୍ୟରୁ ପ୍ରଥମଟି ୧୨ଅଙ୍କ ବୃଷ ୨୭ଦିନ, ଦ୍ୱିତୀୟଟି କୁମ୍ଭ ୨୦ଦିନ ଓ ଅନ୍ୟ ଦୁଇଟି କୁମ୍ଭ ୨୧ଦିନ ପ୍ରଦତ୍ତ ହୋଇଥିଲା । ଦ୍ୱିତୀୟ ଦାନପତ୍ରଟି ୧୨ଅଙ୍କ କୁମ୍ଭ ୨୦ଦିନ ୧୧୪୨ ଅମଲି ସନ, ସବାଲ (ମୁସଲମାନ ମାସ) ୧୬ଦିନ ବା ୧୮-୨-୧୭୩୬ ତାରିଖରେ ପ୍ରଦତ୍ତ ହୋଇଥିଲା । ତେଣୁ ଏହି ତାରିଖ ପରେ ୧୭୩୭ ମଧ୍ୟଭାଗରେ ତାଙ୍କ ମୃତ୍ୟୁ ପୂର୍ବରୁ ସେ ପ୍ରାୟ ଏକବର୍ଷରୁ ଅଧିକ କାଳ ଗାଦିଚ୍ୟୁତ ହୋଇଥିବା ସ୍ଥିର

କରାଯାଇ ପାରେ । ପଦ୍ମନାଭ ଯେ କେତେକାଳ ଖୋର୍ଦ୍ଧାର ରାଜା ହୋଇଥିଲେ ତାହା ଏକ ପ୍ରକାଶିତ ତମ୍ବାପଟାରୁ ଜଣାଯାଏ (୫) । ମୋଗଲ ଶାସକମାନଙ୍କ ବିରୁଦ୍ଧରେ ବାରମ୍ବାର ବିଦ୍ରୋହ କରିବାରୁ ରାମଚନ୍ଦ୍ର ଦେବଙ୍କୁ ଶେଷଜୀବନରେ ସିଂହାସନ ହରାଇବାକୁ ପଡ଼ିଥିଲା । ଏଥିରେ ଆଦୌ ସନ୍ଦେହ ନାହିଁ । ଓଡ଼ିଶାରେ ମୋଗଲ ଶାସନ ପକ୍ଷରେ ପ୍ରଧାନ କଣ୍ଟକ ଓ ହିନ୍ଦୁ ଧର୍ମର ପ୍ରଧାନ ରକ୍ଷକ ଖୋର୍ଦ୍ଧା ରାଜବଂଶକୁ ନିର୍ମୂଳ କରିବା ପାଇଁ ଚତୁର ମନ୍ତ୍ରୀ ମୀର ହମିଦ ଏହି ପନ୍ଥା ଅବଲମ୍ବନ କରିଥିଲେ । ପରିଣାମରେ ରାଜ୍ୟଭ୍ରଷ୍ଟ ରାମଚନ୍ଦ୍ର ଦେବ ସ୍ୱୀୟ ସାମନ୍ତ ନରସିଂହପୁର ରାଜାଙ୍କ ନିକଟରେ ଆଶ୍ରୟ ନେଇଥିବା ସମୟରେ ପ୍ରାଣତ୍ୟାଗ କରିଥିଲେ ।

## ରାମଚନ୍ଦ୍ରଙ୍କ କୀର୍ତ୍ତିକଳାପ:—

ରାମଚନ୍ଦ୍ର ଦେବଙ୍କ ରାଜତ୍ୱର ପ୍ରଥମ ତିନିବର୍ଷ ସୁଖଶାନ୍ତିରେ କଟିଥିବାରୁ ଗୁଣ୍ଡିଚା ଘର ଜଗମୋହନ ନିର୍ମିତ ହୋଇପାରିଥିଲା । ଯଥା "ଏ ମହାରାଜାଙ୍କ ୪ର୍ଥ ଅଙ୍କ ଖୋଜାବକସି ବେଣୁ ଭ୍ରମରବର ରାୟେ ଗୁଣ୍ଡିଚା ଘର ଜଗମୋହନ ଗଡ଼ାଇଲେ । ଏଥି ଭୋଗ ମଣ୍ଡପ ଖମ୍ବ ଗୋ୪ଟା ତେଲଙ୍ଗା ମୁକୁନ୍ଦଦେବ ଅଣାଇ ଗୁଣ୍ଡିଚା ଘର ପାଖରେ ପକାଇଥିଲେ । ଏ ଗୁରୁଖମ୍ବ ବସାଇ ଜଗମୋହନ ତୋଳାଇଲେ ।" (୬) କିନ୍ତୁ ସମସାମୟିକ କବି ବାଣରଥି ଦାସଙ୍କ 'ବ୍ରଜବିହାର' ଗ୍ରନ୍ଥରୁ ଜଣାଯାଏ ଯେ ଗୋପୀନାଥ ଦେବଙ୍କ ତିନିଅଙ୍କ ମାର୍ଗଶୀର ମାସରେ, ପାତ୍ର ଭଗବାନ ଭ୍ରମରବର ଗୁଣ୍ଡିଚା ମୋହନ ନିର୍ମାଣ କରିଥିଲେ । ଯଥା:—

'ଗୋପୀନାଥ ଦେବ ତିନି ଅଙ୍କ ମାର୍ଗଶୀର
ପାତ୍ର ଭଗବାନ ଯେ ଭ୍ରମରବର,
ସଦାବର୍ତ୍ତୀ ସଦା ମନ୍ତ ହରି ଭକତ
ଭୋଗ ପହଣ୍ଡି ଗୁଣ୍ଡିଚା ମୋହନ କୀର୍ତ୍ତି
ଏହି ସମୟୁ ବୋଲି ହେଲା ସଂପୂର୍ଣ୍ଣି ।'

ଏହି ଦୁଇଟି ଉଦ୍ଧୃତାଂଶରୁ କେଉଁଟି ସତ୍ୟ ତାହା ଜାଣି ହେଉନାହିଁ । ବୋଧହୁଏ ଗୋପୀନାଥ ଦେବଙ୍କ ମନ୍ତ୍ରୀ ଓ ସେ ସମୟର ଜଣେ ବିଶିଷ୍ଟ ବ୍ୟକ୍ତି ଭଗବାନ ଭ୍ରମରବର, ତାଙ୍କ ୩ ଅଙ୍କ (୧୬୨୦-୨୧)ରେ ଏହାକୁ ଆରମ୍ଭ କରି ପୂର୍ଣ୍ଣ କରି ପାରି ନ ଥିଲେ, ଏବଂ ଏହା ରାମଚନ୍ଦ୍ର ଦେବଙ୍କ ୪ ଅଙ୍କ ୧୬୨୮-୨୯ରେ ବେଣୁ ଭ୍ରମରବରରାୟ ସମାପ୍ତ କରିଥିଲେ । ଏପରି ନିର୍ଦ୍ଧାରଣ ଦ୍ୱାରା ଉଭୟ ଉକ୍ତି ମଧ୍ୟରେ ଥିବା ଅସାମଞ୍ଜସ୍ୟ ଦୂରୀଭୂତ ହେବ ।

---

(୫) Orissa Historical Research Journal

(୬) ମାଦଳାପାଞ୍ଜି ପୃ—୬୪ ।

## ଖୁରୁଧା ରାଜ୍ୟର ପତନ:—

ରାମଚନ୍ଦ୍ର ଦେବଙ୍କ ଦଶବର୍ଷ ବ୍ୟାପୀ ରାଜତ୍ୱକାଳ ମଧ୍ୟରେ ମୋଗଲ ସେନା ଦ୍ୱାରା ବାରମ୍ବାର ଖୁରୁଧା ରାଜ୍ୟ ଆକ୍ରମଣ ଫଳରେ ଏହା ନଷ୍ଟ ଭ୍ରଷ୍ଟ ଓ ହତଶ୍ରୀ ହୋଇଗଲା । ରାଜାଙ୍କ ଏ ଚରମ ଦୁର୍ଗତି ସମୟରେ ହାଇଦରାବାଦର ନିଜାମ, ଖୁରୁଧା ରାଜବଂଶର ପ୍ରଭୁତ୍ୱ ସ୍ୱୀକାର କରୁଥିବା ଟିକଲି ରଘୁନାଥପୁର ଠାରୁ ଚିଲିକା ପର୍ଯ୍ୟନ୍ତ ଓଡ଼ିଶାର ଦକ୍ଷିଣାଂଶ, ସମ୍ପୂର୍ଣ୍ଣରୂପେ ଅଧିକାର କରିନେଲେ । ମହମ୍ମଦ ତକି ଖାଁ ଖୋଦ ଖୁରୁଧା ରାଜ୍ୟରେ ୨୨ଟି ମୋଗଲ ଥାନା ବସାଇ ଏଠା ରାଜବଂଶର କ୍ଷମତାକୁ ଆହୁରି ସଙ୍କୁଚିତ କରିଦେଲେ । କିନ୍ତୁ ବୀରକେଶରୀ ଦେବଙ୍କ ରାଜତ୍ୱ କାଳରେ ଏହି ସମସ୍ତ ଥାନା ଉଠାଇ ନିଆଗଲେ ମଧ୍ୟ ରାମଚନ୍ଦ୍ରଙ୍କ ସମୟରୁ ଖୁରୁଧା ରାଜ୍ୟର ଯେଉଁ ପତନ ଆରମ୍ଭ ହୋଇଥିଲା, ତାଙ୍କ ଉତ୍ତରାଧିକାରୀଙ୍କ ସମୟରେ ତାହା କ୍ଷିପ୍ରତର ହୋଇ ଏହାର ଅବସାନର ପଥ ସୁଗମ କରିଦେଲା । ରାମଚନ୍ଦ୍ର ଦେବ ଏହି ପତନର ଗତିରୋଧ କରିବାପାଇଁ ସଂପୂର୍ଣ୍ଣ ଅସମର୍ଥ ହୋଇଥିଲେ ମଧ୍ୟ ଦୁର୍ଦ୍ଦାନ୍ତ ଶାସକ ଓ ସେନାପତି ତକିଖାଁଙ୍କ ସହିତ ସ୍ୱଦେଶ ଓ ସ୍ୱଧର୍ମର ରକ୍ଷା ପାଇଁ ସେ ଯେପରି ବୀରତ୍ୱ ଓ ସାହାସର ସହିତ ବାରମ୍ବାର ଯୁଦ୍ଧ କରିଥିଲେ ତାହା ସେହି ଘୋର ଅନ୍ଧକାରଛନ୍ନ ଅମାନିଶାରେ ଆଲୋକରେଖା ସ୍ୱରୂପ କାର୍ଯ୍ୟ କରିଥିଲା ।

## ରାମଚନ୍ଦ୍ର ଦେବଙ୍କ ଦାନପତ୍ର ସମୂହ:—

୧ । ରାମଚନ୍ଦ୍ର ଦେବଙ୍କ ଅ ୪ଙ୍କ କୁମ୍ଭ ଦି୨୦ନ, ଚୈତ୍ରବଦ୍ଧ ୨ ଶୁକ୍ରବାର ଦିନ ପ୍ରେମଗୁରୁଙ୍କୁ କଣରଘୁନାଥପୁର ଗ୍ରାମରେ ଭୂମିଦାନ କରାଯାଇଥିଲା । ୧୭-୨-୧୭୨୮ ତାରିଖରେ ମାସ, ବାର, ଓ ତିଥି ପ୍ରଭୃତି ମିଳିଯାଉଛି । ପ୍ରକୃତରେ ୩ଅଙ୍କ ହେବ ।

୨ । ୫ ଅଙ୍କ ଭୂଳ ୧୭ ? କାର୍ତ୍ତିକ ବଦ୍ଧ ୩୦ ସୋମବାର ଦିନ ଆଠଗଡ଼ ରାଜ୍ୟାଧିପତି ଧନଞ୍ଜୟ ହରିଚନ୍ଦନ ଦେବ, ଶ୍ରୀନିଦାସ ରଥ ପାଣ୍ଡିତ ଓ ଅନ୍ୟମାନଙ୍କୁ ନେଇକି ଶ୍ରୀନିବାସପୁର ଗ୍ରାମ ଦାନ କରିଥିଲେ । ଗଣନା ଅନୁସାରେ ୨୧-୧୦-୧୭୨୮ ତାରିଖ ହେଉଛି କିନ୍ତୁ ଏହା ୪ ଅଙ୍କ ଭୂଳ ୧୯ ଦିନ ହେବ ।

୩ । ୭ଅଙ୍କ ? ସିଂହ ୩୦, ଭାଦ୍ର ଶୁକ୍ଳ ୭, ଶୁକ୍ରବାର ଦିନ ଧର୍ମା ପରମଗୁରୁଙ୍କୁ ବୀର ରଘୁନାଥପୁର ଗ୍ରାମ ଦିଆଯାଇଥିଲା । ୩୦-୮-୧୭୨୮ ତାରିଖରେ ମାସ, ବାର ତିଥି, ପ୍ରଭୃତି ମେଳକ ହେଉଥିବାରୁ ଏହା ୭ ଅଙ୍କ ନହୋଇ ୩ ଅଙ୍କ ହେବ ।

୪ । ୮ ଅଙ୍କ, ମୀନ ୧୭ ମଙ୍ଗଳବାର ଦିନ ଦୁମା ରାଜା ଭଗୀରଥି ସାମନ୍ତରାୟ ମହାପାତ୍ର କପିଳ ପାତ୍ରଙ୍କୁ ୧୨½ ଭରଣ ଭୂମି ଦାନ କରିଥିଲେ । ଗଣନା କଲେ ୧୪-୩-୧୭୩୨ ତାରିଖ ହେଉଛି ।

୫ । ୧୨ ଅଙ୍କ ବୃଷ ୨୫ ? ଜ୍ୟେଷ୍ଠ, ଶୁକ୍ଳ ୩ ବୁଧବାର ଦିନ ଆଠଗଡ଼ ରାଜ୍ୟାଧିପତି ରଘୁନାଥ ହରିଚନ୍ଦନ ଜଗଦ୍ଦେବ ବାସୁଦେବ ରଥ ରାଜଗୁରୁ ଓ ଅନ୍ୟ-ମାନଙ୍କୁ ସାମନ୍ତରପୁର ଗ୍ରାମ ଦାନ କରିଥିଲେ । ଗଣନାନୁସାରେ ୧୪-୫-୧୭୩୫ ତାରିଖ ହେଉଛି କିନ୍ତୁ ବୃଷ ୨୫ ପାଠ ଭୁଲ, ଏହା ୧୫ ହେବ ।

୬ । ୧୨ ଅଙ୍କ ମକର ୨୫ ଦିନ ବୀର ଶ୍ରୀ ରାମଚନ୍ଦ୍ର ଦେବ କୃପାସିନ୍ଧୁ ମହାରଥଙ୍କୁ ଭୂମି ଦାନ କରିଥିଲେ । ୨୨-୨-୧୭୩୬ ତାରିଖ ।

୭ । ୧୪ ଅଙ୍କ, କୁମ୍ଭ ୧୭, ଚୈତ୍ର ବହୁଳ ଶନିବାର ଦିନ ମହାଜନ ଭଗବାନ ତଆଡ଼ୀଙ୍କୁ ଧର୍ମଶରଣପୁର ଗ୍ରାମରେ କେତେକ ଭୂମି ଦାନ ମିଳିଥିଲା । ୧୨-୨ ୧୭୩୭ ତାରିଖରେ କୁମ୍ଭ ୧୭ ଫାଲ୍‌ଗୁନ କୃଷ୍ଣ ନବମୀ ଶନିବାର ପଡ଼ୁଛି । କିନ୍ତୁ ଲିପିକାର ପ୍ରମାଦ ବା ଅଜ୍ଞାତ ଯୋଗୁଁ ଚୈତ୍ର ଲେଖାଯାଇଛି । (୭) ଏହି କାଳପତ୍ର ଗୁଡ଼ିକ ବ୍ୟତୀତ ସମସାମୟିକ କବି ଦାଶରଥି ଦାସ ସ୍ୱକୃତ 'ବ୍ରଜବିହାର'ରେ ଯେଉଁ ସମାପ୍ତି କାଳ ଉଲ୍ଲେଖ କରିଛନ୍ତି ତାହା ତାଙ୍କ ଅଙ୍କ ଗଣନା ପାଇଁ ଏକ ପ୍ରକୃଷ୍ଟ ପ୍ରମାଣ ରୂପେ ଗ୍ରହଣୀୟ, ଯଥା:—

"ସ୍ୱରସପ୍ତ ଆଠଶତ ବତିଶ,
କଳିଯୁଗ ଗତ ଏତେ ବରଷ ।
ଶକ ଅଙ୍କ ଷୋଳ ଶତ ତେପନ
ରାମଚନ୍ଦ୍ର ଦେବ ମହାରାଜନ ।
ଆଠଅଙ୍କ କୁମାର ପୂର୍ଣ୍ଣିମାରେ
ବ୍ରଜବିହାର ଗ୍ରନ୍ଥ ସଂପୂର୍ଣ୍ଣରେ ॥

୧୭୩୧ ଖ୍ରୀଷ୍ଟାବ୍ଦ ଅକ୍ଟୋବର ୪ ତାରିଖ ଦିନ କୁମାର ପୂର୍ଣ୍ଣିମା ୪୮୩୨ କଳିଯୁଗାବ୍ଦ ଓ ୧୬୫୩ ଶକାବ୍ଦରେ ପଡ଼ିଥିଲା । ଉକ୍ତ ତାରିଖ ୮ ଅଙ୍କରେ ପଡ଼ିଥିବାରୁ ୨-୯ ୧୭୩୧ ତାରିଖ ସୁନିଆ ଦିନଠାରୁ ଉକ୍ତ ଅଙ୍କର ଗଣନା ହୋଇଥିବ । ଏହାକୁ ମୂଳଭିତ୍ତି କରି ରାମଚନ୍ଦ୍ର ଦେବଙ୍କ ଅଙ୍କ ଗଣନା ନିମ୍ନଲିଖିତ ମତେ କରାଗଲା ।

(7) Inscriptions of the Madras Presidency Vol I. by Rangacharya—Nos 278, 285, 109, 101, 288. 98, 131.

## ଗଜପତି ରାମଚନ୍ଦ୍ରଦେବ (ଦ୍ୱିତୀୟ)ଙ୍କ ରାଜତ୍ୱର ଅଙ୍କ ଗଣନା

| ସୁନିଆ ତାରିଖ | | ଅଙ୍କ |
|---|---|---|
| ୧୬-୮-୧୭୨୭ | ସୁନିଆ ଦିନଠାରୁ | ୩ |
| ୪-୯-୧୭୨୮ | „ | ୪ |
| ୨୪-୮-୧୭୨୯ | „ | ୫ |
| ୧୨-୯-୧୭୩୦ | „ | ୬ |
| ୨-୯-୧୭୩୧ | „ | ୮ |
| ୨୧-୮-୧୭୩୨ | „ | ୯ |
| ୯-୯-୧୭୩୩ | „ | ୧୦ |
| ୩୦-୮-୧୭୩୪ | „ | ୧୧ |
| ୧୯-୮-୧୭୩୫ | „ | ୧୨ |
| ୫-୯-୧୭୩୬ | „ | ୧୩ |
| ୨୬-୮-୧୭୩୭ | „ | ୧୪ |

୧୪ ଅଙ୍କ ଅଙ୍କରେ ୨୬ ୮-୧୭୩୭ ସୁନିଆଁ ପରେ ରାମଚନ୍ଦ୍ର ଦେବଙ୍କ ମୃତ୍ୟୁ ଘଟିଥିଲା ।

## ଆଠଗଡ଼ ରାଜାଙ୍କୁ ରାମଚନ୍ଦ୍ର ଦେବଙ୍କ ଶ୍ରୀହସ୍ତ ପତ୍ର

ଏ ପ୍ରମାଣ




( ଉର୍ଦ୍ଦୁ ଲିପିରେ ମୋହର )

### ପାଞ୍ଚଧାଡ଼ି ପାର୍ସୀଲିପି

ପ୍ରଥମଧାଡ଼ି—ଆଠଗଡ଼ ହରିଚନ୍ଦନ ଜଗଦେ (୨ୟ) ବଙ୍କୁ ଶ୍ରୀହସ୍ତ ପତ୍ର ଶ୍ରୀଶ୍ରୀଶ୍ରୀ ଜଗନ୍ନାଥ (୩ୟ) ଅ ମହାପ୍ରଭୁଙ୍କ ଅନୁଗ୍ରହରୁ ସେ (୪ର୍ଥ) ଭ ଦ ୨ନ ଗୁରୁବାରେ ବାଦସା (୫ମ) ଶ୍ରୀ ଠୀକାସୀସେପା ମୁଖଲେଶ (୬ଷ୍ଠ) ଲ ଙ୍କ ମାର୍ଫତେ ଘେନିବାକୁ ଅବଧାନଂ କଲୁଂ । ତହାକ ତୁମ୍ଭେ ସ୍ମମୁକୁ ୭ମ) ଆସିବ । ଆଜ ସୁସ୍ତ ବସସ୍ତ ପୀତାମ୍ବର ମଙ୍ଗରାଜ ମାର୍ଫତେ ଜଣିବାରୁ ଯାଣିବ । ୪୬ (୮ମ) ଙ୍କ ଭରସତ ବାଂଶମର । (ଶଙ୍ଖ ସଙ୍କେତ ଓ ଦସ୍ତଖତ ଚିହ୍ନ) ।

ଟୀପ୍ପଣୀ :—

ଏହି ପଟ୍ଟ ପ୍ରଥମେ ଟିକାଲି ରାଜା ସ୍ୱର୍ଗତଃ ଲକ୍ଷ୍ମୀନାରାୟଣ ହରିଚନ୍ଦନ ଜଗଦେବ ପ୍ରକାଶ କରିଥିଲେ । ତାଙ୍କ ପ୍ରବନ୍ଧରୁ ଜଣାଯାଏ ଯେ ଏହି ପଟ୍ଟ ଆଠ-ଗଡ଼ ରାଜା ଜଗନ୍ନାଥ ହରିଚନ୍ଦନ ଜଗଦେବଙ୍କ ନିକଟକୁ ଲେଖାଯାଇଥିଲା । ପାର୍ସୀ ଲେଖାରେ ୧୧୪୫ ହିଜରି ସନ ସଫର ମାସର ୧୮ ଦିନ ବୋଲି ଲେଖାଯାଇଛି । ଗଣନାରେ ଏହା ୩୦-୭-୧୭୩୨ ତାରିଖ ହେଉଛି । ଓଡ଼ିଆ ଲେଖାରେ ଥିଲା ଋଷଭ (ବୃଷ) ଦି ୧୨ ଓ ଦି ୩ ଯଥାକ୍ରମେ ୧୦-୫-୧୭୩୨ ଓ ୧୧-୫ ୧୭୩୨ ତାରିଖରେ ପଡ଼ିଥିଲା । ଉଭୟ ଲେଖା ମଧ୍ୟରେ ପ୍ରାୟ ୪ ମାସ ବ୍ୟବଧାନ ରହୁ-ଥିବାରୁ ତାଠାରେ ଭୁଲଥିବାର ସନ୍ଦେହ ହୁଏ । ଓଡ଼ିଶା ସୁବାଦାର ମୁର୍ଶିଦକୁଲିଖାଁଙ୍କ ଅଧୀନରେ ମୁଖାଲିବ ଅଲିଖାଁ ନାମକ ଜନୈକ ବିଶ୍ୱସ୍ତ କର୍ମଚାରୀ ଥିବାର ଜଣାଯାଏ * କିନ୍ତୁ ଏଠାକୁ ସେ କିପରି ଆସିଲେ ତାହା ଜଣାଯାଉ ନାହିଁ ।

## ରାମଚନ୍ଦ୍ର ଦେବ ପରମଲକ୍ଷ୍ମୀ ରାଜଗୁରୁଙ୍କୁ ଦେଇଥିବା ଦାନ ଗ୍ରୈପ

( ୧ )

"ବିଶ୍ୱନାଥପୁର ଶାସନ ମହନ୍ତିଅଙ୍କୁ ଚିଟାଉ । ମାହାରାଜନଙ୍କୁ କହିବୁ ପରମ-ଲକ୍ଷ୍ମୀ ରାଏଗୁରୁ ମହାପାତ୍ରଙ୍କୁ ଯେ ଏ ଶାସନରୁ ଦାମୋଦର ପୁରୋହିତ ମେଲିଆ ହେଲାକୁ ଏ ଭାଗୀ ଉତ୍ତରନ ବର୍ଷ ୬୪ କ କୋଠକଣ ନାନକଣ ଆଜ୍ଞା ଦେଲୁ । ଏ ଭାଗ ଜଳଖେତ୍ର ଭୂମୀ ଆସୀମାନ୍ତ କରି ଯାବଚନ୍ଦ୍ରାର୍କେ ଦାନ ଭୋଗେ ଆସୁ କରାଇ ହାକରି କରାଇ ଉପନ ପ୍ରସାଦ ଦେ ମାହାରାଜନ ବସ୍ତୁ ମଧ୍ୟ ଆସୁ କରାଇବୁ ୧ ଅଙ୍କ ସିଂହ ଦି ୨୨ନ" ।

ପଛ ପାଖେ ମୋହରର ମହମଦ ।
ଧାମନା ପାଖେ ମେହର ରାଜା ରାମଚନ୍ଦ୍ର ଦେବ । ସଙ୍କେତ ।

( ୨ )

" ଶ୍ରୀପୁରୁଷୋତ୍ତମପୁର ଶାସନ ମହାନ୍ତିଆକୁ ଚିଟାଉ । ମାହାରାଜନଙ୍କୁ କହିବୁ ଏ ଶାସନରେ ଜୀବନ ଦାସ ନୂଆଗଡ଼ ମେଲିଆ ହେଲାକୁ ଏହା ଭାଗ କୋଠ ହୋଇ ପରମଲକ୍ଷ୍ମୀ ମହାପାତ୍ରଙ୍କୁ ଦାନ କର ଆଜ୍ଞା ଦେଲୁ ଏ ଭାଗ × × (ଏଠାରେ × ଚିହ୍ନ × ଜମିର ପରିମାଣ ଦିଆଯାଇଛି ) ଗାଏ ପଦ ୧) ବା ୩ । ୬ । ୭ ଯାବଚନ୍ଦ୍ରାର୍କେ ଦାନ ଭୋଗେ ଆସୁ କରାଇ ଉପନ ପ୍ରସାଦ ଦେ

* Riyazus -S- Salatin, Vol. I, p. 325.

ହକଦାରର କରିବ ମହାଜନ ସତ୍ତ୍ୱ ମଧ୍ୟ ଆସ୍ଥ କରିଅଛୁ । ୧୨ ଅଙ୍କ ଧନୁ ୫ ୨୦ ଦିନ"
ସଙ୍କେତ ।

( ୩ )

ଶ୍ରୀ ନରସିଂହପୁର ଶାସନ ମଣ୍ଡୀଆକୁ ଟୀଠାଇ । ମହାଜନଙ୍କୁ ଲେଖୁ
ଏ ଶାସନରୁ ପରମଲକ୍ଷ୍ମୀ ମହାପାତ୍ରଙ୍କୁ ଯେ ହରିହର ରାଏଗୁରୁଙ୍କ ସର ଭଗ ସୁଧରୁ
ପଶ୍ଚିମ ଭାଗ ଦାନ କରି ଆଜ୍ଞା ଦେଲୁଁ । ଏ ଭାଗ ଏହାଙ୍କୁ ଜଳକ୍ଷେତ୍ର ଭୂମି ମଧ୍ୟ
ଆସିମାନ୍ତ କରି ଯାବଚ୍ଚନ୍ଦ୍ରାର୍କେ ଆସ୍ଥ କରିବ ହକର କରିଲ ଭୋଗ ପ୍ରସାଦ ଦେ
ମାହାଜନ ସତ୍ତ୍ୱ ମଧ୍ୟ ଆସ୍ଥ କରିଅଛୁ । ୧୨ ଅଙ୍କ ବଶ୍ଚ ଦି ୨୭ ଦିନର ।" ସଙ୍କେତ

ମୋହର ରାଜା ରାମଚନ୍ଦ୍ର ଦେବ ।

( ୪ )

" ଗୋପୀନାଥପୁର ଶାସନ ମଣ୍ଡୀଆକୁ ଚଟାଇ । ମାହାଜନଙ୍କୁ ଲେଖୁ ।
ଏ ଶାସନରୁ ଯେ ଦାନ କରି ପରମଲକ୍ଷ୍ମୀ ରାଜଗୁରୁ ମହାପାତ୍ରଙ୍କୁ ବାସୁଦେବ ଦାଜ-
ପୋଇ ସୁଧ ମହତ୍ତ୍ୱ ଭାଗ ଗୋ୧ଟା ତ୍ରୀଦ ବାସ୍ତୁ ଜଳକ୍ଷେତ୍ର ଭୂମି ମଧ୍ୟ ଦୁଇ ବା୨ଟୀ
ଏହାଙ୍କୁ ଦାନ କ୍ଷେତ୍ରେ ଜାବଚ ଚନ୍ଦ୍ରାର୍କେ ଆଏ କରିଲ ଭୋଗ ପ୍ରସାଦ ଦେ ହକର
ଭୋଗ ମାହାଜନ ସତ୍ତ୍ୱ ମଧ୍ୟ ଆସ୍ଥ କରିଅଛ ୧୨ ଅଙ୍କ କୁମ୍ଭ ଦି୨୦ଦ" । ସଙ୍କେତ

ସବାଲ ୧୧୪୨ ଅମ୍ଲି–ମୋହର ରାମଚନ୍ଦ୍ର ଦେବ

( ୫ )

" ଭାଣ୍ଡୀ ଜଗନ୍ନାଥପୁର ଶାସନ ମଣ୍ଡୀଆକୁ ଚଟାଇ । ମହାଜନଙ୍କୁ ଲେଖୁ ।
ଏ ଶାସ୍ନରେ ଯେ ପରମଲକ୍ଷ୍ମୀ ରାଜଗୁରୁ ମହାପାତ୍ରଙ୍କୁ ଉପାଧ୍ୟା କ୍ଷେତ୍ର ସୁଧ ଭାଗ
ଦାନ କରି ଆଜ୍ଞା ଦେଲୁ । ଏ ଭାଗ ଏହାଙ୍କୁ ତ୍ରୀଦ ବାସ୍ତୁ ଜଳକ୍ଷେତ୍ର × ×
ମଧ୍ୟ ବା ୨ । ୩୩ ଯାବଚ୍ଚନ୍ଦ୍ରାର୍କେ ଦାନ କ୍ଷେତ୍ରେ ଆସ୍ଥ କରିଲ ହକର କରିଲ ଭୋଗ
ପ୍ରସାଦ ଦେ ମହାଜନ ସତ୍ତ୍ୱ ମଧ୍ୟ ଆସ୍ଥ କରିଅଛୁ । ୧୨ ଅଙ୍କ କୁମ୍ଭ ଦି ୨୧ ଦିନ" ।
ସଙ୍କେତ ।

( ୬ )

" ଗୋକୁଳପୁର ଶାସନ ମଣ୍ଡୀଆକୁ ଟୀଠାଇ । ମାହାଜନଙ୍କୁ ଲେଖୁ ଏ
ଶାସ୍ନରେ ଯେ ପରମଲକ୍ଷ୍ମୀ ରାଜଗୁରୁ ମାହାପାତ୍ରଙ୍କୁ ନାମ ମହାପାତ୍ର ସୁଧ ଭାଗ
ଗୋ୧ଟା ତ୍ରୀଦ ବାସ୍ତୁ ଜଳକ୍ଷେତ୍ର ଭୂମି ମଧ୍ୟ ବା ୨ । ୪ ଦାନ କରି ଆଜ୍ଞା ଦେଲୁଁ ।
ଏ ଭାଗ ଏହାଙ୍କୁ ଯାବଚ୍ଚନ୍ଦ୍ରାର୍କେ ଦାନକ୍ଷେତ୍ରେ ଆସ୍ଥ କରିଲ ଭୋଗ ପ୍ରସାଦ ଦେ
ହକର କରିବ ମାହାଜନ ସତ୍ତ୍ୱ ମଧ୍ୟ ଆସ୍ଥ କରିଅଛୁ । ୧୨ ଅଙ୍କ କୁମ୍ଭ ଦି୨୧ଦିନ"
ସଙ୍କେତ ।

## ଟୀପ୍ପଣୀ :—

ରାଜଗୁରୁ ପରମଲକ୍ଷ୍ମୀ ମହାପାତ୍ର ଗଜପତି ପ୍ରତାପରୁଦ୍ରଙ୍କ ସଭାରତ୍ନ କାଶ୍ୟପ ଗୋତ୍ର ପ୍ରସିଦ୍ଧ ପଣ୍ଡିତ କବି ଡିଣ୍ଡିମଙ୍କ ପୁତ୍ର ପ୍ରଥମ ରାମଚନ୍ଦ୍ର ଦେବଙ୍କ ଗୁରୁ ଶ୍ରୀ ବର୍ଦ୍ଧନ ମହାପାତ୍ରଙ୍କ ବଂଶଧର ଥିଲେ । ତାଙ୍କ ପିତା ପରମାନନ୍ଦ ସାମନ୍ତରାୟ ମହାପାତ୍ର ବଳ୍ୟ-ସିଂହ ଦେବଙ୍କ ଠାରୁ ଗୋଚର୍ମ ଦାନ ଗ୍ରହଣ କରି ୨୫ ବାଟୀ ଭୂମି ପାଇଥିବାରୁ ରକ୍ଷଣଶୀଳ ପଣ୍ଡିତମାନେ ତାଙ୍କର ବିରୋଧୀ ହୋଇଗଲେ । ତାଙ୍କୁ ରାଜଗୁରୁ ପଦବୀ କଟିଯାଇ ସେ ସମୟରେ ପ୍ରସିଦ୍ଧି ଲାଭକରିଥିବା କୌଶିକ ସନ୍ତୋଷ, ନୀଳାମ୍ବର, ଗଦାଧର ପ୍ରଭୃତି ରାଜଗୁରୁ ପଦବୀରେ ପ୍ରତିଷ୍ଠିତ ହୋଇଥିଲେ ।

ପରମଲକ୍ଷ୍ମୀ ଧନୁର୍ବିଦ୍ୟା, ବ୍ୟୂହଶାସ୍ତ୍ର ଓ ଅଶ୍ୱାରୋହଣରେ ପାରଙ୍ଗମ ଥିଲେ । ସେ ଅସ୍ତ୍ର ଶସ୍ତ୍ର ସଜ୍ଜିତ ହୋଇ 'ପଞ୍ଚଭଦ୍ରା' ନାମକ ଅଶ୍ୱପୃଷ୍ଠରେ ଆରୋହଣ ପୂର୍ବକ ସମଗ୍ର ଭାରତ ପର୍ଯ୍ୟଟନ କରିଥିଲେ । ସଂସ୍କୃତ, ଆରବୀ ଓ ଫାର୍ସୀ ଭାଷାରେ ତାଙ୍କର ପ୍ରଗାଢ଼ ପାଣ୍ଡିତ୍ୟ ଥିଲା । ତକି ଖାଁଙ୍କ ଆକ୍ରମଣ ସମୟରେ ଭଗବାନ ପଟ୍ଟନାୟକଙ୍କ ପୁତ୍ର ବଳଭଦ୍ର ପଟ୍ଟନାୟକ, ବିଶ୍ୱନାଥପୁର ଶାସନର ଦାମୋଦର ପୁରୋହିତ ଓ ନୂଆଗଡ଼ର ଜୀବନ ଦାସ ମେଳ କରି ତକି ଖାଁଙ୍କୁ ସବୁ ଖବର ଜଣାଇ ଦେବାରୁ ରାମଚନ୍ଦ୍ର ଦେବ କଟକରେ ବନ୍ଦୀ ହୋଇଥିଲେ । ରାଜାଙ୍କ ଏହି ଘୋର ବିପତ୍ତି ସମୟରେ ପରମଲକ୍ଷ୍ମୀ ସଂସ୍କୃତ ଜଟ୍ଟୀ କାବ୍ୟର ଆରବୀ ଅନୁବାଦ ଶୁଣାଇ ତକି ଖାଁଙ୍କୁ ସନ୍ତୁଷ୍ଟ କରିଥିଲେ । ମୁର୍ଶିଦ କୁଲି ଖାଁ ତାଙ୍କ ଗୁଣରେ ମୁଗ୍ଧ ହୋଇ ତାଙ୍କ ଅନୁରୋଧରେ ରାମଚନ୍ଦ୍ର ଦେବଙ୍କୁ ମୁକ୍ତ ଦେଇଥିଲେ ।

ରାମଚନ୍ଦ୍ର ଏହି ମହାନ ଉପକାରର କୃତଜ୍ଞତା ସ୍ୱରୂପ ତାଙ୍କୁ ପୁନର୍ବାର ରାଜଗୁରୁ ପଦରେ ଅଧିଷ୍ଠିତ କରି ବହୁ ଭୂସମ୍ପତ୍ତି ପ୍ରଦାନ କରିଥିଲେ । ସେଗୁଡ଼ିକ ଉପରେ ଉତ୍କୃତ ଛଅଟି ଦାନପତ୍ର ଦ୍ୱାରା ପ୍ରମାଣିତ ହୁଏ । କିମ୍ବଦନ୍ତୀ ଅଛି ଯେ ରାମଚନ୍ଦ୍ର ଦେବ ତାଙ୍କୁ ତେର ହଜାରର ରାଜା କରାଇ ନିଜେ ତାଙ୍କର ଅଳଟ ଚାମର ସେବା କରିଥିଲେ । ସେ ମନ୍ତ୍ରପ୍ରୟୋଗ ଦ୍ୱାରା ତକି ଖାଁଙ୍କୁ ମାରିଥିବା ମଧ୍ୟ ଶୁଣାଯାଏ । ସେ ସେ ରାମଚନ୍ଦ୍ର ଦେବଙ୍କ ଯବନୀ କନ୍ୟା ସହିତ ପ୍ରଣୟକୁ ଶାସ୍ତ୍ର ପ୍ରମାଣ ଦ୍ୱାରା ସମର୍ଥନ କରିବାରୁ ରକ୍ଷଣଶୀଳ ପଣ୍ଡିତମାନେ ଭୀଷଣ ଉତ୍ତ୍ୟକ୍ତ ହୋଇପଡ଼ିଲେ ।

ରାମଚନ୍ଦ୍ର ଦେବ ରାଜ୍ୟଚ୍ୟୁତ ହୋଇ ନରସିଂହପୁର ରାଜ୍ୟର ରାଜା ଚନ୍ଦ୍ରଧର ମାନସିଂହ ହରିଚନ୍ଦନ ମହାପାତ୍ରଙ୍କ ଆଶ୍ରୟ ଗ୍ରହଣ କରିଥିଲେ । ସେ ଲକ୍ଷପଡ଼ା ଗ୍ରାମରେ ସେ ଏକବର୍ଷ କାଳ ରହି ଦୁଃଖ ଓ ନୈରାଶ୍ୟରେ ପ୍ରାଣତ୍ୟାଗ କରିଥିଲେ । ରାଜାଙ୍କ ମୃତ୍ୟୁ ପରେ ରାଜଗୁରୁଙ୍କ ସମସ୍ତ ସଂପତ୍ତି ମେଳିଆମାନେ

ଛଡ଼ାଇ ନେଇଥିଲେ । କିନ୍ତୁ ସେ ଖାଉକେଶରୀ ଦେବଙ୍କୁ ରାଜ୍ୟପ୍ରାପ୍ତିରେ ସାହାଯ୍ୟ ଦେଇ ସେଗୁଡ଼ିକ ପୁନର୍ବାର ଫେରି ପାଇଥିଲେ । କିନ୍ତୁ ତାଙ୍କ ଶତ୍ରୁମାନଙ୍କ ଚକ୍ରାନ୍ତ ଯୋଗୁଁ ଖାଉକେଶରୀ ଦେବଙ୍କ ବିରାଗଭାଜନ ହୋଇ ନରସିଂହପୁର ରାଜ୍ୟରେ ଆଶ୍ରୟ ନେଇଥିଲେ । ସେଠାରେ ତାଙ୍କର ବୁଦ୍ଧିମତୀ ପତ୍ନୀ ଲୀଳାବତୀଙ୍କର ମୃତ୍ୟୁ ଘଟିଥିଲା । ଏହାର ବର୍ଷକ ପରେ ସେ ଦେହତ୍ୟାଗ କରିଥିଲେ । ଅଦ୍ୟାପି ତାଙ୍କର ବଂଶଧରମାନେ ନରସିଂହପୁରରେ ଅଛନ୍ତି । *

ଉଦ୍ଧୃତ ଛଅଟି ଦାନ ଶ୍ଳେଷ ରାମଚନ୍ଦ୍ର ଦେବଙ୍କ ୧୨ ଅଙ୍କରେ ପ୍ରଦତ୍ତ ହୋଇଥିଲା । ସେଥି ମଧ୍ୟରୁ ଚତୁର୍ଥଟିର ସମୟ ଦିଆଯାଇଛି ୧୨ ଅଙ୍କ କୁମ୍ଭ ୨୦ ଦିନ ୧୧୪୨ ଅମିଲ ସନ ସକାଳ ୬ ।

୧୭୨-୧୭୩୫ରେ କୁମ୍ଭ ୨୦ ଦିନ ସକାଳ ୫ ପଡ଼ିଥିଲା । ଏହି ଦିନକର ପାର୍ଥକ୍ୟ ଧର୍ତ୍ତବ୍ୟ ନୁହେଁ ।



* ଉଦ୍ଧୃତ ଛଅଟି ଦାନ ଶ୍ଳେଷର ନକଲ ଓ ପଦ୍ମଲକ୍ଷ୍ମୀଙ୍କ ସମ୍ବନ୍ଧରେ ବିବରଣ ନରସିଂହପୁର ବାସୀ ଶ୍ରୀ ଚକ୍ରଧର ମହାପାତ୍ରଙ୍କ ଠାରୁ ପ୍ରାପ୍ତ ।

# ୮ମ ଅଧ୍ୟାୟ

# ଗଜପତି ବୀରକେଶରୀ ଦେବ

( ୧୭୩୭–୧୭୯୩ ଖ୍ରୀଷ୍ଟାବ୍ଦ )



## ବୀରକେଶରୀ ଦେବଙ୍କ ଘୁମୁସରରେ ଆଶ୍ରୟ

ରାମଚନ୍ଦ୍ର ଦେବଙ୍କୁ ସିଂହାସନରୁ ବିତାଡ଼ନ କରି ମୀର ହବିବ ପଠିଆ ରାଜା ପଦ୍ମଲଭ ଦେବଙ୍କୁ ୩-୫- ୧୭୩୭ ତାରିଖରୁ ଖୁରୁଧା ସିଂହାସନରେ ବସାଇଥିଲେ । ଏହି ସମୟରେ ସିଂହାସନର ନ୍ୟାଯ୍ୟ ଅଧିକାରୀ ବୀରକେଶରୀ ଦେବ ଘୁମୁସର ଚକାପାଦ୍ମମାଳ ଓ ଅନୁଗୁଳ ମାଳରେ ଆଶ୍ରୟ ନେଇଥିବା ତାଙ୍କର ଏକ ତମ୍ବାପଟାରୁ ଜଣାଯାଏ । ଘୁମୁସରରେ ଥିବା ସମୟରେ ସେଠାର ରାଜା ଘନ ଭଞ୍ଜ ଖୁରୁଧା ରାଜ୍ୟ ଅଧିକାର କରିବା ପାଇଁ ତାଙ୍କୁ ସୈନ୍ୟ ସାହାଯ୍ୟ ଦେଇଥିଲେ । ତେଣୁ ବୀରକେଶରୀ ଦେବ ଘନ ଭଞ୍ଜଙ୍କୁ 'କ୍ଷତ୍ରିୟବର' ଉପାଧିରେ ମଣ୍ଡିତ କରିଥିଲେ । ସେ ଓ ତାଙ୍କର ବଂଶଧର ଦିବାକର ଭଞ୍ଜ ଉକ୍ତ ଉପାଧି ଧାରଣ କରି ବିଶେଷ ଗର୍ବ ଓ ଗୌରବ ଅନୁଭବ କରିଥିବା ସେ ଦୁହିଁଙ୍କ ରଚନାବଳୀରୁ ଜଣାଯାଏ । (୧) ଏହି ଘଟଣାକୁ ସ୍ମରଣୀୟ

---

(୧) (କ) ଘନଭଞ୍ଜ କୃତ 'ତ୍ରୈଲୋକ୍ୟ ମୋହିନୀ' କାବ୍ୟରେ ଏହି ଉପାଧିର ଉଲ୍ଲେଖ ଦେଖାଯାଏ । 'କହେ **କ୍ଷତ୍ରିବର** ଭଞ୍ଜ ଏହୁ ଗୀତ ସିଦ୍ଧି । ବୋଲେ **କ୍ଷତ୍ରିବର** ଭଞ୍ଜ ନରେଶ୍ୱର ।'

ଗ୍ରନ୍ଥ ଶେଷରେ ଅଛି—

"**ଗୋପୀନାଥ** ତାଙ୍କ ସୂନୁ ତାହାଙ୍କ ସୁତ
**ଗୋବିନ୍ଦ** ଭଞ୍ଜ ବୋଲି ନାମ ବିଦିତ ।
ତାହାଙ୍କ ତନୟ **କ୍ଷତ୍ରିବର** ରାଜନ
ଭଣିଲେ ଏ ଗୀତ ଚିନ୍ତି ନନ୍ଦନନ୍ଦନ ।

(ନବଜୀବନ, ୩ୟ ବର୍ଷ, ୭ମ ସଂଖ୍ୟା, ପୃ ୪୯୮ [illegible])

କରିବା ପାଇଁ ଘନଭଞ୍ଜ କ୍ଷତ୍ରୀୟବରପୁର ନାମକ ଏକ ବ୍ରାହ୍ମଣ ଶାସନ ଦାନ କରିଥିଲେ । ସିଂହାସନଚ୍ୟୁତ ଓ ଦେଶାନ୍ତରିତ ହେଲେ ମଧ୍ୟ ଖୁରୁଧା ଗଜପତିଙ୍କୁ ଓଡ଼ିଶାର ଦେଶୀୟ ରାଜାମାନେ କିପରି ଅଚଳାଭକ୍ତି ଓ ସମ୍ମାନ ପ୍ରଦର୍ଶନ କରୁଥିଲେ, ତାଙ୍କ ପ୍ରଦତ୍ତ 'ପଦବୀ'ର ସଗୌରବ ବ୍ୟବହାର ଦ୍ୱାରା ତାହା ପ୍ରତିପାଦିତ ହୁଏ ।

## ବୀରକେଶରୀଙ୍କ ସିଂହାସନ ଅଧିକାର ଓ ପଦ୍ମନାଭ ଦେବଙ୍କ ବିତାଡ଼ନ

ଘୁମୁସର ରାଜାଙ୍କ ଠାରୁ ସୈନ୍ୟ ସାହାଯ୍ୟ ପାଇ ବୀରକେଶରୀ ଦେବ ନୟାଗଡ଼ ଖଣ୍ଡପଡ଼ା ପ୍ରଭୃତି ପାର ହୋଇ ଅନୁଗୁଳ ରାଜ୍ୟରେ ପ୍ରବେଶ କରିଥିଲେ । ସେଠାର ରାଜା ମଧ୍ୟ ତାଙ୍କୁ ସୈନ୍ୟ ସାହାଯ୍ୟ ଦେଇଥିଲେ । ଖୁରୁଧା ରାଜ୍ୟ ଆକ୍ରମଣ ପାଇଁ ସେ ପ୍ରସ୍ତୁତ ହେଉଥିବା ସମୟରେ ବଡ଼ମ୍ବା ସୀମା ବୈଦ୍ୟେଶ୍ୱର ଠାରେ ତାଙ୍କୁ ମୁର୍ଶିଦ-କୁଲି ଖାଁ ଠାରୁ 'ଟୀକା ଶିରୋପା' ମିଳିଥିଲା । ଏ ସଂପର୍କରେ ମାଦଳାପାଞ୍ଜିର ବିବରଣ ଉଲ୍ଲେଖଯୋଗ୍ୟ । ଯଥା :—

"ଅନୁଗୁଳ ସୀମା ରାଣୀ ଭୂଇଁରେ ଏ ବୀରକେଶରୀ ଦେବେ ମହାରାଜାଙ୍କ ୪ ଅଙ୍କ ବୃଷଭ ୧ ଦିନକେ ନବାବ **ମୁସସ୍ତ କୁଲ ଖାଁ** ଠାରୁ **ମୁଖରସ ଅଲି ଖାଁ** ଆସି ବଡ଼ମ୍ବା ସୀମା ବୈଦ୍ୟେଶ୍ୱର ଠାରେ ଟୀକା ଶିରୋପା ଦେଇ ଖୁରୁଧା ଶ୍ରୀ ନଗର ବିଜେ କରାଇଲେ । ପଟିଆ ପଦ୍ମନାଭ ଦେବେ ପଳାଇ ପଟିଆରେ ରହିଲେ । ଏ ପଦ୍ମନାଭ ଦେବ ଭୋଗ କଲେ ୩ ବର୍ଷ ।" (୨)

ବୀରକେଶରୀ ଦେବଙ୍କ ଗୃହଅଙ୍କ ୧୫-୭-୧୭୩୮ ନୂଆଁ ଦିନ ଠାରୁ ଗଣା ଯାଇଥିଲା । ସେ ଅଙ୍କ ବୃଷଭ ୧ ଦିନ ହେଉଛି ୩୦-୪-୧୭୩୯ ତାରିଖ । ଅତଏବ ପଟିଆ **ପଦ୍ମନାଭ ଦେବ ୩-୫-୧୭୩୬ ଠାରୁ ୩୦-୪-୧୭୩୯ ତାରିଖ ପର୍ଯ୍ୟନ୍ତ ଖୁରୁଧା ସିଂହାସନ ଅଧିକାର କରିଥିଲେ** । ପଟିଆ ରାଜା ମଧ୍ୟ

---

(୧) (ଖ) ଘନଭଞ୍ଜଙ୍କ ନାତି ବିକ୍ରମ ଭଞ୍ଜଙ୍କ 'କନକ-ଲତା' କାବ୍ୟର କେତେକ ଭଣିତାରେ ଉକ୍ତ ପଦବୀର ଉଲ୍ଲେଖ ଦେଖାଯାଏ ।

୧) **କ୍ଷତ୍ରିବର** ନରନାଥ ହେଲେ ହରଷ (ନବମ ଛାନ୍ଦ)

୨) ସେବି ଶ୍ରୀକୃଷ୍ଣ ପଦ-ତାରସ, **କ୍ଷତ୍ରିୟବର** ମାନସ ତୋଷ (ସପ୍ତଦଶ ଛାନ୍ଦ)

୩) **କ୍ଷତ୍ରିବର** ବିକ୍ରମ ଭଞ୍ଜ ନରପତି, ସନ୍ତତେ ନନ୍ଦ-ନନ୍ଦନ ଚରଣେ ରତି ।
(ତ୍ରୟୋବିଂଶ ଛାନ୍ଦ)

(୨) 'ମାଦଳାପାଞ୍ଜି' ପୃ ୭୮

୫ ଅଙ୍କ ପର୍ଯ୍ୟନ୍ତ ରାଜତ୍ୱ କରିଥିବା ତାଙ୍କ ଏକ ପ୍ରକାଶିତ ତମ୍ବାପଟାରୁ ଜଣାପଡ଼େ ।(୩) ଏହା ତାଙ୍କ ୫ ଅଙ୍କ ମୀନ ଦ୍ୱ ୨୦ନ ବା ତା ୯-୩-୧୭୩୯ ତାରିଖରେ ପ୍ରଦତ୍ତ ହୋଇଥିଲା ।

ପାଞ୍ଜି ବର୍ଣ୍ଣିତ 'ମୁସସ୍ତ କୁଲଖାଁ' ହେଉଛନ୍ତି ଓଡ଼ିଶାର ନାଏବ ନାଜମ ମୁର୍ଶିଦକୁଲିଖାଁ (୧୭୩୫-୧୭୪୧) ଏବଂ 'ମୁଖରସ ଅଲ୍ଲି ଖାଁ'ଙ୍କ ପ୍ରକୃତ ନାମ ମୁଖାଲସ୍ ଅଲି ଖାଁ । ସେ ସୁବାଦାରଙ୍କ ଜଣେ ବିଶ୍ୱସ୍ତ କର୍ମଚାରୀ ଥିଲେ । ସାମନ୍ତ ରାଜାମାନଙ୍କଠାରୁ ସୈନ୍ୟ ସାହାଯ୍ୟ ପାଇ ବୀରକେଶରୀ ଦେବ ଖୁର୍ଦ୍ଧା ଆକ୍ରମଣ ପାଇଁ ଉଦ୍ୟମ କରୁଥିବା ସମୟରେ ବୁଦ୍ଧିମାନ ଓ ଉଦାର ଶାସକ ମୁର୍ଶିଦକୁଲିଖାଁ ଆକ୍ରମଣ ଜନିତ ଅଯଥା ଅଶାନ୍ତ ଅରାଜକତା ଓ ବିଶେଷତଃ ରାଜସ୍ୱ କ୍ଷତି ଏଡ଼ିଦେବା ପାଇଁ ଖୁର୍ଦ୍ଧା ସିଂହାସନର ନ୍ୟାଯ୍ୟ ଅଧିକାରୀ ବୀରକେଶରୀ ଦେବଙ୍କୁ ବଡ଼ମ୍ବା ସୀମା ବୈଦେଶ୍ୱରଠାରେ ଟୀକାଶିରୋପା ଦିଆଇଥିଲେ । ଖୁର୍ଦ୍ଧା ଗାଦିରେ ବସି ବୀରକେଶରୀ ଦେବ ତୃତୀବର୍ଷର ପାର୍ଦ୍ଦୀ ହାସିଲ (କର) ବାବଦକୁ ଅଠରଲକ୍ଷ ଟଙ୍କା ମୁର୍ଶିଦ କୁଲି ଖାଁଙ୍କ ନିକଟକୁ ପଠାଇଥିଲେ । ମୁର୍ଶିଦ କୁଲି ଖାଁ ଜଗନ୍ନାଥଙ୍କୁ ପୁରୀରେ ପୁନଃପ୍ରତିଷ୍ଠା କରି ବିଶେଷ ଲୋକପ୍ରିୟତା ଅର୍ଜନ କରିଥିଲେ । ଏହାଙ୍କ ଶାସନ କାଳରୁ ଜଗନ୍ନାଥଙ୍କ ଦୁର୍ଦ୍ଦଶାର ଅବସାନ ଘଟିଲା ।

## ସରଫରାଜ ଖାଁ — (୧୭୩୯–୧୭୪୦)

ସୁଜାଉଦ୍ଦିନ ମହମ୍ମଦ ଖାଁଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ସରଫରାଜ ଖାଁ ବଙ୍ଗ, ବିହାର ଓ ଓଡ଼ିଶାର ନାଜିମ ହେଲେ (୧୩-୩-୧୭୩୯) କିନ୍ତୁ ସେ ଜଣେ ଦୁର୍ବଳ ଶାସକ ଥିଲେ । ତାଙ୍କ ଦୁର୍ବଳତାର ସୁଯୋଗ ନେଇ ପାଟଣାରେ ନାଏବ ନାଜିମ ରୂପେ ପୂର୍ବରୁ କାର୍ଯ୍ୟ କରୁଥିବା ଆଲିବର୍ଦ୍ଦି ଖାଁ କେତେକ ପଦସ୍ଥ ହିନ୍ଦୁ ଓ ମୁସଲମାନ କର୍ମଚାରୀଙ୍କ ସାହାଯ୍ୟରେ ତାଙ୍କ ବିରୁଦ୍ଧରେ ବିଦ୍ରୋହ କରିଥିଲେ । ଭାଗୀରଥି ନଦୀ ତୀରବର୍ତ୍ତୀ ଗିରିଆ ନାମକ ସ୍ଥାନରେ ସରଫରାଜ ଖାଁ ଓ ଆଲିବର୍ଦ୍ଦି ଖାଁଙ୍କ ମଧ୍ୟରେ ଭୀଷଣ ଯୁଦ୍ଧ ହୋଇଥିଲା । ଏଥିରେ ସରଫରାଜ ପରାସ୍ତ ଓ ନିହତ ହେଲେ (୧୦-୪ ୧୭୪୦) ବିଜୟୀ ଆଲିବର୍ଦ୍ଦି ଖାଁ ଏପ୍ରିଲ ମାସ ଶେଷ ଆଡ଼କୁ ବଙ୍ଗ ବିହାର ଓ ଓଡ଼ିଶାର ନାଜିମ ପଦରେ ଅଧିଷ୍ଠିତ ହେଲେ ।

## ମୁର୍ଶିଦ କୁଲି ଖାଁ ଓ ଆଲିବର୍ଦ୍ଦି ଖାଁଙ୍କ ମଧ୍ୟରେ ସଂଘର୍ଷ (୧୭୪୧)

ସରଫରାଜ ଖାଁ ଓଡ଼ିଶାର ନାଏବ ନାଜିମ ମୁର୍ଶିଦ କୁଲିଖାଁଙ୍କ ଶ୍ୟାଳକ ଥିଲେ । ତାଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର, ବିରୋଧ ଓ ଶେଷକୁ ତାଙ୍କୁ ହତ୍ୟାକରି ଆଲିବର୍ଦ୍ଦି ଖାଁ

(3) Orissa Historical Research Journal, Vol. III No 1. P 42.

ବଙ୍ଗର ନାଜମ ବା ସୁବାଦାର ହୋଇଥିବାରୁ ମୁର୍ଶିଦ କୁଲିଖାଁ ବିଶେଷ ଉତ୍ୟକ୍ତ ହୋଇ-ଥିଲେ ଏବଂ ତାଙ୍କ ଆଧିପତ୍ୟକୁ ସ୍ୱୀକାର କରନଥିଲେ । ତନ୍ତୁଁ ଆଲିବର୍ଦ୍ଦି ଖାଁ । ଓଡ଼ିଶା ବିରୁଦ୍ଧରେ ଅଭିଯାନ ଚଳାଇଲେ । ଏହା ପୂର୍ବରୁ ସେ ମୁଖଲିଶ ଖାଁ । ପ୍ରମୁଖ ମୁର୍ଶିଦ କୁଲିଖାଁଙ୍କ କେତେକ ବିଶ୍ୱସ୍ତ କର୍ମଚାରୀଙ୍କୁ ହସ୍ତଗତ କରନେଇଥିଲେ । ମୁର୍ଶିଦ କୁଲି ଓ ଆଲିବର୍ଦ୍ଦିଙ୍କ ମଧ୍ୟରେ ମୟୂରଭଞ୍ଜ ସୀମାରେ ଥିବା ତାଳଡ଼ହ ଓ ସୋଣନଦୀ ମୁହାଣ ମଧ୍ୟରେ ଥିବା ବୁଢ଼ାବଳଙ୍ଗ ନିକଟବର୍ତ୍ତୀ ଫଲୱାରୀ ଘାଟରେ ଭୀଷଣ ଯୁଦ୍ଧ ହେଲା । ନିଜର କେତେକ ସେନାପତିଙ୍କ ବିଶ୍ୱାସଘାତକତା ଯୋଗୁଁ ମୁର୍ଶିଦ କୁଲିଖାଁ । ପରାସ୍ତ ହୋଇ ବାଲେଶ୍ୱର ବନ୍ଦରରୁ ଜାହାଜ ଚଢ଼ି ମୁସଲିପଟ୍ଟମ ପଳାଇଗଲେ ।

## ବୀରକେଶରୀ ଦେବଙ୍କ ସାହାଯ୍ୟ

ତାଙ୍କର ଏହି ଘୋର ଦୁର୍ଦ୍ଦିନରେ ବୀରକେଶରୀ ଦେବଙ୍କ ସେନାପତି ମୁରାଦ ଖାଁ । ମୁର୍ଶିଦ କୁଲିଖାଁଙ୍କ ରାଣୀ ଦୁରଦନ ବେଗମ, ତାଙ୍କର ଝିଅ ୟାହା ଖାନ୍ ପ୍ରଭୃତିଙ୍କୁ ବାରବାଟୀ ଦୁର୍ଗରୁ ନେଇ ନିରାପଦରେ ଗଞ୍ଜାମ ଜିଲ୍ଲା ଇଚ୍ଛାପୁରରେ ପହଞ୍ଚାଇ ଦେଇଥିଲେ । ସେଠାରୁ ସେମାନେ ମୁସଲିପଟ୍ଟମକୁ ମୁର୍ଶିଦ କୁଲିଖାଁଙ୍କ ନିକଟକୁ ଯାଇ-ଥିଲେ । ଏ ସମ୍ପର୍କରେ ମୁସଲମାନ ଇତିହାସରୁ ନିମ୍ନୋକ୍ତ ବିବରଣୀ ମିଳେ ।

**"When the news of this affair and of Murshid Quli Khān's retreat to the Dakhīn reached Kataka (Cuttack) Mūrad Khān, the generalissimo of the Rājah of Pursūtam, who had been detained for guarding Yahyā Khān and the Begam in the fort of Barābbati, planned to send instantly the Begam and Yahyā Khān together with all their chattles and treasures to the Dakhin by way of Sikākul." (4)**

ଏଠାରେ ଖୁର୍ଦ୍ଧା ବା ପୁରୀ ରାଜାଙ୍କ ନାମ ଦିଆ ନ ଯାଇଥିଲେ ମଧ୍ୟ ୧୭୨୧ରେ ରାଜତ୍ୱ କରୁଥିବାରୁ ବୀରକେଶରୀ ଦେବଙ୍କ ସହିତ ତାଙ୍କୁ ନିଃସନ୍ଦେହରେ ଚିହ୍ନିତ କରାଯାଇପାରେ । ଏ ଘଟଣାର ଚାରିବର୍ଷ ପୂର୍ବରୁ ରାମଚନ୍ଦ୍ର ଦେବଙ୍କ ମୃତ୍ୟୁ ଘଟିଥିଲେ ମଧ୍ୟ ସ୍ୱର୍ଗତ ଐତିହାସିକ ରାଖାଲ ଦାସ ବାନାର୍ଜୀ ତାଙ୍କୁ ରାମଚନ୍ଦ୍ର ଦେବଙ୍କ ସହିତ ଚିହ୍ନିତ କରି ଏକ ଭ୍ରାନ୍ତମତ ସୃଷ୍ଟି କରିଛନ୍ତି । (୫)

---

(4) Riyazu-S- Salatin Vol, I, P. 331

ଏହାର ପାଦଟୀକାରେ ହାଫିଜ କାଦର, ଖୋରଧା ରଥିପୁର ରାଜାବୋଲି ଲେଖାଯାଇଛି ।

(5) Ramachandra Deva II of Khurdah, who ×× assumed the name of Hāfiz Qūdar" etc

History of Orissa by R. D. Banerjee, Vol. II, p 80.

## ମୁର୍ଶିଦ କୁଲିଖାଁ ଓ ବୀରକେଶରୀ ଦେବଙ୍କ ମଧ୍ୟରେ ଭେଟ

ମାଦଳା ପାଞ୍ଜିରୁ ଏ ଘଟଣାର ନିମ୍ନୋକ୍ତ ବିବରଣ ମିଳେ । "ଏ ମହାରାଜାଂକ ୮ଅଙ୍କେ ମୁକୁସୁଦାବାଦ (ମୁର୍ଶିଦାବାଦ) ନବାବ ଆଲିବର୍ଦ୍ଦି ଖାଁ । ଅଇଲା । ସାଙ୍ଗେ ୫୦୦ ହାଥୀ ଥିଲେ । ୪୦୦୦୦ ଘୋଡ଼ା, ଏକଲକ୍ଷ ଲୋକ ଏରୂପେ ଆସି ରଥିପୁର ରହିଲେ । ଏ ନବାବଙ୍କୁ ଦିଆନ ପଶ୍ଚିମ ଦ୍ଵାର ପରୀକ୍ଷା ବୃନ୍ଦାବନ ପୁରୀ କୁଅଂର ଗୁରୁ ଭେଟ ହୋଇଲେ । ନବାବ କହିଲେ ରଜାଙ୍କୁ ଭେଟ କରାଅ । ଏମନ୍ତ ଶୁଣି ବୃନ୍ଦାବନ କୁଅଂର ଗୁରୁ ଶ୍ରୀ ଠାକୁରଙ୍କୁ ବଜେ କରାଇ ରଥିପୁର ନବାବଙ୍କୁ ଭେଟ କରାଇଲେ । ନବାବ ଶ୍ରୀଠାକୁରଙ୍କୁ ହାଥୀ ଶିରୋପା ଦେଇ ମୁକୁସୁଦାବାଦ ଉଠିଗଲେ ।" (୬)

ବୀରକେଶରୀ ଦେବଙ୍କ ଆଠଅଙ୍କ ୧୧-୯-୧୭୪୧ତାରିଖ ସୁନିଆ ଦିନଠାରୁ ଚଳିଥିଲା । ମୋଗଲ ଇତିହାସରୁ ଜଣାଯାଏ ଯେ ଫୁଲୱାରି ଯୁଦ୍ଧରେ ଜୟଲାଭ କଲାପରେ ଆଲିବର୍ଦ୍ଦି ଖାଁ । ନିଜେ କଟକ ଆସି ବାରବାଟୀ ଦୁର୍ଗରେ ସଞ୍ଚିତ ମୁର୍ଶିଦ କୁଲିଖାଁ ।ଙ୍କ ଧନରତ୍ନ ଅଧିକାର କରିଥିଲେ । ସେ ଓଡ଼ିଶା ଶାସନର ସୁବ୍ୟବସ୍ଥା କରିବାପାଇଁ କଟକରେ ଏକମାସକାଳ ରହିଥିଲେ । "And in course of one month, having finished the organisation and settlement of the Sūbah of Orissa, he entrusted the charge of the province to Said Ahmad Khān, his nephew, × × × together with a contingent of three thousand cavalry and four thousand infantry at Katak (Cuttack) Ali vardi Khān then returned triumphant and victorious, to Bengal" (7)

କଟକରେ ଏକ ମାସକାଳ ଅବସ୍ଥାନ ସମୟରେ ଆଲିବର୍ଦ୍ଦି ଖାଁ । ରଥିପୁର ଯାଇଥିବା ସମ୍ଭବପର ନୁହେଁ । କାରଣ ଆଲିବର୍ଦ୍ଦି ଫେରିଗଲା ପରେ ମୁର୍ଶିଦକୁଲି ଖାଁଙ୍କ ଅନୁଗତ କର୍ମଚାରୀମାନେ ପୁନର୍ବାର ବିଦ୍ରୋହ କରି ତାଙ୍କ ଜାମାତା ବାକର ଖାଁ (Baqir Khan)ଙ୍କୁ କଟକର ନାଏବ ନାଜିମ କରି ମେଦିନୀପୁର ଓ ହିଜଳି ପର୍ଯ୍ୟନ୍ତ ଜୟ କରିଗଲେ । (୮)

ଏହି ବିଦ୍ରୋହର ସମ୍ବାଦ ପାଇ ଆଲିବର୍ଦ୍ଦି ଖାଁ । ପୁନର୍ବାର ଅଭିଯାନ ଚଳାଇ କଟକ ଆକ୍ରମଣ କରିଥିଲେ । ତାଙ୍କ ସହିତ ଯୁଦ୍ଧ ସମୟରେ ପୁରୀ ରଜାଙ୍କ ପ୍ରଧାନ

---

(୬) ମାଦଳାପାଞ୍ଜି ପୃ ୭୯ ।

(୭) Riyaz-us- Salatin Vol. I, P. 332

(୮) „ „ P. 333

ସେନାପତି ମୁରାଦ ଖାଁ ବକାର ଖାଁଙ୍କୁ ସାହାଯ୍ୟ କରିଥିଲେ । **(Murad, Khan the generalissimo of the Rajah of Puri, who with a large contingent of troops supported Mirza Baqir)** କିନ୍ତୁ ଏ ଯୁଦ୍ଧରେ ଜୟଲାଭ କରି ଆଲିବର୍ଦ୍ଦି ବିଜୟୋତ୍ପୁଲ୍ଲ ଚିତ୍ତରେ କଟକ ଅଧିକାର କରିଥିଲେ ଏବଂ ବାକର ଖାଁଙ୍କ ସମର୍ଥକମାନଙ୍କୁ ଦମନ କରିଥିଲେ । (୯) ଏହି ବିଜୟ ପରେ ଆଲିବର୍ଦ୍ଦି ଓ ବୀରକେଶରୀ ଦେବଙ୍କ ମଧ୍ୟରେ ରଥିପୁରଠାରେ ଭେଟ ହୋଇଥିବା ସମ୍ଭବପର ।

## ମରହଟ୍ଟାମାନଙ୍କ ଓଡ଼ିଶା ଆକ୍ରମଣ ଓ ଅଧିକାର

ମୁର୍ଶିଦ କୁଲିଖାଁଙ୍କ ବିତାଡ଼ନର ପ୍ରତିଶୋଧ ନେବାପାଇଁ ତାଙ୍କର ବିଶ୍ୱସ୍ତ ଦେଓୟାନ୍ ମୀର ହବିବ ନାଗପୁରର ମରହଟ୍ଟା ରାଜା ରଘୁଜୀ ଭୋନ୍‌ସଲେ (ପ୍ରଥମ)ଙ୍କ ଶରଣାପନ୍ନ ହେଲେ । ରଘୁଜୀ ମୀରହବିବଙ୍କ ସହିତ ସେନାପତି ଭାସ୍କର ରାମ ବା ଭାସ୍କର ପଣ୍ଡିତଙ୍କୁ ପଠାଇଲେ । ସେ ଦୁହେଁ ବହୁ ସୈନ୍ୟସହ ସମ୍ବଲପୁର-ମୟୂରଭଞ୍ଜ ପଥରେ ଅଭିଯାନ ଚଳାଇ ଆଲିବର୍ଦ୍ଦି ଖାଁଙ୍କ ରାଜଧାନୀମୁର୍ଶିଦାବାଦ ଆକ୍ରମଣ ଓ ଲୁଣ୍ଠନ କରିଥିଲେ । ଏହାପରେ ମରହଟ୍ଟା ସେନା ସମଗ୍ର ପଶ୍ଚିମବଙ୍ଗ, ବାଲେଶ୍ୱର ବନ୍ଦର ଲୁଣ୍ଠନ କରି କଟକ ପର୍ଯ୍ୟନ୍ତ ଅଧିକାର କରିଗଲେ । (୧୭୪୧-୧୭୪୨) । ୧୭୪୨ର ଶେଷ ବେଳକୁ ଆଲିବର୍ଦ୍ଦି ଭାସ୍କର ପଣ୍ଡିତଙ୍କୁ କାଟୱାଠାରେ ପରାସ୍ତ କରି ୧୭୪୩ରେ କ୍ଷିପ୍ରଗତିରେ ଓଡ଼ିଶା ଆକ୍ରମଣ କରି ଚିଲିକା ପର୍ଯ୍ୟନ୍ତ ଅଗ୍ରସର ହୋଇଥିଲେ । ଇତି-ମଧ୍ୟରେ ରଘୁଜୀ ଭୋନ୍‌ସଲେ ତାଙ୍କ ପରମଶତ୍ରୁ ବାଲାଜୀ ବାଜୀରାଓଙ୍କ ଦ୍ୱାରା ପରାସ୍ତ ହେବାରୁ ତାଙ୍କ ସେନାପତି **ଭାସ୍କର ପଣ୍ଡିତ** ଓଡ଼ିଶା ଛାଡ଼ି ଚାଲିଗଲେ ।

ତତ୍ପର ବର୍ଷ (୧୭୪୪) ରଘୁଜୀଙ୍କ ପୁତ୍ର ଜାନୁଜୀ, ଭାସ୍କର ପଣ୍ଡିତ ଓ ମୀର ହବିବ ପୁନର୍ବାର ଓଡ଼ିଶା ଆକ୍ରମଣ କଲେ । ଆଲିବର୍ଦ୍ଦି ସନ୍ଧି କରିବାର ଛଳନା କରି **ଭସ୍କର ପଣ୍ଡିତ ଓ ଅନ୍ୟ କେତେକ** ମରହଟ୍ଟା ସେନାପତିଙ୍କୁ ହତ୍ୟା କରିଥିଲେ । ଏହି ହତ୍ୟାକାଣ୍ଡର ପ୍ରତିଶୋଧ ନେବା ନିମିତ୍ତ ଜାନୁଜୀ ୧୭୪୮ରେ ପୁନର୍ବାର ଓଡ଼ିଶା ଆକ୍ରମଣ କଲେ । ଏହାର କିଛୁଦିନ ପରେ ନିଜେ ରଘୁଜୀ ଭୋନ୍‌ସଲେ ସୈନ୍ୟଚାଳନା କରି ବାରବାଟୀ ଦୁର୍ଗ ଅଧିକାର କଲେ । ସେ ଓଡ଼ିଶା, ମେଦିନୀପୁର, ହିଜଲି ଓ ବର୍ଦ୍ଧମାନ ଅଧିକାର କରି ମୁର୍ଶିଦାବାଦ ଆକ୍ରମଣ ଓ ଲୁଣ୍ଠନ କରିଥିଲେ । ଆଲିବର୍ଦ୍ଦି ଜାନୁଜୀଙ୍କୁ ପରାସ୍ତ କରି ମୁର୍ଶିଦାବାଦ ଉଦ୍ଧାର କରିପାରିଥିଲେ ମଧ୍ୟ ଓଡ଼ିଶା ମରହଟ୍ଟାମାନଙ୍କ ଦଖଲରେ ରହିଗଲା । ଇତିମଧ୍ୟରେ ଜାନୁଜୀ ଓ ମୀରହବିବ ୧୭୪୯ରେ ପାଟଣା ଆକ୍ର-

---

୯) **Riyaz-us-Salatin P, 336.**

Digitized by srujanika@gmail.com

ମଣି କରି ପରାସ୍ତ ହୋଇଥିଲେ । ଏଥିରେ ବିଚଳିତ ହୋଇ ରଘୁଜୀ ତାଙ୍କ କନିଷ୍ଠ ପୁତ୍ର ବିମ୍ବାଜୀଙ୍କୁ ମୀରହବିବଙ୍କୁ ସାହାଯ୍ୟପାଇଁ ପଠାଇଲେ । କିନ୍ତୁ ଆଲିବର୍ଦ୍ଦି ମୀରହବିବଙ୍କୁ ପରାସ୍ତ କରି କଟକ ପର୍ଯ୍ୟନ୍ତ ଅଗ୍ରସର ହୋଇ ବାରବାଟୀ ଦୁର୍ଗ ଉଦ୍ଧାର କରିଥିଲେ ।

ଆଲିବର୍ଦ୍ଦି ଫେରିଯିବା ପରେ ମୀରହବିବ୍ ଗଡ଼ଜାତଆଡ଼ୁ ଆକ୍ରମଣ ଚଳାଇ ପୁନର୍ବାର କଟକ ଅଧିକାର କରି ମେଦିନୀପୁର ପର୍ଯ୍ୟନ୍ତ ମାଡ଼ିଗଲେ । ବାର୍ଦ୍ଧକ୍ୟଗ୍ରସ୍ତ, ଅନ୍ତଃଶତ୍ରୁମାନଙ୍କ ଦ୍ୱାରା ସର୍ବଦା ବ୍ୟତିବ୍ୟସ୍ତ ଏବଂ ଦୀର୍ଘ ଦଶବର୍ଷ ଯୁଦ୍ଧରେ କ୍ଲାନ୍ତ ଆଲିବର୍ଦ୍ଦି କଟକ ବିଜୟର ଆଶା ନଦେଖି ୧୭୫୧ରେ ★ ରଘୁଜୀ ଭୋନ୍ସଲେଙ୍କ ସହିତ ସନ୍ଧି କରିଥିଲେ । ଏହି ସନ୍ଧି ଅନୁସାରେ ସୁବର୍ଣ୍ଣରେଖାର ଦକ୍ଷିଣକୁ ଚିଲିକା ପର୍ଯ୍ୟନ୍ତ ଓଡ଼ିଶାର ପ୍ରଧାନ ଅଂଶରେ ମରହଟ୍ଟାମାନଙ୍କ ଅଧିକାର ସ୍ୱୀକୃତ ହୋଇଥିଲା । ମୀରହବିବ୍‌ଙ୍କ ଅକ୍ଲାନ୍ତ ପରିଶ୍ରମ, ନିରବଚ୍ଛିନ୍ନ ଉଦ୍ୟମ ଓ ବିଚକ୍ଷଣ ରଣକୌଶଳ ଯୋଗୁଁ ଓଡ଼ିଶାରେ ମରହଟ୍ଟା ରାଜତ୍ୱ ପ୍ରତିଷ୍ଠିତ ହୋଇଥିବାରୁ ଏହାର ପୁରସ୍କାର ସ୍ୱରୂପ ତାଙ୍କୁ ରଘୁଜୀ ଭୋନ୍ସଲେଙ୍କ ଅଧୀନରେ ଓଡ଼ିଶାର ପ୍ରଥମ ଶାସକ ରୂପେ ନିଯୁକ୍ତ କରାଯାଇଥିଲା । କିନ୍ତୁ ତାଙ୍କର ବର୍ଷକରୁ ଅଧିକକାଳ ଓଡ଼ିଶାର ଶାସକ ହେବାର ସୌଭାଗ୍ୟ ଘଟିନଥିଲା । ଶତ୍ରୁପକ୍ଷଙ୍କ ଭୀଷଣ ଷଡ଼ଯନ୍ତ୍ର ଫଳରେ ଜାନୁଜୀ ତାଙ୍କ ଉପରେ ବିରକ୍ତ ହୋଇଥିଲେ ଏବଂ ତାଂକ ଆଦେଶରେ ମୀରହବିବଙ୍କୁ ହତ୍ୟାକରାଯାଇ ଗଲା । (୧୦) ବାଲେଶ୍ୱର 'କଦମରସୁଲ'ରେ ଥିବା ତାଙ୍କ କବର ଲେଖରୁ ଜଣାଯାଏ ଯେ ୧୧୬୫ ହିଜ୍‌ରିର ସଓ୍ୱାଲ ମାସର ୨୪ଦିନ ଅର୍ଥାତ୍ ୧୭୫୨ଖ୍ରୀଷ୍ଟାବ୍ଦ ଅଗଷ୍ଟ ମାସ ୨୪ତାରିଖରେ ତାଙ୍କର ମୃତ୍ୟୁଘଟିଥିଲା । (୧୧)

## ମରହଟ୍ଟା ଆକ୍ରମଣ ଓ ବୀରକେଶରୀ ଦେବ

ନୃସିଂହପୁର ରାଜ୍ୟ ସୀମା ଚଦମାଳଠାରୁ ବାହାଦୁର ଖାଁ ଶ୍ରୀ ଜଗନ୍ନାଥ ମହାପ୍ରଭୁଂକ ସେବକମାନଙ୍କୁ ଲେଖିଥିବା ଏକ ଚିଠାଉ ବା ପତ୍ରରୁ ଗଜପତି ବୀରକେଶରୀ ଦେବ ମରହଟ୍ଟାମାନଙ୍କୁ ଓଡ଼ିଶା ଆକ୍ରମଣରେ ସାହାଯ୍ୟ କରିଥିବାର ଜଣାଯାଏ । ଚିଠାଉର ଐତିହାସିକ ଗୁରୁତ୍ୱ ଥିବାରୁ ଏହା ନିମ୍ନରେ ଉଦ୍ଧାର କରାଗଲା ।

---

★ ଆଲିବର୍ଦ୍ଦିଂକ ସନ୍ଧିପତ୍ରରେ ଅଛି 'ବଙ୍ଗଳା' ସନ ୧୧୫୭ ଅଶ୍ୱିନ୍ ୧୮ଦିନ । ଗଣନା ଅନୁସାରେ ଏହା ୧୯-୯-୧୭୫୧ ତାରିଖ ହେଉଛି ।

(୧୦) ମରହଟ୍ଟାଆକ୍ରମଣ ଓ ଅଧିକାର ବିଷୟ ରଖାଲଦାସ ବାନାର୍ଜୀଂକ 'ଓଡ଼ିଶା ଇତିହାସ', ଦ୍ୱିତୀୟ ଖଣ୍ଡରୁ ଗୃହୀତ । ପୃ୯୦-୧୧୮ ।

(୧୧) J A S. Bengal, 1908, Vol IV P 31-32

୧ମ ଧାଡ଼ି ଶ୍ରୀ ବୀରକେଶରୀ ଦେବଂକର ମୀନ ୧୮ ଦିନେ ।
୨ୟ ,, ସିଦ୍ଧ ଶ୍ରୀ ବାହାଦୁର ଖାଁ । ଜଆନଙ୍କର
୩ୟ ,, **ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ସମସ୍ତ**
୪ର୍ଥ ,, **ସେବକମାନଙ୍କୁ ଚିଟାଉ** । ନରସିଂହପୁର ସିମାନା **ପଦମାଳ** ଠାରୁ
୫ମ ,, ଲେଖିଲୁ । ରଜା ରଘୁଜୀଉ ମୀର ହବିବୁଲ୍ ଖାଁ । **ଘୋଡ଼ାରେ**
୬ଷ୍ଠ ,, ଅଇଲେ । ଆମ୍ଭେ **ଫୁଲଝର**ଠାରେ ମୁଲକାତ୍ କଲୁ । ତାଙ୍କୁ
୭ମ ,, ଦଶପଲ୍ଲା ସୀମା **ବେଲପଡ଼ା** ଠାରେ ପାରକର ନରସିଂହପୁର
୮ମ ,, ସୀମାରେ କର ବଡ଼ଆମ୍ବି ଆଠଗଡ ସୀମାରେ ଘେନି କଟକ ଗଲୁଁ ।
୯ମ ,, **ପରମେଶ୍ୱରଙ୍କୁ ସେବା କରୁଥିବ** । ଆମ୍ଭେ ଏଠାରେ ଥିବାରୁ ଓଡ଼ିଶା
୧୦ମ ,, ସରହଦକୁ ନ ଯିବାର ଜାଣିବ" *

ମରହଟ୍ଟା ଆକ୍ରମଣ ଭୟରେ ପୁରୀର ସେବକମାନେ କାଳେ ଜଗନ୍ନାଥ ମହାପ୍ରଭୁଙ୍କୁ ଚଉଚଉଡ ପଟ୍ଟାରେ ଅନ୍ୟତ୍ର ନେଇ ଚଳାଇବେ ଏହି ଆଶଂକାରେ ଶ୍ରୀବାହାଦୁର ଖାଁ । ଏହି ଚିଟାଉ ଲେଖିଥିଲେ । ଏଥିରେ ସେବକମାନଙ୍କୁ ଆଶ୍ୱାସନା ଦିଆଯାଇଛି ଏବଂ ନିର୍ଭୟ ଓ ନିଶ୍ଚିନ୍ତ ଭାବରେ ପରମେଶ୍ୱରଂକ ଯଥାବିଧି ସେବା କରିବାପାଇଁ ଅନୁରୋଧ କରାଯାଇଛି ।

ଏଥିରୁ ଜଣାଯାଏ ଯେ ମୀର ହବିବୁଲ୍ ଖାଁ । ବା ମୀରହବିବଙ୍କ ଅନୁରୋଧରେ ରଘୁଜୀ ସୈନ୍ୟସହ ସମ୍ବଲପୁର ରାଜ୍ୟର ସୀମାରେ ଥିବା ଫୁଲଝରଠାରେ ପହଞ୍ଚିଲେ । ବାହାଦୁର ଖାଁ । ସେଠାରେ ସେମାନଙ୍କୁ ଭେଟିଥିଲେ । ସେଠାରେ ସେମାନେ ସମ୍ବଲପୁର, ସୋନପୁର ଓ ବୌଦ ବାଟେ ମହାନଦୀ ଦକ୍ଷିଣ ତୀରରେ ଦଶପଲ୍ଲାରେ ଅବସ୍ଥିତ ବଡ଼ମୂଳ ଘାଟିର ପ୍ରବେଶ ଦ୍ୱାର ସ୍ୱରୂପ ବେଲପଡ଼ା, ଗ୍ରାମରେ ଉପସ୍ଥିତ ହେଲେ । ବେଲପଡାଠାରେ ମହାନଦୀ ପାରହୋଇ ନରସିଂହପୁର ରାଜ୍ୟର ପଦମାଳ ଗ୍ରାମକୁ ଆସିଲେ । ତତ୍ପରେ ମରହଟ୍ଟାସେନା ବଡ଼ାମ୍ବା, ଓ ଅଠଗଡ଼ ରାଜ୍ୟଦେଇ କଟକରେ ପ୍ରବେଶ କରିଥିଲେ । ଏହି ଚିଟାଉରେ ମରହଟ୍ଟା ଅଭିଯାନ ପଥ ସୁନ୍ଦର ରୂପେ ସୂଚିତ ହୋଇଅଛି ।

## ବୀରକେଶରୀ ଦେବଙ୍କ ମରଟ୍ଟାମାନଙ୍କ ସଙ୍ଗେ ସଂପର୍କ

ଦୀର୍ଘ ଦଶବର୍ଷ ବ୍ୟାପୀ (୧୭୪୧-୧୭୫୧) ଆଲିବର୍ଦ୍ଦି-ମରହଟ୍ଟା ସଂଘର୍ଷ କାଳରେ ବୀରକେଶରୀ ଦେବଂକ କାର୍ଯ୍ୟକଳାପର ବିଶେଷ ବିବରଣ ମିଳେନାହିଁ ।

---

* ଏହି ଚିଟାଉଟି ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ କୃତ 'Studies in Orissan History, Archaeology and Archives' ପୁସ୍ତକରେ ପ୍ରକାଶିତ ହୋଇଅଛି ପୃ ୨୪୫

ସେ ପ୍ରଥମେ ମୁର୍ଶିଦ କୁଲିଖାଁ ପକ୍ଷ ସମର୍ଥନ କରି ଆଲିବର୍ଦ୍ଦିଙ୍କ ବିରୁଦ୍ଧରେ ଯୁଦ୍ଧ ଚଳାଇବା ପୂର୍ବେ ବର୍ଣ୍ଣିତ ହୋଇଅଛି । ମୀରହବିବ ଓ ବୀରକେଶରୀଙ୍କ ମଧ୍ୟରେ ଘନିଷ୍ଠ ବନ୍ଧୁତା ଥିବାରୁ ପରେ ସେ ମରହଟ୍ଟାମାନଙ୍କ ପକ୍ଷ ସମର୍ଥନ କରିଥିଲେ ।

## ପାରଳା ରାଜା ଜଗନ୍ନାଥ ନାରାୟଣଦେବଙ୍କ ଖୁରୁଧା ଆକ୍ରମଣ

ମରହଟ୍ଟାମାନଙ୍କ ଓଡ଼ିଶା ଅଧିକାର ସମୟରେ ପାରଳାଖେମୁଣ୍ଡିର ଗଙ୍ଗବଂଶୀୟ ରାଜା ଗଜପତି ଜଗନ୍ନାଥ ନାରାୟଣ ଦେବ ଅତ୍ୟନ୍ତ ଶକ୍ତିଶାଳୀ ଥିଲେ । ସେଠାର ରାଜବଂଶ ପ୍ରାରମ୍ଭରୁ ଖୁରଧା ରାଜବଂଶର ଆଧିପତ୍ୟ ସ୍ୱୀକାର ନକରି ପୁରୁଷାନୁକ୍ରମେ ଗଜପତି ପଦବୀ ଧାରଣ କରିଥିଲେ । ବୀରକେଶରୀଙ୍କ ଦୁର୍ବଳତାର ସୁଯୋଗ ନେଇ ସେ ଖୁରୁଧା ସିଂହାସନ ଦାବୀ କରିଥିଲେ । ୧୧୬୭ ଅମଲିସନ ବା ୧୭୬୦ ଖ୍ରୀଷ୍ଟାବ୍ଦରେ ସେ ବାଣପୁର ବାଟେ ଖୁରୁଧା ଆକ୍ରମଣ କରିଥିଲେ । ଯୁଦ୍ଧରେ ବୀରକେଶରୀ ଦେବ ପରାସ୍ତ ହୋଇ ମରହଟ୍ଟା ସୁବାଦାର ଶିଓଭଟ୍ଟ ସାଠେଙ୍କ ଶରଣାପନ୍ନ (୧୭୫୬-୧୭୬୪) ହେଲେ । ବୀରକେଶରୀ ଦେବ ଯୁଦ୍ଧର ସମସ୍ତ ବ୍ୟୟ ବହନ କରିବାର ସ୍ୱୀକୃତି ପ୍ରଦାନ କରିବାରୁ ମରହଟ୍ଟା ସୁବାଦାର ନାରାୟଣ ଦେବଙ୍କୁ ପରାସ୍ତ ଓ ଖୁରୁଧାରୁ ବିତାଡ଼ନ କରିଥିଲେ । କିନ୍ତୁ ବୀରକେଶରୀ ଦେବ ଚୁକ୍ତି ଅନୁଯାୟୀ ଯୁଦ୍ଧ ବ୍ୟୟ ବାବଦ ଟଙ୍କା ପରିଶୋଧ କରି ନ ପାରିବାରୁ ତାଙ୍କ ରାଜ୍ୟର ଉତ୍କୃଷ୍ଟ ଅଂଶ ରାହାଙ୍ଗ, ଲେମ୍ବାଇ, ଓ ପୁରୁଷୋତ୍ତମ କ୍ଷେତ୍ର ଅର୍ଥାତ୍ ଦୟାନଦୀ, ସମୁଦ୍ର, ଜଗନ୍ନାଥ ସଡ଼କ ଓ ଚିଲିକା ମଧ୍ୟବର୍ତ୍ତୀ ଅଞ୍ଚଳ ଓ ଏପର୍ଯ୍ୟନ୍ତ ଖୁରୁଧା ରାଜାଙ୍କ ଅଧୀନରେ ଥିବା ଚଉଦଟି ଗଡ଼ଜାତ ରାଜ୍ୟରୁ ରାଜସ୍ୱ ଆଦାୟ କ୍ଷମତା ସାମୟିକ ଭାବରେ ମରହଟ୍ଟା ସୁବାଦାରଙ୍କୁ ଛାଡ଼ିଦେଲେ । ମରହଟ୍ଟାମାନେ ଉକ୍ତ ଅଧିକାର ଆଉ ଛାଡ଼ିନଥିଲେ । ଏହି ଚୁକ୍ତି ଫଳରେ ଖୁରୁଧା ରାଜ୍ୟର ଆୟତନ ଓ ଆୟ ଯଥେଷ୍ଟ ହ୍ରାସ ଲାଭକରି ଏହାର ପତନର ପଥ ସୁଗମ କରିଥିଲା । (୧) ମାଦଳା ପାଞ୍ଜିରେ ଏ ଘଟଣାର ଉଲ୍ଲେଖ ଥିଲେମଧ୍ୟ ନାରାୟଣ ଦେବଙ୍କ ଆକ୍ରମଣର ସମୟ ଭୁଲଭାବରେ ଲେଖାଯାଇଛି ।

## ବୀରକେଶରୀ ଦେବଙ୍କ ବିତାଡ଼ନ ଓ କାରାବାସ

୧୭୭୧ରେ ରାଜାରାଜ ପଣ୍ଡିତ ଓଡ଼ିଶାର ସୁବାଦାର ରୂପେ ନିଯୁକ୍ତ ହେଲେ । ତାଙ୍କ ସୁବାଦାରି ସମୟରେ ବୀରକେଶରୀ ଦେବ ପାଗଳ ହୋଇ ତାଙ୍କର ଚାରୋଟି ପୁଅଙ୍କୁ ହତ୍ୟା କରିଥିଲେ । ଏଥିରେ ସମଗ୍ର ରାଜ୍ୟରେ ଚହଳ ପଡ଼ିଗଲା । ଏହି ସୁଯୋଗରେ ମରହଟ୍ଟା ସୁବାଦାର ବୀରକେଶରୀ ଦେବଙ୍କୁ ଧରି ଆଣି ବାରବାଟୀ ଦୁର୍ଗରେ

---

(୧) Stirling's Orissa P. 91

ବନ୍ଦୀ କରଦେଲେ । ତାଙ୍କ ନାତି ଦିବ୍ୟସିଂହ ଦେବ ବାର୍ଷିକ ଦଶହଜାର ଟଙ୍କା ପେନ୍‌-ସନ ଦେବା ପାଇଁ ଚୁକ୍ତି କରିବାରୁ ତାଙ୍କୁ ଖୁର୍ଦ୍ଧା ରାଜଗାଦିରେ ବସାଗଲା । ବୀର କେଶରୀ ଦେବ ପୁନର୍ବାର ଖୁର୍ଦ୍ଧା ରାଜଗାଦିରେ ବସିଥିଲେ କି ନାହିଁ ତାହା କୌଣସି ସୂତ୍ରରୁ ଜଣାଯାଏ ନାହିଁ । କିନ୍ତୁ ମୃତ୍ୟୁ ପର୍ଯ୍ୟନ୍ତ (୧୭୯୩ ଖ୍ରୀଷ୍ଟାବ୍ଦ) ତାଙ୍କର ଅଙ୍କ ଗଣାଯାଉଥିବା ବହୁ ଦାନପତ୍ର ଓ ଗ୍ରନ୍ଥର ଭଣିତାରୁ ଜଣାଯାଏ ।

## ବୀରକେଶରୀ ଦେବଙ୍କ ରାଜତ୍ୱର କୀର୍ତ୍ତିକଳାପ

ବୀରକେଶରୀ ଦେବଙ୍କ ରାଜତ୍ୱ ଆରମ୍ଭରୁ ଓଡ଼ିଶାରୁ ମୁସଲମାନ ଆଧିପତ୍ୟ ଲୋପ ପାଇବା ଫଳରେ ବହୁ ନୂତନ ମନ୍ଦିର ନିର୍ମାଣ ଓ ପ୍ରାଚୀନ ମନ୍ଦିରମାନଙ୍କ ଜୀର୍ଣ୍ଣସଂସ୍କାର କାର୍ଯ୍ୟ ଅବାଧରେ ସମାହିତ ହୋଇଥିଲା । ପ୍ରାୟ ଅର୍ଦ୍ଧ ଶତାବ୍ଦୀ ବ୍ୟାପୀ ମରହଟ୍ଟା ରାଜତ୍ୱ କାଳରେ ବାରମ୍ବାର ଲୁଣ୍ଠନ ଓ ଖଣ୍ଡଯୁଦ୍ଧ ଚାଲିଥିଲେ ମଧ୍ୟ ମରହଟ୍ଟା ସୁବାଦାର ମାନେ ବହୁ କୀର୍ତ୍ତି ନିର୍ମାଣ କରିଥିଲେ । ବୀରକେଶରୀଙ୍କ ରାଜତ୍ୱର କୀର୍ତ୍ତି-କଳାପ ସମ୍ବନ୍ଧରେ ମାଦଳା ପାଞ୍ଜିରୁ ନିମ୍ନୋକ୍ତ ବିବରଣ ମିଳେ । ଯଥା—"ଏ ରାଜା ବୀରକେଶରୀ ପୁର ଶାସନ କଲେ । ଏ ରାଜାଙ୍କ ଠାକୁର ମା ବଡ଼ଦେଉଳ ଭିତରେ ନିର୍ମାଲ୍ୟ ମଣ୍ଡପ ଜୀର୍ଣ୍ଣ ହୋଇଥିଲାକୁ କନକ ମଣ୍ଡପ ତୋଳାଇଲେ । ଦୋଳଯାତ୍ରା ମଣ୍ଡପ ଜୀର୍ଣ୍ଣ ହୋଇଥିଲାକୁ ଦୋଳମଣ୍ଡପ କଲେ । ଏ ମହାରାଜାଙ୍କ ପାଟମହାଦେଈ ବଡ଼ ଦେଉଳକୁ ଚୂନ କଲେ । × × × ଅଷ୍ଟଗ୍ରାମୀ ଗୋସାଇଁ ଉତ୍ତର ଦ୍ୱାର ଗୁମୁଟ ବୈତମ ହୋଇଥିଲା, ରାଜାଙ୍କ ଆଗ୍ୟାଂରେ ତୋଳାଇଲେ । ସ୍ନାନଯାତ୍ରାକୁ ବଜେ ପହଣ୍ଡି ପଥର ବସାଇଲେ । ଏ ଉତ୍ତାରୁ ଖଟ ଶେଯ ଘର, ଶୟନ ଘର, ଫୁଲବଣ୍ଟା ଭୃଙ୍ଗାଡ଼ା ଘର ନୂଆ କରି କଲେ । ଉମଣ ସିଂ ଦେଉଳ ଗୃହପାଖ ପଥର ବସାଇଲେ, ଚକଡ଼ା କଲେ । ଏ ରାଜାଙ୍କ ପାତ୍ର ଶ୍ରୀଧର ପଟ୍ଟନାୟକ ବଟମୂଳରେ ସାନ ଦେଉଳ ଗୋଟିଏ କରି ପାଷାଣରେ ବାଳମୁକୁନ୍ଦଙ୍କୁ ବିଜେ କରାଇଲେ । ବର୍ଦ୍ଧମାନ କୀର୍ତ୍ତିଚନ୍ଦ୍ର ମା ମାର୍କଣ୍ଡରେ ପଥର ବନ୍ଧାଇଲେ ।" (୧୩)

ତାଙ୍କ ରାଜତ୍ୱର କୀର୍ତ୍ତି ସମ୍ବନ୍ଧରେ ଏ ପର୍ଯ୍ୟନ୍ତ ଦୁଇଟି ଶିଳାଲେଖ ମିଳିଛି । ପ୍ରଥମଟି ମାର୍କଣ୍ଡେଶ୍ୱର ପୁଷ୍କରଣୀ ନିକଟରେ ଥିବା ଶ୍ରୀକୃଷ୍ଣ ମନ୍ଦିରରେ ଅବସ୍ଥିତ । ସେଥିରୁ ଜଣାଯାଏ ଯେ ୧୬୬୩ ଶକାବ୍ଦ ବା ୧୭୪୧ ଖ୍ରୀଷ୍ଟାବ୍ଦର ବର୍ଦ୍ଧମାନ ରାଜା ହରେକୃଷ୍ଣ ସିଂହ କୀର୍ତ୍ତି ଚନ୍ଦ୍ର ମାର୍କଣ୍ଡେୟ ହ୍ରଦରୁ ପଙ୍କୋଦ୍ଧାର କରି ଏହାର ଚାରିପାଖେ ପଥର ପାହାଚ ବସାଇଲେ ଏବଂ ଏକ ମଣ୍ଡପ ନିର୍ମାଣ କରିଥିଲେ (୧୪) । ଲଳିତା

---

(୧୩) ମାଦଳାପାଞ୍ଜି, ପୃ ୭୯–୮୦ ।

(୧୪) ପରିଶିଷ୍ଟ

ପାଟପୁର ମନ୍ଦିରରେ ଥିବା ଶିଳାଲେଖରୁ ଜଣାଯାଏ ଯେ ଗଜପତି ମୁକୁନ୍ଦ ଦେବଙ୍କ ପୁତ୍ର ହରିକୃଷ୍ଣଙ୍କ ବଧୂ ଓ ଗଜପତି ରାମଚନ୍ଦ୍ର ଦେବଙ୍କ ମହିଷୀ ଲଳିତା ପାଟ ମହାଦେବୀ ସ୍ୱନାମରେ 'ଲଳିତାପାଟପୁର' ନାମକ ଏକ ବ୍ରାହ୍ମଣ ଶାସନ ପ୍ରତିଷ୍ଠା କରି ସେଠାରେ ଏକ ବିଷ୍ଣୁ ମନ୍ଦିର ପ୍ରତିଷ୍ଠା କରିଥିଲେ । ଲଳିତା ପାଟମହାଦେବୀଙ୍କ ତପସ୍ୟାର ଫଳ ସ୍ୱରୂପ ଗଜପତି ବୀରକେଶରୀ ଦେବଙ୍କ ନବ (୯) ବହ୍ନି (୩) ଅର୍ଥାତ୍ ୩୯ ଅଙ୍କରେ ଏବଂ ନବ (୯), ଅଷ୍ଟ (୮), ଋତୁ (୬), ରୂପ (୧) ଅର୍ଥାତ୍ ୧୬୮୯ ଶକାବ୍ଦରେ ଉକ୍ତ ମନ୍ଦିର ନିର୍ମିତ ହୋଇଥିଲା । ଅତଏବ ଉକ୍ତ ବିଷ୍ଣୁ ମନ୍ଦିରର ନିର୍ମାଣ କାଳ ହେଉଛି ୧୬୮୯ ଶକାବ୍ଦ ବା ୧୭୬୭ ଖ୍ରୀଷ୍ଟାବ୍ଦ । (୧୫)

ବୀରକେଶରୀ ଦେବଙ୍କ ରାଣୀ ବଡ଼ଦେଉଳ ଚୂନ କରିବା ବିଷୟ, ଶ୍ୟାମ-ସୁନ୍ଦର ଦେବଙ୍କ 'ଅନୁରାଗ କଳ୍ପଲତା' ଗ୍ରନ୍ଥରୁ ଜଣାଯାଏ । ସେ ବୀରକେଶରୀ ଦେବଙ୍କ ପୁତ୍ର ଥିଲେ । ଯଥା—

"ଅଛି ମହିଷୀ ଯଶ ପ୍ରକାଶି, ଅବନୀ ଶୂନ୍ୟ କରି ଚୂନରାଶି ।
ଆଲେପ କଲେ ବଡ଼ଦେଉଳେ, ଅର୍ଦ୍ଧିନୀ ନାହିଁ କପର୍ଦ୍ଦୀ ଦହିଲେ ।
ଆତ୍ମଜ ସେହି ନୃପର ମୁହିଁ, ଆଖ୍ୟା ଦେବ ଶ୍ୟାମସୁନ୍ଦର କହି ।" (୧୬)

(ଅଷ୍ଟମ ସ୍ତବକ, ଅଷ୍ଟମ କୁସୁମ)

## ଓଡ଼ିଆ ସାହିତ୍ୟ ଚର୍ଚ୍ଚା

ବୀରକେଶରୀ ଦେବଙ୍କ ରାଜତ୍ୱ ଆରମ୍ଭରେ ଓଡ଼ିଶା ଉପକୂଳରେ ମରହଟ୍ଟା ଆଧିପତ୍ୟ ପ୍ରତିଷ୍ଠିତ ହେବାରୁ ଭାରତର ରାଜନୀତି କ୍ଷେତ୍ରରେ ଏକ ଯୁଗାନ୍ତକାରୀ ପରିବର୍ତ୍ତନ ଘଟିଥିଲା । ହିନ୍ଦୁ ସମାଜର ପ୍ରଧାନ ଆରାଧ୍ୟ ଦେବତା ଜଗନ୍ନାଥ ମହାପ୍ରଭୁଙ୍କ ଧର୍ମପୀଠ ପ୍ରତି ଚିରନ୍ତନ ଆକ୍ରମଣ ଆଶଙ୍କା ଦୂରୀଭୂତ ହେବାରୁ ଧର୍ମସର୍ବସ୍ୱ ଓଡ଼ିଶାବାସୀ ବିଶେଷ ଆଶ୍ୱସ୍ତି ଲାଭ କଲେ । ପରନ୍ତୁ ମରହଟ୍ଟା ରାଜତ୍ୱରେ ବହୁ ନୂତନ ଦେବାଳୟ ଓ ମଠ ପ୍ରତିଷ୍ଠିତ ହୋଇଥିଲା । ସାଧାରଣତଃ ଦେବାଳୟ, ମଠ ଓ ସାମନ୍ତ ରାଜାମାନଙ୍କ ଆଶ୍ରୟରେ ବାସ କରୁଥିବା କବି-ପଣ୍ଡିତମାନେ ନିରବଚ୍ଛିନ୍ନ ଭାବରେ ବାଣୀ ଆରାଧନାରେ ନିରତ ରହିଲେ । ତେଣୁ ବୀରକେଶରୀ ଦେବଙ୍କ ନାନା ଭାଗ୍ୟ ବିପର୍ଯ୍ୟୟ ସତ୍ତ୍ୱେ ତାଙ୍କର ଦୀର୍ଘ ରାଜତ୍ୱ କାଳ ମଧ୍ୟରେ (୧୭୩୭-୧୭୯୩) ଓଡ଼ିଆ ଓ

---

(୧୫) ପରିଶିଷ୍ଟ
(୧୬) 'ଅନୁରାଗ କଳ୍ପଲତା' ପୋଥିରୁ ଉଦ୍ଧୃତ ।

ସଂସ୍କୃତ ଭାଷାରେ ବହୁ ଉପାଦେୟ ଗ୍ରନ୍ଥ ରଚିତ ହୋଇଥିବାର ଜଣାଯାଏ । ସେ ସମୟର ଯେଉଁ ସୁଖ୍ୟାତ କବି ଓ ପଣ୍ଡିତମାନେ ସ୍ୱ ସ୍ୱ କୃତି ଦ୍ୱାରା ଆମ ଜାତୀୟ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରିଥିଲେ, ସେମାନଙ୍କ ସମ୍ବନ୍ଧରେ ନିମ୍ନରେ ସଂକ୍ଷେପରେ ଆଲୋଚନା କରାଗଲା ।

## କବି ଦୟାଳୁ ଦାସ

ସେ ବୀରକେଶରୀ ଦେବଙ୍କ ଏକାଦଶ ଅଙ୍କରେ 'ବୈଷ୍ଣବାମୃତ ସାରୋଦ୍ଧାର' ନାମକ ଗ୍ରନ୍ଥ ସମାପ୍ତ କରିଥିବା ଉକ୍ତ ଗ୍ରନ୍ଥ ପାଠରୁ ଜଣାଯାଏ ।

"ଷୋଳଶ ଛଷଠି ସମ୍ବତ୍, ଶକାବ୍ଦ ହୋନ୍ତେ ଉପଗତ ।
ଶ୍ରୀ ବୀରକେଶରୀ ଦେବଙ୍କ, ହୁଅନ୍ତେ ଏକାଦଶ ଅଙ୍କ ।
ପୁଷ ଶୁକଳ ଦ୍ୱାଦଶୀରେ, ମୃଗଶିରା ସନକ୍ଷତ୍ରରେ ।
ମିଥୁନ ଚନ୍ଦ୍ର ଶୁକ୍ରବାରେ, ବ୍ରହ୍ମା ନାମଧେୟ ଯୋଗରେ ।"

ଗଣନା ଅନୁସାରେ ୧୭୪୫ ମସିହା ଜାନୁୟାରୀ ମାସ ୪ ତାରିଖରେ ୧୬୬୬ ଶକାବ୍ଦ ଗତ, ପୌଷ ଶୁକ୍ଳ ଦ୍ୱାଦଶୀ, ଶୁକ୍ରବାର, ମୃଗଶିରା ନକ୍ଷତ୍ର ପଡ଼ିଥିଲା । ଏ ତାରିଖରେ ଦିନ, ବାର, ତିଥି, ନକ୍ଷତ୍ର ପୁରାପୁରି ମିଳିଯାଉଛି । (୧୭)

## କବି କୃପାସିନ୍ଧୁ ଦାସ

କବି କୃପାସିନ୍ଧୁ ଦାସ କଟକ ଜିଲ୍ଲା ଡାଳିଯୋଡ଼ା ନିବାସୀ ଭଗୀରଥି ଖରସୁଧା ପଟ୍ଟନାୟକଙ୍କ ପୁତ୍ର ଥିଲେ । ସେ ସ୍ୱକୃତ 'ବ୍ରଜବିହାର' ଗ୍ରନ୍ଥର ମୋଟ ୯୯୮ ପଦରେ ଶ୍ରୀରାଧାକୃଷ୍ଣଙ୍କ ପ୍ରଣୟ, କଳହ, ମାନ ଓ ମିଳନ ପ୍ରଭୃତି ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି । ସେ ବୀରକେଶରୀ ଦେବଙ୍କ ୧୩ ଅଙ୍କରେ ଉକ୍ତ ଗ୍ରନ୍ଥ ସମାପ୍ତ କରିଥିବା ଉଲ୍ଲେଖ କରିଛନ୍ତି । ଯଥା—

"ଶ୍ରୀ ବୀରକେଶରୀ ନାମ, ଗଜପତି ନୃପୋତ୍ତମ
ତେର ଅଙ୍କ କନ୍ୟା ମାସ ଗୁରୁବାର ପଞ୍ଚମୀରେ ପୂର୍ଣ୍ଣକାମ
ଡାଳିଯୋଡ଼ା ରାଜ୍ୟେ ଜାତ, ପିତା ଭଗୀରଥି ଖ୍ୟାତ
× × ×
ବୋଲେ କୃପାସିନ୍ଧୁ ଦୀନବନ୍ଧୁ ନାମ ମୋ ଠାରେ କଲେ ପ୍ରକାଶ ।"

---

(17) An Indian Ephemeris by Pillai, Vol. VI, P. 292

କବି କୃପାସିନ୍ଧୁ ପ୍ରଦତ୍ତ ମାସ, ବାର, ତିଥି ପ୍ରଭୃତି ୧୭-୯-୧୭୪୫ ତାରିଖରେ ପଡ଼ୁଥିବାରୁ ଏହା ଗଜପତିଙ୍କ ତେର ଅଙ୍କ ନ ହୋଇ ବାର ଅଙ୍କ ହେବ । ଲିପିକାର ପ୍ରମାଦ ବା କବିଙ୍କ ଅସାବଧାନତା ହେତୁ 'ବାର' ସ୍ଥାନରେ 'ତେର' ଲେଖା-ଯାଇଛି । ସେ ପରମ ବୈଷ୍ଣବ ଥିବାରୁ ରାଜା ତାଙ୍କୁ ପୁରୀରେ ଉଆସ କୋଠକରଣ ରୂପେ ନିଯୁକ୍ତ କରିଥିଲେ । ସେଠାରେ ସେ ଜଗନ୍ନାଥ ମହାପ୍ରଭୁଙ୍କ ବାର ମାସର ଯାତ୍ରା କାର୍ଯ୍ୟ ବୁଝୁଥିଲେ ।

## କବି ବନମାଳୀ ଦାସ

ସେ ପୁରୀ ଦୋଳମଣ୍ଡପ ସାହିରେ କରଣ କୁଳରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ହରି ଓ ଗୁରୁଙ୍କ ନାମ ଲକ୍ଷ୍ମଣ ଚଇଁଗ୍ରେ । ସେ ବୀରକେଶରୀ ଦେବଙ୍କ ୨୩ ଅଙ୍କରେ **ସଚିତ୍ର ରାମାୟଣ** ଗ୍ରନ୍ଥ ସଂପୂର୍ଣ୍ଣ କରିଥିଲେ । "ଶ୍ରୀ ବୀର-କେଶରୀ ଦେବ ଅବନୀଦୟିତ, ତାଙ୍କ ତ୍ରୟୋବିଂଶ ଅଙ୍କେ ପୂର୍ଣ୍ଣହେଲା ଗୀତ; ରସ, ଋଷି, ଋତୁ, ଶଶୀ ଶକାବ୍ଦରେ ପୁଣ, ଏ ଚରିତ ପୂର୍ଣ୍ଣ ହେଲା ଶୁଣ ବିଚକ୍ଷଣ ହେ ।" ରସ (୬), ଋଷି (୭), ଋତୁ (୬), ଶଶୀ (୧) ବା 'ଅଙ୍କାନାଂ ବାମତଃ ଗତିଃ' ଗଣନା ଅନୁସାରେ ୧୬୭୬ ଶକାବ୍ଦ ବା ୧୭୫୪ ଖ୍ରୀଷ୍ଟାବ୍ଦରେ ବୀରକେଶରୀ ଦେବଙ୍କ ୨୩ ଅଙ୍କରେ ଉକ୍ତ ପୁସ୍ତକ ଶେଷ ହୋଇଥିଲା । ଉକ୍ତ ଅଙ୍କ ୩୧-୮-୧୭୫୪ ତାରିଖ ସୁନିଆ ଦିନଠାରୁ ଚାଲିଥିବାରୁ ଏହି ତାରିଖ ପରେ ଗ୍ରନ୍ଥ ସମାପ୍ତ ହୋଇଥିଲା । (୧୮) ସେ ପ୍ରସିଦ୍ଧ ଭୋଜରାଜ ଓ ଲକ୍ଷ୍ମଣ ସୂରିଙ୍କ ଦ୍ୱାରା ସଂସ୍କୃତରେ ରଚିତ 'ରାମାୟଣ ଚମ୍ପୂ' ଅବଲମ୍ବନରେ ଉକ୍ତ ଗ୍ରନ୍ଥ ରଚନା କରିଥିଲେ ।

## ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା

ସଦାନନ୍ଦ ଗଜପତି ବୀରକେଶରୀ ଦେବଙ୍କ ରାଜତ୍ୱର ଜଣେ 'ପ୍ରସିଦ୍ଧ ବୈଷ୍ଣବ କବି' । ତାଙ୍କର 'ପ୍ରେମତରଙ୍ଗିଣୀ' ଗ୍ରନ୍ଥରୁ ଜଣାଯାଏ ସେ ସେ ନୟାଗଡ଼ ରାଜ୍ୟସ୍ଥ ଶରଣକୁଳ ନିକଟବର୍ତ୍ତୀ ଭିକାରୀପଡ଼ା ଶାସନରେ ସାମବେଦୀ ବ୍ରାହ୍ମଣ କୁଳରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର **'ଯୁଗଳ ରସାମୃତ ଲହରୀ'** ଗ୍ରନ୍ଥରୁ ଜଣାଯାଏ ଯେ ସେ ବୀରକେଶରୀ ଦେବଙ୍କ ୫୫ ଅଙ୍କରେ ଗୁଣ୍ଡିଚା ସମୟରେ ଉକ୍ତ ଗ୍ରନ୍ଥ ସମାପ୍ତ କରିଥିଲେ । ସେତେବେଳକୁ ତାଙ୍କୁ ତେୟାଳିଶ ବର୍ଷ ବୟସ ହୋଇଥିଲା । ବୀରକେଶରୀ ଦେବଙ୍କ ୫୫ ଅଙ୍କ ୧୭୮୦-୮୧ ଖ୍ରୀଷ୍ଟାବ୍ଦରେ ପଡ଼ୁଥିବାରୁ କବି ୧୭୩୭ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । କବି ତାଙ୍କର 'ଯୁଗଳ ରସାମୃତ ଲହରୀ'ରେ ନିଜର ଅଜ୍ଞାତ ଜୀବନର ସଂକ୍ଷିପ୍ତ ବିବରଣ ଦେଇଛନ୍ତି ।

---

(୧୮) ଝଙ୍କାର, ନବମ ବର୍ଷ, ୬ଷ୍ଠ ସଂଖ୍ୟା, ପୃ ୨୬୬-୬୭୫

"ନୟାଗଡ଼ ରାଜ୍ୟେ ପୂର୍ବାଶ୍ରମ ଯେ ମୋହର
କିଛିଦିନ ମାତ୍ରକ ରହିଲି ଘୁମୁସର ।
ଦଶପଲ୍ଲା ଭଞ୍ଜ ରାଜା ସଖ୍ୟ ପ୍ରେମେ ମୋତେ
ବହୁ ସମ୍ଭାବନାରେ ରଖିଲେ ବର୍ଷ କେତେ ।
କଟକ ନିକଟ ଦାମୋଦରପୁର ନାମେ
ଗୃହିବର୍ଷ ରହିଲି ମାତ୍ରକ ସେ ସ୍ଥାନେ ।
ତଦୁତ୍ତରେ ମଧୁପୁର ରାଜ୍ୟେ ଅଛି ଏବେ
ବ୍ରହ୍ମଚର୍ଯ୍ୟ ଆଶ୍ରମ ତ ମୋହର ଦଇବେ ।"

ଜନ୍ମରୁ ସନ୍ନ୍ୟାସ ଦୀକ୍ଷା ଗ୍ରହଣ ସମୟ ପର୍ଯ୍ୟନ୍ତ ସେ ସ୍ୱୀୟ ଜନ୍ମଭୂମି ନୟାଗଡ଼ ରାଜ୍ୟରେ ଅତିବାହିତ କରି କିଛିକାଳ ଘୁମୁସରରେ, କେତେକ ବର୍ଷ ଦଶପଲ୍ଲାରେ, ଗୃହିବର୍ଷ କଟକ ଦାମୋଦରପୁରରେ କଟାଇ ମଧୁପୁର ରାଜାଙ୍କ ଆଶ୍ରୟ ଗ୍ରହଣ କରିଥିଲେ । ସେଠାରେ 'ଯୁଗଳ ରସାମୃତ ଲହରୀ' ଗ୍ରନ୍ଥ ରଚନା କରିବା ସମୟରେ ଅର୍ଥାତ୍ ୧୭୮୦ ଖ୍ରୀଷ୍ଟାବ୍ଦରେ ଘନଶ୍ୟାମ ଧୀର ନରେନ୍ଦ୍ର ମଧୁପୁରର ରାଜା ଥିଲେ । ସେ କଟକରେ ମରହଟ୍ଟା ସୁବାଦାର ରାଜାରାମ ପଣ୍ଡିତ ଦ୍ୱାରା ଅଟକ ହୋଇ-ଥିବାରୁ କବି ବ୍ୟାକୁଳ ହୃଦୟରେ ତାଙ୍କର ମୁକ୍ତି ନିମିତ୍ତ ସ୍ୱୀୟ ଇଷ୍ଟଦେବଙ୍କୁ ପ୍ରାର୍ଥନା କରିଥିଲେ । ମଧୁପୁରରେ ମହାନ୍ତ ଭାବରେ ଥିବା ସମୟରେ ସେଠା ମଠରେ ଶ୍ରୀରସିକ ରାଜଙ୍କ ନିକଟରେ ଶ୍ରୀରାଧା ବିଗ୍ରହ ପ୍ରତିଷ୍ଠା କରିବା ପାଇଁ ବିଶେଷ ଉଦ୍ୟମ କରିଥିଲେ ।

'ପ୍ରେମ ତରଙ୍ଗିଣୀ' ଗ୍ରନ୍ଥରୁ ଜଣାଯାଏ ଯେ ସେ ଗଜପତି ବୀରକେଶରୀ ଦେବଙ୍କ ଠାରୁ 'କବିସୂର୍ଯ୍ୟବ୍ରହ୍ମା' ପଦବୀ ପ୍ରାପ୍ତ ହୋଇ ବିଶେଷ ଗର୍ବ ଓ ଗୌରବ ଅନୁଭବ କରିଥିଲେ ।

"ପୂର୍ବେ **ଶ୍ରୀ ବୀରକେଶରୀ ଦତ୍ତ ପଦ,**
କବିସୂର୍ଯ୍ୟବ୍ରହ୍ମା ବୋଲି ଲୋକେ ବଦ ।"
(ପ୍ରେମ ତରଙ୍ଗିଣୀ, ୨୯ ଛାନ୍ଦ)

"ମୋ କବିସୂର୍ଯ୍ୟ ବ୍ରହ୍ମା ପଦ, ଶୁଣିଯାଇଛି ଲୋକେ ଶବ୍ଦ ।
ମୁଁ ଯେ ବୋଲିଲି କେହି ନ ବଦ, ନନ୍ଦେ ମୁଁ ସ୍ୱ ହୋ ।"
(ଯୁ: ର: ଲହରୀ, ୪ର୍ଥ ଛାନ୍ଦ)

ମହାନ୍ତ ହୋଇ ସେ ସାଧୁଚରଣ ଦାସ ନାମ ଗ୍ରହଣ କରିଥିଲେ । ସେ ବାଲିଆରେ ରହି ଯଜ୍ଞାନୁଷ୍ଠାନ କରିବାରୁ ୧୭୫୭ ମହିହାରେ ପ୍ରସିଦ୍ଧ କବି ଅଭିମନ୍ୟୁ ସାମନ୍ତସିଂହାର ଜନ୍ମଗ୍ରହଣ କରିଥିଲେ । କବିସୂର୍ଯ୍ୟ ବ୍ରହ୍ମା ଅଭିମନ୍ୟୁଙ୍କ ବାଲ୍ୟକାଳରେ ଶିକ୍ଷାଗୁରୁ ଓ ଯୌବନରେ ଦୀକ୍ଷାଗୁରୁ ଥିଲେ । ତାଙ୍କର ପ୍ରଭାବ ଅଭିମନ୍ୟୁଙ୍କ ରଚନା-

ବଳୀରେ ପ୍ରତିଫଳିତ ହୋଇଛି । ଭଗବଦ୍‌ଗୀତାର ଅନୁବାଦ ସମୟରେ ସେ ଗଞ୍ଜାମ ଜିଲାର ଚିକିଟିରେ ଥିଲେ । ତେଣୁ ଉକ୍ତ ଗ୍ରନ୍ଥରେ ସେ ନିଜକୁ ଚିକିଟି କବିସୂର୍ଯ୍ୟ ବ୍ରହ୍ମା ବୋଲି ପ୍ରକାଶ କରିଛନ୍ତି । ଉପରୋକ୍ତ ଆଲୋଚନାରୁ ଜଣାଯାଏ ଯେ ନିଜର କବିତ୍ୱ ଓ ପାଣ୍ଡିତ୍ୟ ଯୋଗୁଁ ଓଡ଼ିଶାର ନାନାସ୍ଥାନରେ ସମ୍ମାନିତ ହୋଇଥିଲେ ।

'ପ୍ରେମ ତରଙ୍ଗିଣୀ' ଗ୍ରନ୍ଥରୁ ତାଙ୍କର ଗୁରୁ ପରଂପରା ଜଣାଯାଏ । ଯଥା— ଶ୍ରୀକୃଷ୍ଣ ଚୈତନ୍ୟ, ଗୋସ୍ୱାମୀ ଗଦାଧର ପଣ୍ଡିତ, ଶ୍ରୀ ଅନନ୍ତାଚାର୍ଯ୍ୟ, ଶ୍ରୀ ରଘୁ ଗୋପାଳ ଗୋସ୍ୱାମୀ, ଲକ୍ଷ୍ମୀପ୍ରିୟା, ପୁରୁଷୋତ୍ତମ କ୍ଷେତ୍ରବାସୀ ଗଙ୍ଗାମାତାଜୀ, ବନମାଳୀ ଦାସ ଗୋସ୍ୱାମୀ, ସ୍ୱାମୀ କିଶୋର ଦାସ ଓ ତାଙ୍କର ଶିଷ୍ୟ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ବା ମହନ୍ତ ସାଧୁଚରଣ ଦାସ । ସେ ଶ୍ରୀ ଚୈତନ୍ୟଙ୍କ ପରମ ଭକ୍ତଥିବାରୁ ତାଙ୍କ ଜୀବନ ଚରିତ **'ବିଶ୍ୱମ୍ଭର ବିହାର'** ନାମକ ଗ୍ରନ୍ଥରେ ବର୍ଣ୍ଣନା କରିଥିଲେ । **'ପ୍ରେମ କଳ୍ପଲତା'** ରଚନା ପୂର୍ବରୁ ସେ **'ଯୁଗଳରସାମୃତ ଲହରୀ', 'ଯୁଗଳରସାମୃତ ଭଉଁରୀ', 'ଲୀଳାମୃତ ସାଗର', 'ଯୁଗଳ ରସାମୃତ ଚନ୍ଦ୍ର'** ରଚନା କରି ସାରିଥିଲେ । ଏତଦ୍‌ବ୍ୟତୀତ **ମୋହନ ଲତା, ପ୍ରେମଲହରୀ, ପ୍ରେମ ଭଉଁରୀ, ନିସ୍ତାର ନୀଳମଣି, ନାମ ଚିନ୍ତାମଣି ଓ ସ୍ତୁତି ଚିନ୍ତାମଣି** ପ୍ରଭୃତି ତାଙ୍କ ଦ୍ୱାରା ରଚିତ ହୋଇଥିଲା ।

କବି ହିସାବରେ ତାଙ୍କର ପ୍ରତିଭା ଅସାଧାରଣ ଥିଲା । ସେ ୪୨ ଦିନରେ ୫୬ ଛାନ୍ଦ ବିଶିଷ୍ଟ 'ଯୁଗଳ ରସାମୃତ ଲହରୀ' ଗ୍ରନ୍ଥ ରଚନା କରି ପାରିଥିଲେ । ତାଙ୍କର ଅଧିକାଂଶ ଗ୍ରନ୍ଥ ଶ୍ରୀରାଧାକୃଷ୍ଣ ଲୀଳା ବର୍ଣ୍ଣନାତ୍ମକ । ଦୁଃଖର ବିଷୟ, ଏହି ପ୍ରସିଦ୍ଧ କବିଙ୍କର ଅଧିକାଂଶ ଗ୍ରନ୍ଥ ଏ ପର୍ଯ୍ୟନ୍ତ ଅପ୍ରକାଶିତ ଅଛି । (୧୯)

## କବି ପୀତାମ୍ବର ଦାସ

କବି ପୀତାମ୍ବର ଦାସ ଓଡ଼ିଶାର ଜାଣେ ପ୍ରସିଦ୍ଧ ପୁରାଣ ପ୍ରଣେତା । ସେ ଗଞ୍ଜାମ ଜିଲାର ଋଷିକୁଲ୍ୟା ନଦୀ ତୀରବର୍ତ୍ତୀ ପୂର୍ବଖଣ୍ଡର ପଉଁର ଗ୍ରାମରେ ଏକ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । ସେ ବିରାଟ ନୃସିଂହ ପୁରାଣ ଗ୍ରନ୍ଥକୁ ସରଳ ଓଡ଼ିଆ ପଦ୍ୟରେ ଅନୁବାଦ କରିଥିଲେ । ସାତଖଣ୍ଡ ବା ହିରନ୍ମାକରରେ ବିଭକ୍ତ ଏହି ଗ୍ରନ୍ଥର ପ୍ରଥମ ରତ୍ନାକର ବୀରକେଶରୀ ଦେବଙ୍କ ୩୬ ଅଙ୍କ ସିଂହ, ଶୁକ୍ଳ ପଞ୍ଚମୀ ତିଥିରେ ସମାପ୍ତ ହୋଇଥିଲା । ଯଥା—

"ସିଂହ ମାସ ଶୁକ୍ଳ ପଞ୍ଚମୀ ତିଥିରେ, ବୀରକେଶରୀ ଦେବଙ୍କ ବତିଶ ଅଙ୍କରେ'

---

(୧୯) ସହକାର ।

ବୀରକେଶରୀ ଦେବଙ୍କ ୩୨ ଅଙ୍କ ୧୧-୯-୧୭୬୧ରୁ ୩୧-୮-୧୭୬୨ ପର୍ଯ୍ୟନ୍ତ ଚାଲିଥିଲା । ସେ ଉକ୍ତ ବର୍ଷ ପ୍ରଥମ ରତ୍ନାକର ଶେଷ କରିଥିବାରୁ ତାଙ୍କ ରାଜତ୍ୱ କାଳରେ ଉକ୍ତ ଗ୍ରନ୍ଥର ଅନୁବାଦ କାର୍ଯ୍ୟ ସମାପ୍ତ ହୋଇଥିବାର ସ୍ଥିର କରାଯାଇପାରେ । (୨୦)

## କବି ରାମ ଦାସ

କବି ରାମ ଦାସ ଗଞ୍ଜାମ ଜିଲାସ୍ଥ ମଞ୍ଜୁଷା ରାଜ୍ୟର ଭୁରା ଗ୍ରାମରେ ବ୍ରାହ୍ମଣ କୁଳରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଲକ୍ଷ୍ମଣ ଦାସ । ତାଙ୍କ କୃତ 'ଦାର୍ଢ୍ୟତାଭକ୍ତିରସାମୃତ' ଗ୍ରନ୍ଥ ଜଗନ୍ନାଥ ଦାସଙ୍କ ଭାଗବତ ପରି ସମଗ୍ର ଓଡ଼ିଶାରେ ଅତ୍ୟନ୍ତ ଲୋକପ୍ରିୟ । ନାଭାଜୀ କୃତ ହିନ୍ଦୀ 'ଭକ୍ତମାଳା'ର ଅନୁକରଣରେ ଏହା ଲିଖିତ । ଏଥିରେ ଅନେକ ଭକ୍ତଙ୍କ ଚରିତ ଲିଖିତ ହୋଇଥିବାରୁ ଏହାର ଯଥେଷ୍ଟ ଐତିହାସିକ ଗୁରୁତ୍ୱ ରହିଛି । ଏହାର ପ୍ରଥମ ଖଣ୍ଡର ରଚନା ସମୟ ହେଉଛି ବୀର-କେଶରୀ ଦେବଙ୍କ ୪୨ ଅଙ୍କ ।

"ଶ୍ରୀବୀର କେଶରୀ ଦେବଙ୍କ, ସଂପୂର୍ଣ୍ଣ ବୟାଳିଶ ଅଙ୍କ ।
ଯେ ତୁଳ ପଚିଶ ଦିବସେ, ଶୁଦ୍ଧ ସକଳ ହରିବାସେ ।
ଚିତ୍ରା ନକ୍ଷତ୍ର ରବିବାରେ, ତତ୍ତୁଲ୍ୟ ନାମକରଣରେ ।
× × ×
ସଂପୂର୍ଣ୍ଣ ହେଲା ଏ ଚରିତ, କହଇ ଲକ୍ଷ୍ମଣ ସୁତ ।"

୬-୧୧-୧୭୭୮ ଖ୍ରୀଷ୍ଟାବ୍ଦରେ ତୁଳ ୨୫ ଦିନ, କାର୍ତ୍ତିକ କୃଷ୍ଣ ଏକାଦଶୀ ଯୁକ୍ତ ଦ୍ୱାଦଶୀରେ ହସ୍ତା ନକ୍ଷତ୍ର ଥିଲା, ଉପରବେଳାକୁ ଚିତ୍ରା ନକ୍ଷତ୍ର ପଡ଼ିଥିବା ସମ୍ଭବ-ପର । ଏହାର ବତିଶ ବର୍ଷ ପରେ ଅର୍ଥାତ୍ ୧୮୦୦ ଖ୍ରୀଷ୍ଟାବ୍ଦରେ ଗ୍ରନ୍ଥର ଦ୍ୱିତୀୟ ଭାଗ ସମାପ୍ତ କରିଥିଲେ । ଯଥା—

"ଶ୍ରୀ ମୁକୁନ୍ଦ ଦେବ ରାଜାଙ୍କର, ସଂପୂର୍ଣ୍ଣ ତିନ ଯେ ଅଙ୍କର ।
ମାଘର ମାସ ହରିବାସ, ଶ୍ରୀ ବାଳୁଙ୍କେଶ୍ୱର ପାଶ ।
× × ×
**ଶ୍ରୀଗୁରୁ ଗଦାଧର ଦାସ, ସେ ପାଦ-ପଦ୍ମେ ମୋର ଆଶ ।**
ପ୍ରଥମ ପ୍ରବନ୍ଧ ପଚିଶ, ଅଧ୍ୟାରେ ହୋଇଥିଲା ଶେଷ ।
ତହିଁ ଉତ୍ତାରୁ ମାଧୁଙ୍କର, କୃପାରୁ ବତିଶ ବତ୍ସର ।

---

(୨୦) ଉତ୍କଳ ସାହିତ୍ୟ, ୧୩୬୪ ସାଲ, ମାର୍ଗଶୀର ସଂଖ୍ୟା, ପୃ ୩୧୩-୩୨୧ ।

ତହିଁ ଉପ୍ପରୁ ପଞ୍ଚବଂଶ, ଅଧ୍ୟାରେ ଦାର୍ଢ୍ୟ ଭକ୍ତି ରସ ।
ଦୁଇପ୍ରବନ୍ଧ ମିଶିବାରେ, ସଂପୂର୍ଣ୍ଣ ପଚିଶ ଅଧ୍ୟାରେ ।"

ଗଜପତି ମୁକୁନ୍ଦଦେବ (ଦ୍ୱିତୀୟ)ଙ୍କ ରାଜ ଅଙ୍କ ୧୭୯୯-୧୮୦୦ ପର୍ଯ୍ୟନ୍ତ ଚଳିଥିଲା ।

## କବି ମାଗଣି ପଟ୍ଟନାୟକ

ସେ ପଙ୍ଗାରସିଂହ ଦୁର୍ଗର କୋଟପଲ୍ଲୀ ଗ୍ରାମରେ ଶ୍ରୀ ରଘୁନାଥ ପଟ୍ଟ-ନାୟକଙ୍କ ଔରସରେ ଜନ୍ମଗ୍ରହଣ କରିଥିଲେ । କୋଟପଲ୍ଲୀ ହଳଦିଆ ଗଡ଼ ନିକଟରେ ଅବସ୍ଥିତ ସେ 'ରାମଚନ୍ଦ୍ର ବିହାର' ନାମକ ଏକ ବିଶାଳ ଗ୍ରନ୍ଥ ବୀରକେଶରୀ ଦେବଙ୍କ ୪୫ ଅଙ୍କରେ ସମାପ୍ତ କରିଥିଲେ । ଯଥା—

"ଶ୍ରୀବୀରକେଶରୀ ଦେବ ଶ୍ରୀଦେବ ନୃପତି, ପଞ୍ଚଚାଳିଶ ଅଙ୍କ କନ୍ୟା ସରନ୍ତି ଯେ ।"

ତାଂକ ୪୫ ଅଂକ ୮-୯-୧୭୭୨ରୁ ୨୯-୮-୧୭୭୩ ପର୍ଯ୍ୟନ୍ତ ଚଳିଥିବାରୁ ଉକ୍ତ ଅଙ୍କର କନ୍ୟା ଶେଷରୁ ଅର୍ଥାତ୍ ୧୭୭୨ ଖ୍ରୀଷ୍ଟାବ୍ଦ ଅକ୍ଟୋବର ମାସରେ ଉକ୍ତ ଗ୍ରନ୍ଥ ସମାପ୍ତ ହୋଇଥିଲା । (୨୧)

## କବି ଲକ୍ଷ୍ମଣ ମିଶ୍ର

ଲକ୍ଷ୍ମଣ କବି ବୀରକେଶରୀ ଦେବଂକ ୫୩ ଅଂକରେ **'ଶ୍ରୀକୃଷ୍ଣ ଲୀଳାମୃତ'** ଗ୍ରନ୍ଥ ରଚନା କରିଥିଲେ ।

'ଶ୍ରୀବୀରକେଶରୀ ଦେବ ତେପନ ଅଂକ ତୁଳ ମାସ,
ଦଶଦିନ ଦିନ ଦଶ ଦଣ୍ଡ ଠାରେ ଏହୁ ଗୀତ ଶେଷ ।'

ତାଂକ ୫୩ ଅଂକ ୩-୯-୧୭୭୮ରୁ ୨୨-୯-୧୭୭୯ ପର୍ଯ୍ୟନ୍ତ ପଡ଼ିଥିଲା । ସେହି ଅଂକର ତୁଳ ମାସ ଦଶଦିନ ହେଉଛି ୨୩-୧୦-୧୭୭୮ ତାରିଖ ।

## କବି ଦୟ୍ଯା ଦାସ

ସେ ବୀରକେଶରୀ ଦେବଂକ ଦଶ ଅଂକରେ ସ୍ୱୀୟ **'ଶବ୍ଦବ୍ରହ୍ମ ଗୀତା'** ସମାପ୍ତ କରିଥିବାର ଏହାର ଶେଷ ପଦରୁ ଜଣାଯାଏ । ଯଥା—

"ବରଷ ଦଶ ଏ ଅଂକ ବୃଷମାସ, ଶୁକ୍ଳପକ୍ଷ, ତିଥି ଷଷ୍ଠୀ ମଙ୍ଗଳରେ ହେଲା ସମ୍ପୂର୍ଣ୍ଣ ।
ମୁଁ ଛାର ହୀନ ଅଧମା, ମୋର ଦୋଷ କରକ୍ଷମା, ବାଇମୂର୍ଖ ପାନଜନ ମଧ୍ୟେ ମୁଁ ହୀନ ।"

---

(୨୧) କୋଣାର୍କ, ପ୍ରଥମ ବର୍ଷ, ତୃତୀୟ ସଂଖ୍ୟା ପୃ ୭୭-୭୯ ।

୮-୫-୧୭୪୪ ତାରିଖରେ ବୃଷ ୧୦ ଦିନ, ଜ୍ୟେଷ୍ଠ ଶୁକ୍ଳ ଷଷ୍ଠୀ, ମଙ୍ଗଳବାର ପଡ଼ିଥିଲା । ସେ ଦିନ ବ୍ୟତୀପାତ ଉକ୍ତ ଥିବାର ମନେହୁଏ । ସେ ବୀରକେଶରୀ ଦେବଂକ ୬୪ ଅଂକରେ (୨୪-୯-୧୭୮୭ରୁ ୧୨-୯-୧୭୮୮ ପର୍ଯ୍ୟନ୍ତ) କବି ଦୟାଳ ଦାସ ସ୍ୱୀୟ 'ଅନନ୍ତ ସାଗର ଗୀତା' ସମାପ୍ତ କରିଥିଲେ । ଯଥା—

"ବୀର ଚତୁଃଷଷ୍ଟି ଅଂକରେ, ଜଗନ୍ନାଥ ଘୋଷଯାତ୍ରାରେ
ଏ ଗୀତା ହୋଇଲା ସଂପୂର୍ଣ୍ଣ, ସୁଜନେ ମୋ ଦୋଷ ନ ଘେନ ।"

ଏହି ଦୁଇ ଗ୍ରନ୍ଥ ବ୍ୟତୀତ ତାଂକ କୃତ ଅନ୍ୟ କୌଣସି ଗ୍ରନ୍ଥର ସନ୍ଧାନ ମିଳିନାହିଁ । 'ଅନନ୍ତ ସାଗର ଗୀତା'ରୁ ଜଣାଯାଏ ଯେ କବିଂକ ଜନ୍ମସ୍ଥାନ ହେଉଛି କଟକ ଜିଲ୍ଲାର କୋଦଣ୍ଡା ପରଗଣା, ପରମହଂସଠାରୁ ପଞ୍ଚକୋଶ ଦୂରବର୍ତ୍ତୀ 'ବାଲିଗବନ୍ଧ' ଗ୍ରାମ ।

## କବି ବିଶ୍ୱମ୍ଭର ଦାସ

ସେ ବୀରକେଶରୀ ଦେବଂକ ପାତ୍ର ନୀଳାମ୍ବର ଭ୍ରମରବରରାୟଙ୍କ ନାତି ଓ ହଳଧର ପଟ୍ଟନାୟକଙ୍କ ପୁତ୍ର ଥିଲେ । ସେ 'ବିଚିତ୍ର ରାମାୟଣ' ଅନୁକରଣରେ **'ବିଚିତ୍ର ଭାରତ'** ରଚନା କରିଥିଲେ । ସେ ଏହାର ସଭାପର୍ବରେ ବୀରକେଶରୀ ଦେବଂକ ପ୍ରଶଂସା କରିଛନ୍ତି । ଯଥା—

"ପୃଥ୍ୱୀମଣ୍ଡଳ ସାରଭୂମି ଓଡ଼ିଶା, ଖୁରୁଧା ନାମେ ନଗରେ ।
ତହିଁରେ ନୃପତି ଶ୍ରୀବୀରକେଶରୀ, ପ୍ରତାପରେ ବୀରବର ହେ ।
ମୁକୁଟ ମଣି ଲକ୍ଷେ ରାଜାର ହେ, ଦୟାବନ୍ତ ଆରତ ଲୋକର ହେ ।
ତହୁଁ ଶତ୍ରୁମିତ୍ର ଏକାକାର ହେ ।"

ପୁରୀ ରାଜାଙ୍କୁ **'ଲକ୍ଷେ ରାଜାର ମଉଡ଼ମଣି'** ବୋଲି କହିବା ଅନ୍ତତଃ ଦୁଇଶତ ବର୍ଷ ଆଗରୁ ଚଳିଥିବା ଏହି ଗ୍ରନ୍ଥରୁ ଜଣାଯାଏ । ଗ୍ରନ୍ଥରେ ବୀରକେଶରୀ ଦେବଂକ ଅଂକ ଦିଆଯାଇ ନ ଥିଲେ ମଧ୍ୟ ଏହା ତାଂକ ରାଜତ୍ୱର ଶେଷ ଭାଗରେ ରଚିତ ହୋଇଥିବାର ସ୍ଥିର କରିହେବ । (୨୨)

### ବାଙ୍କୀ

## ପଦ୍ମନାଭ ଶ୍ରୀଚନ୍ଦନ

ସେ ସ୍ୱକୃତ 'ଶଶିରେଖା' କାବ୍ୟ ଭଣିତାଗୁଡ଼ିକରେ 'ବନ୍ଧ ଦୁର୍ଗଈଶ' ଓ 'ବାଙ୍କୀ ନରେଶ' ପ୍ରଭୃତି ପଦ ବ୍ୟବହାର କରିଥିବାରୁ ସେ ବାଙ୍କୀ ରାଜ୍ୟର

(୨୨) 'ବିଚିତ୍ର ଭାରତ' ସଭାପର୍ବ ପୋଥିରୁ ଗୃହୀତ ।

ରାଜା ଥିଲେ । ପଣ୍ଡିତ ନୀଳକଣ୍ଠ ରଥ ଶର୍ମା ବିରଚିତ 'ବାଂକୀ ଇତିହାସ' ଗ୍ରନ୍ଥରୁ ଜଣାଯାଏ ଯେ ପଦ୍ମନାଭ ୧୭୩୫ରୁ ୧୭୫୭ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ତେଣୁ ସେ ବୀରକେଶରୀ ଦେବଂକ ରାଜତ୍ୱର ପ୍ରଥମାର୍ଦ୍ଧରେ ଆବିର୍ଭୂତ ହୋଇଥିଲେ । ଉକ୍ତ 'ଶଶିରେଖା' କାବ୍ୟ ପ୍ରାଚୀ ସମିତି ଦ୍ୱାରା ଉପାଦେୟ ମୁଖବନ୍ଧ ସହ ପ୍ରକାଶିତ ହୋଇଅଛି । ଏହା କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କ 'ଲାବଣ୍ୟବତୀ' କାବ୍ୟର ଅନୁକରଣରେ ଲିଖିତ । ତତ୍କୃତ **'ଇଚ୍ଛାବତୀ'** ନାମକ ଅନ୍ୟ ଏକ କାବ୍ୟର ସନ୍ଧାନ ଏବେ ମିଳିଛି ।

## ଘୁମୁସର

### ଘନ ଭଞ୍ଜ

ଘନ ଭଞ୍ଜ କବିସମ୍ରାଟ୍ ଉପେନ୍ଦ୍ରଙ୍କ ପିତୃବ୍ୟ ଥିଲେ ଏବଂ ତାଙ୍କ ପିତାଙ୍କୁ ତଡ଼ି ଘୁମୁସରରେ ରାଜତ୍ୱ କରିଥିଲେ (୧୭୦୭-୧୭୫୪) । ରାଜ୍ୟାଧିକାର ବିଷୟରେ ସେ ଉପେନ୍ଦ୍ରଙ୍କ ପରମ ଶତ୍ରୁ ଥିଲେ ମଧ୍ୟ ସାହିତ୍ୟ ସାଧନା କ୍ଷେତ୍ରରେ ସେ ତାଙ୍କ ପଦାଙ୍କ ଅନୁସରଣ କରି **'ତ୍ରୈଲୋକ୍ୟ ମୋହିନୀ'** ଓ **'ରସନିଧି'** ନାମକ ଦୁଇଟି କାଳ୍ପନିକ କାବ୍ୟ ରଚନା କରିଥିଲେ । ସେ ୧୭୩୯ ଖ୍ରୀଷ୍ଟାବ୍ଦରେ ବୀରକେଶରୀ ଦେବଙ୍କ ଠାରୁ 'କ୍ଷତ୍ରିୟବର' ପଦବୀ ପ୍ରାପ୍ତ ହୋଇ ଗୌରବ ଅନୁଭବ କରିଥିଲେ । ଉଭୟ ଗ୍ରନ୍ଥରେ 'କ୍ଷତ୍ରିୟବର' ପଦବୀର ବହୁଳ ବ୍ୟବହାର ଥିବାରୁ ସେ ୧୭୪୦ରୁ ୧୭୫୪ ମଧ୍ୟରେ ଗ୍ରନ୍ଥ ଦ୍ୱୟ ରଚନା କରିଥିବାର ସ୍ଥିର କରାଯାଇପାରେ । ଗ୍ରନ୍ଥଦ୍ୱୟ ଏ ପର୍ଯ୍ୟନ୍ତ ଅପ୍ରକାଶିତ । (୨୩)

### ତ୍ରିବିକ୍ରମ ଭଞ୍ଜ

ତ୍ରିବିକ୍ରମ ଭଞ୍ଜ ସ୍ୱକୃତ 'କନକଲତା' କାବ୍ୟରେ ଗଜପତି ବୀରକେଶରୀ ଦେବ ପ୍ରଦତ୍ତ 'କ୍ଷତ୍ରିୟବର' ପଦବୀ ବ୍ୟବହାର କରିଥିବାରୁ ସେ ୧୭୩୯ ଖ୍ରୀଷ୍ଟାବ୍ଦ ପରେ ଉକ୍ତ ଗ୍ରନ୍ଥ ରଚନା କରିଥିବା ସୁନିଶ୍ଚିତ । ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ '୧୫୫୯-୧୫୭୯' ଖ୍ରୀଷ୍ଟାବ୍ଦ ମଧ୍ୟରେ ଉକ୍ତ ଗ୍ରନ୍ଥ ରଚିତ ହୋଇଥିବାର ଲେଖିଛନ୍ତି (୨୪) କିନ୍ତୁ ଏହି ମତ ଭ୍ରାନ୍ତ; ତେଣୁ ଅଗ୍ରାହ୍ୟ । ପଣ୍ଡିତ ବିନାୟକ ମିଶ୍ର ତାଙ୍କୁ ଧନଞ୍ଜୟ ଭଞ୍ଜ ପୁତ୍ର ରୂପେ ଗ୍ରହଣ କରିଛନ୍ତି । (୨୫) ଏହା ମଧ୍ୟ ସତ୍ୟ ନୁହେଁ । ତାଙ୍କର କନକଲତା ନିମ୍ନରେ ପ୍ରଦାନ କରାଗଲା ।

---

(୨୩) ନବଜୀବନ, ତୃତୀୟ ବର୍ଷ, ସପ୍ତମ ସଂଖ୍ୟା, ଓ 'ନାଗରିକ' ମାସିକ ପତ୍ରିକା, ୨ୟ ବର୍ଷ, ଅକ୍ଟୋବର-ନଭେମ୍ବର ସଂଖ୍ୟା ।

(୨୪) 'ଓଡ଼ିଆ ସାହିତ୍ୟର ପରିଚୟ' ଦ୍ୱିତୀୟ ଭାଗ ପୃ ୩୯-୪୦

(୨୫) ଓଡ଼ିଆ ସାହିତ୍ୟର ଇତିହାସ, ପୃ ୧୦୭-୧୦୮




ସେ ବୀରକେଶରୀ ଦେବଙ୍କ ରାଜତ୍ୱର ଶେଷ ଭାଗରେ ଉକ୍ତ ଗ୍ରନ୍ଥ ରଚନା କରିଥିଲେ । କବିସମ୍ରାଟ୍ ଉପେନ୍ଦ୍ରଙ୍କ ପଦାଙ୍କ ଅନୁସରଣ କରି ସେ କାବ୍ୟ ରଚନାରେ ପ୍ରବୃତ୍ତ ହୋଇଥିବାର ସ୍ପଷ୍ଟ ଜଣାଯାଏ ।

## ଧରାକୋଟ

### ଜୟସିଂହ

ସେ ଧରାକୋଟ ରାଜା ରାମଚନ୍ଦ୍ର ସିଂହଙ୍କର ଜ୍ୟେଷ୍ଠପୁତ୍ର ଥିଲେ । ତାଙ୍କ ରାଜତ୍ୱ କାଳର କୌଣସି ଦାନପତ୍ର ମିଳନାହିଁ । କିନ୍ତୁ ତାଙ୍କ ସାନଭାଇ ଗଜେନ୍ଦ୍ର ସିଂହଙ୍କ ଦ୍ୱାରା ବୀରକେଶରୀ ଦେବଙ୍କ ୩୮ ଅଙ୍କ, ୪୧ ଅଙ୍କ ଓ ୫୨ ଅଙ୍କରେ ପ୍ରଦତ୍ତ ତିନୋଟି ଦାନପତ୍ର ଅନୁସାରେ ଯଥାକ୍ରମେ ୧୭୬୬, ୧୭୬୮ ଓ ୧୭୭୯ ଖ୍ରୀଷ୍ଟାବ୍ଦ ତାଙ୍କ ରାଜତ୍ୱରେ ପଡ଼ୁଥିବା ଜଣାଯାଏ । ଅତଏବ ଜୟସିଂହ ୧୭୬୬ ପୂର୍ବରୁ ରାଜତ୍ୱ କରିଥିଲେ । ସେ କ୍ଷେତ୍ରମାହାତ୍ମ୍ୟ, ଭଗବଦ୍ଗୀତା ଓ ମହାଭାରତ ଦ୍ରୋଣପର୍ବର ସରଳ ପଦ୍ୟାନୁବାଦ କରିଥିଲେ ।

### ନରହରି କବିଚନ୍ଦ୍ର

ନରହରି କବିଚନ୍ଦ୍ର ଧରାକୋଟ ଅନ୍ତର୍ଗତ ତିଳୋତ୍ତମାପୁର ଶାସନବାସୀ ବ୍ରାହ୍ମଣ ମଦନକବିଚନ୍ଦ୍ରଙ୍କ ପୁତ୍ର ଥିଲେ । ଜୟସିଂହଙ୍କ ରାଜସଭାରେ ଉତ୍ତରପ୍ରଦେଶର

ଅଯୋଧ୍ୟାରୁ ଆଗତ ବୈଷ୍ଣବ ଗଙ୍ଗାରାମ ଦାସ ନାମକ ଜଣେ ପଣ୍ଡିତ ଥିଲେ। ତାଙ୍କ ଅନୁରୋଧରେ ଓ ଜୟସିଂହଙ୍କ ନିର୍ଦ୍ଦେଶରେ ନରହରି 'ଅଧ୍ୟାତ୍ମ ରାମାୟଣର' ପଦ୍ୟାନୁବାଦ କରିଥିଲେ। ବୈଷ୍ଣବ ଗଙ୍ଗାରାମ ଆସିକାର ତାରାସିଂହ ଗ୍ରାମରେ ମଠ ସ୍ଥାପନ କରି ବାସ କରିଥିଲେ। କବିଚନ୍ଦ୍ର ସ୍ୱଗ୍ରନ୍ଥକୁ ଗଙ୍ଗାରାମଙ୍କ ନାମରେ ଭଣିତା କରିଥିଲେ। ୧୭୫୦ରୁ ୧୭୭୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଏହି ଅନୁବାଦ ସମାପ୍ତ ହୋଇଥିବାର ମନେହୁଏ।

## କୃଷ୍ଣସିଂହ

ସଂସ୍କୃତ ମହାଭାରତର ଅନୁବାଦକ ରୂପେ ଧରାକୋଟ ରାଜା କୃଷ୍ଣସିଂହ ସମଗ୍ର ଉତ୍କଳରେ ସୁପରିଚିତ। ସେ ୧୭୨୯ ଖ୍ରୀଷ୍ଟାବ୍ଦରେ ଜନ୍ମଲାଭ କରି ୧୭୮୮ରେ ପ୍ରାଣତ୍ୟାଗ କରିଥିଲେ। ସେ ତାଙ୍କର ସାତବର୍ଷବ୍ୟାପୀ ଅଳ୍ପ ରାଜତ୍ୱକାଳ (୧୭୮୧-୧୭୮୮) ମଧ୍ୟରେ ଅକ୍ଳାନ୍ତ ପରିଶ୍ରମ କରି ବିରାଟ ମହାଭାରତ ଗ୍ରନ୍ଥ ରଚନା କରିବାକୁ ସମର୍ଥ ହୋଇଥିଲେ। ସେ ହରିବଂଶର ପଦ୍ୟାନୁବାଦ ଓ କେତେକ ରଉପଦୀ ଓ ଚଉତିଶା ମଧ୍ୟ ରଚନା କରିଥିବାର ଜଣାଯାଏ। ବିଭିନ୍ନ ଦାନପତ୍ର ସାହାଯ୍ୟରେ ତାଙ୍କର ନିମ୍ନୋକ୍ତ ବଂଶଲତା ସଂକଳିତ ହୋଇଅଛି।




## ଖଲିକୋଟ

## ବାଲୁଙ୍କି ଶରଣ ବା ବାଲୁଙ୍କେଶ୍ୱର ମର୍ଦ୍ଦରାଜ

ବାଲୁଙ୍କିଶରଣ ଖଲିକୋଟ ରାଜବଂଶର ଜଣେ ପ୍ରସିଦ୍ଧ ରାଜା ଥିଲେ। ସେ ନିଜର ବୀରତ୍ୱ ଓ ସାହାସ ଯୋଗୁଁ ଖୁର୍ଦ୍ଧା ରାଜାଙ୍କଠାରୁ 'ମର୍ଦ୍ଦରାଜ' ଉପାଧି ପ୍ରାପ୍ତ ହୋଇଥିଲେ। ଗଞ୍ଜାମର ପ୍ରସିଦ୍ଧ ନିର୍ମଳଝର ପୁଷ୍କରିଣୀ ତାଙ୍କର କୀର୍ତ୍ତି ଅଟେ। ଏହା ନିକଟରେ ସେ ଏକ ଶ୍ରୀକୃଷ୍ଣ ମନ୍ଦିର ନିର୍ମାଣ କରିଥିଲେ। ସେ ରାମଚନ୍ଦ୍ରଙ୍କ ବିବାହ ସମ୍ବନ୍ଧରେ ଏକ କ୍ଷୁଦ୍ର ଗ୍ରନ୍ଥ ଲେଖିଥିଲେ। ତାଙ୍କ କୃତ ଅନ୍ୟ ଗ୍ରନ୍ଥ ଏପର୍ଯ୍ୟନ୍ତ ମିଳିନାହିଁ।

ବାଲୁଂକେଶଙ୍କ ନାତି ରାଜସିଂହ ୧୭୪୪ରେ ଗ୍ରନ୍ଥ ରଚନା କରିଥିବାରୁ ତାଙ୍କୁ ନିଃସନ୍ଦେହରେ ବୀରକେଶରୀ ଦେବଂକ ରାଜତ୍ୱ ଆରମ୍ଭରେ ଅବସ୍ଥାପିତ କରାଯାଇପାରେ ।




## ରାଜସିଂହ ମର୍ଦ୍ଦରାଜ

ସେ ବାଲୁଂକଶରଣଂକ ନାତି । ସେ ବ୍ରହ୍ମପୁରାଣରୁ କଥାବସ୍ତୁ ସଂଗ୍ରହକରି 'ରାଧାଜନ୍ମାଷ୍ଟମୀ' ବା ରାଧାଷ୍ଟମୀ ବ୍ରତ କଥା ସରଳ ଓଡ଼ିଆ ପଦ୍ୟରେ ରଚନା କରିଥିଲେ । ଗ୍ରନ୍ଥ ଶେଷରେ ଗ୍ରନ୍ଥ ରଚନାର ସମୟ ଦିଆଯାଇଛି । ଯଥା—

'ଶକାବ୍ଦ ଷୋଳଶ ଛଅଷଠିରେ, କାର୍ତ୍ତିକ ମାସ ଶୁକ୍ଳ ଚଉଠିରେ' ଅର୍ଥାତ୍ ଶକାବ୍ଦ ୧୬୬୬ କାର୍ତ୍ତିକ ଶୁକ୍ଳ ଚତୁର୍ଥୀ ତିଥିରେ ବା ୧୭୪୪ ଖ୍ରୀଷ୍ଟାବ୍ଦ ଅକ୍ଟୋବର ୨୮ ତାରିଖରେ **'ରାଧାଷ୍ଟମୀ ବ୍ରତ ଗୀତ'** ସମାପ୍ତ ହୋଇଥିଲା । ଏହି କ୍ଷୁଦ୍ର ରଚନା ସେ କାଳରେ ଶ୍ରୀରାଧାଙ୍କ ଜନ୍ମବର୍ଦ୍ଧମାନ ଲୋକ ପ୍ରିୟତାର ପରିଚାୟକ ।

## ଅନିରୁଦ୍ଧ ଛୋଟରାୟ

ପୂର୍ବାଲୋଚିତ ରାଜସିଂହ ମର୍ଦ୍ଦରାଜଙ୍କ ନାତି ଓ ମଦନଗୋପାଳ ଛୋଟରାୟଙ୍କର ପୁଅ ଅନିରୁଦ୍ଧ ଛୋଟରାୟ ରାଜସିଂହଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ

ବିଷ୍ଣୁ ପୁରାଣ ଅନ୍ତର୍ଗତ 'କୃଷ୍ଣ ଜନ୍ମାଷ୍ଟମୀ ବ୍ରତ' ରଚନା ୧୬୭୦ ଶକାବ୍ଦରେ ସମାପ୍ତ କରିଥିଲେ । ଯଥା—

'ଶକାବ୍ଦ ଷୋଳଶ ସପ୍ତଷଷ୍ଠି ଶ୍ରାବଣରେ, ଏ ଗୀତ ସଂପୂର୍ଣ୍ଣ ଉକ୍ତ ବିଷ୍ଣୁ ପୁରାଣରେ ।
ସପ୍ତଷଷ୍ଠିପଦ ସଂଯୁକ୍ତ ବେଦ ଚରଣରେ, ବିଶେଷ ପୂରିତ ଯେ ଗୋବିନ୍ଦ ଗୁଣରେ ।

ଅତଏବ ଗ୍ରନ୍ଥ ରଚନା କାଳ ହେଉଛି ୧୬୭୦ ଶକାବ୍ଦ ଶ୍ରାବଣ ମାସ ବା ୧୭୪୮ ଖ୍ରୀଷ୍ଟାବ୍ଦ ଜୁଲାଇ ମାସ । ସେ ରାଜ କୁଳସମ୍ଭବ ଥିଲେ ମଧ୍ୟ କନିଷ୍ଠବଂଶୀୟ ହୋଇଥିବାରୁ ସିଂହାସନ ଅଧିକାରି କରି ନ ଥିଲେ । (୨୬)

## ନଳିନାକ୍ଷ ମର୍ଦ୍ଦରାଜ

ଖଲିକୋଟ ରାଜା ରାଜସିଂହ ମର୍ଦ୍ଦରାଜଙ୍କ ପୁତ୍ର ନଳିନାକ୍ଷ ମର୍ଦ୍ଦରାଜ କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କ ଲାବଣ୍ୟବତୀ ଅନୁକରଣରେ 'ଲାବଣ୍ୟନିଧି' ନାମକ ଏକ ଉତ୍କୃଷ୍ଟ କାଳ୍ପନିକ କାବ୍ୟ ରଚନା କରିଥିଲେ । ଏହାର ରଚନା କାଳ ହେଉଛି 'ରନ୍ଧ୍ର-ଅଙ୍କ-ରସ-ରୂପ ଶକ ଅବ୍ଦ ପୂର୍ଣ୍ଣ' ଅର୍ଥାତ୍ ରନ୍ଧ୍ର (୯), ଅଙ୍କ (୯), ରସ (୬), ରୂପ (୧) ବା ୧୬୯୯ ଶକାବ୍ଦ ବା ୧୭୭୭ ଖ୍ରୀଷ୍ଟାବ୍ଦରେ ଏହି ଗ୍ରନ୍ଥ ରଚନା ସଂପୂର୍ଣ୍ଣ ହୋଇଥିଲା । (୨୭)

## ଆଠଗଡ଼

## ମଧୁସୂଦନ ହରିଚନ୍ଦନ ଜଗଦ୍ଦେବ

ସେ ଗଞ୍ଜାମ ଆଠଗଡ଼ ରାଜ୍ୟର ଅଧିପତି ଥିଲେ । ଖୁରୁଧା ଗଜପତି ବଂଶ ଓ ଆଠଗଡ଼ ରାଜବଂଶ ମଧ୍ୟରେ କପରି ଘନିଷ୍ଠ ସମ୍ପର୍କ ଥିଲା ତାହା ପୂର୍ବେ ବର୍ଣ୍ଣିତ ହୋଇଅଛି । ସେ ସଂସ୍କୃତ 'ବୈଶାଖ ମାହାତ୍ମ୍ୟ' ଗ୍ରନ୍ଥର ସରଳ ଓଡ଼ିଆ ପଦ୍ୟାନୁବାଦ କରିଥିଲେ । ସେ ବୀରକେଶରୀ ଦେବଙ୍କ ୨୫ ଅଙ୍କରେ ୩୦-୭-୧୭୫୭ ତାରିଖରେ ଖଣ୍ଡିଏ ତମ୍ବାପଟା ଦାନ କରିଥିବାର ଜଣାଯାଏ । ତେଣୁ ଏହି ବର୍ଷର ପାଖାପାଖି ସେ ଉକ୍ତ ଗ୍ରନ୍ଥ ରଚନା କରିଥିଲେ । ମଧୁସୂଦନ ନୃପଙ୍କ ନାମରେ ଭଣିତା ଥିବା 'ନଳ ଚରିତ' ଗ୍ରନ୍ଥ ମଧ୍ୟ ଏହାଙ୍କ ଦ୍ୱାରା ରଚିତ ହୋଇଥିବାର ମନେହୁଏ । ସେ ମଧ୍ୟ ସଂସ୍କୃତ ଚଣ୍ଡୀର ପଦ୍ୟାନୁବାଦ କରିଥିଲେ । ଏହାର ନାମ 'ଦୁର୍ଗା ରହସ୍ୟ' ।

---

(୨୬) କୋଣାର୍କ, ପ୍ରଥମ ବର୍ଷ, ଚତୁର୍ଥ ସଂଖ୍ୟା, ୧୯୫୯, ପୃ ୩୯-୪୭

(୨୭) ଏହାଙ୍କ ସମ୍ବନ୍ଧରେ ଏକ ଦୀର୍ଘ ପ୍ରବନ୍ଧ ମୋ ଦ୍ୱାରା ୧୦-୬-୧୯୭୫ ତାରିଖ ଦୈନିକ ଆଶାର ରବିବାସରୀୟ ସଂଖ୍ୟାରେ ପ୍ରକାଶିତ ହୋଇଅଛି ।

# ପାରଳାଖେମୁଣ୍ଡି

## ଗଜପତି ଜଗନ୍ନାଥ ନାରାୟଣଦେବ

ପାରଳାଖେମଣ୍ଡିର ମହାରାଜା ଜଗନ୍ନାଥ ନାରାୟଣଦେବ (୧୭୪୮-୧୭୭୧) ଗଜପତି ବୀରକେଶରୀଙ୍କ ଶତ୍ରୁ ଥିଲେ ମଧ୍ୟ, ତାଙ୍କ ପରି ସାହିତ୍ୟର ଜଣେ ପ୍ରଧାନ ପୃଷ୍ଠପୋଷକ ଥିଲେ । ତାଙ୍କ ରାଜସଭା ଅନେକ ବିଶିଷ୍ଟ କବି ପଣ୍ଡିତଙ୍କ ଦ୍ୱାରା ମଣ୍ଡିତ ହୋଇଥିଲା । ସେ ନିଜେ ମଧ୍ୟ ଜଣେ ସୁଲେଖକ ଥିଲେ । ଏ ପର୍ଯ୍ୟନ୍ତ ତାଙ୍କ କୃତ ଦୁଇଖଣ୍ଡ ଗ୍ରନ୍ଥ, ଯଥା **'ନବବୃନ୍ଦାବନଚନ୍ଦ୍ର ବିହାର'** ଓ **'ପ୍ରଭାବତୀ ପରିଣୟ'**ର ସନ୍ଧାନ ମିଳିଛି । 'ନବବୃନ୍ଦାବନଚନ୍ଦ୍ର ବିହାର'ର ରଚନା ସମୟ ଉକ୍ତ ଗ୍ରନ୍ଥରେ ନିମ୍ନମତେ ଲେଖାଯାଇଛି ।

"ଶକାବ୍ଦ ଷୋଳଶ ଅଶୀନଭ, ସମ୍ବତ୍ସର ନାମ ସର୍ବଜିତ ହେ ସୁମତନେ ।
କାର୍ତ୍ତିକ ଶୁକ୍ଳ ପଞ୍ଚମୀରେ ଆରମ୍ଭ କଲୁ ଏ ଗ୍ରନ୍ଥ ବିଧାନ;
ମାଘ ବସନ୍ତପଞ୍ଚମୀରେ ପୂର୍ଣ୍ଣ ।
ମଙ୍ଗଳବାର ଦ୍ୱାଦଶ ଦଣ୍ଡ ଭୋଗ ବତିଶ ନିତା ପ୍ରମାଣ ନେହ ସୁଜନେ ।"

ଶକାବ୍ଦ ୧୬୮୯ ବା ୧୭୬୬-୧୭୬୭ ଖ୍ରୀଷ୍ଟାବ୍ଦରେ ଦାକ୍ଷିଣାତ୍ୟରେ ସର୍ବଜିତ ସମ୍ବତ୍ସର ଚଳୁଥିଲା । ସେ କାର୍ତ୍ତିକ ଶୁକ୍ଳ ପଞ୍ଚମୀ ବା ୭-୧୧-୧୭୬୬ରେ ଉକ୍ତ ଗ୍ରନ୍ଥ ଆରମ୍ଭ କରି ମାଘ, ବସନ୍ତପଞ୍ଚମୀ, ମଙ୍ଗଳବାର ବା ୩-୨-୧୭୬୭ ତାରିଖରେ ଏହାକୁ ସଂପୂର୍ଣ୍ଣ କରିଥିଲେ । ସେ ହରିବଂଶର ଏକ କଥା ଅବଲମ୍ବନରେ 'ପ୍ରଭାବତୀ ପରିଣୟ' ନାମକ ଅନ୍ୟ ଏକ କାବ୍ୟ ରଚନା କରିଥିଲେ ।

ପ୍ରତାପରୁଦ୍ର ନାରାୟଣ ଦେବ
|
ଜଗନ୍ନାଥ ନାରାୟଣ ଦେବ

## କବିଭୂଷଣ ଗୋପୀନାଥ ପାତ୍ର

କବିଭୂଷଣ ଗୋପୀନାଥ ପାତ୍ର କରଣକୁଳ ସମ୍ଭବ କବି-ଭିଷକ୍‌ବର ଓ ପୂର୍ବୋକ୍ତ ଗଜପତି ଜଗନ୍ନାଥ ନାରାୟଣ ଦେବଙ୍କ ସଭାପଣ୍ଡିତ ବାସୁଦେବ ପାତ୍ରଙ୍କ ପୁତ୍ର ଥିଲେ । ତତ୍‌କୃତ 'ରାମଚନ୍ଦ୍ର ବିହାର' ଶେଷ ଛାନ୍ଦରେ ଗ୍ରନ୍ଥ ରଚନା କାଳ ଦିଆ-ଯାଇଛି । ଯଥା—

"ଆନନ୍ଦ ଅବ୍ଦ ବତ୍ସ ମାସ ବିଶଦ ପକ୍ଷେ ପୂର୍ଣ୍ଣ ହେଲା ଗୀତ
ଗୋପୀନାଥ ଦାସ କବି-ଭୂଷଣଙ୍କୁ ରଖ ରଖ ପଦ୍ମନେତ୍ର ।

ସେ ଆନନ୍ଦ ନାମକ ବାର୍ହସ୍ପତ୍ୟ ସମ୍ବତ୍ସର ବା ୧୭୩୪ ଖ୍ରୀଷ୍ଟାବ୍ଦ ନଭେମ୍ବର ମାସରେ ଅଶୀ ଛାନ୍ଦ ବିଶିଷ୍ଟ ବହୁ ରାଗ-ରାଗିଣୀ ସମନ୍ୱିତ ନାନାବିଧ ଅଳଙ୍କାର ମଣ୍ଡିତ **'ରାମଚନ୍ଦ୍ର ବିହାର'** ନାମକ ଏକ ବିରାଟ ରାମ କାବ୍ୟ ରଚନା କରିଥିଲେ ସେ କବି ସମ୍ରାଟ୍ ଉପେନ୍ଦ୍ରଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଏହି ବୃହତ୍ତ ରାମ କାବ୍ୟ ପ୍ରଣୟନ କରିଥିଲେ । ଏହା ଏ ପର୍ଯ୍ୟନ୍ତ ଅପ୍ରକାଶିତ ଅଛି ।

## କବି ହରିକୃଷ୍ଣ ମହାରଣା

ଏ ଜାତିରେ ଚିତ୍ରକର । ଏହାଙ୍କ ପିତାଙ୍କ ନାମ ଫକୀର ମହାରଣା ଓ ମାତାଙ୍କ ନାମ ଲୀଳାବତୀ । ଚିତ୍ରାଙ୍କନ ଓ ମୂର୍ତ୍ତି ଖୋଦନରେ ତାଙ୍କର ଅସାଧାରଣ ଦକ୍ଷତା ଥିଲା । ଓଡ଼ିଆ ଓ ସଂସ୍କୃତ ସାହିତ୍ୟରେ ମଧ୍ୟ ତାଙ୍କର ପ୍ରବେଶ ଥିଲା । ଚିତ୍ରାଙ୍କନ ଯୋଗୁଁ ସେ ପାରଳା ଗଜପତିଙ୍କ ଠାରୁ 'ଲକ୍ଷ୍ମୀପୁର' ଗ୍ରାମ ଦାନ ସ୍ୱରୂପ ପାଇଥିଲେ । ସେ ୧୭୬୨ ଖ୍ରୀଷ୍ଟାବ୍ଦ ପାଖାପାଖି ସଂସ୍କୃତ **'ଏକାଦଶୀ ମାହାତ୍ମ୍ୟ'** ଓଡ଼ିଆରେ ନବାକ୍ଷରୀ ବୃତ୍ତରେ ପଦ୍ୟାନୁବାଦ କରିଥିଲେ । **'ଗୋପୀନାଥ ଜଣାଣ'** ମଧ୍ୟ ତାଙ୍କର ଅନ୍ୟତମ ରଚନା । (୨୮)

## ବଡ଼ ଖେମଣ୍ଡି

## ପୁରୁଷୋତ୍ତମ ଅନଙ୍ଗଭୀମଦେବ

ବୀରକେଶରୀ ଦେବଙ୍କ ସମକାଳୀନ ଖେମୁଣ୍ଡି ଅଧିପତି ପୁରୁଷୋତ୍ତମ ଅନଙ୍ଗଭୀମ ଦେବ (୧୭୨୮-୧୭୭୭) ଏକାଧାରରେ ଜଣେ ତେଜସ୍ୱୀ ବୀର ଓ ଉତ୍କୃଷ୍ଟ ସାହିତ୍ୟସେବୀ ଥିଲେ । ତାଙ୍କ ସଭାରେ ଓଡ଼ିଶାର ଅନେକ ବିଖ୍ୟାତ ପଣ୍ଡିତ ଆଶ୍ରୟ ଗ୍ରହଣ କରିଥିଲେ । ସେ ସେଯୁଗର ଅତ୍ୟନ୍ତ ଲୋକପ୍ରିୟ ଶ୍ରୀରାଧାକୃଷ୍ଣ ଲୀଳାକୁ ଅବଲମ୍ବନ କରି **'କୃଷ୍ଣକେଳି ତରଙ୍ଗିଣୀ'** ନାମକ ଏକ ସୁନ୍ଦର କାବ୍ୟ ରଚନା କରିଥିଲେ ।

## କବିରାଜ କେଶବ ରଥ

ସେ ପୁରୁଷୋତ୍ତମ ଅନଙ୍ଗଭୀମ ଦେବଙ୍କ ସଭା କବି ଥିଲେ । ସେ ତାଙ୍କ ରାଜତ୍ୱ କାଳରେ **'ଅନଙ୍ଗ ରଙ୍ଗିଣୀ'** ନାମକ ଏକ କାଳ୍ପନିକ କାବ୍ୟ ରଚନା କରିଥିଲେ । ତାଙ୍କର 'କବିରାଜ' ପଦବୀ ବହୁ ଗ୍ରନ୍ଥ ପ୍ରଣୟନର ସୂଚନା ଦିଏ । କିନ୍ତୁ ଏ ପର୍ଯ୍ୟନ୍ତ ତାଙ୍କର ଅନ୍ୟ କୌଣସି କୃତିର ସନ୍ଧାନ ମିଳିନାହିଁ ।

---

(୨୮) ପ୍ରବନ୍ଧାବଳୀ, ୬ ଶ୍ୟାମସୁନ୍ଦର ରାଜଗୁରୁ, ପୃ ୧୦୭-୧୧୨ ।

## ଅରକ୍ଷିତ ଦାସ

ଅରକ୍ଷିତ ଦାସ ଅଷ୍ଟାଦଶ ଶତାବ୍ଦୀର ଜଣେ ପ୍ରଧାନ ସାଧକ ଓ ତାଙ୍କ କୃତ ଏକଶତ ଅଧ୍ୟାୟ ବିଶିଷ୍ଟ **'ମହୀମଣ୍ଡଳ ଗୀତା'** ଏକ ଅମର କୃତି । ସେ ବଡ଼ଖେମଣ୍ଡି ରାଜାଙ୍କର ଜ୍ୟେଷ୍ଠ ପୁତ୍ର ଥିଲେ ଏବଂ ତାଙ୍କର ପ୍ରଥମ ନାମ ବୀରବର ଦେଓ । ସେ ମହାପୁରୁଷ ଗୌତମଙ୍କ ପରି ଉନବିଂଶ ବୟସରେ ରାଜପ୍ରାସାଦର ସୁଖସମ୍ଭୋଗ ପରିତ୍ୟାଗ କରି ବହୁ ବନ ପର୍ବତ, ନଦ-ନଦୀ ଓ ଗ୍ରାମ ପାର ହୋଇ ଶ୍ରୀକ୍ଷେତ୍ର ଦର୍ଶନ ପାଇଁ ଗଲେ । କିନ୍ତୁ ତାଙ୍କର ମଳିନ ବେଶଭୂଷା ଓ ଧୂଳିଧୂସରିତ ଶରୀର ଦେଖି ଜଗୁଆଳି ମାନେ ତାଙ୍କୁ ଜଗନ୍ନାଥ ଦର୍ଶନକୁ ଛାଡ଼ିଲେ ନାହିଁ । ସେଠାରୁ ଫେରି ସେ ଖଣ୍ଡଗିରି ଗୁମ୍ଫାରେ କେତେକାଳ ଅତିବାହିତ କରିଥିଲେ । ସେଠାରେ ଥିବା ସମୟରେ ଉକ୍ତ ଗୀତାର ପ୍ରଥମ ୩୫ ଅଧ୍ୟାୟ ଲେଖିଥିଲେ । ତତ୍ପରେ ସେ ବୌଦ୍ଧ କୀର୍ତ୍ତି ରାଜ-ମଣ୍ଡିତ ଲଳିତଗିରି-ରତ୍ନଗିରି ନିକଟବର୍ତ୍ତୀ ଓଲାସୁଣି ପାହାଡ଼ରେ ଶେଷ ଜୀବନ କଟାଇଥିଲେ । ସେଠାରେ ତାଙ୍କର ମହାପ୍ରୟାଣ ଘଟିଥିଲା ଏବଂ ଏପର୍ଯ୍ୟନ୍ତ ତାଙ୍କର ସମାଧିପୀଠ ଏକ ପୁଣ୍ୟ ସ୍ଥାନ ରୂପେ ବିବେଚିତ ହୁଏ । ଏଠାରେ ଅବସ୍ଥାନ ସମୟରେ ସେ 'ମହୀମଣ୍ଡଳ ଗୀତା'ର ଶେଷ ୬୫ ଅଧ୍ୟାୟ ଲେଖିଥିଲେ । ଏହି ଗୀତା ବ୍ୟତୀତ ତାଙ୍କ କୃତ 'ଭକ୍ତିଟୀକା' 'ଶରୀର ଭେଦ' ଓ ଶତାଧିକ ସୁନ୍ଦର ଭଜନର ସନ୍ଧାନ ମିଳେ । (୨୯)

### ଚିକିଟି

## କୁଳମଣି ରାଜେନ୍ଦ୍ର

ଚିକିଟି ରାଜ୍ୟ ଅଧିପତି କୁଳମଣି ରାଜେନ୍ଦ୍ର ଗଜପତି ବୀରକେଶରୀ ଦେବଙ୍କ ୧୦ ଅଙ୍କ ବା ୧୭୪୪ ଖ୍ରୀଷ୍ଟାବ୍ଦ ଓ ୩୯ ଅଙ୍କ ବା ୧୭୬୮ ଖ୍ରୀଷ୍ଟାବ୍ଦରେ ଦେଇଥିବା ଦୁଇଟି ତମ୍ବାପଟା ମିଳିଛି । ସେଥିରୁ ସେ ୧୭୪୪ରୁ ୧୭୬୮ ପର୍ଯ୍ୟନ୍ତ ରାଜତ୍ୱ କରିଥିବା ନିଃସନ୍ଦେହରେ କୁହାଯାଇପାରେ । ସେ ଜଣେ 'ସାହିତ୍ୟ-ରସପଣ୍ଡିତ' ରୂପେ ଖ୍ୟାତି ଲାଭ କରିଥିଲେ ମଧ୍ୟ ତାଙ୍କ କୃତ ଅନେକ ଗୁଡ଼ିଏ ଚଉପଦୀ ବ୍ୟତୀତ ଅନ୍ୟ କୌଣସି ପୂର୍ଣ୍ଣ ଗ୍ରନ୍ଥ ଏପର୍ଯ୍ୟନ୍ତ ମିଳିନାହିଁ ।

## କୃଷ୍ଣଚନ୍ଦ୍ର ରାଜେନ୍ଦ୍ର

କୁଳମଣିଙ୍କ ପରେ ତାଙ୍କ ପୁତ୍ର କୃଷ୍ଣଚନ୍ଦ୍ର ରାଜେନ୍ଦ୍ର ଚିକିଟିର ରାଜା ହୋଇଥିଲେ । ତାଙ୍କ ଦ୍ୱାରା ବୀରକେଶରୀ ଦେବଙ୍କ ରାଜତ୍ୱର ୫୩ ଅଙ୍କ ଓ ୫୬ ଅଙ୍କ

---

(୨୯) ଉତ୍କଳ ସାହିତ୍ୟ, ୧୩୨୭ ଓ ଝଙ୍କାର, ୧୧ଶ ବର୍ଷ, ୧୧ଶ ସଂଖ୍ୟା, ପୃ ୧୦୨୩-୧୦୩୨ ।

ବା ୧୭୭୮ ଓ ୧୭୮୦ ଖ୍ରୀଷ୍ଟାବ୍ଦରେ ପ୍ରଦତ୍ତ ଦୁଇଟି ତମ୍ବାପଟ୍ଟା ଏପର୍ଯ୍ୟନ୍ତ ମିଳିଅଛି । ସେ ୨୧ ବର୍ଷ ରାଜତ୍ୱ କରିଥିବାର ଜଣାଯାଏ । ସେ କାଞ୍ଚୀପୁରମ୍‌ରୁ ଆଗତ ବରଦ ରାଜ ସ୍ୱାମୀ ନାମକ ପଣ୍ଡିତଙ୍କ ସାହାଯ୍ୟରେ ଆର୍ଷ ରାମାୟଣର ଅଯୋଧ୍ୟାକାଣ୍ଡର ପଦ୍ୟାନୁବାଦ ଶେଷ କରିଥିଲେ । ସଂସ୍କୃତରେ ରାଧାବିଳାସ ମହାକାବ୍ୟମ୍‌ର ପ୍ରଣେତା କବିରାଜ ହରେକୃଷ୍ଣ ପୁରୋହିତ ତାଙ୍କୁ 'ଆରଣ୍ୟକ କାଣ୍ଡ' ଅନୁବାଦରେ ସାହାଯ୍ୟ କରିଥିଲେ । 'କିଷ୍କିନ୍ଧ୍ୟା କାଣ୍ଡ'ର ଅନୁବାଦ ପାଇଁ ସେ ପଣ୍ଡିତ ଜଗନ୍ନାଥ ଆଚାର୍ଯ୍ୟଙ୍କ ଠାରେ ଋଣୀ ଥିଲେ । ତାଙ୍କ ଆର୍ଷ ରାମାୟଣର ଅନୁବାଦ ଅତ୍ୟନ୍ତ ଉଚ୍ଚକୋଟୀର । (୩୦)

## ବିକ୍ରମ ନରେନ୍ଦ୍ର ଓ ବିପ୍ର ଜନାର୍ଦ୍ଦନ

କୃଷ୍ଣଚନ୍ଦ୍ର ରାଜେନ୍ଦ୍ରଙ୍କ ଦ୍ୱାରା ପ୍ରୋତ୍ସାହିତ ହୋଇ ବିପ୍ର ଜନାର୍ଦ୍ଦନ (ଜନାର୍ଦ୍ଦନ ମିଶ୍ର) ଓ ବିକ୍ରମ ନରେନ୍ଦ୍ର ନାମକ ଦୁଇଜଣ କବି 'ଶ୍ରୀରାମଚରିତାମୃତ' ବା 'ରାଘବ ଚରିତାମୃତ' ନାମକ ରାମଲୀଳା ରଚନା କରିଥିଲେ । ଏହାର ପ୍ରଥମ ତିନିକାଣ୍ଡର ପୋଥି ଏପର୍ଯ୍ୟନ୍ତ ମିଳିଅଛି । ଏଥିରୁ କେବଳ ଗୋଟିଏ ଗୀତର ଭଣିତାରେ 'କୃଷ୍ଣଚନ୍ଦ୍ର ରାଜେନ୍ଦ୍ର'ଙ୍କ ନାମ ମିଳେ । ଦୁଇଟି ଗୀତରେ କୃପାସିନ୍ଧୁ ଦାସ, ତିନୋଟି ଗୀତରେ କେଶବ ଓ ଗୋଟିଏ ଗୀତରେ ଦ୍ୱିଜ ଗୋପାଳଙ୍କ ନାମ ମିଳେ । ଏହା ବୈଷ୍ଣବ ସଦାଶିବଙ୍କ ପ୍ରସିଦ୍ଧ 'ରାମଲୀଳା' ଅନୁକରଣରେ ରଚିତ ହୋଇଥିଲା । ଏଥିରେ ଋଷିକୁଲ୍ୟା ନଦୀ ଓ ତତ୍ତୀରବର୍ତ୍ତୀ ବୁଦ୍ଧେଶ୍ୱର ଓ କୃଷ୍ଣଗିରିରେ ବିଶେଷ ପ୍ରାଧାନ୍ୟ ଦିଆଯାଇଥିବାରୁ ପ୍ରଧାନ କବିଦ୍ୱୟ ଗଞ୍ଜାମ ଜିଲ୍ଲାବାସୀ ଥିବାର ଅନୁମାନ କରାଯାଇପାରେ ।

## କେଶବ ହରିଚନ୍ଦନ

କେଶବ ହରିଚନ୍ଦନ ନାମକ ଜନୈକ କବି ସରଳ ଭାଷାରେ ରାମଲୀଳା ଗ୍ରନ୍ଥ ରଚନା କରିଥିବାର ଜଣାଯାଏ । ଏହା ଏବେ ମଧ୍ୟ ନାନା ସ୍ଥାନରେ ଅଭିନୀତ ହେଉଅଛି । ଖଳିକୋଟ ରାଜା କୃଷ୍ଣଚନ୍ଦ୍ର ରାଜେନ୍ଦ୍ରଙ୍କ ଉଦ୍ୟମରେ ଲିଖିତ ରାମଲୀଳାରେ କେଶବ ନାମକ ଜନୈକ କବିଙ୍କ ତିନୋଟି ଗୀତ ଦେଖାଯାଏ । ଉଭୟ କେଶବ ଏକ ଓ ଅଭିନ୍ନ ଥିବାର ମନେହୁଏ ।

## କୃପାସିନ୍ଧୁ ଦାସ

ଧରାକୋଟ ଅନ୍ତର୍ଗତ ଋଷିକୁଲ୍ୟା ତୀରବର୍ତ୍ତୀ ମଙ୍ଗଳପୁର ଗ୍ରାମରେ କବି କୃପାସିନ୍ଧୁ ଦାସ ଏକ ବ୍ରାହ୍ମଣ କୁଳରେ ଜନ୍ମଗ୍ରହଣ କରିଥିଲେ । ସେ ଖଣ୍ଡିଏ ରାମାୟଣ

---

(୩୦) ଝଙ୍କାର, ୧୨ଶ ବର୍ଷ, ୭ମ ସଂଖ୍ୟା, ପୃ ୬୮୩-୬୮୭

ରଚନା କରିଥିଲେ । ଏହା ଗଞ୍ଜାମ ଅଞ୍ଚଳରେ କୃପାସିନ୍ଧୁ ରାମାୟଣ ବା 'ସିନ୍ଧୁ ରାମାୟଣ' ନାମରେ ଖ୍ୟାତ । କୃଷ୍ଣଚନ୍ଦ୍ର ରାଜେନ୍ଦ୍ରଙ୍କ ଉଦ୍ୟମରେ ଲିଖିତ 'ରାମଲୀଳା' ଛନ୍ଦୋବଦ୍ଧ କୃପାସିନ୍ଧୁ ଦାସଙ୍କ ନାମରେ ଭଣିତା ଦୁଇଟି ଗୀତ ମିଳେ । ଉଭୟ କୃପାସିନ୍ଧୁ ଦାସ ଏକ ଓ ଅଭିନ୍ନ ଥିବାର ମନେହୁଏ ।

## ପୀତାମ୍ବର ରାଜେନ୍ଦ୍ର

ସେ କୃଷ୍ଣଚନ୍ଦ୍ର ରାଜେନ୍ଦ୍ରଙ୍କ ପୁତ୍ର ଥିଲେ । ତାଙ୍କ କୃତ 'ରାମଲୀଳା' ଗଞ୍ଜାମ, କଳାହାଣ୍ଡି, ଜୟପୁର ଅଞ୍ଚଳରେ ଅତ୍ୟନ୍ତ ଲୋକପ୍ରିୟ ଥିଲା । ତେଣୁ ଏହା ଲୋକ ମୁଖରେ **'ଚକଡି ରାମଲୀଳା'** ନାମରେ ଖ୍ୟାତ । ତାଙ୍କ ଦ୍ୱାରା ପ୍ରଣୀତ ଅପର ଗ୍ରନ୍ଥର ନାମ 'ଖଣ୍ଡ ରାମାୟଣ' ।

## ବଳଭଦ୍ର ଭ୍ରମରବର

ବଳଭଦ୍ର ଭ୍ରମରବର ଚକଡି ରାଜା ପୂର୍ବୋକ୍ତ ପୀତାମ୍ବର ରାଜେନ୍ଦ୍ର ଦେବଙ୍କ ଅନୁଜ ଥିଲେ । ସେ 'ଚନ୍ଦ୍ରପ୍ରଭା' ନାମକ ଏକ ଆଳଙ୍କାରିକ କାବ୍ୟ ରଚନା କରିଥିଲେ । ଏହି କାବ୍ୟର ନାୟକଙ୍କ ନାମ 'ଅନଙ୍ଗ ସୁନ୍ଦର' ଏବଂ ନାୟିକାଙ୍କ ନାମ 'ଚନ୍ଦ୍ରପ୍ରଭା'। ଏହା ଭଞ୍ଜୀୟ ଶୈଳୀରେ ଲିଖିତ ହୋଇଥିଲା । (୩୧)

### କରଡ଼ା

## ବାଳକ ରାମ ଦାସ

ମଥୁରା ନକଚବର୍ତ୍ତୀ ଗଳତ ଗାଦିରୁ ଭକ୍ତ ରାମ ଦାସ ଉତ୍କଳକୁ ଆସି କରଡ଼ା ରାଜ୍ୟର ସୁବର୍ଣ୍ଣପୁର ଗ୍ରାମରେ ଗୋଟିଏ ମଠ ପ୍ରତିଷ୍ଠା କରିଥିଲେ । ରାମ ଭକ୍ତି ପ୍ରଚାର ନିମିତ୍ତ ସେ କରଡ଼ା ରାଜା ଶ୍ୟାମସୁନ୍ଦର ଦେବଙ୍କ ରାଜତ୍ୱ କାଳରେ ୧୬୬୭ ଶକାବ୍ଦରେ 'ଶ୍ରୀରାମ ଭକ୍ତ ରତ୍ନାବଳୀ' ନାମକ ଏକ ଗ୍ରନ୍ଥ ସଂସ୍କୃତ ଭାଷାରେ ରଚନା କରିଥିଲେ । ଯଥା—

"ମହୀନ୍ଦ୍ର କାଳ ସମୟେ ହିମାଂଶୁ ଗଣିତେଽଶକେ
କାର୍ତ୍ତିକେ ଶୁକ୍ଳ ପକ୍ଷସ୍ୟ ଦଶମ୍ୟାଂ ବୁଧବାସରେ
ଗ୍ରାମେ ସୁବର୍ଣ୍ଣପୁର୍ଯ୍ୟାଖ୍ୟେ ଶ୍ୟାମସୁନ୍ଦରମଣ୍ଡଳେ
ସ୍ୱସ୍ଥଳେ ରଘୁନାଥସ୍ୟ ଭକ୍ତରତ୍ନାବଳୀ ବର୍ତ୍ତେ ।"

---

(୩୧) ରାଷ୍ଟ୍ରଭାଷା ରଜତ ଜୟନ୍ତୀ ଗ୍ରନ୍ଥ, ପୃ ୧୩୬

ମନ୍ଦାଗ୍ନି (୭), କାଳ (୭), ସମୁଦ୍ର (୭) ଓ ହିମାଂଶୁ (୧) ବା ୧୭୭୭ ଶକାବ୍ଦ କାର୍ତ୍ତିକ, ଶୁକ୍ଲ, ଦଶମୀ ବୁଧବାର ବା ୨୩-୧୦-୧୭୫୫ ତାରିଖରେ ଉକ୍ତ ଗ୍ରନ୍ଥ ରଚନା ସମାପ୍ତ ହୋଇଥିଲା । ଜରଡ଼ା ଦୁର୍ଗ ଠାରୁ ପ୍ରାୟ ଅଧମାଇଲ ଦୂରରେ ସୁବର୍ଣ୍ଣପୁର ଗ୍ରାମ ଅବସ୍ଥିତ । ସେ ସଂସ୍କୃତ ଅଧ୍ୟାତ୍ମ ରାମାୟଣର ସୂକ୍ଷ୍ମ ସଂଗ୍ରହ କରି ଉକ୍ତ ଗ୍ରନ୍ଥ ରଚନା କରିଥିଲେ । ଏହି ଗ୍ରନ୍ଥ ରଚନା ପରେ ସେ ମୃତ୍ୟୁ ମୁଖରେ ପଡ଼ିଥିଲେ । ତାଙ୍କ ମୃତ୍ୟୁର ଏକମାସ ମଧ୍ୟରେ ତାଙ୍କର ସୁଯୋଗ୍ୟ ଶିଷ୍ୟ ବାଳକ ରାମ ଦାସ ଏହି ଗ୍ରନ୍ଥକୁ ସରଳ ନବାକ୍ଷରୀ ବୃତ୍ତରେ ଅନୁବାଦ କରିଥିଲେ । ଏହାକୁ ଅଧ୍ୟାତ୍ମ ରାମାୟଣର ସାର ସଂଗ୍ରହ କୁହାଯାଇପାରେ । ତାଙ୍କ ରଚିତ ଅନ୍ୟ ଗ୍ରନ୍ଥର ନାମ "ରାମାନନ୍ଦ ଲୀଳାମୃତ" ବା 'ରାମାନନ୍ଦ ଚରିତାମୃତ' । କବିଙ୍କ ଅନ୍ୟ ନାମ ସେବା ଦାସ । ସେବାଦାସ ନାମରେ ଭଣିତା ଥିବା କେତେକ ରଚନା ମଧ୍ୟ ପରିଦୃଷ୍ଟ ହୁଏ । (୩୨)

ସେବା ଦାସ ନାମରେ ଜଣେ କବି, ଯମୁନା କୂଳର ବଂଶୀବଟ ତଳେ ରାଧାକୃଷ୍ଣଙ୍କ ରାହାସ ଲୀଳା ଆଦର୍ଶରେ ସରଯୂ ତୀରରେ ସୀତାରାମଙ୍କ ରାହାସ ଲୀଳା ବର୍ଣ୍ଣନା କରି 'ରାମରାହାସ ପଦ୍ୟାବଳୀ' ନାମରେ ଖଣ୍ଡିଏ ଗ୍ରନ୍ଥ ଲେଖିଥିଲେ । ଉକ୍ତ ସେବାଦାସଙ୍କ ନାମରେ ଭଣିତ ହୋଇଥିବା 'ସୀତାରାମ ଚରିତ' ନାମକ ଆଉ-ଖଣ୍ଡିଏ କ୍ଷୁଦ୍ରଗ୍ରନ୍ଥ ଦେଖିବାକୁ ମିଳେ । 'ରାମାନନ୍ଦ ଚରିତାମୃତ' ପ୍ରଣେତା ସେବା ଦାସ ଓ 'ରାମରାହାସ ପଦ୍ୟାବଳୀ'ର କବି ସେବା ଦାସ ଏକ ଓ ଅଭିନ୍ନ ଥିବାର ସ୍ଥିର କରା-ଯାଇପାରେ ।

## ଚକ୍ରପାଣି ପଟ୍ଟନାୟକ

ଗଞ୍ଜାମ ଜିଲ୍ଲା-ବାସୀ ଚକ୍ରପାଣି ପଟ୍ଟନାୟକ କବିତାର ଆଡ଼ୁ ହାରେ ଓ ପାଣ୍ଡିତ୍ୟ ଯୋଗୁଁ 'ବକ୍ରବାକ୍ ଚକ୍ରପାଣି' ରୂପେ ଖ୍ୟାତି ଲାଭ କରିଥିଲେ । ସେ ତାଙ୍କର ସଂସ୍କୃତ ଭାଷାରେ ଲିଖିତ ପ୍ରସିଦ୍ଧ 'ଗୁଣ୍ଡିଚା ଚମ୍ପୂ' ୧୭-୧୦-୧୭୭୮ ତାରିଖରେ ସମାପ୍ତ କରିଥିବା କାର୍ଷ୍ଟ ଭାବରେ ଜଣାଯାଏ । ସେ ଓଡ଼ିଆ ଭାଷାରେ 'କୃଷ୍ଣବିଳାସ' ନାମକ ୨୧ ସର୍ଗ ବିଶିଷ୍ଟ ଏକ କାବ୍ୟ ରଚନା କରିଥିଲେ । ଏହା ବୀରକିଶୋର ଦେବଙ୍କ ରାଜତ୍ୱର ଶେଷ ଭାଗରେ ସମାପ୍ତ ହୋଇଥିବା ଆପାତତଃ ସ୍ଥିର କରାଯାଇପାରେ ।

## କଣଙ୍କରାୟ ରାଣୀ

ଓଡ଼ିଶାର ଅଷ୍ଟାଦଶ ଶତାବ୍ଦୀର କବିମାନଙ୍କ ମଧ୍ୟରେ ନାରୀ-କବି କଣଙ୍କରାୟ ରାଣୀ ଥିଲ ସୁରଙ୍ଗୀପ୍ରିୟା । ସେ 'ଜରଡ଼ା' ରାଜ୍ୟ ଶାସକ ବାସୁଦେବ ଅଷ୍ଟ ରାଜାଙ୍କ ଦୁହିତା ଥିଲେ । ତାଙ୍କ ପିତା ମଧ୍ୟ ଜଣେ କବି ଥିଲେ । ଯଥା—

(୩୨) କୋଣାର୍କ, ୨ୟ ବର୍ଷ, ପ୍ରଥମ ସଂଖ୍ୟା, ଏପ୍ରିଲ ୧୯୭୦, ପୃ ୧୯-୨୫

" ବାସୁଦେବ ଥାଟ ନୃପ ମୋର ତାତ, କବପତେ ଦୁଣ୍ଡ ସରସ୍ୱତୀ ସୁତ
ତାଙ୍କ ପାଦରଜ ପ୍ରସାଦରୁ ମୁହିଁ, ମଧୁମାଳତୀ ଚରିତ ବଖାଣଇ"

ସେ ଅଧୁନା ଓଡ଼ିଶାରୁ ବିଚ୍ଛିନ୍ନ 'ବୁଢ଼ାରଶିଙ୍ଗୀ' ରାଜ୍ୟର ଗଙ୍ଗବଂଶୀୟ ରାଜା ରାମଚନ୍ଦ୍ର ଦେଓଙ୍କ ପୁତ୍ର ଶ୍ରୀ ଗଉରଚନ୍ଦ୍ର ନଗଙ୍କ ରାୟଙ୍କ ପାଟରାଣୀ ଥିଲେ ।

## ବୁଢ଼ାରଶିଙ୍ଗୀ ରାଜବଂଶ

ନୀଳକଣ୍ଠ ନଗଙ୍କରାୟ ୧୭୬୮
ଶ୍ରୀ ରାମଚନ୍ଦ୍ର ଦେଓ
|
ଶ୍ରୀ ଗଉରଚନ୍ଦ୍ର ନଗଙ୍କ ରାୟ
ତାଙ୍କ ରାଣୀ 'ପଦ୍ମାବତୀ ଅଭିଳାଷ'ର କବି

କିନ୍ତୁ ଅନୁମାନ କରାଯାଏ ଯେ ସ୍ୱାମୀଙ୍କ ସହିତ ମନାନ୍ତର ଘଟିବାରୁ ସେ ପିତୃଗୃହରେ ଦୁଃଖରେ କାଳଯାପନ କରିଥିଲେ । ପତି ବିଚ୍ଛେଦ ଜନିତ, ଦୁଃଖାପନୋଦନ ନିମିତ୍ତ ନାରୀ କବି 'ପଦ୍ମାବତୀ ଅଭିଳାଷ' ବା 'ମଧୁମାଳତୀ କଥାରସ' ନାମକ କାବ୍ୟ ରଚନାରେ ମନୋନିବେଶ କରିଥିଲେ । ଯଥା—

"ସହଜେ ଅବଳା କର୍ମେ ହେଲି ହୀନ, ସୁବୁଦ୍ଧି ନୋହେ ନାହିଁ ପାଠପଠନ
ବନ୍ଧୁ ଆଣି କଲ ମତେ ଏତେ ହଠ, **ସ୍ୱଦେଶରେ ଥିଲେ ହୋଇଥାନ୍ତି ପାଟ**
**ଏକାନ୍ତେ ଦିବା ରଜନୀ ନ ସରଇ,** ତେଣୁ ବାଳବୋଧନେ ମନ ଦେଇ
କହଇ ମଧୁମାଳତୀ କଥା ରସ, ସାଧୁଜନେ ନ ଧରିବା ଦୋଷାଦୋଷ ।"

ଅନ୍ୟତ୍ର ମଧ୍ୟ ନାରୀ କବି ହୃଦୟର ଆବେଗରେ ନିଜର ଦୁଃଖ ପ୍ରକାଶ କରିଛନ୍ତି । ଯଥା—

" କିଛି କରିନାହିଁ ପାଠ ପଠନ, ଧିକ ସ୍ୱଭାବେ ଅଟେ କର୍ମହୀନ
**ରାଜଗୃହେ ବନ୍ଦୀ ପ୍ରାୟେ ହୋଇ ଧନ୍ଦି କଞ୍ଜାଳ ଜାଲେ ହେ,** ସୁଜନେ ।"

ଅଷ୍ଟବିଂଶ ଛାନ୍ଦ ବିଶିଷ୍ଟ ଉକ୍ତ କାବ୍ୟ ଉପରେ ଭଞ୍ଜଙ୍କ 'ଲାବଣ୍ୟବତୀ'ର ପ୍ରଭାବ ସ୍ପଷ୍ଟ ଭାବରେ ଅଙ୍କିତ । ଗ୍ରନ୍ଥର ରଚନା ସମୟ କୁତ୍ରାପି ଉଲ୍ଲେଖ ନାହିଁ । କିନ୍ତୁ ଘୁମୁସର ରାଜ୍ୟରେ ଶ୍ରୀକର ଭଞ୍ଜ ରାଜା ଥିବା ସମୟରେ ଉକ୍ତ ଗ୍ରନ୍ଥ ରଚିତ ହୋଇଥିବାର ଜଣାଯାଏ । ଯଥା—

" ଦିବାକର ବଂଶ **ଶ୍ରୀକରଭଞ୍ଜ** ନରେନ୍ଦ୍ର କେବଳ ତାହାଙ୍କ ଅଂଶୁ ଖ୍ୟାତ ହେ"

ସେ ୧୭୮୮ ଖ୍ରୀଷ୍ଟାବ୍ଦରେ ଘୁମୁସର ରାଜ୍ୟ ସିଂହାସନ ଅଧିକାର କରିଥିବା ନିଃସନ୍ଦେହରେ ଜଣାପାଏ । ଅତଏବ ଏହାର କିଛି ଦିନ ପରେ ଉକ୍ତ ଗ୍ରନ୍ଥ ରଚିତ ହୋଇଥିବା ସ୍ଥିର କରାଯାଇ ପାରେ ।

## ତରଳା

### ଶ୍ରୀକୃଷ୍ଣଶୂର ହରିଚନ୍ଦନ

ସେ ତରଳା ରାଜ୍ୟର ଅଧିପତି ଥିଲେ । ସେ 'ସ୍ୱରସରଣୀ' ନାମକ ସଂସ୍କୃତ ଭାଷାରେ ଲିଖିତ ଜ୍ୟୋତିଷ ଶାସ୍ତ୍ରକୁ ଓଡ଼ିଆରେ ସରଳ ନବାକ୍ଷରୀ ବୃତ୍ତରେ ଅନୁବାଦ କରିଥିଲେ ।

"ପରାଶରର ବଂଶ ଜାତ, ଗୋପାଳେନ୍ଦ୍ରର ନୃପ ସୁତ ।

× × ×

ସ୍ୱରସରଣୀ ନାମେ ଗୀତ, ସୁଜନେ ଜାଣ ତାହା କୃତ ।

"ଇତିଶ୍ରୀ ସୂର୍ଯ୍ୟବଂଶାବତଂସାମ୍ନିତ ସକଳକଳାକୁଶଳ ଶ୍ରେଣୀଶିରୋମଣି କ୍ଷିତିପତି କୃଷ୍ଣଶୂର ହରିଚନ୍ଦନ ବିରଚିତାୟାଂ ସ୍ୱରସରଣୌ" ।

କୃଷ୍ଣଶୂର ହରିଚନ୍ଦନ ବୀରକେଶରୀ ଦେବଙ୍କ ୫୮ ଅଙ୍କ (୪୬ ଅଙ୍କ ହେବ) ଶାର୍ବରୀ ସମ୍ବତ୍ସର, କାର୍ତ୍ତିକ ପୂର୍ଣ୍ଣିମୀ ରବିବାର ଚନ୍ଦ୍ରଗ୍ରହଣ ଦିନ ଜଗନ୍ନାଥ ମହାପାତ୍ରଙ୍କୁ କେଶପୁର ଦାନ କରିଥିବା ଖଣ୍ଡିଏ ତମ୍ବାପଟାରୁ ଜଣାଯାଏ । ଗଣନା ଅନୁସାରେ ଉକ୍ତ ଦିବସ ୧୧-୧୨-୧୭୮୦ ଖ୍ରୀଷ୍ଟାବ୍ଦରେ ପଡ଼ିଥିଲା । ସେ ଅନ୍ୟ ଏକ ତମ୍ବାପଟାରେ ବୀର-କେଶରୀ ଦେବଙ୍କ ରାଜତ୍ୱରେ ପ୍ରମାଦ ସମ୍ବତ୍ସର, ମାଘ ପୂର୍ଣ୍ଣିମୀ ରବିବାର ମକର ୨୫ ଦିନ ? (ପ୍ରକୃତରେ ୧୮ ଦିନ) ନାରାୟଣପୁର ଗ୍ରାମ ଦାନ କରିଥିଲେ । ଗଣନା ଅନୁସାରେ ଏହା ୨୭-୧-୧୭୯୩ ତାରିଖ ହେଉଛି । ଅତଏବ ସେ ବୀରକେଶରୀ ଦେବଙ୍କ ରାଜତ୍ୱର ଶେଷ ଭାଗରେ ଉକ୍ତ ଗ୍ରନ୍ଥ ରଚନା କରିଥିଲେ ।

## ଜୟପୁର

### ବଲ୍ଲଭ ନାରାୟଣ ବେହେରା ମହାପାତ୍ର—

ପ୍ରାଚୀନ ଓଡ଼ିଆ ସାହିତ୍ୟକୁ ଗଞ୍ଜାମର କବିମାନଙ୍କ ଦାନ ଯଥେଷ୍ଟ ଓ ଅବି-ସ୍ମରଣୀୟ । କିନ୍ତୁ ପ୍ରାୟ ଦଶହଜାର ବର୍ଗମାଇଲ ଆକାର (ବର୍ତ୍ତମାନ ଓଡ଼ିଶାର ୫ଅ ଭାଗରୁ ଭାଗେ) ସମୁଚ୍ଚ ଗିରିମାଳା, ଖଣ୍ଡିତ ଓ ଘନ ବନାଚ୍ଛାଦିତ ବିରାଟ ନନ୍ଦପୁର ବା ଜୟପୁର ରାଜ୍ୟ (ବର୍ତ୍ତମାନ ଏହାର ଅଧିକାଂଶ କୋରାପୁଟ ଜିଲା ଅନ୍ତର୍ଗତ)ରେ ପ୍ରାଚୀନ

କାଳରେ ଓଡ଼ିଆ ଓ ସଂସ୍କୃତ ସାହିତ୍ୟ ଚର୍ଚ୍ଚା ସମ୍ବନ୍ଧରେ ବିଶେଷ ବିବରଣ ମିଳି-ନାହିଁ । ଏ ସମ୍ପର୍କରେ ଗବେଷଣା ଫଳରେ ମୋ ଦ୍ୱାରା ପ୍ରକାଶିତ ଦୁଇଟି ପ୍ରବନ୍ଧରେ ଯତ୍‌କିଞ୍ଚିତ୍ ଆଲୋକପାତ ହୋଇଛି । (୩୩) ସେଥିରୁ ଜଣାଯାଏ ଯେ ନନ୍ଦପୁର ରାଜ୍ୟର ପ୍ରାଚୀନ ଲେଖକମାନଙ୍କ ମଧ୍ୟରେ ବଲ୍ଲଭ ନାରାୟଣ ବେହେରା ମହାପାତ୍ର ଅଗ୍ରଗଣ୍ୟ ।




ସେ ଜୟପୁର ରାଜବଂଶର ମନ୍ତ୍ରୀ ପରିବାରରେ ଜନ୍ମଗ୍ରହଣ କରିଥିଲେ । ଏପର୍ଯ୍ୟନ୍ତ ତାଙ୍କ କୃତ 'ବିଷ୍ଣୁ ପୁରାଣ' 'ତୀର୍ଥ ଚିନ୍ତାମଣି' ଓ 'ଶିବଗୀତା' ନାମକ ତିନି-ଖଣ୍ଡି ଗ୍ରନ୍ଥର ସନ୍ଧାନ ମିଳିଲାଣି । 'ବିଷ୍ଣୁ ପୁରାଣ' ନନ୍ଦପୁରରାଜା ବିକ୍ରମଦେବଙ୍କ ରାଜତ୍ୱ କାଳରେ (୧୭୫୮-୧୭୮୧) ସମାପ୍ତ ହୋଇଥିଲା । ତାଙ୍କର 'ତୀର୍ଥ ଚିନ୍ତାମଣି' ଗ୍ରନ୍ଥ ୧୭୨୦ ଶକାବ୍ଦ, କାଳଯୁକ୍ତ ସମ୍ବତ୍ସର, ପୌଷ କୃଷ୍ଣ, ପୁନର୍ବସୁ ନକ୍ଷତ୍ରଯୁକ୍ତ ଦ୍ୱିତୀୟା ସୋମବାର ଦିନ ସମାପ୍ତ ହୋଇଥିଲା । ଗଣନା ଅନୁସାରେ ୨୪-୧୨-୧୭୯୮ ତାରି-ଖରେ ପୌଷ, କୃଷ୍ଣ ୨ୟା (ପୁନର୍ବସୁ ନକ୍ଷତ୍ର ଯୁକ୍ତ) ସୋମବାର ପଡ଼ିଥିଲା । କବି ତୀର୍ଥ-ଯାତ୍ରା ସମୟରେ ଭୁବନେଶ୍ୱରସ୍ଥ ପ୍ରସିଦ୍ଧ ଲିଙ୍ଗରାଜ ମନ୍ଦିରରେ ସାତଦିନ ମଧ୍ୟରେ 'ଶିବଗୀତା' ସମାପ୍ତ କରିଥିଲେ । ଏହାର ରଚନା ସମୟ ସିଦ୍ଧାର୍ଥୀ ସମ୍ବତ୍ସର, ମାର୍ଗଶୀର୍ଷ କୃଷ୍ଣ ପଞ୍ଚମୀ, ଗୁରୁବାର (ପ୍ରକୃତରେ *ରବିବାର, ପୋଥିରେ ଭୁଲରେ ଗୁରୁବାର ଲେଖା ଯାଇଛି) ଏବଂ ସେଦିନ ନକ୍ଷତ୍ର *ଥିଲା ପୁନର୍ବସୁ । ଗଣନା ଅନୁସାରେ ଏହା ହେଉଛି । ୧୭-୧୧-୧୭୯୯ ତାରିଖ । ସେ ଜୟପୁର ରାଜ୍ୟର ତିନିଜଣ ରାଜା, କୃଷ୍ଣଦେବ, ବିକ୍ରମଦେବ (ପ୍ରଥମ) ଓ ରାମଚନ୍ଦ୍ରଦେବ (ଦ୍ୱିତୀୟ)ଙ୍କ ସମସାମୟିକ ଥିଲେ । ସେ ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ସ୍ୱକୃତ ସମୂହଦ୍ୱାରା ବିଶାଳ ନନ୍ଦପୁର ରାଜ୍ୟରେ ଜ୍ଞାନାଲୋକ ବିକୀରଣ କରିଥିଲେ । ତେଣୁ ସେ ଓଡ଼ିଆ ଜାତିର ଚିରସ୍ମରଣୀୟ ।

---

(୩୩) ଝଙ୍କାର, ଦ୍ୱାଦଶବର୍ଷ ତୃତୀୟ ସଂଖ୍ୟା, ପୃ ୨୮୫-୨୮୯ ଓ ୪ର୍ଥ ସଂଖ୍ୟା, (୩୨୪-୩୩୦) ।

## ବିପ୍ର ଭଗୀରଥି ସାମନ୍ତରାୟ

ବିପ୍ର ଭଗୀରଥି ସାମନ୍ତରାୟ ଭରଦ୍ୱାଜ ସନ୍ତାନ ପରମ ବୈଷ୍ଣବ ରଘୁନାଥ ସାମନ୍ତରାୟଙ୍କ ପୁତ୍ର ଥିଲେ । ସେ ପୂର୍ବୋକ୍ତ ବଲ୍ଲଭ ନାରାୟଣଙ୍କ ପୃଷ୍ଠପୋଷକତା ଲାଭ କରି ୧୭୧୮ ଶକାବ୍ଦ, ନଳସମ୍ବତ୍ସର ଭାଦ୍ର, ଶୁକ୍ଳ ଦ୍ୱିତୀୟା, ରବିବାର ସିଂହ ୨୩ ଦିନ ସଂସ୍କୃତରେ ଲିଖିତ 'ନୀକ୍ଷିବୋତ୍ତର ପୁରାଣ'ର ଓଡ଼ିଆ ପଦ୍ୟାନୁବାଦ ସମାପ୍ତ କରିଥିଲେ । ଜ୍ୟୋତିଷ ଗଣନା ଅନୁସାରେ ୧୭୯୬ ଖ୍ରୀଷ୍ଟାବ୍ଦ, ସେପ୍ଟେମ୍ବର ମାସ, ୪ ତାରିଖ ଦିନ ମାସ, ଦିନ, ବାର, ତିଥି ପ୍ରଭୃତି ସବୁ ମିଳିଯାଉଛି । କିନ୍ତୁ ପୋଥିରେ ଲେଖାଥିବା ସମ୍ବତ୍ସର ନଳ ନ ହୋଇ 'ଅନଳ' ହେବ । ଏହା ଲିପିକାର ପ୍ରମାଦ ରୂପେ ଗ୍ରହଣୀୟ । କବି ସ୍ୱଗ୍ରନ୍ଥରେ ନନ୍ଦପୁର ରାଜ୍ୟର ବିଶଦ ବିବରଣ ପ୍ରଦାନ କରିଛନ୍ତି । କବିଙ୍କ ଗ୍ରନ୍ଥ ରଚନା ସମୟରେ **'ଝାଡ଼ଖଣ୍ଡପାତିଶା', 'ନୂ୍ୟନଗଜପତି',** (୩୪) **'ଲକ୍ଷେ ରାଜାଙ୍କ ମୁକୁଟମଣି'** 'ଚଉରାଶି ଦୁର୍ଗର ଅଧୀଶ୍ୱର' ରାଜାଧିରାଜ ରାମଚନ୍ଦ୍ର ଦେବ (ଦ୍ୱିତୀୟ) ନନ୍ଦପୁର ବା ଜୟପୁର ରାଜ୍ୟର ଅଧୀଶ୍ୱର ଥିଲେ । ପୁରାଣ ହୋଇଥିବାରୁ ଏହି ଗ୍ରନ୍ଥ ଦାଣ୍ଡୀବୃତ୍ତରେ ରଚିତ ଏବଂ ଏହାର ଭାଷା ସରଳ, ସାବଲୀଳ ଓ ସର୍ବଜନବୋଧ । ଜନୈକ ବିପ୍ର ଭଗୀରଥି 'ଶ୍ରୀରାମବିଳାସ' ନାମକ ଖଣ୍ଡିଏ ଉପାଦେୟ ରାମ କାବ୍ୟ ରଚନା କରିଥିବାର ଜଣାଯାଏ । ଅନ୍ୟ ବିରୁଦ୍ଧ ପ୍ରମାଣ ନ ମିଳିବା ପର୍ଯ୍ୟନ୍ତ ଉଭୟ ବିପ୍ର ଭଗୀରଥିଙ୍କୁ ଏକ ଓ ଅଭିନ୍ନ ରୂପେ ଗ୍ରହଣ କରାଯାଇପାରେ ।

## ବ୍ରଜସୁନ୍ଦର ଦାସ ମହାରଥା ମହାପାତ୍ର

କବି ବ୍ରଜସୁନ୍ଦରଙ୍କ ପୂର୍ବପୁରୁଷ ତ୍ରିଲୋଚନ ଦାସ ପୁଣ୍ୟତୋୟା ବୈତରଣୀ ତୀରବର୍ତ୍ତୀ ଯାଜପୁର ପରିତ୍ୟାଗ କରି (ବୋଧହୁଏ ମୁସଲମାନମାନଙ୍କ ପ୍ରବଳ ଆକ୍ରମଣ ଯୋଗୁଁ) ଋଷିକୁଲ୍ୟା ତୀରବର୍ତ୍ତୀ ଆଠଗଡ଼ ରାଜ୍ୟର ବାଲିଛେଲି ଗ୍ରାମର ପଶ୍ଚିମ ଭାଗରେ ଜଗନ୍ନାଥ ମନ୍ଦିର ନିକଟରେ ବସତି ନିର୍ମାଣ କରିଥିଲେ । ସେଠାରେ ତାଙ୍କର ଅଧସ୍ତନ ବୃଦ୍ଧପୁରୁଷ ବାସ କରିଥିଲେ ।




(୩୪) ଝଙ୍କାର, ୧୨ଶ ବର୍ଷ, ତୃତୀୟ ସଂଖ୍ୟା, ପୃ ୨୮୫-୨୮୯ ।

ଧୃତରାଷ୍ଟ୍ରଦର ସେଠାରେ ଜନ୍ମଗ୍ରହଣ କରି ତାଙ୍କର ବାଲ୍ୟ ଓ ଯୌବନ କାଳ କଟାଇଥିଲେ । ପରେ ସାହିତ୍ୟରସିକ ବଳିଶାଳ ନନ୍ଦପୁର ରାଜ୍ୟର ଅଧିପତି ବିକ୍ରମ ଦେବଙ୍କ ପୃଷ୍ଠପୋଷକତା ଲାଭ କରି ସ୍ୱଜନ୍ମଭୂମି ପରିତ୍ୟାଗ ପୂର୍ବକ ତତ୍ରତ୍ୟ ରାଇଗଡ଼ ଠାରେ ଜମି ଘରବାଡ଼ି ଲାଭ କରି ରହିଗଲେ । ସେଠାରେ ସୁଖ ଶାନ୍ତିରେ କାଳ ଯାପନ କରି ବିକ୍ରମଙ୍କ ରାଜତ୍ୱ କାଳରେ 'ତ୍ରିଗୁଣ ଭାରତ' ନାମକ ବିଶାଳ ଗ୍ରନ୍ଥ ରଚନା ଆରମ୍ଭ କରିଥିଲେ । ଯଥା

'ଶ୍ରୀନନ୍ଦପୁର ଅଧିପତି, ବିକ୍ରମ ଦେବ ନରପତି ।

× × ×

କ୍ରୋଧନ ନାମ ସମ୍ବତ୍ସର, ଶ୍ରାବଣ ଅଧିକ ମାସର ।' (ଆଦ୍ୟପର୍ବ ଶେଷାଂଶ)

କ୍ରୋଧନ ବା କ୍ରୋଧିନ ସମ୍ବତ୍ସର ୧୭୮୪ ଖ୍ରୀଷ୍ଟାବ୍ଦରେ ପଡ଼ିଥିଲା । କିନ୍ତୁ ସେ ବର୍ଷ ଶ୍ରାବଣ ଅଧି ମାସ ନ ଥିଲା । ତେଣୁ ଏଠାରେ ଲିପିକାର ପ୍ରମାଦ ଯୋଗୁଁ ଏପରି ଭ୍ରମ ରହିଛି । କିନ୍ତୁ ସେ କୌଣସି କାରଣବଶତଃ ଅନେକ ବର୍ଷ ପର୍ଯ୍ୟନ୍ତ ଗ୍ରନ୍ଥ ରଚନା କାର୍ଯ୍ୟ ବନ୍ଦ କରି ୧୭୫୩ ଶକାବ୍ଦ, ଖର ନାମକ ସମ୍ବତ୍ସରରେ ଅର୍ଥାତ୍ ୧୮୩୧ ଖ୍ରୀଷ୍ଟାବ୍ଦରେ ଦ୍ରୋଣ ପର୍ବ ରଚନା ଶେଷ କରିଥିଲେ । ଯଥା—

"ଶକାବ୍ଦ ଶ୍ରୀଶାଳୀବାହନ, ସତର ଶତ ଯେ ତେପନ ।
ଖର ନାମେ ଯେ ସମ୍ବତ୍ସର, ଆଶ୍ୱିନ ଶୁକ୍ଳ ତ୍ରିଦଶର ।
ନକ୍ଷତ୍ର ଭୋଗ ପୂର୍ବଷେଢ଼, ବାସର ନାମ ଅଟେ ବୁଧ ।"

ସ୍ୱର୍ଗାରୋହଣ ପର୍ବରୁ ଜଣାଯାଏ ଯେ 'ତ୍ରିଗୁଣ ଭାରତ' ଗ୍ରନ୍ଥ ଉକ୍ତ ଖର ସମ୍ବତ୍ସରରେ କୁମ୍ଭ, ଦୋଳପୂର୍ଣ୍ଣିମୀ ଦିନ ରାତ୍ରିରେ ସମାପ୍ତ ହୋଇଥିଲା । କବି ସମଗ୍ର ମହାଭାରତକୁ ସତ୍ତ୍ୱ, ରଜ ଓ ତମ—ଏହି ତ୍ରିଗୁଣାତ୍ମକ ଭାବରେ କଳ୍ପନା କରି ଏପରି ନାମକରଣ କରିଥିଲେ । ଯଥା—.

"ମୋତେର ଆଦି ଉଦ୍‌ଯୋଗ, ପର୍ଯ୍ୟନ୍ତେ ରାଜସ ସମ୍ଭବ ।
ଭୀଷ୍ମରୁ ଗଦା ପର୍ବ ଯାଏ, ପ୍ରଧାନ ତାମସ ଏ ହୁଏ ।
ଏହିଁ ଉତ୍ତରୁ ଉତ୍ତପର୍ବ, କେବଳ ସାତ୍ତ୍ୱିକ ଏ ଭାବ ।
ଶ୍ରୀଭଗବତ ଗୀତା ଯୁକ୍ତ, କେବଳ ତହିଁରେ ନିର୍ଗୁଣ ।
× × ×
ଭାରତ ବେଦର ଆକାର, ଅଛନ୍ତି ଯାବତ ପ୍ରକାର ।
ଏଣୁ ଏ ତ୍ରିଗୁଣ ଭାରତ, ବୋଲି ତା ନାମ ହେଲା ଖ୍ୟାତ ।
ସାରଳା ଚଣ୍ଡୀ ଦାସ ହୃଦେ, ଦେବୀ କହିଲେ ଅତି ମୋଦେ ।"

ବ୍ରଜସୁନ୍ଦର ଶ୍ରୀରାଧାକୃଷ୍ଣଙ୍କ ପରମ ଭକ୍ତ ଥିଲେ । **"ଭଣଇ ବ୍ରଜ ସୁନ୍ଦର, ଶ୍ରୀରାଧା-କୃଷ୍ଣ ଇଷ୍ଟ ମୋର ।"** ସରଳ ନବାକ୍ଷରୀ ବୃତ୍ତରେ ନିର୍ଗୁଣାତ୍ମକ ବିରାଟ ମହାଭାରତ ଗ୍ରନ୍ଥ ରଚନା କରି ଦୁର୍ଗମ ଜୟପୁର ରାଜ୍ୟରେ ଜ୍ଞାନାଲୋକ ବିକୀରଣ କରିଥିବାରୁ ଭକ୍ତକବି ବ୍ରଜସୁନ୍ଦର ଓଡ଼ିଆ ଜାତିର ନମସ୍ୟ ।

## କବି ଦୀନବନ୍ଧୁ

କବି ଦୀନବନ୍ଧୁ ଜୟପୁର ବା ନନ୍ଦପୁର ରାଜ୍ୟର ଅନ୍ୟ ଜଣେ ବିସ୍ମୃତ ସାହିତ୍ୟ ସାଧକ । ଗୁଣପୁର ଦେଶର ନ୍ୟୁରାକାମ୍ବିଗୁଡ଼ାସ୍ଥ ଡେଉରାପେଣ୍ଠର ଦକ୍ଷିଣ ସାହିରେ ତାଙ୍କର ବାସସ୍ଥାନ ଥିଲା । ସେ କରଣକୁଳ ସମ୍ଭୂତ ଓ ରାଧା ଦାମୋଦରଙ୍କ ପରମ ଭକ୍ତ ଥିଲେ । "କରଣକୁଳେ ଜାତ ମୋର, ମୋ ଇଷ୍ଟ ରାଧା ଦାମୋଦର ।" କବିଙ୍କ ପିତାଙ୍କ ନାମ ପଶୁରାମ ଏବଂ ତାଙ୍କର କୌଳିକ ପଦବୀ ଥିଲା 'ସୋମନସ' ବା 'ସୋମନସି' । ଯୌବନ କାଳରେ କବିଙ୍କ ପତ୍ନୀ ବିୟୋଗ ଘଟିବାରୁ ତାଙ୍କର ଗଭୀର ଦୁଃଖାଭିଭୂତ ହୃଦୟରେ ବୈରାଗ୍ୟ ଜାତ ହୋଇଥିଲା । ତେଣୁ ସେ ତେଲେଙ୍ଗା ଭାଷାରେ ଲିଖିତ ଓ ଅତ୍ୟନ୍ତ ଲୋକପ୍ରିୟ 'ଧର୍ମାଙ୍ଗଦା ପୁରାଣ'କୁ 'ପତିଭକ୍ତା ପୁରାଣ' ନାମରେ ଓଡ଼ିଆ ନବାକ୍ଷରୀ ବୃତ୍ତରେ ଅନୁବାଦ କରିଥିଲେ । ସ୍ୱୀୟ ସ୍ୱର୍ଗୀୟ ପତିଭକ୍ତା ପତ୍ନୀଙ୍କ ସ୍ମୃତିକୁ ଚିର ସ୍ମରଣୀୟ କରିବା ପାଇଁ କବି ଏହି ଅକ୍ଷର ମାଳମା ମନ୍ଦିର ନିର୍ମାଣ କରିଥିଲେ । ଗ୍ରନ୍ଥ ରଚନା ସମୟରେ କବିଙ୍କ ବୟସ ଥିଲା ୩୫ ବର୍ଷ । ଗ୍ରନ୍ଥଟି ୩୦ଟି ଅଧ୍ୟାୟରେ ବିଭକ୍ତ ଓ ପ୍ରତି ଅଧ୍ୟାୟ ୧୦୦ ପଦ ବିଶିଷ୍ଟ । ସେ ନନ୍ଦପୁର ଅଧିପତି (ଦ୍ୱିତୀୟ) ରାମଚନ୍ଦ୍ର ଦେବଙ୍କ ରାଜତ୍ୱ କାଳରେ ଦୁନ୍ଦୁଭି ନାମକ ସମ୍ବତ୍ସରରେ ବା ୧୮୦୨ ଖ୍ରୀଷ୍ଟାବ୍ଦରେ ଉକ୍ତ ଗ୍ରନ୍ଥ ରଚନା ସମାପ୍ତ କରିଥିଲେ । (୩୫)

## ସମ୍ବଲପୁର

## କବି ଗୋପାଳ ତେଲେଙ୍ଗା

ଗୋପାଳ ଜାତିରେ ତେଲେଙ୍ଗା ଥିବାର ତାଙ୍କ କୃତ ଅଧ୍ୟାତ୍ମ ରାମାୟଣରୁ ଜଣାଯାଏ । "ତେଲେଙ୍ଗା କୁଳେ ମୁହିଁ ଜାତ, ନାମ ମୋର ଗୋପାଳ ପଣ୍ଡିତ ।" ସେ ସମ୍ବଲପୁର ମହାରାଜ ଅଜିତ ସିଂହଙ୍କ ଅଧୀନରେ ସୈନିକ ରୂପେ କାର୍ଯ୍ୟ କରୁଥିଲେ । କିନ୍ତୁ ସେ ନିଜର ଅବସର ସମୟରେ ନଅର ପୂର୍ବକୁ ଥିବା ଜଗନ୍ନାଥ ମନ୍ଦିର ମଣ୍ଡପରେ ରାଜଗୁରୁ କହ୍ନାଇ ମିଶ୍ରଙ୍କ ଠାରୁ ନିତ୍ୟ ପୁରାଣ ରାମାୟଣ ଇତ୍ୟାଦି ଶ୍ରବଣ କରୁଥିଲେ । ତାଙ୍କ ଠାରୁ ଶୁଣି ଶୁଣି ସେ ଅଧ୍ୟାତ୍ମ ରାମାୟଣ ଅନୁବାଦରେ ପ୍ରବୃତ୍ତ ହୋଇଥିଲେ ।

---

(୩୫) କୋଣାର୍କ, ପ୍ରଥମ ବର୍ଷ, ଦ୍ୱିତୀୟ ସଂଖ୍ୟା

ସେ ଏହାକୁ ଲୋକପ୍ରିୟ ଭାଗବତ ବା ନବାକ୍ଷରୀ ବୃତ୍ତରେ ଅନୁବାଦ କରିଥିଲେ ।
ସେ ଗ୍ରନ୍ଥ ରଚନା ସମୟ ଦେଇ ନ ଥିଲେ ମଧ୍ୟ ତାହାଙ୍କ ଦ୍ୱାରା ବର୍ଣ୍ଣିତ କେତେକ
ଘଟଣା ମାଧ୍ୟମରେ ଏହାର କାଳନିର୍ଣ୍ଣୟ କରାଯାଇପାରେ । ଯଥା—

"ଅଜିତସିଂହ ମହାରାଜ, ଶ୍ରୀଛତ୍ର ସାହିଙ୍କ ଆତ୍ମଜ ।
ସମ୍ବଲପୁରର ଈଶ୍ୱର, ସମ୍ବଲେଶ୍ୱରୀ ଇଷ୍ଟ ଯାର ।
× × ×
ଦକ୍ଷିଣ ରାୟ ଦିଆନଙ୍କୁ, ସମର୍ପି ସକଳ କାର୍ଯ୍ୟକୁ ।
ବସାଇ ନୋଖା ଆୟତନ, ଭୋଗ କରନ୍ତି ନିଶ୍ଚିନ୍ତେଣ ।
ସେ ଅବା କେତେର ଦସ୍ତପାଠ, ଭୟରେ ସେବଇ ନିକଟ ।
× × ×
**ଦକ୍ଷିଣ ଦେଶୀ ମରଠାୟେ, ଧ୍ୱଂସିଲେ ପୂର୍ବଖଣ୍ଡ କାୟେ ।**
ସେ ପୁଣି ସମ୍ବଲପୁରେଣ, ଭୟରେ ନଛୁଅନ୍ତି ପୁଣ ।
ଆବର ରାଜାଙ୍କୁ ଭେଟନ୍ତି, ଯେ ତାଙ୍କ ସୈନ୍ୟ ସେନାପତି ।
**ଭାସ୍କର ଆଦି ରଘୁରାୟେ,** ସେନାଙ୍କୁ ଦିଅନ୍ତି ହସ୍ତିଯେ ।
ସେ ରୂପେ ପ୍ରତାପ ଯେତେକ, ତାହା ମୁଁ କହିବ କେତେକ ।"

ଉଦ୍ଧୃତ କେତେକ ପଦରୁ ସ୍ପଷ୍ଟ ଜଣାଯାଏ ଯେ ଉକ୍ତ ଗ୍ରନ୍ଥ ରଚନା ସମୟ ପୂର୍ବରୁ ମରଠାମାନେ ଗଞ୍ଜାମର ଛତ୍ରପୁର ଅଞ୍ଚଳରେ ଥିବା ପୂର୍ବଖଣ୍ଡ ପର୍ଯ୍ୟନ୍ତ ଆକ୍ରମଣ କରିସାରିଥିଲେ । ଏହି ମରହଟ୍ଟା ଅଭିଯାନ ୧୭୪୨ ଖ୍ରୀଷ୍ଟାବ୍ଦରେ ଘଟିଥିଲା । "ଭାସ୍କର ଆଦି ରଘୁରାୟେ" ହେଉଛନ୍ତି ପ୍ରସିଦ୍ଧ ମରହଟ୍ଟା ସେନାପତି ଭାସ୍କର ପଣ୍ଡିତ ବା ଭାସ୍କର ରାଓ ପନ୍ଥ ଏବଂ ନାଗପୁରର ମରହଟ୍ଟା ରାଜା ପ୍ରଥମ ରଘୁଜୀ ଭୋନ୍‌ସଲା । ଉକ୍ତ ଗ୍ରନ୍ଥ ରଚନା ସମୟରେ ଭାସ୍କର ପନ୍ଥ ସମ୍ବଲପୁର ପରାକ୍ରାନ୍ତ ରାଜା ଅଜିତ ସିଂହଙ୍କୁ ହସ୍ତୀ ପ୍ରଭୃତି ଉପଢୌକନ ଦ୍ୱାରା ବଶୀଭୂତ କରି ଓଡ଼ିଶା ସୁବା ରାଜଧାନୀ କଟକ ଓ ବଙ୍ଗ ସୁବା ରାଜଧାନୀ ମୁର୍ଶିଦାବାଦ ଆକ୍ରମଣ କରିଥିଲେ । ଏହି ଆକ୍ରମଣର ସମୟ ହେଉଛି ୧୭୪୧-୧୭୪୪ । ଆଲିବର୍ଦ୍ଦି ଖାଁ ୧୭୪୪ରେ ଭାସ୍କର ପଣ୍ଡିତଙ୍କୁ ସନ୍ଧି କରିବାର ଛଳନା କରି ବିଶ୍ୱାସଘାତକତା ପୂର୍ବକ ହତ୍ୟା କରିଥିଲେ । **ଅତଏବ ଏହି ଗ୍ରନ୍ଥ ୧୭୪୧ରୁ ୧୭୪୪ ଖ୍ରୀଷ୍ଟାବ୍ଦ ମଧ୍ୟରେ ରଚିତ ହୋଇଥିଲା ।** ଅଜିତ ସିଂହ ଓ ରାଜ୍ୟରେ ସର୍ବେସର୍ବା ଥିବା ତାଙ୍କ ଦିଆନ୍ ଦକ୍ଷିଣ ରାୟଙ୍କ ବିଷୟ ବିବରଣୀ ସମ୍ବଲପୁର ଗେଜେଟିୟରରେ ମିଳେ । (୩୬)

(36) Sambalpur District Gazetteer, by O. Malley, P. 42.

ଗୋପାଳ ତେଲିଙ୍ଗାଙ୍କ 'ଅଧ୍ୟାତ୍ମ ରାମାୟଣ' ସମ୍ବଲପୁର ଅଞ୍ଚଳରୁ ଆବିଷ୍କୃତ ଓଡ଼ିଆ ଗ୍ରନ୍ଥ ଗୁଡ଼ିକ ମଧ୍ୟରେ ପ୍ରାଚୀନତମ। ସମ୍ବଲପୁର ଅଞ୍ଚଳ ତଥା ସମଗ୍ର ଓଡ଼ିଆଭାଷୀ ବିରାଟ ଖଣ୍ଡରେ କପରି ଭକ୍ତକବି ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତର ପ୍ରଭାବ ବଦ୍ଧମୂଳ ଥିଲା ତାହା ନିଃସନ୍ଦେହରେ ପ୍ରତିପାଦିତ ହୁଏ। ସମ୍ବଲପୁର ଇତିହାସ ଆଲୋଚନା ପାଇଁ ଏଥିରୁ ବହୁ ଉପାଦାନ ମିଳେ। (୩୭)

## ମୟୂରଭଞ୍ଜ

### ରଘୁନାଥ ଭଞ୍ଜ

ମୟୂରଭଞ୍ଜ ଅଧୀଶ୍ୱର ରଘୁନାଥ ଭଞ୍ଜ କୃତ 'ରସଲହରୀ' ନାମକ ଏକ କାଳ୍ପନିକ କାବ୍ୟ ୧୯୨୭ରେ ସ୍ୱର୍ଗତ ଶଶିଭୂଷଣ ରାୟଙ୍କ ଦ୍ୱାରା ସମ୍ପାଦିତ ଓ ପ୍ରକାଶିତ ହୋଇଅଛି। ଗ୍ରନ୍ଥରୁ କବିଙ୍କ ନିମ୍ନୋକ୍ତ ବଂଶପରିଚୟ ମିଳେ। ଯଥା—

"**ରସଲହରୀ** ଚରିତ ଏଠାରୁ ହେଲା ରହିତ,
ଏହାକୁ ଯେହୁ ପଢ଼ିବ ଶ୍ରମ ବୁଝିବ ଏ। ୭୮
**ଉତ୍କଳ ମଧ୍ୟ ଦେଶର ହରିହର ପୁରବର,**
ମଧ୍ୟରେ ଅବନୀଶ୍ୱର ସେ ଭଞ୍ଜ ବୀର ଏ। ୭୯
**କୃଷ୍ଣଭଞ୍ଜ** ନୃପ ନାମ ତାଙ୍କ ପୁତ୍ର **ତ୍ରିବିକ୍ରମ,**
ପରାକ୍ରମେ ତ୍ରିବିକ୍ରମ ସେ ଅନୁପମ ଏ। ୮୦
ତାଙ୍କ ପୁତ୍ର **ସର୍ବେଶ୍ୱର** ବିଷ୍ଣୁ ଭକ୍ତ ମଧ୍ୟେ ସାର,
ସେ **ବୀରବିକ୍ରମ** ତାତ ତାହାଙ୍କ ସୁତ ଏ। ୮୧
ଗୁରୁ ଅଙ୍ଗଦେ ଶୋଭିତ କାଳିକା କାନ୍ତ ପୂଜିତ,
ସତ୍ୟଭାମାରେ ସଂଯୁତ ଅରାତିଜିତ ଏ। ୮୨
ରାମ-କୃଷ୍ଣ-ପଦ-କଞ୍ଜ ଭ୍ରମର **ରଘୁନାଥ ଭଞ୍ଜ,**
ନୃପଗ୍ରନ୍ଥ ବିଦ୍ୟାଦିଗ୍ଗ କଲେକ ଶେଷ ଏ।" ୮୩

ହରିହରପୁର ବା ବର୍ତ୍ତମାନ ହରିପୁର ଗଡ଼ ପୂର୍ବେ ମୟୂରଭଞ୍ଜର ରାଜଧାନୀ ଥିଲା। ଏଥିରେ ବର୍ଣ୍ଣିତ କୃଷ୍ଣ ଭଞ୍ଜ ପ୍ରସିଦ୍ଧ ମୋଗଲ ସେନାପତି ଖାନ୍-ଇ-ଦୁରାନ୍‌ଙ୍କ ସହିତ ଭୁମୁଳ ଯୁଦ୍ଧ କରିଥିବା ଜଣାଯାଏ। ତାଙ୍କର ଅଧସ୍ତନ ଚତୁର୍ଥ ପୁରୁଷ ରଘୁନାଥ ଭଞ୍ଜ ୧୭୨୮ରୁ ରାଜତ୍ୱ ଆରମ୍ଭ କରିଥିଲେ। (୩୮)

---

(୩୭) ଗୋପାଳ ତେଲିଙ୍ଗାଙ୍କ ସମୟ ନିର୍ଦ୍ଧାରଣ ପ୍ରଥମେ ମୋ ପ୍ରକାଶିତ ପ୍ରବନ୍ଧରେ କରାଯାଇଥିଲା। ଦୈନିକ ଆଶା, ୧୩-୫-୪୫।

(38) Studies in Mughal India by Sir J.N. Sarkar, P. 205,207.

## କବିଙ୍କ ବଂଶାବଳୀ

ଶ୍ରୀକୃଷ୍ଣ ଭଞ୍ଜ (୧୬୬୦ ନଭେମ୍ବରରେ ମୃତ୍ୟୁ)
|
ନୀଳକଣ୍ଠ ଭଞ୍ଜ (୧୬୬୦–୧୬୮୮)
|
ମହାରାଜା ସର୍ବେଶ୍ୱର ଭଞ୍ଜ (୧୬୮୮–୧୭୧୧)
|
ବୀର ବିକ୍ରମାଦିତ୍ୟ ଭଞ୍ଜ (୧୭୧୧–୧୭୨୮)
|
ରଘୁନାଥ ଭଞ୍ଜ (୧୭୨୮–୧୭୫୦)

ରସଲହରୀର ପ୍ରଥମ ଛାନ୍ଦରେ ଭଞ୍ଜଙ୍କ 'ବୈଦେହୀଶ ବିଳାସ'ର ଏବଂ ପଞ୍ଚମ ଓ ଷଷ୍ଠ ଛାନ୍ଦରେ ଭଞ୍ଜଙ୍କ ଲାବଣ୍ୟବତୀର ପ୍ରଭାବ ସୁସ୍ପଷ୍ଟ । ସେହି ତାଳପତ୍ର ପୋଥି ଯୁଗରେ ଗମନାଗମନ ଓ ବାର୍ତ୍ତା ପ୍ରେରଣର ବିଶେଷ ସୁବିଧା ନ ଥିବା ସତ୍ତ୍ୱେ ସୁଦୂର ନୟାଗଡ଼ ରାଜ୍ୟର ଏକ ଅଜ୍ଞାତ ପଲ୍ଲୀରେ ସାହିତ୍ୟ ସାଧନାରେ ନିରତ କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କ ଅମର ପ୍ରତିଭାର ଔଜ୍ଜ୍ୱଲ୍ୟ ଆଲୋକ କପରି ପ୍ରାୟ କୋଡ଼ିଏ ବର୍ଷ ମଧ୍ୟରେ ସମଗ୍ର ଓଡ଼ିଆଭାଷୀ ଅଞ୍ଚଳକୁ ଉଦ୍ଭାସିତ କରିଥିଲା, ତାହାହିଁ ଏଠାରେ ବିଶେଷ ପ୍ରଣିଧାନ ଯୋଗ୍ୟ । (୩୯)

## ଢେଙ୍କାନାଳ

### କବି ବ୍ରଜନାଥ ବଡ଼ଜେନା

କବିଙ୍କ ବଂଶରେ ପ୍ରଚଳିତ କିମ୍ବଦନ୍ତୀ ଓ ତାଙ୍କ ନିଜ ଲେଖାରୁ ଜଣାଯାଏ ଯେ, ସେ ଉତ୍କଳ ପ୍ରସିଦ୍ଧ ଭକ୍ତପ୍ରବର ରଘୁ ଅରକ୍ଷିତଙ୍କ ବଂଶରେ ଜନ୍ମଗ୍ରହଣ କରିଥିଲେ । ସେ ଜାତିରେ ଶିଷ୍ଟକରଣ ଥିଲେ । ତାଙ୍କର କୌଣସି ପୂର୍ବ ପୁରୁଷ ପ୍ରାୟ ସପ୍ତଦଶ ଶତାବ୍ଦୀର ପ୍ରାରମ୍ଭରେ ଢେଙ୍କାନାଳରେ ବାସ କରିବାକୁ ଲାଗିଲେ । ତାଙ୍କ ପିତାଙ୍କ ନାମ ବାଳୁଙ୍କେଶ୍ୱର ପଟ୍ଟନାୟକ । ତାଙ୍କର ଚାରିପୁତ୍ର ଥିଲେ—ଗୋପୀନାଥ, ଜଗନ୍ନାଥ, ବ୍ରଜନାଥ, ଲୋକନାଥ । ପ୍ରତ୍ୟେକ ଭାଇ ଶିକ୍ଷିତ ଓ କବି ଥିଲେ । ବ୍ରଜନାଥ ୧୭୩୦ ଖ୍ରୀଷ୍ଟାବ୍ଦ ଆଖପାଖରେ ଜନ୍ମଗ୍ରହଣ କରିଥିଲେ । ଜଗନ୍ନାଥ 'କବିଭୂଷଣ' ଉପାଧି ଲାଭ

---

(୩୯) ଶ୍ରୀ ପରମାନନ୍ଦ ଆଚାର୍ଯ୍ୟଙ୍କ ଦ୍ୱାରା ୧୯୨୭ରେ ମୁଦ୍ରିତ ଓ ପ୍ରକାଶିତ 'ବଂଶାନୁଚରିତ' ପୁସ୍ତକରୁ ଉକ୍ତ ବଂଶଲତା ଗୃହୀତ ।

କରିଥିଲେ । ସେ **'ଗୋପୀବିରହ'** ନାମକ ଗ୍ରନ୍ଥ ରଚନା କରିଥିବାର ଜଣାଯାଏ । କନିଷ୍ଠ ଲୋକନାଥ ରାଉତରାୟ **'ବସନ୍ତରାସ'**ର ପ୍ରଣେତା ଥିଲେ ।

ବ୍ରଜନାଥ ଜଣେ ପ୍ରତିଭାଶାଳୀ କବି, ଚିତ୍ରକର ଓ ଶିଳ୍ପୀ ଥିଲେ ଥିଲେ । ତାଙ୍କର ସଂସ୍କୃତ, ଓଡ଼ିଆ, ବଙ୍ଗଳା, ହିନ୍ଦୀ ଓ ତେଲୁଗୁ ଭାଷାରେ ପାଣ୍ଡିତ୍ୟ ଥିଲା । ତାଳପତ୍ର, କାଗଜ, କାଠପଟା, ଅଭ୍ର ଆଦିରେ ଚିତ୍ରାଙ୍କନ ଓ ମୂର୍ତ୍ତି ନିର୍ମାଣରେ ସେ ସୁଦକ୍ଷ ଥିଲେ । ୧୭୫୫ରୁ ୧୭୭୮ ଖ୍ରୀଷ୍ଟାବ୍ଦ ମଧ୍ୟରେ **ବିଚକ୍ଷଣା, ଚତୁରବିନୋଦ, କେଳିକଳାନିଧି, ତ୍ରିଭୁବନ ସୁନ୍ଦରୀ, ବିଦେଶାନୁଚିନ୍ତା, ଛପନପଦିଆ, ଦଶପୋଇ, ବିଭିନ୍ନ ଚୌପଦୀ, ଚଣ୍ଡୀମାଳଶ୍ରୀ, ଜଣାଣ, କୃଷ୍ଣଲୀଳା, ଗୋପୀବିଳାପ, ଶ୍ୟାମରାସୋତ୍ସବ, ଅମ୍ବିକା ବିଳାସ** ପ୍ରଭୃତି ଗ୍ରନ୍ଥ ରଚନା କରିଥିଲେ । ସେ ଜୀବନର ଶେଷ ଭାଗରେ **ସମରତରଙ୍ଗ** (୧୭୮୧) **ରାଜନଙ୍କୁ ଛଳ ଉକ୍ତି** (୧୭୮୫), **ରାଜସଭା** (୧୭୯୦–୯୧) ଓ **ଗୁଣ୍ଡିଚା ବିଜେ** (୧୭୯୩–୯୮) ପ୍ରଣୟନ କରିଥିଲେ । ତାଙ୍କର ରଚନାବଳୀ ମଧ୍ୟରେ 'ଚତୁରବିନୋଦ' ସେ ଯୁଗର ଗଦ୍ୟରେ ଲିଖିତ । ଏହାର ରଚନା ଶୈଳୀ ଅତି ଚମତ୍କାର । ତେଣୁ ଏହା ଓଡ଼ିଆ ଭାଷାରେ ଏକ ଅଦ୍ୱିତୀୟ ଗ୍ରନ୍ଥ ।

ସେ ଜୀବନର ପ୍ରଥମାବସ୍ଥାରେ କୌଣସି ରାଜାଶ୍ରୟ ଲାଭ କରି ନ ଥିଲେ । ତେଣୁ ଅର୍ଥୋପାର୍ଜନ ନିମିତ୍ତ ସେ ସୁଦୂର କଲିକତା ନଗରୀରେ କିଛି କାଳ ଅବସ୍ଥାନ କରିଥିଲେ । 'ପର ରାଜ୍ୟରୁ ଯାଇ ଅର୍ଜି ଆଣିଲି, **ଟଙ୍କା ଆଣିଲି କଲିକତାରୁ ଯାଇ'** 'ଅମ୍ବିକା ବିଳାସ' କାବ୍ୟ ତାଙ୍କର ଏକ ଶ୍ରେଷ୍ଠ କୃତିତ୍ୱ । ଏହା କବି ସମ୍ରାଟଙ୍କ 'ବୈଦେହୀଶ ବିଳାସ' ଆଦର୍ଶରେ ଲିଖିତ ହୋଇଥିଲା । କେନ୍ଦୁଝରର ରାଜାଙ୍କ ପୃଷ୍ଠପୋଷକତାରେ ସେ ଉକ୍ତ ଗ୍ରନ୍ଥ ରଚନା କରିଥିବାରୁ ଏହାର ଭଣିତାରେ ତାଙ୍କ ନାମ ଦେଖାଯାଏ । ଢେଙ୍କାନାଳ ରାଜା ପ୍ରତାପୀ ତ୍ରିଲୋଚନ ମହେନ୍ଦ୍ର ବାହାଦୁର (୧୭୭୨-୧୭୯୨ ଖ୍ରୀଷ୍ଟାବ୍ଦ) କେତେ କାଳ କବିଙ୍କୁ ନିଜ ରାଜସଭାରେ ଆଶ୍ରୟ ଦେଇଥିଲେ । ସେଠାରେ ଥିବା ସମୟରେ ସେ ୧୭୮୧ ଖ୍ରୀଷ୍ଟାବ୍ଦରେ ଢେଙ୍କାନାଳ ରାଜା ଓ ମରହଟ୍ଟା ମାନଙ୍କ ମଧ୍ୟରେ ଘଟିଥିବା ଯୁଦ୍ଧ ବିଷୟରେ 'ସମରତରଙ୍ଗ' ନାମକ ଏକ କାବ୍ୟ ରଚନା କରିଥିଲେ । ଏଥିରେ ସେ ନିଜର ଦେଶପ୍ରାଣତା ଏବଂ ଉତ୍କଳୀୟମାନଙ୍କ ରଣନିପୁଣତାର ସୁନ୍ଦର ପରିଚୟ ଦେଇଛନ୍ତି । କବିଙ୍କ ରଚନା ଶୈଳୀ, ବର୍ଣ୍ଣନାଭଙ୍ଗୀ ଓ ବ୍ୟଙ୍ଗୋକ୍ତିରେ ପରିପାଟୀ ଏହାକୁ ଓଡ଼ିଆ ଭାଷାରେ ଏକ ଅଦ୍ୱିତୀୟ ଗ୍ରନ୍ଥର ସ୍ଥାନ ପ୍ରଦାନ କରିଛି । ହିନ୍ଦୀ ଭାଷାରେ ମରହଟ୍ଟା ମାନଙ୍କ ମନ୍ତ୍ରଣା ବର୍ଣ୍ଣନା ଏବଂ ଯୁଦ୍ଧ ପ୍ରଣାଳୀର ସୂକ୍ଷ୍ମ ଚିତ୍ର ପ୍ରଦାନ କରି କବି ନିଜ ରଚନାକୁ ଜୀବନ୍ତ ଓ ଚିତ୍ତାକର୍ଷକ କରିପାରିଛନ୍ତି । ସେ କାଳରେ ବ୍ୟବହୃତ ନାନା ଯୁଦ୍ଧୋପଯୋଗୀ ଅସ୍ତ୍ରଶସ୍ତ୍ର ଓ ରଣବାଦ୍ୟ ଗୁଡ଼ିକର ବିବରଣୀ ଦ୍ୱାରା କବି ଏହାର ଉପାଦେୟତା ବୃଦ୍ଧି କରିଛନ୍ତି ।

ତ୍ରିଲୋଚନ ମହୀନ୍ଦ୍ର ବାହାଦୁରଙ୍କ ମୃତ୍ୟୁ ପରେ କବି ଢେଙ୍କାନାଳ ପରିତ୍ୟାଗ କରି ଖୁର୍ଦ୍ଧା ରାଜା ଦ୍ୱିତୀୟ ଦିବ୍ୟସିଂହ ଦେବ (୧୭୯୩-୧୭୯୮)ଙ୍କ ଆଶ୍ରୟ ଲାଭ କରି ପୁରୀରେ ଅବସ୍ଥାନ କରିଥିଲେ । ସେଠାରେ ଥିବା ସମୟରେ ସେ ହିନ୍ଦୀ ଭାଷାରେ 'ଗୁଣ୍ଡିଚ୍ଚ ବିଜେ' ନାମକ ଗୀତିକାବ୍ୟ ରଚନା କରି ଗଜପତି ଦିବ୍ୟସିଂହ ଦେବଙ୍କୁ ଭେଟିଥିବା ଏହାର ଶେଷ ଦୋହାରୁ ଜଣାଯାଏ ।

## ଦୋହା

"ଭୂପବର ମାଥମଣି ଦିବ୍ୟସିଂହ ଦେବ ମଣି ସଚଲ ଜଗନ୍ନାଥ ତିନଲୋକ ବୋଲ ।
ପୂରୁବ ତପ ମେରି ହୁଏ, ଶ୍ରୀମୁଖ ଶଶି ଦର୍ଶନ କଏ, ଦୁଃଖତମ ଛେଦ ହୁଦ କୁମୁଦ ଫୁଲ ।
ଗୁଣ୍ଡିଚ୍ଚ କବିତା ଗୀତେ ଛନ୍ଦ ପରବନ୍ଧକୃତ ବହୁତ ବିଧ ଯାଚକ ବାତ ଖ୍ୟାଲ ।
ହୁକୁମ ପରମାଣ କୃଷ୍ଣଶଙ୍କର ହଜୁରେ ପଢ଼ ବର୍ଣ୍ଣମୟ ଚୂର୍ଣ୍ଣିକ ଭି ଫିର୍ ବୋଲ ।"

ଓଡ଼ିଆ ଭାଷାରେ ଭାରତ ପ୍ରସିଦ୍ଧ ଗୁଣ୍ଡିଚ୍ଚ ଯାତ୍ରା ସମ୍ବନ୍ଧରେ ଅନେକ ରଚନା ଥିଲେ ମଧ୍ୟ ଏହା ଅତୁଳନୀୟ । କବି ଶ୍ରୀକ୍ଷେତ୍ରରେ ଅବସ୍ଥାନ ସମୟରେ ମୃତ୍ୟୁ ମୁଖରେ ପଡ଼ିଥିବାର ଜଣାଯାଏ । (୪୦)

## ଶ୍ୟାମସୁନ୍ଦର ଦେବ

ବୀରକେଶରୀ ଦେବଙ୍କ ପୁତ୍ର ଶ୍ୟାମସୁନ୍ଦର ଦେବ ସ୍ୱୀୟ 'ଅନୁରାଗ କଳ୍ପଲତା' ଗ୍ରନ୍ଥ ପାଇଁ ଖ୍ୟାତି ଲାଭ କରିଥିଲେ । ଭଞ୍ଜଙ୍କ 'ବୈଦେହୀଶ ବିଳାସ'ର ପ୍ରତ୍ୟେକ ପାଦ ଆଦ୍ୟରେ 'ବ' ଥିଲା ପରି ଏହାର ପ୍ରତ୍ୟେକ ପାଦ 'ଅ' ବା 'ଆ' ଅକ୍ଷରରେ ଆରମ୍ଭ ହୋଇଛି । ଗ୍ରନ୍ଥରେ ସେ ନିଜର ପରିଚୟ ଓ ରଚନା ସମୟ ଦେଇଛନ୍ତି । ଗ୍ରନ୍ଥଟି ଆଠଟି ସ୍ତବକରେ ବିଭକ୍ତ, ପ୍ରତି ସ୍ତବକରେ ଆଠଟି କୁସୁମ ଅଛି ।

"ଅବନୀପାଳ **ଶ୍ରୀ ରାମଚନ୍ଦ୍ର ଦେବ** ଖ୍ୟାତ ଯେ,
ଆତ୍ମଜ **ବୀରକେଶରୀ ଦେବ** ନୃପବର ଯେ ।
ଅଧିରାଜ ରାଜାଙ୍କର ବଂଶ ପଦ୍ମ ରବି,
**ଆତ୍ମଜ ଶ୍ୟାମସୁନ୍ଦର ଦେବ** ଖ୍ୟାତ ଭୁବି ଯେ ।
ଅନବରତରେ ରାଧାମାଧବରେ ଧ୍ୟାନ,
ଅନୁକମ୍ପା ବଶୁ ଲୀଳା ବର୍ଣ୍ଣନରେ ମନ ଯେ ।"

---

(୪୦) ଶ୍ରୀ ସୁଧାକର ପଟ୍ଟନାୟକଙ୍କ ଦ୍ୱାରା ସଂପାଦିତ ଓ ପ୍ରକାଶିତ 'ସମରତରଙ୍ଗ' 'ଗୁଣ୍ଡିଚ୍ଚ ବିଜେ' ଓ କବିଙ୍କ ଜୀବନୀରୁ ସଂଗୃହୀତ ।

ଅନ୍ୟନ ସେ ଲେଖିଛନ୍ତି ଯେ ଟିକାଲି ରାଜା ରଘୁନାଥ ଜଗଦ୍ଦେବଙ୍କ ସ୍ୱର୍ଣ୍ଣ ଓ ହାରକ ନାମକ ଦୁଇଝିଅଙ୍କୁ ବିବାହ କରିଥିଲେ ।

" ଅଟେ ପାର୍ଥିବ **ଟିକାଲି ଧବ,** ଆଖ୍ୟାତ **ରଘୁନାଥ ଜଗଦ୍ଦେବ ।**
ଆତ୍ମଜା ବେନି ମହୀମଣ୍ଡନ, ଅଟେ ଦେବୀ ସ୍ୱର୍ଣ୍ଣ ହାରକ ନାମ୍ନୀ ।"

ଗ୍ରନ୍ଥ ରଚନା ସମୟ, ଯଥା—

"ଅଟେ ଯେ ଶାଳୀବାହନ, ଶକ ଅବ୍ଦ ସଂଖ୍ୟା ମାନ ।
ଅଧିକ ଚବିଶ ସପ୍ତଦଶ ଶତ, ଯେ ମାସ ମାର୍ଗଶୀର ପୁଣ ।"

ଅର୍ଥାତ୍ ଉକ୍ତ ଗ୍ରନ୍ଥ ୧୭୨୪ ଶକାବ୍ଦ ବା ୧୮୦୨ ଖ୍ରୀଷ୍ଟାବ୍ଦରେ ସମାପ୍ତ ହୋଇଥିଲା । ତାଙ୍କ କୃତ ଅନ୍ୟ କୌଣସି ରଚନାର ସନ୍ଧାନ ଏପର୍ଯ୍ୟନ୍ତ ମିଳିନାହିଁ ।

## ଅଭିମନ୍ୟୁ ସାମନ୍ତସିଂହାର

ଓଡ଼ିଶାର ପ୍ରାଚୀନ କବିମାନଙ୍କ ମଧ୍ୟରେ ଦୀନକୃଷ୍ଣ, ଉପେନ୍ଦ୍ର, ଅଭିମନ୍ୟୁ ଓ କବିସୂର୍ଯ୍ୟ ଏହି ଚାରିଜଣ ଶ୍ରେଷ୍ଠ ରୂପେ ବିବେଚିତ ହୁଅନ୍ତି । ସେ ୧୭୫୭ ଖ୍ରୀଷ୍ଟାବ୍ଦରେ କଟକ ଜିଲାର ବାଳିଆ ନାମକ ଗ୍ରାମରେ ଇନ୍ଦ୍ରଜିତଙ୍କ ଔରସରେ ଓ ତୁଳସୀ ଦେବୀଙ୍କ ଗର୍ଭରୁ ଜନ୍ମଗ୍ରହଣ କରିଥିଲେ । ସେ ଯୁଗର ଜଣେ ପ୍ରସିଦ୍ଧ କବି ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ବା ମହାନ୍ତ ସାଧୁଚରଣ ଦାସ ବାଲ୍ୟ କାଳରେ ତାଙ୍କର ଶିକ୍ଷାଗୁରୁ ଓ ଯୌବନରେ ଦୀକ୍ଷାଗୁରୁ ଥିଲେ । ତାଙ୍କର ପ୍ରାରମ୍ଭିକ ରଚନାବଳୀ ଅତି ଚମତ୍କାର ଏବଂ ନୈସର୍ଗିକ କବି ପ୍ରତିଭାର ଦ୍ୟୋତକ । ଯୌବନରେ କବିସୂର୍ଯ୍ୟ ବ୍ରହ୍ମାଙ୍କ ଶିକ୍ଷା ଯୋଗୁଁ ଏହି ଶକ୍ତି ସଂପୂର୍ଣ୍ଣ ବିକାଶ ଲାଭ କରି ତାଙ୍କ କୃତି ସମୂହରେ ଆତ୍ମ ପ୍ରକାଶ କରିଥିଲା । କବିଙ୍କ **'ବିଦଗ୍ଧ ଚିନ୍ତାମଣି'** ପ୍ରାଚୀନ ଓଡ଼ିଆ ସାହିତ୍ୟ ଭଣ୍ଡାରରେ ଏକ ଅତୁଳନୀୟ ରତ୍ନ । ସେ ବୀରକେଶରୀଦେବଙ୍କ ରାଜତ୍ୱର ଶେଷ ଭାଗରେ ତାଙ୍କର ସମସ୍ତ ଉତ୍କୃଷ୍ଟ ଗ୍ରନ୍ଥ ରଚନା କରିଥିବାର ମନେହୁଏ । ତାଙ୍କ 'ରସବତୀ' କାବ୍ୟ ବୀରକେଶରୀ ଦେବଙ୍କ ୬୯ ଅଙ୍କରେ ରଚିତ ହୋଇଥିବା ଉକ୍ତ ଗ୍ରନ୍ଥ ପାଠରୁ ଜଣାଯାଏ । 'ଶ୍ରୀ ବୀରକେଶରୀ ନୃପତି, ନବ ଷଷ୍ଠି ଅଙ୍କେ ସମାପ୍ତି ।' ଗଜପତିଙ୍କ ୬୯ ଅଙ୍କ ୯-୯-୧୭୯୧ରୁ ୨୯-୮-୧୭୯୨ ପର୍ଯ୍ୟନ୍ତ ଚାଲିଥିଲା । ଏ ଦୁଇଖଣ୍ଡ ଗ୍ରନ୍ଥ ବ୍ୟତୀତ ସେ ପ୍ରୀତିଚିନ୍ତାମଣି, ସୁଲକ୍ଷଣା, ପ୍ରେମକଳା ଓ ପ୍ରେମତରଙ୍ଗିଣୀ ନାମକ ଅନ୍ୟ କେତେକ ଗ୍ରନ୍ଥ ରଚନା କରିଥିବାର ଜଣାଯାଏ । କବି ୧୮୦୬ ଖ୍ରୀଷ୍ଟାବ୍ଦରେ ଇହଧାମ ତ୍ୟାଗ କରିଥିଲେ ।

## ଦୀନବନ୍ଧୁ ଖାଡ଼ଙ୍ଗା

ଦୀନବନ୍ଧୁ ଖାଡ଼ଙ୍ଗା ସଂସ୍କୃତ ଭାଷାରେ ଲିଖିତ ସମଗ୍ର ମୂଳ ଭାଗବତକୁ ସରଳ ଓଡ଼ିଆ ନବାକ୍ଷରୀ ବୃତ୍ତରେ ଅନୁବାଦ କରିଥିଲେ । ଏଥି ମଧ୍ୟରୁ ଏକାଦଶ ସ୍କନ୍ଧ ପ୍ରାଚୀ ସମିତି ଦ୍ୱାରା ମୁଦ୍ରିତ ଓ ପ୍ରକାଶିତ ହୋଇଅଛି । ଅନ୍ୟ ସ୍କନ୍ଧ ଗୁଡ଼ିକ ଏ ପର୍ଯ୍ୟନ୍ତ ଅପ୍ରକାଶିତ । ସମୁଦାୟ ଭାଗବତର ପୋଥି ପ୍ରାଦେଶିକ ସଂଗ୍ରହାଳୟରେ ସଂରକ୍ଷିତ । ସେଥିରେ ପ୍ରଦତ୍ତ ବଂଶ ପରିଚୟରୁ ଜଣାଯାଏ ଯେ କୈଶିକସଗୋତ୍ର ବାମଦେବ ବାଜପେୟୀ ପୁରୀ ଅଞ୍ଚଳରେ ଅବସ୍ଥିତ ବାମଦେବପୁର ଶାସନ ଦାନ ପାଇଥିଲେ । ବାମଦେବ ବାଜପେୟୀଙ୍କ ପରିଚୟ କବି ଦେଇନାହାନ୍ତି । କିନ୍ତୁ କୈାଶିକ ବଂଶରେ କେବଳ ଜଣେ ବାମଦେବ ବାଜପେୟୀ ପ୍ରସିଦ୍ଧି ଲାଭ କରିଥିବାର ଜଣାଯାଏ । ସେ ହେଉଛନ୍ତି ଗଜପତି ପ୍ରତାପରୁଦ୍ରଙ୍କ ରାଜଗୁରୁ ପ୍ରସିଦ୍ଧି ବଳଭଦ୍ର ମିଶ୍ରଙ୍କ ବଡ଼ଭାଇ ପଣ୍ଡିତ ବାମଦେବ ମିଶ୍ରଙ୍କ ଜ୍ୟେଷ୍ଠ ପୁତ୍ର ବାମଦେବ ବାଜପେୟୀ । ଉଭୟ ଏକ ଓ ଅଭିନ୍ନ ଥିବାର ଆପାତତଃ ସ୍ଥିର କରାଯାଇପାରେ । ବାମଦେବ ବାଜପେୟୀଙ୍କ ସମୟ ପ୍ରାୟ ୧୫୨୦–୧୫୫୦ ଖ୍ରୀଷ୍ଟାବ୍ଦ । ଦୀନବନ୍ଧୁ ତାଙ୍କର ଅଧସ୍ତନ ସପ୍ତମ ପୁରୁଷ । ତାଙ୍କ ପିତା ମଧୁସୂଦନ ମିଶ୍ର ବୈତରଣୀ ତୀରବର୍ତ୍ତୀ 'ମୁକୁନ୍ଦପୁର' ନାମକ ଗ୍ରାମରେ ବସତି ସ୍ଥାପନ କରିଥିଲେ ।

ବାମଦେବ ବାଜପେୟୀ

|

ସର୍ବେଶ୍ୱର ବାଜପେୟୀ

|

ଦୁର୍ଗାଦାସ ବାଜପେୟୀ

|

ଗୋଲୋକ ମିଶ୍ର

|

ଜୀବଦାସ ମିଶ୍ର

|

ମଧୁସୂଦନ ମିଶ୍ର

|

ଦୀନବନ୍ଧୁ ଖାଡ଼ଙ୍ଗା

ଦୀନବନ୍ଧୁ ତାଙ୍କ ଗ୍ରନ୍ଥ ରଚନା କାଳ ଗ୍ରନ୍ଥର କୌଣସି ସ୍ଥାନରେ ଉଲ୍ଲେଖ କରିନାହାନ୍ତି । କେବଳ ତାଙ୍କ ଗୁରୁ ପରଂପରା ନିର୍ଦ୍ଦେଶ କରିଛନ୍ତି । ଏଥିରୁ ତାଙ୍କ ଗ୍ରନ୍ଥ ରଚନା କାଳ ଆପାତତଃ ନିର୍ଣ୍ଣୀତ ହୋଇପାରେ । ଯଥା—

"ବୈଷ୍ଣବ **ବୃନ୍ଦାବନ** ଦାସ, ଶ୍ରୀକୃଷ୍ଣ ଭକ୍ତରେ ଲାଳସ ।
ଶ୍ରୀନିତ୍ୟାନନ୍ଦ ପରିବାର, ଅଟନ୍ତି ଅତି ଶୁଦ୍ଧାଗୃହ ।
ଯେ ଅଟେ ତାହାଙ୍କର ଶିଷ୍ୟ, **ବୈଷ୍ଣବ ଜୟରାମ ଦାସ ।**
ତାଙ୍କ ପ୍ରୀତିରେ ବଶ ହେଲି, ଭାଗବତକୁ ଗୀତ କଲି ।
ଗୌଡ ବାରାଣସୀ ଉତ୍କଳ, ଏ ତିନି ଦେଶ ପୋଥି ତୁଲ ।
କରଣ ଶୁଦ୍ଧାଶୁଦ୍ଧ ଜାଣି, ଗୀତକୁ ରଚିଲି ପ୍ରମାଣି ।"

ଉତ୍କଳ ଦେବ ଗୋସ୍ୱାମୀଙ୍କୁ ବୀରକେଶରୀଦେବ ୩୬ ଅଙ୍କ ମେଷ ୫ ଦିନ ଖଣ୍ଡିଏ ସନନ୍ଦ ଦ୍ୱାରା କେତେକ ଅଧିକାର ପ୍ରଦାନ କରିଥିବାର ଜଣାଯାଏ । (୨୬) ଏହାର ସମୟ ହେଉଛି ୧୭୬୬ ଖ୍ରୀଷ୍ଟାବ୍ଦ । ବୃନ୍ଦାବନ ଦାସ ଗୋସ୍ୱାମୀଙ୍କୁ ପୂର୍ବରୁ ଦିଆଯାଇଥିବା କେତେକ ଜମିକୁ ମରହଟ୍ଟା ସରକାର ୧୧୯୯ ଅମଲି ବା ୧୭୯୩ ଖ୍ରୀଷ୍ଟାବ୍ଦରେ ପ୍ରଦତ୍ତ ଏକ ସନନ୍ଦ ଦ୍ୱାରା କାଏମ କରିଥିବା ଜଣାଯାଏ (୪୨) । ଅତଏବ ତାଙ୍କର ସମକାଳୀନ ଧାନବନ୍ଧୁ ଖାଡ଼ଙ୍ଗା ବୀରକେଶରୀ ଦେବଙ୍କ ରାଜତ୍ୱର ଶେଷ ଭାଗରେ ଭାଗବତର ପଦ୍ୟାନୁବାଦ କରିଥିବା ସ୍ଥିର କରାଯାଇପାରେ । ଏହାଙ୍କ ଭାଗବତ ଲୋକ ମୁଖରେ 'ଖାଡ଼ଙ୍ଗା ଭାଗବତ' ନାମରେ ପ୍ରସିଦ୍ଧି ଲାଭ କରିଥିଲା ।

## ସଂଗୀତକର୍ତ୍ତା ବନମାଳୀ ଦାସ

ଓଡ଼ିଆ ସାହିତ୍ୟର ଇତିହାସରେ ଏକାଧିକ ବନମାଳୀ ଦାସ ପ୍ରସିଦ୍ଧି ଲାଭ କରିଥିଲେ । ସେଥି ମଧ୍ୟରୁ 'ଚଇତଚ୍ଛାବଳି' ପ୍ରଣେତା ବନମାଳୀ ଦାସ ଓ ରାସ ପ୍ରଣେତା ଶିଶୁ ବନମାଳୀ ଦାସ, ଷୋଡଶ ଶତାବ୍ଦୀର ମଧ୍ୟ ଭାଗରେ ଆବିର୍ଭୂତ ହୋଇଥିଲେ । ଆଉ ଜଣେ ବନମାଳୀ ଦାସ ଗୋସ୍ୱାମୀ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ଶିଷ୍ୟ ଗଦାଧରଙ୍କ ସଂପ୍ରଦାୟ ଭୁକ୍ତ ଥିଲେ । ସେ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ ଗୁରୁ କିଶୋର ଦାସ ଗୋସ୍ୱାମୀଙ୍କ ଗୁରୁ ଥିଲେ । ସେ ଓ ସଂଗୀତ କର୍ତ୍ତା ବନମାଳୀ ଏକ ଓ ଅଭିନ୍ନ ଥିବାର ପ୍ରମାଣ ମିଳିନାହିଁ । ଆଉ ଜଣେ ବନମାଳୀ ଦାସ ପୁରୀ ଦୋଳମଣ୍ଡପ ସାହି ନିବାସୀ ଥିଲେ । ତାଙ୍କ ଗୁରୁଙ୍କ ନାମ ଲକ୍ଷ୍ମଣ ଚକ୍ରବର୍ତ୍ତୀ । ସେ ବୀରକେଶରୀ ଦେବଙ୍କ ୨୩ ଅଙ୍କ ବା ୧୭୫୪ ଖ୍ରୀଷ୍ଟାବ୍ଦରେ ସଚିତ୍ର ରାମାୟଣ ରଚନା କରିଥିଲେ । ସଂଗୀତ କର୍ତ୍ତା ବନମାଳୀ ତାଙ୍କ ଠାରୁ ସ୍ୱତନ୍ତ୍ର ।

---

(୪୧) ଉକ୍ତ ସନନ୍ଦଟି ଟିକାଲିରାଜା ସ୍ୱର୍ଗତଃ ଲକ୍ଷ୍ମୀ: ନା: ହ: ଜଗଦ୍ଦେବ ପ୍ରକାଶ କରିଥିଲେ । ମହକାର ଦ୍ୱାବିଂଶ ଭାଗ ୩-୪ର୍ଥ ସଂଖ୍ୟା ପୃ ୨୩୦-୨୩୨ ।

(୪୨) ଏହି ସନନ୍ଦର ନକଲ ପ୍ରାଦେଶିକ 'ନଥିପତ୍ର ସଂଗ୍ରହାଳୟ' **Orissa State Archives**ରେ ସଂରକ୍ଷିତ ।

ଗଜପତି ବୀରକେଶରୀ ଦେବଙ୍କ ସ୍ୱୀକୃତି ଓ ପୃଷ୍ଠପୋଷକତା ଲଭକରି ଶ୍ରୀରାଧାକୃଷ୍ଣ ଉପାସନା ଓଡ଼ିଶାରେ ବିଶେଷ ଲୋକପ୍ରିୟତା ଅର୍ଜନ କରିଥିଲା । ସେ ଗୋସ୍ୱାମୀମାନଙ୍କୁ ବହୁ ଭୂମିଦାନ ଓ ସମ୍ମାନ ପ୍ରଦର୍ଶନ ଦ୍ୱାରା ଉତ୍ସାହିତ କରିଥିଲେ । ଏଥିରେ ଉତ୍ସାହିତ ହୋଇ କବି ବନମାଳୀ ଶ୍ରୀରାଧାକୃଷ୍ଣଲୀଳା ସମ୍ବନ୍ଧରେ ବହୁ ସୁନ୍ଦର ସଂଗୀତ ରଚନା କରିଥିଲେ । ସେ ଗଜପତି ବୀରକେଶରୀ ଦେବଙ୍କ ନାମରେ ୨୨ଟି ଗୀତର ଭଣିତା କରି ତାଙ୍କ ଠାରୁ ୨୨ ବାଟୀ ଭୂମି ପୁରସ୍କାର ସ୍ୱରୂପ ପାଇଥିଲେ । ପ୍ରକାଶିତ 'ବନମାଳୀ ପଦ୍ୟାବଳୀ'ରେ ତାଙ୍କର ସେପରି କେତୋଟି ସଂଗୀତ ଦେଖାଯାଏ ।

ଏ ଜୀବନ ଯିବ, ଜୀବଧବଙ୍କୁ କେ ଭେଟାଇବ
**ଶ୍ରୀ ବୀର କିଶୋର ଦେବ,** କହିଲେ କି (ପୃଷ୍ଠା ୯୬)
ଧୀର ଶ୍ରୀ ବୀରବର, ଧୀର ମୁକୁଟ ଶିର
**ଶ୍ରୀବୀରକିଶୋରଦେବ** ଗାନରେ (ପୃଷ୍ଠା ୧୩୧)

ଶ୍ରୀରାଧାକୃଷ୍ଣ ସଙ୍ଗୀତ ପ୍ରଣେତା ମାନଙ୍କ ମଧ୍ୟରେ ବନମାଳୀ ସର୍ବାଗ୍ରଗଣ୍ୟ ।

## ପିଣ୍ଡିକ ଶ୍ରୀଚନ୍ଦନ

ପିଣ୍ଡିକ ଶ୍ରୀଚନ୍ଦନ ପୁରୀ ଜିଲ୍ଲାର ବୋଲଗଡ଼ ଅଞ୍ଚଳରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ଗ୍ରାମର ଅଦୂରରେ 'ମଥୁରାମଙ୍ଗଳ' ପ୍ରଣେତା ଭକ୍ତ ଚରଣ ଦାସଙ୍କ ଜନ୍ମସ୍ଥାନ ଅଦ୍ୟାପି ବିଦ୍ୟମାନ । ସେ 'ବସନ୍ତ ରାସ'ର ପ୍ରଣେତା ରୂପେ ସମଗ୍ର ଉତ୍କଳରେ ଖ୍ୟାତ । ତାଙ୍କ ପୂର୍ବରୁ ଓଡ଼ିଆ ଭାଷାରେ ରାସ ଗ୍ରନ୍ଥ ପ୍ରଣୀତ ହୋଇଥିଲା । ଓଡ଼ିଆରେ ପ୍ରଥମ ରାସପ୍ରଣେତା ହେଉଛନ୍ତି ଭକ୍ତକବି ଭାଗବତକାର ଜଗନ୍ନାଥ ଦାସ । ତାଙ୍କ ପରେ ଶିଶୁ ବନମାଳୀ ଦାସ ଏକ ବିରାଟ ରାସ ଗ୍ରନ୍ଥ ପ୍ରଣୟନ କରିଥିଲେ । ତାହା ତିନି ଖଣ୍ଡରେ ବିଭକ୍ତ । ଏ ଦୁଇଟି ଗ୍ରନ୍ଥରେ କେବଳ ଶ୍ରୀରାଧାକୃଷ୍ଣଙ୍କ ରାସଲୀଳାର ବିସ୍ତୃତ ବର୍ଣ୍ଣନା ଦେଖାଯାଏ । କିନ୍ତୁ ଶ୍ରୀଚନ୍ଦନ ତାଙ୍କ ରାସଲୀଳାକୁ ଅଭିନୀତ ହେବା ଉଦ୍ଦେଶ୍ୟରେ ପ୍ରଣୟନ କରିଥିଲେ । ସେ 'ଗୀତଗୋବିନ୍ଦ'ର ଅନୁକରଣରେ ଉକ୍ତ ଗ୍ରନ୍ଥ ରଚନା କରିଥିଲେ । କିନ୍ତୁ ଏହା ବଙ୍ଗଳା ମିଶ୍ରା ଓଡ଼ିଆ ଭାଷାରେ ଲିଖିତ । କାରଣ ଶ୍ରୀ ଚୈତନ୍ୟଙ୍କ ମତ ପ୍ରଚାରକମାନଙ୍କ ମଧ୍ୟରେ ଅଧିକାଂଶ ବଙ୍ଗାଳୀ ଥିବାରୁ ଏବଂ ବଙ୍ଗଳାରେ ଲିଖିତ ନଦୀୟା କୀର୍ତ୍ତନ ଦ୍ୱାରା ଧର୍ମ ପ୍ରଚାର ହେଉଥିବାରୁ ଓଡ଼ିଆ ଭାଷା ଅଲକ୍ଷିତ ଭାବରେ ବଙ୍ଗଳା ଭାଷା ଦ୍ୱାରା ପ୍ରଭାବିତ ହେଉଥିଲା । ଗଜପତି ବୀରକେଶରୀ ଦେବଙ୍କ ସମୟରେ ଶ୍ରୀଚୈତନ୍ୟ ମତ ପ୍ରଚାରକ ଗୋସ୍ୱାମୀମାନଙ୍କ ପ୍ରଭାବ ବଢିଲା, ରାଜ ଦରବାରରେ ବିଶେଷ ପ୍ରାଧାନ୍ୟ ଲାଭ କରିଥିଲା । ଆଜିକାଲି ଶ୍ରୀରାମକୃଷ୍ଣ ମିଶନର ଅଧିକାଂଶ ପ୍ରଚାରକ ବଙ୍ଗାଳୀ ଥିବାରୁ ଅଲକ୍ଷିତ ଭାବରେ ବଙ୍ଗଳା ସାହିତ୍ୟର ଗୌରବ

ଓ ପ୍ରଭାବ ଗୃହଆଡ଼େ ବିସ୍ତାର ଲାଭ କରୁଅଛି । ତେଣୁ ଓଡ଼ିଶାର ଏକ ସୁଦୂର ଅଜ୍ଞାତ ପଲ୍ଲୀର କବି ଶ୍ରୀଚନ୍ଦନ ଶ୍ରୀଚୈତନ୍ୟ ମତାବଲମ୍ବୀମାନଙ୍କ ସନ୍ତୋଷ ବିଧାନ ନିମିତ୍ତ ବଙ୍ଗଳାମିଶା ଓଡ଼ିଆ ଭାଷାରେ ରାସ ରଚନା କରିଥିଲେ । କବି ଶ୍ରୀଚନ୍ଦନ ରାଧାକୃଷ୍ଣଙ୍କ ପରମ ଭକ୍ତ ଗଜପତି ଦିବ୍ୟସିଂହ ଦେବଙ୍କ (୧୭୯୩-୧୭୯୮) ନାମରେ ଗୋଟିଏ ଗୀତର ଭଣିତା କରିଥିବାରୁ ସେ ବୀରକେଶରୀଙ୍କ ରାଜତ୍ୱର ଶେଷ ଓ ଦିବ୍ୟ-ସିଂହଙ୍କ ରାଜତ୍ୱ ଆରମ୍ଭରେ ଉକ୍ତ ଗ୍ରନ୍ଥ ରଚନା କରିଥିବାର ସ୍ଥିର କରାଯାଇ ପାରେ ।

## ହରିବଂଶ ରାୟ —

ସେ 'ପ୍ରେମ କଳ୍ପଲତା' ବା 'ଶ୍ରୀରାଧାମାଧବ କୁତୂହଳ ଲୀଳା' ନାମକ ଏକ ଗ୍ରନ୍ଥ ରଚନା କରିଥିଲେ । ଏଥିରେ ଶ୍ରୀରାଧାକୃଷ୍ଣଙ୍କ ଶରଦ୍ ରାସଲୀଳା ବର୍ଣ୍ଣିତ ହୋଇ-ଅଛି । ଏହା ପଞ୍ଚଦଶ ଛାନ୍ଦରେ ସମାପ୍ତ ହୋଇଛି । ଏହା ଶକାବ୍ଦ ସପ୍ତଦଶଶତ ଅଷ୍ଟାଦଶ ବର୍ଷ ଆଶ୍ୱିନ, ଅସିତ, ସପ୍ତମୀ, ଭୃଗୁବାର ଦିନ ସମାପ୍ତ ହୋଇଥିଲା । ଗଣନା ଅନୁସାରେ ୧୭୯୬ ଖ୍ରୀଷ୍ଟାବ୍ଦ, ସେପ୍ଟେମ୍ବର ୨୩ ତାରିଖ ଶୁକ୍ରବାର ଦିନ ଆଶ୍ୱିନ, କୃଷ୍ଣ ସପ୍ତମୀ ପଡ଼ିଥିଲା । ଏ ଗ୍ରନ୍ଥଟି ଏ ପର୍ଯ୍ୟନ୍ତ ଅପ୍ରକାଶିତ । ସେ କୃଷ୍ଣଦାସ ଗୋସ୍ୱାମୀ କୃତ 'ଗୋବିନ୍ଦ ଲୀଳାମୃତ' ଗ୍ରନ୍ଥର ଓଡ଼ିଆ ପଦ୍ୟାନୁବାଦ ମଧ୍ୟ କରିଥିଲେ ।

## ଭକ୍ତଚରଣ ଦାସ —

ଶ୍ରୀରାଧାକୃଷ୍ଣ ଲୀଳା ବିଷୟକ ଏକ ଉଚ୍ଚକୋଟିର ଗ୍ରନ୍ଥ 'ମଥୁରାମଙ୍ଗଳ'ର ପ୍ରଣେତା ଭକ୍ତଚରଣ ଦାସ ଅଷ୍ଟାଦଶଶତାବ୍ଦୀର ଜଣେ ଶ୍ରେଷ୍ଠ କବି । କବିଙ୍କ ଜନ୍ମସ୍ଥାନ ହେଉଛି ବୋଲଗଡ଼ ନିକଟବର୍ତ୍ତୀ ସାନପଦର ଗ୍ରାମ । ସନ୍ନ୍ୟାସ ଧର୍ମ ଗ୍ରହଣ କରିବାପୂର୍ବରୁ ତାଙ୍କର ନାମ ଥିଲା ବୈରାଗୀଚରଣ ପଟ୍ଟନାୟକ । ରଣପୁର ଅନ୍ତର୍ଗତ ସୁନାଖଳା ଗ୍ରାମରେ ଏକ ମଠ ସ୍ଥାପନ କରି ସେଠାରେ ସେ ଜୀବନର ଅଧିକାଂଶ ସମୟ ଅତି-ବାହିତ କରିଥିଲେ । ଜନ୍ମ ସ୍ଥାନ ସାନପଦର ଗ୍ରାମରେ ମଧ୍ୟ ଭକ୍ତଚରଣଙ୍କ ଦୁଇଟି ମଠ ଅଛି । ଦିବ୍ୟସିଂହ ଦେବଙ୍କ ଭଗିନୀ ମହାରାଣୀ ମୁକ୍ତା ଦେଈ ନିଜ ଗୁରୁ ଭକ୍ତଚରଣଙ୍କୁ ତନ୍ମଧ୍ୟରୁ ଗୋଟିଏ ମଠ ବୃତ୍ତି ବାଡ଼ି ଖଞ୍ଜି ଦାନ କରିଥିଲେ । କିନ୍ତୁ ଭକ୍ତଚରଣ ସେଠାକୁ ନଯାଇ ନିଜର ଜନୈକ ଶିଷ୍ୟଙ୍କୁ ସେଠାକୁ ପଠାଇଥିଲେ । ଦେହତ୍ୟାଗର ଆଠ ଦିନ ପୂର୍ବରୁ ସେ ସ୍ୱୀୟ ଅନ୍ତରଙ୍ଗ ବନ୍ଧୁ ଦାମୋଦର ଆଚାର୍ଯ୍ୟଙ୍କ ସହ ପୁରୀଧାମକୁ ଯାତ୍ରା କରିଥିଲେ ଏବଂ ସେଠାର ବାସେଲୀ ସାହିରେ ଅବସ୍ଥିତ 'ମଧୁମଙ୍ଗଳ' ରଚ-ୟିତା ଦୁଃଖୀଶ୍ୟାମ ଦାସଙ୍କ ମଠରେ ଅବସ୍ଥାନ କରି କାର୍ତ୍ତିକ ଶୁକ୍ଳ ଏକାଦଶୀରେ ହରି-ନାମ ସଂକୀର୍ତ୍ତନ କରୁ କରୁ ଇହଧାମ ତ୍ୟାଗ କରିଥିଲେ । ତାଙ୍କର ଜନ୍ମ ଓ ମୃତ୍ୟୁର ଖ୍ରୀଷ୍ଟାବ୍ଦ ସ୍ଥିର ରୂପେ ଜଣାଯାଏ ନାହିଁ । କିନ୍ତୁ ସେ ବୀରକେଶରୀ ଦେବଙ୍କ

ରାଜଗୁରୁ ଦ୍ୱିତୀୟାର୍ଦ୍ଧରେ 'ମଥୁରାମଙ୍ଗଳ' ପ୍ରଣୟନ କରିଥିବା ସିଦ୍ଧାନ୍ତ ଗ୍ରହଣୀୟ । (୮୩)

ବଙ୍ଗଳା ସାହିତ୍ୟରେ 'ମଙ୍ଗଳ' କାବ୍ୟ ଗୁଡ଼ିକର ବିଶେଷ ପ୍ରସିଦ୍ଧି ଓ ଲୋକପ୍ରିୟତା ଥିଲା । 'ଚୈତନ୍ୟ ମଙ୍ଗଳ' ଓ 'ଅଦ୍ୱୈତ ମଙ୍ଗଳ' ଯଥାକ୍ରମେ ଶ୍ରୀଚୈତନ୍ୟ ଓ ଅଦ୍ୱୈତଙ୍କ ଜୀବନ ଚରିତ ଅବଲମ୍ବନରେ ଲିଖିତ । ଏତଦ୍‌ବ୍ୟତୀତ 'ମନସା ମଙ୍ଗଳ' ନାମକ ପ୍ରାୟ ୬୦ଟି ଗ୍ରନ୍ଥ ଏବଂ ଚଉଦ ଜଣ କବିଙ୍କ ଦ୍ୱାରା ରଚିତ 'ଚଣ୍ଡୀମଙ୍ଗଳ' ଗ୍ରନ୍ଥ ଦେଖାଯାଏ । ରାୟ ଗୁଣାକର ଭାରତ ଚନ୍ଦ୍ର ରାୟଙ୍କ 'ଅନ୍ନଦା ମଙ୍ଗଳ' ପ୍ରାଚୀନ ବଙ୍ଗଳାର ଏକ ଉତ୍କୃଷ୍ଟ ଗ୍ରନ୍ଥ ରୂପେ ବିବେଚିତ ହୁଏ । (୮୪) କବି ଭକ୍ତ ଚରଣ 'ମଙ୍ଗଳ' ନାମକରଣ ପ୍ରାଚୀନ ବଙ୍ଗଳା ସାହିତ୍ୟରୁ ଗ୍ରହଣ କରିଥିଲେ ମଧ୍ୟ ଘନଶ୍ୟାମଙ୍କ 'ରସକଲ୍ଲୋଳ' ଅନୁକରଣରେ ଏହା ରଚନା କରିଥିଲେ । ଇଂରେଜୀ ଶିକ୍ଷାର ପ୍ରସାର ପୂର୍ବରୁ ଓଡ଼ିଶାର ପ୍ରତି ଚାଟଶାଳୀରେ ଭାଗବତ, ଗୋପୀଭାଷା ସହିତ ମଥୁରାମଙ୍ଗଳର ଅଂଶବିଶେଷ ପଠିତ ହେଉଥିଲା । ମଥୁରାମଙ୍ଗଳ ବର୍ଣ୍ଣିତ କବି 'ଗୋପମଙ୍ଗଳ' ନାମକ ଗୋଟିଏ ଗ୍ରନ୍ଥ ଲେଖିଥିବାର ଶୁଣାଯାଏ । ତାଙ୍କ କୃତ ଅତ୍ୟନ୍ତ ଲୋକପ୍ରିୟ 'କଳାକଳେବର ଚଉତିଶା' ଓ 'ମନବୋଧ ଚଉତିଶା' ଦ୍ୱୟ ପ୍ରାଚୀନ ଓଡ଼ିଆ ସାହିତ୍ୟ ଭଣ୍ଡାରରେ ଦୁଇଟି ରତ୍ନ ।

## ଅନ୍ୟାନ୍ୟ କବିଗଣ

### ବ୍ରଜବନ୍ଧୁ ସାମନ୍ତସିଂହାର —

ବ୍ରଜବନ୍ଧୁଙ୍କ ପରିଚୟ ତାଙ୍କ କୃତ 'ରାମଲୀଳାମୃତ' ଗ୍ରନ୍ଥରୁ ଜଣାଯାଏ । ଯଥା

"ଅନୁଗୁଳ ରାଜ୍ୟ ନାମ,      ସେହି ନୃପ ନରୋତ୍ତମ
**ଶିବଦାସ ଜଟଧେବ** ନାମ ବିଖ୍ୟାତ
ତାଙ୍କ ତନୟ **ଗୋକୁଳ-**      **ବିହାରୀ** ନାମ ସକଳ,
ଗୁଣରେ, ନିପୁଣ ତାଙ୍କ କନିଷ୍ଠ ସୁତ,
**ଜଗବନ୍ଧୁ** ନାମ ତାଙ୍କର
**ବ୍ରଜବନ୍ଧୁ** ନାମ ମୁଁ ତାହାଙ୍କ କୁମର ପଦ ସାମନ୍ତ ସିଂହାର" ।

---

୮୩ । ପ୍ରାଚୀସମିତି ଦ୍ୱାରା ପ୍ରକାଶିତ 'ମଥୁରାମଙ୍ଗଳ'ରେ ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସୁବିସ୍ତୃତ ମୁଖବନ୍ଧରୁ ଗୃହୀତ ।

୮୪ । ପ୍ରାଚୀନ ବଙ୍ଗଳା ସାହିତ୍ୟର ଇତିହାସ, ଡକ୍ଟର ତମୋନାଶଚନ୍ଦ୍ର ଦାଶ ଗୁପ୍ତ ପୃ (୮୬-୧୯୧) ।

ବ୍ରଜବନ୍ଧୁ ସାମନ୍ତସିଂହ'ର ଅନୁଗୁଳ ରାଜା ଶିବଦାସ ଜଗଦ୍ଦେବଙ୍କ ପ୍ରପୌତ୍ର ଗୋକୁଳବିହାରୀଙ୍କ ପୌତ୍ର ଓ ଜଗବନ୍ଧୁଙ୍କ ପୁତ୍ର ଥିଲେ । ୧୮୦୩ରେ ବ୍ରିଟିଶ ଅଧି-କାର ପୂର୍ବରୁ ଧନୁର୍ଜୟ ସିଂହ ଜଗଦ୍ଦେବ ଓ ନିତ୍ୟାନନ୍ଦ ସିଂହ ଜଗଦ୍ଦେବ ଯଥାକ୍ରମେ ଅନୁଗୁଳର ରାଜା ହୋଇଥିଲେ ଏବଂ ସେମାନଙ୍କ ପରବର୍ତ୍ତୀ ରାଜାମାନଙ୍କ ନାମ ନିଶ୍ଚିତ ଭାବରେ ଜଣାଯାଏ । (୪୪) ଅତଏବ ବର୍ଣ୍ଣିତ ଶିବଦାସ ଜଗଦ୍ଦେବଙ୍କୁ ନିଃସନ୍ଦେହରେ ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ପାଦରେ ଓ କବି ବ୍ରଜବନ୍ଧୁଙ୍କୁ ଅଷ୍ଟାଦଶ ଶତାବ୍ଦୀର ମଧ୍ୟ ଭାଗରେ ଅବସ୍ଥାପିତ କରାଯାଇ ପାରେ । 'ରାମଲୀଳାମୃତ' ଗ୍ରନ୍ଥଟି ବିଶ୍ୱନାଥ ଖୁଣ୍ଟିଆଙ୍କ 'ବିଚିତ୍ର ରାମାୟଣ' ପରି ବହୁ ରାଗ ରାଗିଣୀ ସମନ୍ୱିତ ଏବଂ ଏହାର ଭାଷା ସରଳ ଓ ଚିତ୍ତାକର୍ଷକ । ଗ୍ରନ୍ଥଟି ଏ ପର୍ଯ୍ୟନ୍ତ ଅପ୍ରକାଶିତ । (୪୫)

### ବଡ଼ମ୍ବା

## କରୁଣାକର ପଟ୍ଟନାୟକ

ସେ ବଡ଼ମ୍ବା ଗଡ଼ର ବେବର୍ତ୍ତା ଭାଗୀରଥି ପଟ୍ଟନାୟକଙ୍କ ନାତି ଓ ଗଦାଧର ପଟ୍ଟନାୟକଙ୍କ ପୁତ୍ର ଥିଲେ । 'ଲୀଳାବତୀ ବିସ୍ତରଃ' ନାମକ ଗଣିତ ଟୀକାରୁ ଜଣାଯାଏ ସେ ପୂର୍ବୋକ୍ତ ଭାଗୀରଥି ପଟ୍ଟନାୟକଙ୍କ ଔରସରେ ଗୌତମୀଙ୍କ ଗର୍ଭରୁ ଚନ୍ଦ୍ରଶେଖର ପଟ୍ଟନାୟକ ଜନ୍ମଗ୍ରହଣ କରିଥିଲେ । ଅତଏବ ସେ ଆଲୋଚ୍ୟ କରୁଣାକରଙ୍କ ଜ୍ୟେଷ୍ଠ ପିତୃବ୍ୟ ଥିଲେ । ଚନ୍ଦ୍ରଶେଖର ୪୮୪୫ କଳିଯୁଗାବ୍ଦ ବା ୧୭୪୪ ଖ୍ରୀଷ୍ଟାବ୍ଦରେ ଲୀଳା-ବତୀ ଟୀକା ସମାପ୍ତ କରିଥିଲେ । କରୁଣାକର ନିଜର ନିମ୍ନୋକ୍ତ ପରିଚୟ ପ୍ରଦାନ କରିଛନ୍ତି ।




୪୪ । ଶ୍ରୀ ସୁଧାକର ପଟ୍ଟନାୟକଙ୍କ ଦ୍ୱାରା ସଂପାଦିତ ଓ ବହୁ ତଥ୍ୟସମ୍ବଳିତ 'ରାଜା ସୋମନାଥ ସିଂହ ଜଗଦ୍ଦେବ' ପୁସ୍ତକ ଦ୍ରଷ୍ଟବ୍ୟ ।

୪୫ । ଏହାର ଖଣ୍ଡିଏ ପୋଥି ପ୍ରାଦେଶିକ ମିଉଜିୟମରେ ସଂରକ୍ଷିତ ।

" ବୃହଦାମ୍ବ ଦୁର୍ଗ ବ୍ୟବହର୍ତ୍ତା ଭଗୀରଥି ସୁପଟ୍ଟନାୟକ
କରଣ-କୁଳ-କୁମୁଦ-ସୁଧାକର ସକଳ ଗୁଣ ଶ୍ଳାଘ୍ୟକ । ୧୯
ତାହାଙ୍କ କନିଷ୍ଠ ସୁତ ଗଦାଧର ପଟ୍ଟନାୟକ ବିଖ୍ୟାତ
କରୁଣାକର ନାମଧେୟ ମୋହର ଏହାଙ୍କ କନିଷ୍ଠ ସୁତ । ୨୦
ଶ୍ରୀ ମୁକୁନ୍ଦଦେବ ମହାରାଜାଙ୍କର ଦଶଅଙ୍କ ବୃଷମାସେ
ତାଙ୍କ ରାଜ୍ୟ ବୋଲଗଡ଼ ତଳ କଟାମିଆ ଗ୍ରାମେ ରହି ତୋଷେ । ୨୧
ଶ୍ରୀ ଗୁରୁ ଚରଣ ସେବାରୁ ପ୍ରକାଶ କଲି କୃଷ୍ଣରସାମୃତ
ସାଧୁ ଜନେ ଦୋଷ ନ ଧର ମୋଠାରେ ହୋଇ ଅତି ତୋଷ ଚିତ୍ତ । ୨୨"

ଚନ୍ଦ୍ରଶେଖର ୧୭୪୪ରେ ଗଣିତ ଟୀକା ସମାପ୍ତ କରିଥିବାରୁ ତାଙ୍କ ସୁତ୍ରୁଗ କରୁଣାକର ଏହି ସମୟର ପରବର୍ତ୍ତୀ ହେବା ସୁନିଶ୍ଚିତ । ତେଣୁ ଗ୍ରନ୍ଥବର୍ଣ୍ଣିତ ମୁକୁନ୍ଦଦେବ, ବ୍ରିଟିଶମାନଙ୍କ ସଙ୍ଗେ ଯୁଦ୍ଧ କରିଥିବା ଦ୍ୱିତୀୟ ମୁକୁନ୍ଦଦେବଙ୍କ ସହିତ ଅଭିନ୍ନ ହୋଇ ପାରନ୍ତି । ତାଙ୍କର ଦଶଅଙ୍କ ୧୮୦୭ ଖ୍ରୀଷ୍ଟାବ୍ଦରେ ପଡ଼ିଥିଲା । କାବ୍ୟଟି ସେ ଯୁଗର ଅନ୍ୟାନ୍ୟ ବହୁ କାବ୍ୟ ପରି ଶ୍ରୀ ରାଧାକୃଷ୍ଣ ଲୀଳା ଅବଲମ୍ବନରେ ଲିଖିତ । ଏହା ଅଦ୍ୟାବଧି ଅପ୍ରକାଶିତ (୪୭)

## ରାମଚନ୍ଦ୍ର ପଟ୍ଟନାୟକ —

କବି ରାମଚନ୍ଦ୍ର ପଟ୍ଟନାୟକଙ୍କ ପରିଚୟ ଓ ଆବିର୍ଭାବ କାଳ ସମ୍ବନ୍ଧରେ ଏ ପର୍ଯ୍ୟନ୍ତ କୌଣସି ଆଲୋଚନା ହୋଇ ନଥିଲା । ତାଙ୍କ ଦ୍ୱାରା ପ୍ରଣୀତ 'ଅନୁରାଗବତୀ' ଓ 'ହାରାବତୀ' ନାମକ ଦୁଇଟି କାବ୍ୟର ତାଳପତ୍ର ପୋଥି ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ପୋଥି ଭଣ୍ଡାରରେ ସଂରକ୍ଷିତ । 'ଅନୁରାଗବତୀ' ଚତୁର୍ଦ୍ଦଶ ଛାନ୍ଦରେ ସମାପ୍ତ । ଏହାର ଶେଷ ବା ଚତୁର୍ଦ୍ଦଶ ଛାନ୍ଦରେ କବି ନିଜର ପରିଚୟ ନିମ୍ନୋଦ୍ଧୃତ କେତେକ ପଂକ୍ତିରେ ପ୍ରଦାନ କରିଛନ୍ତି । ଯଥା—

"ବଡମ୍ବା ବେବର୍ତ୍ତା ଶ୍ରେଷ୍ଠ କୁଳକଳାକର । ଭଗୀରଥି ପଟ୍ଟନାୟକଙ୍କର କୁମର ॥
ରାଜକାର୍ଯ୍ୟେ ବନ୍ଦୀ ରହିଥିଲୁ କଟକରେ । ଆରମ୍ଭ ଏ ଗୀତକୁ କଲୁ ସେହିଠାରେ ଯେ
ପଡ଼ୁଥିଲା ମନ ସେଠାବରେ ସାରିଥିଲୁ । ଉତ୍କଣ୍ଠକରେ ସାନଭାଇ ବସ୍ତୁଠାକୁ ଦେଲୁ ଯେ
ବସ୍ତୁ ଏଗୀତକୁ ଦେଖି ଆନନ୍ଦ ହୋଇଲା । ଛାନ୍ଦ ପାଞ୍ଚ ଆପେ କରି ଏଥି ମିଶାଇଲା ଯେ
ଆଉ ବିସ୍ତାର ହେଅନ୍ତା ଗୀତ କେଶବ । ଆମ୍ଭେ ଆସି ବନ୍ଦୀ ଛୁଟୀ ହୋଇଲା ପ୍ରବେଶ ଯେ

---

୪୭ । କଳାନାଥ ଗ୍ରନ୍ଥ ଚିନ୍ତି ବଉଗର ଅଧକ୍ଷ ଥିବା ସମୟରେ ଏହାଙ୍କ ସମ୍ବନ୍ଧରେ ପ୍ରଥମେ ଏକ ପ୍ରବନ୍ଧ ପ୍ରକାଶ କରିଥିଲେ । 'ଦୈନିକ ଆଶା' ୩-୬-୧୯୪୪ ।

ତିନି ଛାନ୍ଦ ହୁରସରେ କଲୁ ସମାପତ । ଚତୁର୍ଦ୍ଦଶ ଛାନ୍ଦରେଣ ପୂର୍ଣ୍ଣ ହେଲା ଗୀତ ଯେ
ଜଗତ ଜନନୀ ଦୁର୍ଗା ଚରଣ ସେବକ । କରଣବଂଶାବତଂସ ଧାମିକ ବିବେକ ଯେ ॥"

ଗ୍ରନ୍ଥରୁ ଉଦ୍ଧୃତ ପଂକ୍ତିଚୟରୁ ଜଣାଯାଏ ଯେ କବି ରାମଚନ୍ଦ୍ର ବଡ଼ମ୍ବା ଗଡ଼ର ବେବର୍ତ୍ତା ଭାଗୀରଥି ପଟ୍ଟନାୟକଙ୍କ ପୁତ୍ର ଥିଲେ । ଭାଗୀରଥି ପଟ୍ଟନାୟକ ବଡ଼ମ୍ବା ଗଡ଼ର ଜଣେ ପ୍ରସିଦ୍ଧ ବ୍ୟକ୍ତି ଥିଲେ । ତାଙ୍କ ପୁତ୍ର ଚନ୍ଦ୍ରଶେଖର ପଟ୍ଟନାୟକ ୧୭୪୪ରେ ଲୀଳାବତୀର ଟୀକା ରଚନା ସମାପ୍ତ କରିଥିଲେ । କବି ରାମଚନ୍ଦ୍ର ଗଣିତଜ୍ଞ ଚନ୍ଦ୍ରଶେଖରଙ୍କ ଅଗ୍ରଜ ବା ଅନୁଜ ଥିଲେ ତାହା ଜଣାଯାଉ ନାହିଁ । ତଥାପି ତାଙ୍କୁ ନିଃସନ୍ଦେହରେ ବୀରକେଶରୀ ଦେବଙ୍କ ରାଜତ୍ୱର ପ୍ରଥମାର୍ଦ୍ଧରେ ଅବସ୍ଥାପିତ କରାଯାଇ ପାରେ ।

ସେ ବଡ଼ମ୍ବା ରାଜାଙ୍କ କୌଣସି କାର୍ଯ୍ୟପାଇଁ କଟକ ବାରବାଟୀ ଦୁର୍ଗରେ ବନ୍ଦୀ ହୋଇଥିବାର ଷଷ୍ଠ ଛାନ୍ଦ ଭଣିତାରୁ ଜଣାଯାଏ ।

" ବଡମ୍ବା ଭୂନରବର କାର୍ଯ୍ୟରେ, ଓଲବନ୍ଦୀ ହୋଇ ବାରବାଟୀରେ ।
କଟକ ଚଣ୍ଡୀ ଚରଣକୁ ଭାବି , ଭଣେ ଏ ରସ ରାମଚନ୍ଦ୍ର କବି ।"

ଅନ୍ୟତ୍ର ଅଷ୍ଟମ ଛାନ୍ଦ ଭଣିତାରେ ଅଛି—

"ବଡମ୍ବା ନରନାୟକ ସେବକ, ··· ··· ପଟ୍ଟନାୟକ,
ତାହାଙ୍କ ଏକ ସୁତ ରାମଚନ୍ଦ୍ର, କବି କୁଳ କୁମୁଦ-ବନଚନ୍ଦ୍ର
ସ୍ୱରାଜ୍ୟକାର୍ଯ୍ୟରେ ଓଲବନ୍ଦୀ ରହି ବାରବାଟୀରେ"

ବୀରକେଶରୀଙ୍କ ରାଜତ୍ୱ ଆରମ୍ଭରେ ୧୭୪୧ରୁ ୧୭୫୧ ପର୍ଯ୍ୟନ୍ତ ଆଲିବର୍ଦ୍ଦି ଖାଁ ଓ ମରହଟ୍ଟାମାନଙ୍କ ଘୋର ସଂଘର୍ଷ ସମୟରେ ସେ କୌଣସି ପକ୍ଷ ଦ୍ୱାରା ବାରବାଟୀରେ ବନ୍ଦୀ ହୋଇଥିବାର ଅନୁମାନ କରାଯାଇ ପାରେ । ବନ୍ଦୀଥିବା ସମୟରେ ସେ ' ଅନୁରାଗବତୀ ' କାବ୍ୟର ପ୍ରଥମ ଛଅ ଛାନ୍ଦ ଲେଖିଥିଲେ । ବନ୍ଦୀରୁ ମୁକ୍ତିଲାଭ କରି ଘରକୁ ଗଲାପରେ ତାଙ୍କ ସାନ ଭାଇ ବିଷ୍ଣୁ ପଟ୍ଟନାୟକ ସପ୍ତମଠାରୁ ଏକାଦଶ ଛାନ୍ଦ ପର୍ଯ୍ୟନ୍ତ ୫ଟି ଛାନ୍ଦ ରଚନା କରି ଏଥିରେ ମିଶାଇଥିଲେ । ଏହି ପାଞ୍ଚ ଛାନ୍ଦର ଭଣିତାରେ ବିଷ୍ଣୁଙ୍କ ନାମ ଉଲ୍ଲେଖ ହୋଇଛି । ଏହାର ଶେଷ ତିନି ଛାନ୍ଦ କବି ରାମଚନ୍ଦ୍ର ନିଜେ ରଚନା କରି ସମୁଦାୟ ଚତୁର୍ଦ୍ଦଶଟି ଛାନ୍ଦରେ ଗ୍ରନ୍ଥ ସମାପ୍ତ କରିଥିଲେ ।

ସେ 'ଅନୁରାଗବତୀ' କାବ୍ୟ ରଚନା କରିବା ପୂର୍ବରୁ 'ହୀରାବତୀ' ନାମକ ଅନ୍ୟ ଏକ ଲୋକପ୍ରିୟ କାବ୍ୟ ରଚନା କରିଥିଲେ । ଏହାର ଛାନ୍ଦୋପୋକ ପୋଥିରେ ଦଶଛାନ୍ଦ ପର୍ଯ୍ୟନ୍ତ ଅଛି । ଏହାର ନାୟକ ନାୟିକା କୌଣସି ରାଜକୁମାର ଓ ରାଜକୁମାରୀ ନୁହନ୍ତି । ଗୁଡ଼ାକାଠିବାଲୀ ବା ଗୃହଆଘର ଝିଅ ହୀରାବତୀ ଏହାର ନାୟିକା ଓ

ଗ୍ରାମର ଜଣେ ରସିକ ଯୁବକ ଏହାର ନାୟକ । ଉଭୟଙ୍କର ପ୍ରଥମ ମିଳନ ଘଟିଥିଲା ଖୁଦୁରୁକୁଣି ଓଷା ଦିନ ନିଜ ଗାଁ ପୋଖରୀ କୂଳରେ । କାବ୍ୟଟି ରସପୂରିତ ଓ ଚିତ୍ତାକର୍ଷକ । ଏହା ପାଠକଲେ ଖୁଦୁରୁକୁଣି ଓଷା ଅଷ୍ଟାଦଶ ଶତାବ୍ଦୀ ବେଳକୁ ଓଡ଼ିଶାରେ ଅତ୍ୟନ୍ତ ଲୋକପ୍ରିୟ ହୋଇଥିବାର ଜଣାଯାଏ ।

## ବଳଭଦ୍ର ମଙ୍ଗରାଜ —

ବଳଭଦ୍ର ମଙ୍ଗରାଜ ବଡ଼ମ୍ବା ଗଡ଼ଜାତର ରାଜା କୃଷ୍ଣଚନ୍ଦ୍ର ମଙ୍ଗରାଜଙ୍କ ପୁତ୍ର (ବୋଧହୁଏ କନିଷ୍ଠ ପୁତ୍ର) ଥିଲେ । ବଡ଼ମ୍ବା ରାଜାମାନଙ୍କ ନାମ ଦିଆଗଲା—

### ବଡ଼ମ୍ବା ରାଜବଂଶ

କୃଷ୍ଣଚନ୍ଦ୍ର ମଙ୍ଗରାଜ
ଗୋପୀନାଥ ,,
ବଳଭଦ୍ର ,,
ଫକୀର ବୀରବର ମଙ୍ଗରାଜ ମହାପାତ୍ର
ବେଣୁଧର ,, ,,
ଚନ୍ଦ୍ରନାଭ ,, ,,
ପିଣ୍ଡିକ ବୀରବର ,, ,,
ଗୋପୀନାଥ ବୀରବର ,, ,,
ଦାଶରଥି ବୀରବର ,, ,,

ଦାଶରଥି ୧୮୭୦ ମାର୍ଚ୍ଚ ୨୫ ତାରିଖରେ ଗାଦିରେ ବସିଥିଲେ । ଦାଶରଥି ଓ ବଳଭଦ୍ରଙ୍କ ମଧ୍ୟରେ ପାଞ୍ଚ ପୁରୁଷ ବ୍ୟବଧାନ ରହୁଥିବାରୁ ବଳଭଦ୍ରଙ୍କୁ ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଅବସ୍ଥାପିତ କରାଯାଇ ପାରେ । ସେ ସ୍କନ୍ଦପୁରାଣ ଅନ୍ତର୍ଗତ 'କ୍ଷେତ୍ରମାହାତ୍ମ୍ୟ'ର ସରଳ ପଦ୍ୟାନୁବାଦ କରିଥିଲେ । (୪୮) ଏତଦ୍‌ବ୍ୟତୀତ ତାଙ୍କର ଅନ୍ୟ କୌଣସି ଗ୍ରନ୍ଥ ଥିବାର ଜଣାଯାଏ ନାହିଁ ।

## ଭଗୀରଥି ମନ୍ଦରଧର —

ଭଗୀରଥି ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ ଜଳେଶ୍ୱର ଗ୍ରାମର ଅଧିବାସୀ ଥିଲେ । ୧୭୪୭ ଖ୍ରୀଷ୍ଟାବ୍ଦରେ ରଚିତ ଏହାଙ୍କର 'ରାଧାବିଳାସ' କାବ୍ୟ ଏପର୍ଯ୍ୟନ୍ତ ଆବିଷ୍କୃତ ହୋଇଅଛି । ସେ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ପରି ବିବିଧ ଆଳଙ୍କାରିକ ସରସ ରଚନା କରିବାରେ ସିଦ୍ଧହସ୍ତ ଥିଲେ । (୪୯)

---

୪୮ । List of title holders' ୧୮୭୮ ରେ ସଂକଳିତ ।
ରାଷ୍ଟ୍ରଭାଷା ଜୟନ୍ତୀଗ୍ରନ୍ଥ ପୃ ୧୮୦ ।

୪୯ । ରାଷ୍ଟ୍ରଭାଷା ଜୟନ୍ତୀ ଗ୍ରନ୍ଥ ପୃ ୧୭୩

# ହୁମା

## ବଂଶୀଧର ସାନସାମନ୍ତ —

ଗଞ୍ଜାମ ଅନ୍ତର୍ଗତ 'ହୁମା' ରାଜ୍ୟ ଅଧିକାରୀ ହରବନ୍ଧୁ ସାନ ସାମନ୍ତଙ୍କ ଭ୍ରାତା ବଂଶୀଧର ସାନ ସାମନ୍ତ ଖଣ୍ଡିଏ 'ରାମଲୀଳା' ରଚନା କରିଥିଲେ । ଯଥା—"ଚନ୍ଦ୍ର ସୀତା ରାମ ପଦେ ଭଣେ ବଂଶୀଧର" **'ହୁମା ରାଜ୍ୟ ଅଧିକାରୀ** ସାନ ସାମନ୍ତଙ୍କ ଭ୍ରାତ କର' **ହରିବନ୍ଧୁ ସାନ ସାମନ୍ତଙ୍କ ଭ୍ରାଥ** ସୀତା ରାମ ଚନ୍ଦ୍ର ବୋଲନ୍ତ । ଗ୍ରନ୍ଥରେ ରଚନାର ସମୟ ଉଲ୍ଲେଖ ନାହିଁ । କିନ୍ତୁ ପୋଥିର ପୁଷ୍ପିକାରେ ଶ୍ରୀ ମୁକୁନ୍ଦଦେବଙ୍କ ଏଗାର ଅଙ୍କ ଜ୍ୟେଷ୍ଠ କୃଷ୍ଣ ଚତୁର୍ଦ୍ଦଶୀ ବୃଷ ଭନ ଦନ × × ରେ ସଂପୂର୍ଣ୍ଣ ହେବାର ଉଲ୍ଲେଖ ଅଛି । ବର୍ଣ୍ଣିତ ମୁକୁନ୍ଦଦେବଙ୍କୁ ଭୋଇ ବଂଶୀୟ ଦ୍ୱିତୀୟ ମୁକୁନ୍ଦଦେବ ୧୭୯୮-୧୮୧୭)ଙ୍କ ସହିତ ଚିହ୍ନିତ କରାଯାଇ ପାରେ । ଗ୍ରନ୍ଥ ନକଲ ସମୟ ୧୮୦୫-୧୮୦୬ ରେ ପଡୁଥିବାରୁ ଗ୍ରନ୍ଥଟି ବୀରକେଶରୀ ଦେବଙ୍କ ରାଜତ୍ୱରେ ରଚିତ ହୋଇଥିବାର ସ୍ଥିର କରାଯାଇ ପାରେ ।

## ସଂସ୍କୃତ ସାହିତ୍ୟ ଚର୍ଚ୍ଚା •

ଗଜପତି ବୀରକେଶରୀ ଦେବଙ୍କ ଦୀର୍ଘ ରାଜତ୍ୱ କାଳରେ (୧୭୩୬-୧୭୯୩) ଓଡ଼ିଆ ସାହିତ୍ୟ ପରି ସଂସ୍କୃତ ସାହିତ୍ୟର ମଧ୍ୟ ବିଶେଷ ଶ୍ରୀବୃଦ୍ଧି ସାଧିତ ହୋଇଥିବାର ଜଣାଯାଏ । ସେ ଯୁଗର ସଂସ୍କୃତ କବି-ପଣ୍ଡିତମାନଙ୍କ ମଧ୍ୟରୁ ନିମ୍ନ କେତେଜଣଙ୍କ ବିଷୟରେ ବିଶ୍ୱାସଯୋଗ୍ୟ ବିବରଣ ମିଳେ ।

## ବସୁଦେବ ପ୍ରହରାଜ —

ବୀରକେଶରୀଙ୍କ ସମକାଳୀନ ପ୍ରସିଦ୍ଧ କବିତ୍ରୟ ଲୋକମୁଖରେ 'ବସୁ, ହରି, ଚକ୍ରପାଣି' ନାମରେ ପ୍ରଖ୍ୟାତ ଥିଲେ । ଲୋକ ବର୍ଣ୍ଣିତ ଏହି 'ବସୁ'ଙ୍କ ପୂର୍ଣ୍ଣ ନାମ ହେଉଛି ବସୁଦେବ ପ୍ରହରାଜ । ସେ ଗଞ୍ଜାମ ଆଠଗଡ଼ ରାଜ୍ୟର ଅଧିବାସୀ ଥିଲେ । ବୀରକେଶରୀ ଦେବଙ୍କ ସାମନ୍ତ ତତ୍ରତ୍ୟ ରାଜା ମଧୁସୂଦନ ହରିଚନ୍ଦନ ଜଗଦ୍ଦେବ ବସୁଦେବଙ୍କ ପୃଷ୍ଠପୋଷକ ଥିଲେ । ବସୁ ପ୍ରହରାଜ 'ରାଘବଯାଦବୀୟ' ନାମକ ଦ୍ୱିସାଧନ କାବ୍ୟ ସଂସ୍କୃତ ଭାଷାରେ ରଚନା କରିଥିଲେ । ମୁଁ କଳାହାଣ୍ଡିରେ ପ୍ରତ୍ନତତ୍ତ୍ୱ ବିଭାଗର ଅଧ୍ୟକ୍ଷ ଥିବା ସମୟରେ ଏହି ଗ୍ରନ୍ଥର ଏକ ପୋଥି ପାଇଥିଲି । ସେଥିରେ ଏହାର ନାମ ରାମକୃଷ୍ଣୋଦୟ କାବ୍ୟଂ' ବୋଲି ଲେଖା ଥିଲା । ଏହାର ମଙ୍ଗଳାଚରଣ ଠାରୁ ଆରମ୍ଭ କରି ପ୍ରତ୍ୟେକ ଶ୍ଳୋକରେ ରାମ ଓ କୃଷ୍ଣଙ୍କ ଚରିତ ବର୍ଣ୍ଣିତ ହୋଇଅଛି । ଏହି ଗ୍ରନ୍ଥଟି ଦଶଟି ସର୍ଗରେ ବିଭକ୍ତ । ଗ୍ରନ୍ଥ ଶେଷରେ କବି ନିଜର ନାମ ମାତ୍ର ଦେଇଛନ୍ତି । ଯଥା—

"ମନୋହରିରେବ ଗୁଣି ରୂପେଣଂ
ସ୍ତୁତ୍ୟାଦ୍ୟଂ ରାଘବପାଣ୍ଡବୀୟଂ ।
କାବ୍ୟଂ ତଦେତତ୍ **ବସୁଦେବ ନାମ୍ନା,**
**କୃତଂ**ରସଜ୍ଞାଃ ପରିଶୀଳୟନ୍ତୁ ।"

ସଟୀକ ପୂର୍ବୋକ୍ତ ଗ୍ରନ୍ଥର ଏକ ନକଲ ପ୍ରାଦେଶିକ ମିଉଜିୟମରେ ସୁରକ୍ଷିତ । ମହାରାଷ୍ଟ୍ରର କାଦମ୍ବକୁଳତିଳକ ରାଜା କାମଦେବ (୧୧୮୨-୧୧୮୭)ଙ୍କଦ୍ୱାରା ପ୍ରୋତ୍ସାହିତ କବିରାଜ ସୂରିକୃତ 'ରାଘବ ପାଣ୍ଡବୀୟ' ନାମକ ସୁପ୍ରଚଳିତ ଦ୍ୱିସାଧନ କାବ୍ୟର ଅନୁକରଣରେ ବସୁପ୍ରହରାଜ ପ୍ରାୟ ୧୭୫୦-୭୦ ମଧ୍ୟରେ ଏହି କାବ୍ୟ ରଚନା କରିଥିଲେ । ଏହା ସଂସ୍କୃତ ସାହିତ୍ୟକୁ ଓଡ଼ିଶାର ଏକ ମହତ ଦାନ । କିନ୍ତୁ ଏହା ଏପର୍ଯ୍ୟନ୍ତ ଅପ୍ରକାଶିତ ଥିବାରୁ ଭାରତୀୟ ସୁଧୀ ସମାଜରେ ଅଜ୍ଞାତପ୍ରାୟ ରହିଅଛି । ବସୁ ପ୍ରହରାଜ କଠିନ ସଂସ୍କୃତ ବ୍ୟାକରଣକୁ ସରଳ କରିବା ପାଇଁ ନିଜେ ଗୋଟିଏ 'ପ୍ରକ୍ରିୟା' ଗ୍ରନ୍ଥ ରଚନା କରିଥିଲେ । ଏହା ସମଗ୍ର ଉତ୍କଳରେ ସୁପ୍ରଚଳିତ ଥିଲା । ସମସ୍ତ ଗ୍ରନ୍ଥଟି ମିଉଜିୟମରେ ପୋଥି ଆକାରରେ ରହିଛି । ତାଙ୍କ କୃତ ଅନ୍ୟ ଗ୍ରନ୍ଥମାନଙ୍କ ନାମ ଏପର୍ଯ୍ୟନ୍ତ ଜଣା ଯାଇନାହିଁ । ସେ ଜଣେ ପ୍ରସିଦ୍ଧ ତାନ୍ତ୍ରିକ ଥିଲେ । ତନ୍ତ୍ରଶିକ୍ଷା ପ୍ରଭାବରୁ ସେ ଅଲୌକିକ ପାଣ୍ଡିତ୍ୟ ଓ ଶକ୍ତିର ଅଧିକାରୀ ହୋଇଥିବା ବିଷୟରେ ଅନେକ କିମ୍ବଦନ୍ତୀ ଗଞ୍ଜାମ ଅଞ୍ଚଳରେ ଶୁଣାଯାଏ ।

## ବିଶ୍ୱନାଥ ପାଟକୋଷୀ —

ଲୋକ ମୁଖରେ 'ବିଶି' ନାମରେ ପରିଚିତ ପ୍ରସିଦ୍ଧ ପଣ୍ଡିତଙ୍କ ନାମ ବିଶ୍ୱନାଥ ପାଟକୋଷୀ । ତାଙ୍କ ବାସସ୍ଥାନ ସାକ୍ଷୀଗୋପାଳ ନିକଟବର୍ତ୍ତୀ ବୀରନରସିଂହପୁର ଶାସନ । ତାଙ୍କ ବଡ଼ଭାଇ ବୃନ୍ଦାବନ ରାୟଗୁରୁ ମଧ୍ୟ ଅଦ୍ୱିତୀୟ ପଣ୍ଡିତ ଥିଲେ । ଏ ଦୁଇ ଭାଇଙ୍କ ଗୌରବଗାଥା ସ୍ୱର୍ଗତ ଜଗବନ୍ଧୁ ସିଂ ସ୍ୱ 'ପ୍ରାଚୀନ ଉତ୍କଳ' ପୁସ୍ତକରେ ଲିପିବଦ୍ଧ କରିଛନ୍ତି । (୫୦) କିନ୍ତୁ ବିଶ୍ୱନାଥ କୃତ ଗ୍ରନ୍ଥର ନାମ ସେ ଦେଇ ନାହାନ୍ତି ବା ଅନୁସନ୍ଧାନ ଦ୍ୱାରା ଏ ପର୍ଯ୍ୟନ୍ତ ଜଣା ଯାଇନାହିଁ । ବୃନ୍ଦାବନ ରାୟଗୁରୁ 'ଉଷା ପରିଣୟ' ନାମକ ନାଟକ ଓ 'ନୈଷଧ ମହାକାବ୍ୟ'ର ଏକ ଟୀକା ରଚନା କରିଥିବା ଜଗବନ୍ଧୁ ବାବୁ ଲେଖିଛନ୍ତି । କିନ୍ତୁ ସେଗୁଡ଼ିକ ପରୀକ୍ଷା କରିବାର ସୁଯୋଗ ଏପର୍ଯ୍ୟନ୍ତ ଘଟିନାହିଁ ।

## ଚକ୍ରପାଣୀ ପଟ୍ଟନାୟକ —

ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀକ୍ଷେତ୍ର ଯାହା ଓଡ଼ିଶାର ଏକ ପ୍ରଧାନ ଜାତୀୟ ପର୍ବ । ତେଣୁ ଓଡ଼ିଶାର ପ୍ରାଚୀନ କବିମାନେ ଓଡ଼ିଆ ତଥା ସଂସ୍କୃତ ଭାଷାରେ ଏହି

୫୦ । ପ୍ରାଚୀନ ଉତ୍କଳ ପୃ ୩୨-୪୧ ।

ଯାହା ସମ୍ବନ୍ଧରେ ଅନେକ କବିତା ଓ ପୁସ୍ତକ ରଚନା କରିଥିଲେ । ସେଥି ମଧ୍ୟରେ ଗଞ୍ଜାମ ଜିଲ୍ଲା ନିବାସୀ ବନ୍ଦିବାକ୍ ଚକ୍ରପାଣି କୃତ 'ଗୁଣ୍ଡିଚ୍ଚ ଚମ୍ପୂ'ର ବିଶେଷ ପ୍ରସିଦ୍ଧି ରହିଛି । ଏହି ଗ୍ରନ୍ଥର ଶେଷ ଶ୍ଳୋକରେ କବି ଗ୍ରନ୍ଥରଚନାର ସମୟ ଦେଇଛନ୍ତି, ଯଥା-

" ସମାପ୍ତା ଗୁଣ୍ଡିଚ୍ଚ ଚମ୍ପୂରିୟ ମନ୍ୟନ୍ତ ଦୁର୍ଲଭା
କୃତା **କାୟସ୍ଥକେନାପି କୃତିନା ଚକ୍ରପାଣିନା ।**
ବୀରକେଶରୀ ଭୂପସ୍ୟ ରାମବାଣାଙ୍କକେଽସିତେ
କାର୍ତ୍ତିକୈକାଦଶୀ କାବ୍ୟବାସରେ ଲିଖିତା ମୟା ।"

ଅର୍ଥାତ୍ କାୟସ୍ଥ କୁଳଜାତ କବି ଚକ୍ରପାଣି ବୀରକେଶରୀ ଦେବଙ୍କ ୫୩ ଅଙ୍କ, କାର୍ତ୍ତିକ କୃଷ୍ଣ ଏକାଦଶୀ ଶୁକ୍ରବାର ଦିନ ଗୁଣ୍ଡିଚ୍ଚ ଚମ୍ପୂର ଲେଖା ଶେଷ କରିଥିଲେ । ଜ୍ୟୋତିଷ ଗଣନାନୁସାରେ ୧୭୭୮ ଖ୍ରୀଷ୍ଟାବ୍ଦ ଅକ୍ଟୋବର ମାସ ୧୬ ତାରିଖରେ କାର୍ତ୍ତିକ କୃଷ୍ଣ ଏକାଦଶୀ ଶୁକ୍ରବାର ପଡ଼ିଥିଲା । (୫୧)

ଚକ୍ରପାଣି ଜଣେ ଆଶୁ କବି ଥିଲେ । ସେ ସଂସ୍କୃତରେ ଅନେକ ଶ୍ଳୋକ ରଚନା କରିଥିଲେ । ସେ ଓଡ଼ିଆ ଭାଷାରେ 'କୃଷ୍ଣବିଳାସ' ନାମକ ଏକ ସୁନ୍ଦର କାବ୍ୟ ରଚନା କରିଥିବାର ଜଣାଯାଏ । ସୁଧିବର୍ଗଦ୍ୱାରା ଆଦୃତ ତାଙ୍କ ଗୁଣ୍ଡିଚ୍ଚଚମ୍ପୂ ଏ ପର୍ଯ୍ୟନ୍ତ ଅପ୍ରକାଶିତ ରହିଛି ।

## ବ୍ରଜସୁନ୍ଦର ପଟ୍ଟନାୟକ —

ବ୍ରଜସୁନ୍ଦର ପଟ୍ଟନାୟକ ବଳଭଦ୍ର ପଟ୍ଟନାୟକଙ୍କ ପୁତ୍ର ଓ ଆଶୁକବି ଚକ୍ରପାଣି ପଟ୍ଟନାୟକଙ୍କ ପିତା ଥିଲେ । ସଂସ୍କୃତ ପଦ୍ମପୁରାଣ ଅନ୍ତର୍ଗତ କ୍ରିୟାଯୋଗସାରରେ ବର୍ଣ୍ଣିତ 'ସୁଲୋଚନା ମାଧବ' ଉପାଖ୍ୟାନ ଅବଲମ୍ବନରେ ସେ ସଂସ୍କୃତ ଭାଷାରେ 'ସୁଲୋଚନା ମାଧବ' ବା 'ମାଧବୀୟ ଚରିତ' ନାମକ କାବ୍ୟ ରଚନା କରିଥିଲେ । ଷୋଡ଼ଶ ସର୍ଗରେ ସମାପ୍ତ ଖଣ୍ଡିଏ ପୋଥି ମିଉଜିୟମରେ ଅଛି । ଏହା ଅତ୍ୟନ୍ତ ସରସ, ଉପାଦେୟ ଓ ସୁଖପାଠ୍ୟ । ଏହାର ବିଭିନ୍ନ ସ୍ଥାନରେ ପ୍ରକୃତି ବର୍ଣ୍ଣନା ଅତ୍ୟନ୍ତ ମନୋରମ ହୋଇଛି । ସେ ଖେମୁଣ୍ଡି ରାଜ୍ୟାଧିପ ବାସୁଦେବଙ୍କ ପୁତ୍ର ପୁରୁଷୋତ୍ତମ ଅନଙ୍ଗଭୀମ ଦେବ (୧୭୨୮–୧୭୭୭)ଙ୍କ ସଭା ମଣ୍ଡନ କରୁଥିଲେ । ସେ ୧୭୬୦ ପୂର୍ବରୁ ଏହି ଗ୍ରନ୍ଥ ରଚନା କରିଥିବାର ମନେହୁଏ । ତାଙ୍କ କୃତ ଅନ୍ୟ କୌଣସି ଗ୍ରନ୍ଥର ସନ୍ଧାନ ଏପର୍ଯ୍ୟନ୍ତ ମିଳିନାହିଁ । ତାଙ୍କ ପିତା ବଳଭଦ୍ର ମଧ୍ୟ ଜଣେ କବି ଥିବା ଗ୍ରନ୍ଥ-ପାଠରୁ ଜଣାଯାଏ । ଯଥା—

---

୫୧ । **Indian Ephemeris, Vol VI, P, 359.**

**ଯତ୍ରାତୋ ବଳଭଦ୍ର ନାମ ଭଣିତୋ, ଧୀମାନ୍ କବି କାବ୍ୟତଃ ।**

ତାଙ୍କ ପରିବାର କବିତ୍ୱ ଓ ପାଣ୍ଡିତ୍ୟ ଯୋଗୁଁ ସମଗ୍ର ଉତ୍କଳରେ ଖ୍ୟାତିଲାଭ କରିଥିଲେ । ତାଙ୍କ ସମ୍ବନ୍ଧରେ ବିଶଦ ବିବରଣୀ ମୋ ଦ୍ୱାରା ଏକ ପ୍ରବନ୍ଧରେ ପ୍ରକାଶିତ ହୋଇଛି । (୫୨)

## ଚମ୍ପୂନୀ ଚନ୍ଦ୍ରଶେଖର ରାଜଗୁରୁ —

ତାଙ୍କ ପିତା ସପ୍ତସୋମଯାଜୀ ବାଜପେୟୀ ଗୋପୀନାଥ ରାଜଗୁରୁ ଉତ୍କଳ ପ୍ରସିଦ୍ଧ ବତ୍ସସଗୋତ୍ର ପଣ୍ଡିତ ପରିବାରରେ ଜନ୍ମଲାଭ କରିଥିଲେ । ସେ ଖୋରଧା ରାଜବଂଶର ରାଜଗୁରୁ ଥିଲେ । ତାଙ୍କର ଦ୍ୱିତୀୟ ତନୟ ଚମ୍ପୂନୀ ଚନ୍ଦ୍ରଶେଖର ରାଜଗୁରୁ ବୀରକେଶରୀଦେବଙ୍କ ରାଜତ୍ୱ ଆରମ୍ଭରେ 'ମଧୁରାନିରୁଦ୍ଧନାଟକମ୍' ସଂସ୍କୃତ ଭାଷାରେ ରଚନା କରିଥିଲେ । ଯଥା —

"ଦେବୋଽଜାଯତ **ରାମଚନ୍ଦ୍ର ଧରଣୀଭର୍ତ୍ତୁଃ** ସ ମର୍ତ୍ତ୍ୟୋତ୍ତମା<br>
ନ୍ନେଲ୍ଲୋତ୍କୋଭାଦ୍ଭୁତ କର୍ମଣି ପ୍ରଥମତଃ କଳ୍କିପ୍ରଥାଂ ବିଭ୍ରତଃ ।<br>
କ୍ଷୌଣୀଭୃଦ୍‌ଗଣମୌଳିଦତ୍ତଚରଣଃ କୃତ୍ୱା ଜନୈକ ସ୍ଥିତିମ୍<br>
ଧୀରାଃ ସ୍ୱାତ୍ମଜ **ବୀରକେଶରୀ ପଦଂ** ଯଃ ସାନ୍ୱୟଂ ମନ୍ୟତେ ।<br>
ତଦ୍ଦେଶ ନତ୍ୟବାପ୍ତବ୍ୟଃ ସ୍ତବ୍ୟଃ ତତ୍କବି କୋବିଦୈଃ<br>
**ଅସ୍ୟକର୍ତ୍ତା ପ୍ରବନ୍ଧସ୍ୟ ଚମ୍ପୂନୀ ଚନ୍ଦ୍ରଶେଖରଃ ।"**

ଆଠଟି ଅଙ୍କରେ ସମାପ୍ତ ଏହି ନାଟକର ଭାଷା କ୍ଲିଷ୍ଟ ହେଲେ ମଧ୍ୟ ଉତ୍କଳୀୟ ପଣ୍ଡିତ ସମାଜରେ ଏହାର ବିଶେଷ ଆଦର ଥିଲା । ତାଙ୍କ କୃତ ଅନ୍ୟ କୌଣସି ଗ୍ରନ୍ଥର ସନ୍ଧାନ ଏପର୍ଯ୍ୟନ୍ତ ମିଳିନାହିଁ । ବୋଧହୁଏ କମ୍ପଦନ୍ତୀ ପ୍ରସିଦ୍ଧ ଚନ୍ଦ୍ରରାଜଗୁରୁ ଓ ଚମ୍ପୂନୀ ଚନ୍ଦ୍ରଶେଖର ରାଜଗୁରୁ ଏକ ଓ ଅଭିନ୍ନ ବ୍ୟକ୍ତି । ଏହା ହୋଇଥିଲେ ଉତ୍କଳବଂଶର ଇତିହାସ ସୁସ୍ପଷ୍ଟ ହୋଇପିବ । ଚନ୍ଦ୍ରଶେଖରଙ୍କ ପିତା ଗୋପୀନାଥ ବାଜପେୟୀ ଜଣେ ପ୍ରସିଦ୍ଧ ସ୍ମୃତିକାର ଥିଲେ । କିନ୍ତୁ ତାଙ୍କ ରଚିତ ଗ୍ରନ୍ଥର ନାମ ଜଣାଯାଇନାହିଁ । ହତଭାଗ୍ୟ ଉତ୍କଳର ଏହିପରି ଶତ ଶତ ଗ୍ରନ୍ଥରତ୍ନ କାଳକ୍ରମେ ନଷ୍ଟ ହୋଇଗଲାଣି ।

## କବିଭୂଷଣ ଗୋବିନ୍ଦ ସାମନ୍ତରାୟ—

କବିଭୂଷଣ ଗୋବିନ୍ଦ ସାମନ୍ତରାୟଙ୍କ ପରିବାର ପାଣ୍ଡିତ୍ୟ ଓ ବିଦ୍ୱତ୍ତା ଯୋଗୁଁ ସମଗ୍ର ଭାରତବନ୍ଦିତ ଥିଲେ । ତାଙ୍କ ପୂର୍ବପୁରୁଷ କବିଚନ୍ଦ୍ର ବିଶ୍ୱନାଥ ସାମନ୍ତରାୟ

---

୫୨ । ଝଙ୍କାର—ଅଷ୍ଟମ ବର୍ଷ, ୧୧ଶ ସଂଖ୍ୟା, ୧୦୭୨ ପୃଷ୍ଠା ।

ମାନସିଂହଙ୍କ ସ୍ୱୀୟ ପାଣ୍ଡିତ୍ୟରେ ମୁଗ୍ଧ କରାଇବାରୁ ସେ ତାଙ୍କୁ ବାଙ୍କୀ ନେଇଥିଲେ । ସେଠାରେ ମଧ୍ୟ ବାଦସାହ ଆକ୍‌ବର ବିଶ୍ୱନାଥଙ୍କ ଅଲୌକିକ ପ୍ରତିଭା ଓ ପାଣ୍ଡିତ୍ୟ ସନ୍ଦର୍ଶନରେ ଆପ୍ୟାୟିତ ହୋଇ ତାଙ୍କୁ ବହୁ ଧନରତ୍ନ, ବିଭୂଷଣ ଓ ଭୂମି ଉପହାର ସ୍ୱରୂପ ପ୍ରଦାନ କରିଥିଲେ । (୫୩) ବିଶ୍ୱନାଥଙ୍କ ପ୍ରଥମ ବାସସ୍ଥାନ ଥିଲା ପ୍ରାଚୀ ରାମଚନ୍ଦ୍ରପୁର ଶାସନ । କିନ୍ତୁ ତାଙ୍କର ଦୁଇପୁଅ ବାଦଶାହ ଜାହାଙ୍ଗୀରଙ୍କ ରାଜତ୍ୱରେ (୧୬୦୫-୧୬୨୭) ପୂର୍ବ ଅଞ୍ଚଳରେ ମୋଗଲ ଅତ୍ୟାଚାର ଅତ୍ୟନ୍ତ ପ୍ରବଳ ହେବାରୁ ବାଙ୍କୀ ରାଜ୍ୟକୁ ପଳାଇଗଲେ । କବିଭୂଷଣ ଗୋବିନ୍ଦ ବିଶ୍ୱନାଥଙ୍କ ବଂଶଧର ଓ ବାଙ୍କୀ ରାଜ୍ୟର ଅଧିବାସୀ ଥିଲେ । ସେ ଏକାଧାରରେ ଜଣେ ପ୍ରସିଦ୍ଧ କବି ପଣ୍ଡିତ ଓ ସ୍ମୃତିକାର ଥିଲେ । ତାଙ୍କ କୃତ ସୁବିଦିତ ସ୍ମୃତିଗ୍ରନ୍ଥର ନାମ 'ସ୍ମୃତିସର୍ବସ୍ୱ' । ଏହା ପୂର୍ବାର୍ଦ୍ଧ ଓ ଉତ୍ତରାର୍ଦ୍ଧ ଏପରି ଦୁଇଭାଗରେ ବିଭକ୍ତ । ଏହାର ପୂର୍ବାର୍ଦ୍ଧର କେତେକାଂଶ କଲିକତାର ଏସିୟାଟିକ୍ ସୋସାଇଟି ଦ୍ୱାରା ପ୍ରକାଶିତ ହୋଇଅଛି । ଏହାର ଉତ୍ତରାର୍ଦ୍ଧର ମୂଳଖଣ୍ଡ ପୋଥି ମିଉଜିୟମରେ ସୁରକ୍ଷିତ । ଗ୍ରନ୍ଥର ଶେଷ ଅଧ୍ୟାୟରେ କବି ଗ୍ରନ୍ଥ ରଚନାକାଳ ନିର୍ଦ୍ଦେଶ କରିଛନ୍ତି । ଯଥା—

"ଖଶୂନ୍ୟମୁନିଚନ୍ଦ୍ରମ୍ ପ୍ରମିତ ଶାକ ସମ୍ମିତେ
ଗତେ ବ୍ୟରଚି ମେଧୁଧା ଶାସ୍ତ୍ରମେତନ୍ମୁଦା ।"

ଅର୍ଥାତ୍ ଖ (୦) ଶୂନ୍ୟ (୦) ମୁନି (୭) ଚନ୍ଦ୍ରମା (୧) ବା ୧୭୦୦ ଶକାବ୍ଦରେ ବା ୧୭୭୮ ଖ୍ରୀଷ୍ଟାବ୍ଦରେ କବିଭୂଷଣ ଗୋବିନ୍ଦ ସ୍ମୃତିସର୍ବସ୍ୱ ଗ୍ରନ୍ଥ ସମାପ୍ତ କରିଥିଲେ । ସେ ପ୍ରୌଢ଼ାବସ୍ଥାରେ ଉକ୍ତ ପ୍ରସିଦ୍ଧ ସ୍ମୃତି ଗ୍ରନ୍ଥ ପ୍ରଣୟନ କରିଥିଲେ । ଏହା ପରେ ସେ 'ଗୀତଗୋବିନ୍ଦ'ର ଅନୁକରଣରେ 'ସଙ୍ଗୀତମାଧବ' ନାମକ ଏକ ଚମତ୍କାର ନାଟକ ରଚନା କରିଥିଲେ । ଏହା ଶ୍ରୀଚୈତନ୍ୟମତାବଲମ୍ବୀ ବୈଷ୍ଣବମାନଙ୍କ ମଧ୍ୟରେ ବିଶେଷ ଆଦୃତ ରୂପଗୋସ୍ୱାମୀ କୃତ ପ୍ରଖ୍ୟାତ 'ବିଦଗ୍ଧ ମାଧବ' ନାଟକର ସମକକ୍ଷ ଗ୍ରନ୍ଥ । ଉକ୍ତ ନାଟକ ସାତଅଙ୍କରେ ବିଭକ୍ତ । ଗୋବିନ୍ଦ ପ୍ରଭୁ ନିତ୍ୟାନନ୍ଦଙ୍କ ପରମଭକ୍ତ ଥିବା ନାଟକର ପ୍ରସ୍ତାବନାରୁ ଜଣାଯାଏ । ଯଥା—

ଅଦ୍ଭୁତଧାମପ୍ରେମଭୂମପ୍ରକାଶୀ ଶ୍ରୁତ୍ୟାମୋଦସତ୍ପ୍ରସାଦୋଽନୁରୂପଃ ।
ଆସ୍ତାଂ ନିତ୍ୟଂ ମାନସେ ମାମକୀନେ ଶ୍ରୀମାନ୍ ନିତ୍ୟାନନ୍ଦ ନାମେଷ୍ଟଦେବଃ ॥

---

୫୩ । କବିଭୂଷଣ ଗୋବିନ୍ଦଙ୍କ ପରିବାର ସମ୍ବନ୍ଧରେ ମୁଁ ଓଡ଼ିଆ ଓ ଇଂରାଜୀରେ ଧାରାବାହିକ ଭାବରେ ଆଲୋଚନା କରିଛି । ତେଣୁ ଏଠାରେ ପୁନରୁକ୍ତି ଅନାବଶ୍ୟକ ।

(କ) Orissa Historical Research Journal Vol I, Parts I & II

(ଖ) ଝଙ୍କାର ୨ୟ ବର୍ଷ, ସପ୍ତମ ସଂଖ୍ୟା ।

ଏହି ନାଟକଟି ପୁରୀ ଜଗନ୍ନାଥ ମନ୍ଦିର ମଧ୍ୟରେ ଅଭିନୀତ ହୋଇଥିବାର ଜଣାଯାଏ । ଯଥା—ସୂତ୍ରଧାର । ପଶ୍ୟ ।

"ନୀଳାଚଳମୌଳି ନୀଳାଚଳ ଜଳଧର ମଣ୍ଡଳାଡମ୍ବରସ୍ୟ ×
× ଶ୍ରୀ ମଧୁସୂଦନସ୍ୟ × × ଦେବତାଂ ଆରାଧୟାମଃ ।"

ସେ ଗଜପତି ବୀରକେଶରୀ ଦେବଙ୍କ ଠାରୁ କବିଭୂଷଣ ପଦବୀ ପ୍ରାପ୍ତ ହୋଇଥିଲେ । ତାଙ୍କ କୃତ ଅନ୍ୟାନ୍ୟ ଗ୍ରନ୍ଥମାନଙ୍କ ନାମ ଏ ପର୍ଯ୍ୟନ୍ତ ଜଣାଯାଇନାହିଁ ।

## କବିଚନ୍ଦ୍ର କମଳଲୋଚନ ଖଡ଼୍ଗରାୟ—

କବିଚନ୍ଦ୍ର କମଳଲୋଚନ ନିଜର ମହତ କୃତିମାନଙ୍କ ଯୋଗୁଁ ସମଗ୍ର ଭାରତରେ ଖ୍ୟାତିଲାଭ କରିଥିଲେ ଏବଂ ନାଗପୁରର ଭୋନ୍‌ସଲାଙ୍କ ଦରବାରରେ ଅତ୍ୟନ୍ତ ସମ୍ମାନିତ ହୋଇଥିଲେ । କିନ୍ତୁ ଡ଼ଃ ଡବ୍ଲ୍ୟୁ କାରମ୍ବଲକର ନାମକ ଜଣେ ମହାରାଷ୍ଟ୍ରୀୟ ଐତିହାସିକ ତାଙ୍କ ବଂଶ ପରିଚୟ ନ ପାଇ ତାଙ୍କୁ ବଙ୍ଗାଳୀ ବ୍ରାହ୍ମଣ ପଣ୍ଡିତ ବୋଲି ପରିଚିତ କରାଇଥିଲେ । ଯଥା —

'The poet Kamalalochana was with a greater probability a Bengali Brahman brought over to Nagpur by Bhonsla Raja from Bengal in one of his campaigns in that province '୫୪

ମୁଁ ଏହି ଉକ୍ତିର ଦୃଢ଼ ପ୍ରତିବାଦ ଇଂରେଜୀ ଓ ଓଡ଼ିଆରେ ଲିଖିତ ଦୁଇଟି ପ୍ରବନ୍ଧରେ କରିଥିଲି । (୫୫) କବିଚନ୍ଦ୍ର ନିଜର ପରିଚୟ ସ୍ପଷ୍ଟ ଭାବରେ ସ୍ୱକୃତ ଗ୍ରନ୍ଥମାନଙ୍କରେ ଦେଇଛନ୍ତି ଏବଂ କବିଭୂଷଣ ଗୋବିନ୍ଦ ସାମନ୍ତରାୟଙ୍କ ନାତି ବୋଲି ଗର୍ବ ଓ ଗୌରବ ଅନୁଭବ କରିଛନ୍ତି । ଯଥା—

**"କବିଭୂଷଣ ସୁତନନ୍ଦନ ଭଣିତଂ"** ( ଗୀତମୁକୁନ୍ଦମ୍ )

ଅନ୍ୟତ୍ର, "ଶ୍ରୀ କୃଷ୍ଣ ଖଡ଼୍ଗ ରାୟୋଦ୍ଭୂତ **ଗୋବିନ୍ଦକବିଭୂଷଣାତ୍"**

---

୫୪ । The Indian Historical Quarterly, Vol XXV No. 2 June 1949.

୫୫ । (କ) Orissa Historical Research Journal Vol I, No. 2 P. 139-144 June, 1949.

(ଖ) ଝଙ୍କାର ପ୍ରଥମ ବର୍ଷ, ନବମ ସଂଖ୍ୟା

ତନ୍ନନ୍ଦନଃ ପ୍ରବନ୍ଧସ୍ୟ କର୍ତ୍ତା କମଲଲୋଚନଃ "।

( ସଙ୍ଗୀତ ଚିନ୍ତାମଣି )

ଅନ୍ୟତ୍ର, "ଯଃ କୃଷ୍ଣ ଖଡ୍‌ଗରାୟୋଽଭୂତ୍ **ଗୋବିନ୍ଦ କବିଭୂଷଣାତ୍**
ତସ୍ୟ ପୁତ୍ର କୃତୀ ଶ୍ରୀମାନ୍ କବି କମଲଲୋଚନଃ ।"

( ବ୍ରଜଯୁବ ବିଳାସ )

ଅନ୍ୟତ୍ର, "ତତ୍ପୁରସ୍ଥିତକାବ୍ୟାଗମରଚନପଟୁଃ **ଶ୍ରୀଲଗୋବିନ୍ଦ ନାମା**
ତସ୍ୟାସୀତ୍ ନନ୍ଦନୋ ଯଃ ସକଲଗୁଣିଗଣବନ୍ଦିତଃ କୃଷ୍ଣଚନ୍ଦ୍ରଃ,
ତସ୍ୟାତ୍ମଜଃ କମଲଲୋଚନ ନାମଧେୟଃ
**ଶ୍ରୀ ନୀଲଶୈଳନିଲୟଂ** କଳୟନ୍ ଅକସ୍ମାତ୍ ।"

( ଭଗବଲ୍ଲୀଳାଚନ୍ତାମଣି )

କମଲଲୋଚନ କୃତ ଉପରୋକ୍ତ ଚାରୋଟି ଗ୍ରନ୍ଥ 'ଗୀତମୁକୁନ୍ଦ' 'ସଙ୍ଗୀତ ଚିନ୍ତାମଣି' 'ବ୍ରଜଯୁବବିଳାସ' ଓ 'ଭଗବଲ୍ଲୀଳାଚିନ୍ତାମଣି'ର ସନ୍ଧାନ ଏ ପର୍ଯ୍ୟନ୍ତ ମିଳିଛି । 'ଗୀତମୁକୁନ୍ଦ' ଓ 'ସଙ୍ଗୀତଚିନ୍ତାମଣି' ଗ୍ରନ୍ଥ ଦୁଇଟି ସୁପ୍ରସିଦ୍ଧ ଗୀତଗୋବିନ୍ଦ ଅନୁକରଣରେ ଲିଖିତ । ଏହି ଦୁଇଟି ଗ୍ରନ୍ଥ ନାଗପୁର ଭୋନ୍‌ସଲ ରାଜାଙ୍କ ଦ୍ୱାରା ବିଶେଷ ଆଦୃତ ହୋଇଥିଲା ଏବଂ ଏ ପର୍ଯ୍ୟନ୍ତ ସେଠା ଦରବାର ପୁସ୍ତକାଳୟରେ ରକ୍ଷିତ ଅଛି । 'ବ୍ରଜଯୁବବିଳାସ' ଶ୍ରୀ ରାଧାକୃଷ୍ଣ ଲୀଳା ବର୍ଣ୍ଣନାତ୍ମକ ଏକ ଅତି ଉଚ୍ଚକୋଟିର କାବ୍ୟ ଏବଂ ଏହାର ଭାଷା ଅତି ଲଳିତ, କୋମଳ, କାନ୍ତ ଓ ସାବଲୀଳ । ଏହା ୧୭ଟି ସର୍ଗରେ ବିଭକ୍ତ । ପୁରୀ ସଦାଶିବ ସଂସ୍କୃତ କଲେଜର ସ୍ୱର୍ଗତ ଅଧ୍ୟାପକ ପଣ୍ଡିତ ଶ୍ରୀ କୁଳମଣି ମିଶ୍ର ଏହା ସମ୍ବନ୍ଧରେ ପ୍ରଥମେ ସୂଚନା ଦେଇଥିଲେ (୫୬) 'ଭଗବଲ୍ଲୀଳାଚିନ୍ତାମଣି' ଗ୍ରନ୍ଥ ହେଉଛି ଶ୍ରୀମଦ୍ ଭାଗବତ ଦଶମସ୍କନ୍ଧର ଟୀକା । ପ୍ରଥମେ ଏହାକୁ ସ୍ୱର୍ଗତ ମହାମହୋପାଧ୍ୟାୟ ସଦାଶିବ କାବ୍ୟକଣ୍ଠ, ଆବିଷ୍କାର କରିଥିଲେ । ପରେ ସ୍ୱର୍ଗତ ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀ ପ୍ରଥମେ ଏହା ସମ୍ବନ୍ଧରେ ସଂକ୍ଷିପ୍ତ ଟିପ୍‌ପଣୀ ପ୍ରକାଶ କରିଥିଲେ । (୫୭) ଏହି ଗ୍ରନ୍ଥ ରଚନା କରିଥିବା ସମୟରେ କବି ପୁରୀରେ ଅବସ୍ଥାନ କରୁଥିଲେ । ତାଙ୍କ କୃତ ଅନ୍ୟ କୌଣସି ଗ୍ରନ୍ଥର ସନ୍ଧାନ ଏ ପର୍ଯ୍ୟନ୍ତ ମିଳିନାହିଁ । ଦୁଃଖର ବିଷୟ ଜୟଦେବଙ୍କ ସମକକ୍ଷ କବି କମଲଲୋଚନଙ୍କ କୃତିସମୂହ ସମ୍ବନ୍ଧରେ ଇଂରେଜୀ ଭାଷାରେ ବିଶେଷ ଆଲୋଚନା ହୋଇନଥିବାରୁ କବିବର ରାଧାନାଥଙ୍କ ଉକ୍ତି 'ନାମ ଖ୍ୟାତ ଗ୍ରନ୍ଥେ ପଡ଼ିନାହିଁ ଗାର' ତାଙ୍କ ପ୍ରତି ପ୍ରଯୁଜ୍ୟ । କବି ବିରଚିତ କେଶରୀ

---

୫୬ । ଚତୁରଙ୍ଗ, ଦ୍ୱିତୀୟ ଭାଗ, ୬ଷ୍ଠ ସଂଖ୍ୟା, ୧୯୫୬ ପୃ: ୨୬୪

୫୭ । **Notices of Sanskrit Manuscripts Vol IV. 1911 No. 195 P. 146.**

ଦେବଙ୍କ ରାଜତ୍ୱର ଶେଷ ଭାଗରେ ଓ ଦିବ୍ୟସିଂହଙ୍କ ରାଜତ୍ୱରେ (୧୭୯୩-୧୭୯୮) ଉପରୋକ୍ତ ଗ୍ରନ୍ଥ ସମୂହ ରଚନା କରିଥିଲେ ।

## ବାସୁଦେବ ରଥ ସୋମଯାଜୀ —

ବାସୁଦେବ କୃତ 'ଗଙ୍ଗବଂଶାନୁଚରିତଂଚମ୍ପୂ' କାବ୍ୟ ସମଗ୍ର ଭାରତର ଏକ ପ୍ରସିଦ୍ଧ ଗ୍ରନ୍ଥ । ଏହି ଗ୍ରନ୍ଥ ସମ୍ବନ୍ଧରେ ପ୍ରଥମେ ସ୍ୱର୍ଗତ ମହାମହୋପାଧ୍ୟାୟ ହରପ୍ରସାଦଶାସ୍ତ୍ରୀ ସଂକ୍ଷିପ୍ତ ଟିପ୍ପଣୀ ପ୍ରକାଶ କରିଥିଲେ । (୫୮) ସୁପ୍ରସିଦ୍ଧ ଆନ୍ଧ୍ର ଐତିହାସିକ ସୁବାରାଓ (୫୯) ସ୍ୱର୍ଗତ ଲକ୍ଷ୍ମୀନାରାୟଣ ହରିଚନ୍ଦନ ଜଗଦ୍ଦେବ (୬୦) ଓ ଶ୍ରୀଯୁକ୍ତ ଡ: ରାମଦାସ ପାନ୍ତୁଲୁ (୬୧) ପ୍ରଭୃତି ଏହି ଗ୍ରନ୍ଥ ସମ୍ବନ୍ଧରେ ଯତ୍ନକଳ୍ପିତ ଆଲୋଚନା କରିଥିଲେ । କିନ୍ତୁ ଉପରୋକ୍ତ ପୂଜ୍ୟ ମନୀଷୀମାନେ ଗ୍ରନ୍ଥ ରଚନାର ସମୟ ସ୍ଥିର କରିପାରି ନଥିଲେ । ଲେଖକ ଗ୍ରନ୍ଥ-ରଚନାକାଳ ଓ ଗ୍ରନ୍ଥର ଐତିହାସିକ ମୂଲ୍ୟ ସମ୍ବନ୍ଧରେ ତିନୋଟି ପ୍ରବନ୍ଧ ପ୍ରକାଶ କରି ଓଡ଼ିଶା ଇତିହାସ ସଂକଳନ ପାଇଁ ଏହି ଚମ୍ପୂ କାବ୍ୟର ଉପାଦେୟତା ପ୍ରତିପାଦନ କରିଅଛି । (୬୨) ତେଣୁ ଏ ସମ୍ପର୍କରେ ପୁନରୁକ୍ତି ଅନାବଶ୍ୟକ । କବିଙ୍କ ବାସସ୍ଥାନ ଗଞ୍ଜାମ ଜିଲ୍ଲା ଆଠଗଡ଼ ରାଜ୍ୟ ଅନ୍ତର୍ଗତ ଲାଟୁଳି ରଘୁନାଥପୁର । ତାଙ୍କ ବଂଶଧରମାନେ ଅଦ୍ୟାପି ଛତ୍ରନା ଜଗନ୍ନାଥପୁର ଓ ଖଲ୍ଲିକୋଟରେ ବାସ କରୁଛନ୍ତି । ସେ ବିଷ୍ଣୁ ରଥଙ୍କ ପ୍ରନପ୍ତା, ଶ୍ରୀନିବାସ ରଥ ଦୀକ୍ଷିତଙ୍କ ନପ୍ତା, କବି ଗୋବିନ୍ଦ ରଥଙ୍କ ପୁତ୍ର ଥିଲେ । ସେ ଆଠଗଡ଼ ରାଜବଂଶର ରାଜଗୁରୁ ଥିଲେ । ସେ ନିଜର ପାଣ୍ଡିତ୍ୟ ଯୋଗୁଁ ଆଠଗଡ଼ ରାଜା ରଘୁନାଥ ହରିଚନ୍ଦନ ଓ ତାଙ୍କ ପୁତ୍ର ଜଗନ୍ନାଥ ହରିଚନ୍ଦନ ଜଗଦ୍ଦେବଙ୍କ ଠାରୁ ୧୭୩୪ ଓ ୧୭୩୯ ଖ୍ରୀଷ୍ଟାବ୍ଦରେ ବହୁ ଭୂସମ୍ପତ୍ତି ଲାଭ କରିଥିଲେ । କୌଣସି କାରଣରୁ ସେ ଆଠଗଡ଼ ଛାଡ଼ି ଶେଷ ଜୀବନରେ ଖେମୁଣ୍ଡିର ପ୍ରତାପୀ ରାଜା ପୁରୁଷୋତ୍ତମ ଅନଙ୍ଗଭୀମଦେବଙ୍କ ଆଶ୍ରୟ ଲାଭ କରିଥିଲେ । ସ୍ୱୀୟ ପୃଷ୍ଠପୋଷକ ଗଙ୍ଗବଂଶ ସମ୍ଭୂତ ହୋଇଥିବାରୁ ସେ ତାଙ୍କର ସନ୍ତୋଷ ବିଧାନ ପାଇଁ 'ଗଙ୍ଗବଂଶାନୁଚରିତଂ ଚମ୍ପୂ' କାବ୍ୟ ୧୭୬୦-୧୭୬୧ ଖ୍ରୀଷ୍ଟାବ୍ଦରେ ରଚନା କରିଥିଲେ । ଏହି ଗ୍ରନ୍ଥରେ ପ୍ରଦତ୍ତ

---

୫୮ । **Report on the Search of Sanskrit Manuscripts 1895 1900 Pages 18-19**

୫୯ । **J. A. H. R S. Vol. VII Part 4 P. 238-240.**

୬୦ । **,, Vol. VI pp. 15-16 and pp. 265-269**

୬୧ । **The Prachi Vol. II**

୬୨ । ଝଙ୍କାର ୪ର୍ଥ ବର୍ଷ ୩ୟ ସଂଖ୍ୟା ଓ ସହକାର ୩୦ ଭାଗ, ଦ୍ୱିତୀୟ ଓ ତୃତୀୟ ସଂଖ୍ୟା ।

କଟକର ଗଙ୍ଗବଂଶ ଇତିହାସ ମାଦଳାପାଞ୍ଜିରୁ ଗୃହୀତ ହୋଇଥିବାରୁ କମ୍ବଦନ୍ତୀ ମୂଳକ । କିନ୍ତୁ ଏଥିରେ ବର୍ଣ୍ଣିତ ଖେମୁଣ୍ଡି ଗଙ୍ଗବଂଶର ଇତିହାସ, ଆଠଗଡ଼, ଖୁରୁଧା, ଖଲି-କୋଟ ରାଜାମାନଙ୍କ ବିବରଣୀ ସଂପୂର୍ଣ୍ଣ ବିଶ୍ୱାସଯୋଗ୍ୟ ଓ ଅନ୍ୟାନ୍ୟ ସୂତ୍ରରୁ ଉପଲବ୍ଧ ପ୍ରମାଣ ଦ୍ୱାରା ସମର୍ଥିତ । ପରିଶେଷରେ ଏଥିରେ ପ୍ରଦତ୍ତ ଭୌଗୋଳିକ ବିବରଣ ଅତ୍ୟନ୍ତ ଉପାଦେୟ । କବି କିଛିକାଳ ପୁରୀରେ କାଳଯାପନ କରିଥିବା ଗ୍ରନ୍ଥ ପାଠରୁ ଜଣାଯାଏ । ସେ ପୁରୀର ତଦାନୀନ୍ତନ ପ୍ରସିଦ୍ଧ ପଣ୍ଡିତ ସଚ୍ଚିଦାନନ୍ଦ, ଶଙ୍କରାନନ୍ଦ ତୀର୍ଥ ଏବଂ ଭଗବାନ ଭ୍ରମରବରଙ୍କ ନାତି ଓ ଗୋପୀନାଥ ବିଦ୍ୟାଧରଙ୍କ ପୁତ୍ର ଗଜପତି ବୀରକେଶରୀ ଦେବଙ୍କ ଅର୍ଥ ସଚିବ ପୁରୁଷୋତ୍ତମ ବିଦ୍ୟାଧରଙ୍କ ସମ୍ବନ୍ଧରେ ମୂଲ୍ୟବାନ ତଥ୍ୟ ଯୋଗାଇଛନ୍ତି । ପଞ୍ଚମ ପରିଚ୍ଛେଦରେ ବର୍ଣ୍ଣିତ ରସମୟ ଚନ୍ଦ୍ରପ୍ରଭା ଉପାଖ୍ୟାନରେ ପ୍ରଧାନ ନାୟକ ହୋଇଛନ୍ତି ପୁରୁଷୋତ୍ତମ ବିଦ୍ୟାଧର । ଅଷ୍ଟାଦଶ ଶତାବ୍ଦୀର ଓଡ଼ିଶାର ଇତିହାସ ଓ ଭୂଗୋଳ ସମ୍ବନ୍ଧରେ ଏହି ଗ୍ରନ୍ଥରେ ବହୁ ମୂଲ୍ୟବାନ ତଥ୍ୟ ଥିଲେ ମଧ୍ୟ ଗ୍ରନ୍ଥଟି ଏ ପର୍ଯ୍ୟନ୍ତ ଅପ୍ରକାଶିତ ରହିଥିବା ଅତ୍ୟନ୍ତ ନିନ୍ଦାର ବିଷୟ । ତାଙ୍କ କୃତ ଅନ୍ୟ କୌଣସି ଗ୍ରନ୍ଥର ସନ୍ଧାନ ଏ ପର୍ଯ୍ୟନ୍ତ ମିଳିନାହିଁ ।

## କବିରତ୍ନ ହରସେବକ ସାମନ୍ତରାୟ—

କବିରତ୍ନ ହରସେବକ ସାମନ୍ତରାୟ ଗଞ୍ଜାମ ଜିଲ୍ଲାର ଏକ ପ୍ରସିଦ୍ଧ ପଣ୍ଡିତ ପରିବାରରେ ଜନ୍ମଲାଭ କରିଥିଲେ । ତାଙ୍କ ପିତା ପରମେଶ୍ୱର ସାମନ୍ତରାୟ ଖେମୁଣ୍ଡି ରାଜା ପୀତାମ୍ବର ଅନଙ୍ଗଭୀମଦେବଙ୍କ ସଭାକବି ଥିଲେ । ରାଜାଙ୍କ ଆଦେଶରେ ସେ ସଂସ୍କୃତ ଭାଷାରେ ସୁପ୍ରସିଦ୍ଧ 'ଅମରକୋଷ'ର ସମକକ୍ଷ ଏକ କୋଷଗ୍ରନ୍ଥ ଏବଂ ଶ୍ରୀ ରାଧାକୃଷ୍ଣ ଲୀଳା ବର୍ଣ୍ଣନାତ୍ମକ 'ମଥୁରାପ୍ରୟାଣ' ନାମକ ଖଣ୍ଡକାବ୍ୟ ରଚନା କରିଥିଲେ । ସେ ଖେମୁଣ୍ଡି ରାଜ୍ୟର ରାଜଧାନୀ 'ବିଜୟନଗର' ଠାରେ ଗୋବିନ୍ଦରାମ ଭଟ୍ଟାଚାର୍ଯ୍ୟ ନାମକ ପ୍ରସିଦ୍ଧ ବିଦେଶୀ ପଣ୍ଡିତଙ୍କୁ ଯୁକ୍ତି ବଳରେ ପରାସ୍ତ କରି ରାଜା ପୀତାମ୍ବରଙ୍କଠାରୁ ସାମନ୍ତରାୟ ପଦବୀ ପ୍ରାପ୍ତ ହୋଇଥିଲେ ।

ତାଙ୍କର ବିଦ୍ୟାଗୁରୁ ଜ୍ୟେଷ୍ଠଭ୍ରାତା ଦାମୋଦର ପଣ୍ଡିତ ଖେମୁଣ୍ଡି ଅଧିପତିଙ୍କ ଠାରୁ ନିଜର ପାଣ୍ଡିତ୍ୟ ଯୋଗୁଁ 'ମହୋପାଧ୍ୟାୟ' ପଦବୀ ଲାଭ କରିଥିଲେ । ସେ ମହାରାଜାଧିରାଜ ପୁରୁଷୋତ୍ତମଙ୍କ ନିର୍ଦ୍ଦେଶରେ 'ଭକ୍ତିରସାମୃତ ସିନ୍ଧୁ' ନାମକ ପ୍ରସିଦ୍ଧ ବୈଷ୍ଣବ ଗ୍ରନ୍ଥର ଟିପ୍ପଣୀ ରଚନା କରିଥିଲେ । ତାଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ ହରସେବକ କବିରାଜ କୃଷ୍ଣ ଦାସ ଗୋସ୍ୱାମୀ କୃତ ପ୍ରଖ୍ୟାତ 'ଗୋବିନ୍ଦ ଲୀଳାମୃତ' କାବ୍ୟର ଟୀକା ରଚନା କରିଥିଲେ । ଏହି ଟୀକାର ନାମ 'ବୈଷ୍ଣବାହ୍ଲାଦିନୀ' ଯଥା—

ଗୋବିନ୍ଦ ଲୀଳାମୃତ କାବ୍ୟ ଟୀକା, ସଦ୍ ବୈଷ୍ଣବାହ୍ଲାଦକରୀ ମନୋଜ୍ଞା ।

ଭାବାର୍ଥ ମାତ୍ର ପ୍ରତିପାଦନୀୟା ମନ୍ତାଂସଦା କଣ୍ଠଗତା ବଦସ୍ତାଂ ।
ଇତି ଶ୍ରୀମତ୍‌......ହର ସେବକ କବିରତ୍ନ ବିରଚିତାୟାଂ ବୈଷ୍ଣବାହ୍ଲାଦନୀ ସମାଖ୍ୟାୟାଂ ଗୋବିନ୍ଦ ଲୀଳାମୃତ ବ୍ୟାଖ୍ୟାୟାଂ ।

କବିଙ୍କ ପୃଷ୍ଠପୋଷକ ମହାରାଜା ପୁରୁଷୋତ୍ତମ ଅନଙ୍ଗଭୀମଦେବ ୧୭୨୮ରୁ ୧୭୭୭ ପର୍ଯ୍ୟନ୍ତ ଖେମୁଣ୍ଡି ରାଜ୍ୟର ଅଧୀଶ୍ୱର ଥିଲେ । ଏହି ଗ୍ରନ୍ଥ ତାଙ୍କ ରାଜତ୍ୱର ପ୍ରଥମ ଭାଗରେ ରଚିତ ହୋଇଥିବା ମୋ ଦ୍ୱାରା ପ୍ରକାଶିତ ଏକ ପ୍ରବନ୍ଧରେ ନିର୍ଦ୍ଧାରିତ ହୋଇଛି । (୭୩) କବିଙ୍କ କୃତ ଅନ୍ୟ କୌଣସି ଗ୍ରନ୍ଥର ସନ୍ଧାନ ଏ ପର୍ଯ୍ୟନ୍ତ ମିଳି ନାହିଁ । କବି, ତାଙ୍କର ପିତା ଓ ପିତୃବ୍ୟ ନୈଷ୍ଠିକ ଶ୍ରୀଚୈତନ୍ୟମତାବଲମ୍ବୀ ବୈଷ୍ଣବ ଥିଲେ । ଅତ୍ୟୁଚ୍ଚ ପର୍ବତ ଓ ଘନବନାଚ୍ଛାଦିତ ଖେମୁଣ୍ଡି ମାଳ ମଧ୍ୟରେ ମଧ୍ୟ ସେ ଯୁଗରେ ଶ୍ରୀଚୈତନ୍ୟ ମତ ପ୍ରବେଶ ଓ ପ୍ରତିଷ୍ଠାଲାଭ କରିଥିବା କବିଙ୍କ ନାମ ଓ ତାଙ୍କ କୃତିମାନଙ୍କରୁ ଜଣାଯାଏ । ଏହାର କାରଣ ବର୍ତ୍ତମାନ ଗବେଷଣାସାପେକ୍ଷ ।

## କବିଭୂଷଣ ଗୋପୀନାଥ ପାତ୍ର—

କବିଭୂଷଣ ଗୋପୀନାଥ ପାତ୍ର ସଂସ୍କୃତ ଭାଷାରେ 'କବିଚିନ୍ତାମଣି' ନାମକ ଅତି ଉପାଦେୟ ଅଳଙ୍କାର ଗ୍ରନ୍ଥ ରଚନା କରିଥିଲେ । ଏହା ୨୫ଟି କିରଣ ବା ଅଧ୍ୟାୟରେ ବିଭକ୍ତ । ଗ୍ରନ୍ଥର ପ୍ରାମାଣିକତା ଓ ଉପାଦେୟତା ବୃଦ୍ଧି କରିବା ନିମିତ୍ତ ସେ ସଂସ୍କୃତରେ ରଚିତ ଶତ ଶତ ଗ୍ରନ୍ଥରୁ ଶ୍ଳୋକମାନ ସ୍ୱକୃତରେ ଉଦ୍ଧାର କରିଛନ୍ତି । ପ୍ରତ୍ୟେକ କିରଣ ଶେଷରେ ସେ ନିଜର ପରିଚୟ ନିମ୍ନଲିଖିତ ପୁଷ୍ପିକାରେ ପ୍ରକାଶ କରିଛନ୍ତି ଯଥା—"ଇତି ଶ୍ରୀମତ୍ ଖେମୁଣ୍ଡି ମହାରାଜ୍ୟେଶ୍ୱର ଗଙ୍ଗବଂଶାବତଂସ ବୀର ଶ୍ରୀ ଗଜପତି **ଜଗନ୍ନାଥ ନାରାୟଣଦେବ** ବିଦ୍ୱତ୍-ସଭା-ରଞ୍ଜିତ ପ୍ରବନ୍ଧ-କବିତା ପ୍ରକାଶକ କରଣ-କୁଳସମ୍ଭବ କବିଭୂଷକବର ବାସୁଦେବ ପାତ୍ରତନୟ ଶ୍ରୀମଦ୍‌ଗୋପୀନାଥ କବିଭୂଷଣ କୃତୌ କବି ଚିନ୍ତାମଣୌ × × × କିରଣଃ ।"

ସେ ପାରଳାଖେମୁଣ୍ଡି ଅଧୀଶ୍ୱର ଗଜପତି ଜଗନ୍ନାଥ ନାରାୟଣ ଦେବଙ୍କ ସଭା ମଣ୍ଡନ କରୁଥିବାରୁ ଏହି ଗ୍ରନ୍ଥ ଗଜପତିଙ୍କ ମୃତ୍ୟୁ ପୂର୍ବରୁ (୧୭୬୮) ରଚିତ ହୋଇଥିବା ସୁନିଶ୍ଚିତ । ତାଙ୍କ ପିତା ବାସୁଦେବ ପାତ୍ର 'କବିଭୂଷକବର' ଉପାଧିରେ ମଣ୍ଡିତ ହୋଇଥିବାରୁ ସେ ମଧ୍ୟ କାବ୍ୟ ଓ ଆୟୁର୍ବେଦ ଗ୍ରନ୍ଥ ରଚନା କରିଥିବାର ମନେ ହୁଏ । କିନ୍ତୁ ସେଗୁଡ଼ିକର ନାମ ମଧ୍ୟ ଏ ପର୍ଯ୍ୟନ୍ତ ଅଜ୍ଞାତ ରହିଛି । କବିଭୂଷଣ ଗୋପୀନାଥ

---

୭୩ । The Orissa Historical Research Journal Vol III. No. 3, 1954 P. 150-156.

ଏହି ଗ୍ରନ୍ଥ ରଚନା କରିବା ପୂର୍ବରୁ ଓଡ଼ିଆ ଭାଷାରେ 'ରମକହାର' ନାମକ ଗୀତ ଲେଖିଥିଲେ । 'ଏକାବଳୀ' ପ୍ରଣେତା ବିଦ୍ୟାଧରଙ୍କ ସମୟରୁ (୧୬୭୦) ଓଡ଼ିଶାର ପଣ୍ଡିତମାନେ ସ୍ୱ ସ୍ୱ ମହନୀୟ କୃତିସମୂହ ଦ୍ୱାରା ସଂସ୍କୃତ ଅଳଙ୍କାର ସାହିତ୍ୟକୁ ସମୃଦ୍ଧ କରିଥିଲେ । ଉତ୍କଳର ଏହି ପରମ୍ପରା ରକ୍ଷାକରି ଗୋପୀନାଥ 'କବିଚିନ୍ତାମଣି' ଗ୍ରନ୍ଥ ପ୍ରଣୟନ କରିଥିଲେ । ଗ୍ରନ୍ଥଟି ଅତ୍ୟନ୍ତ ଉପାଦେୟ ହେଲେ ମଧ୍ୟ ଏପର୍ଯ୍ୟନ୍ତ ଅପ୍ରକାଶିତ ।

## ଲୋକନାଥ ତ୍ରିପାଠୀ —

କବି ଲୋକନାଥ ତ୍ରିପାଠୀ କବିଭୂଷଣ ଗୋପୀନାଥଙ୍କ ସମକାଳୀନ ଏବଂ ସାହିତ୍ୟ କ୍ଷେତ୍ରରେ ତାଙ୍କର ପ୍ରଧାନ ପ୍ରତିଯୋଗୀ ଥିଲେ । କିନ୍ତୁ ଲୋକନାଥ କୌଣସି ଦୁରାରୋଗ୍ୟ ରୋଗ (ସମ୍ଭବତଃ କୁଷ୍ଠ)ରେ ଆକ୍ରାନ୍ତ ହୋଇ ଅତ୍ୟନ୍ତ ଦୁଃଖକଷ୍ଟରେ ଜୀବନଯାପନ କରିଥିଲେ । ତାଙ୍କର ଦୁଇ ବଡ ଭାଇ ଅତ୍ୟନ୍ତ ଧନୀ ଥିଲେ ମଧ୍ୟ ତାଙ୍କ ପ୍ରତି ସର୍ବଦା ଶତ୍ରୁତାଚରଣ କରୁଥିବାରୁ ନିଃସ୍ୱ ଓ ରୋଗାକ୍ରାନ୍ତ କବିଙ୍କ ଜୀବନ ଦୁର୍ବିସହ ହୋଇ ପଡ଼ିଥିଲା । ଅଗତ୍ୟା ଅନାଥନାର ତାଡ଼ନାରେ ସେ ଖାରକୁପାସିନ୍ଧୁ ନରେନ୍ଦ୍ର ଦେବ, ଶ୍ରୀ କୃଷ୍ଣଭଞ୍ଜ, ଶ୍ରୀ ମାନସିଂହ, ଶ୍ରୀ କୂର୍ମନାଥ ପାତ୍ର ପ୍ରଭୃତି ରାଜପୁରୁଷମାନଙ୍କ ଆଶ୍ରୟଲାଭ କରିବାପାଇଁ ସେମାନଙ୍କ ଶରଣାପନ୍ନ ହୋଇଥିଲେ । ପରିଶେଷରେ ପାରଳାଧୀଶ୍ୱର ସାହିତ୍ୟପ୍ରେମୀ ଜଗନ୍ନାଥ ନାରାୟଣଦେବଙ୍କ ଅନୁଗ୍ରହ ଲାଭ କରି ସ୍ୱୀୟ ଗ୍ରନ୍ଥ 'କବି କଣ୍ଠହାର'କୁ ତାଙ୍କ ନାମରେ ରଚନା କରିଥିଲେ । ଯଥା—

"ଶ୍ରୀମଦ୍‌ଜଗନ୍ନାଥ ନାରାୟଣ ଦେବେନ ଭୂଭୁଜା
କବି କଣ୍ଠହାର ଇତି ଗ୍ରନ୍ଥୋଽୟଂ ରଚ୍ୟତେମୟା ।"

ଏହି ଗ୍ରନ୍ଥଟି ଦଶଟି 'ବିରଚନ' ବା ଅଧ୍ୟାୟରେ ବିଭକ୍ତ । ଯଥା—ବର୍ଣ୍ଣ-ବିରଚନ, ସଂଖ୍ୟା ନିରୂପଣ, ସ୍ୱରୂପ ନିରୂପଣ, ବସ୍ତୁ ନିରୂପଣ, ଜୟ ପରାଜୟ ନିରୂପଣ କବି ସମ୍ମତି ନିରୂପଣ, ସର୍ବାଙ୍ଗ ସ୍ୱରୂପ ନିରୂପଣ, ଉପମାନ ନିରୂପଣ, ପାଦପୂରଣ, ବନ୍ଧବିରଚନ । ଦାରିଦ୍ର୍ୟର କଷାଘାତ ଓ ଭୀଷଣ ରୋଗ ଯନ୍ତ୍ରଣା ସହ୍ୟକରି କବି ଲୋକନାଥ ସଂସ୍କୃତ ସାହିତ୍ୟର ଶ୍ରୀବୃଦ୍ଧି ସାଧନ ପାଇଁ ଉକ୍ତ ଉପାଦେୟ ଗ୍ରନ୍ଥଟି ରଚନା କରିଥିଲେ । କିନ୍ତୁ ଏହା ଏ ପର୍ଯ୍ୟନ୍ତ ଅପ୍ରକାଶିତ ।

## କବିରାଜ ଭଗବାନ ବ୍ରହ୍ମା—

କବିରାଜ ଭଗବାନ ବ୍ରହ୍ମାକୃତ । 'ଗୁଣ୍ଡିଚେଶ୍ୱରବର୍ଣ୍ଣନଂ' ନାମକ ଗ୍ରନ୍ଥ ପଣ୍ଡିତ ଶ୍ରୀ ଅନନ୍ତ ତ୍ରିପାଠୀ ଶର୍ମାଙ୍କ ଦ୍ୱାରା 'ଚିନ୍ତାମଣି ଗ୍ରନ୍ଥମାଳାର ପ୍ରଥମ ଖଣ୍ଡ ରୂପେ ପ୍ରକାଶିତ ହୋଇଅଛି । ସେ 'ମୃଗୟା' ନାମକ ଖଣ୍ଡକାବ୍ୟ ମଧ୍ୟ ରଚନା କରିଥିଲେ । ଏହା ଧାରାବାହିକ ଭାବରେ 'ମନୋରମା' ପତ୍ରିକାର କେତୋଟି ସଂଖ୍ୟାରେ ପ୍ରକାଶିତ

ହୋଇଥିଲା । ଉଭୟ ଗ୍ରନ୍ଥରେ କବି କଞ୍ଜର ବଂଶ ପରିଚୟ ପୃଷ୍ଠପୋଷକଙ୍କ ନାମ ଓ ଗ୍ରନ୍ଥ ରଚନା ସମୟ ସମ୍ବନ୍ଧରେ କୌଣସି ସୂଚନା ଦେଇନାହାନ୍ତି । ସ୍ୱର୍ଗତ ଜଗବନ୍ଧୁ ସିଂହ ସ୍ୱୀୟ 'ପ୍ରାଚୀନ ଉତ୍କଳ' ପୁସ୍ତକରେ ଭଗବାନ କବିରାଜ ଓ କବି ଚକ୍ରପାଣି ପଟ୍ଟନାୟକଙ୍କ ମଧ୍ୟରେ ଉକ୍ତି ପ୍ରତ୍ୟୁକ୍ତି ଛଳରେ ରଚିତ ଦୁଇଟି ସୁନ୍ଦର ଶ୍ଳୋକ ଉଦ୍ଧାର କରିଛନ୍ତି । ଏହା ଯଦି ସତ୍ୟ ହୋଇଥାଏ ତେବେ ଭଗବାନ କବିରାଜ ବନବାକ୍ ଚକ୍ର-ପାଣିଙ୍କ ପରି ଗଜପତି ବୀରକେଶରୀ ଦେବଙ୍କ ସମକାଳୀନ ରୂପେ ଗୃହୀତ ହେବେ । ଏହି ତଥ୍ୟ ଅନ୍ୟ ପରୋକ୍ଷ ପ୍ରମାଣଦ୍ୱାରା ସମର୍ଥିତ ହୁଏ । ଉଭୟ କବି 'ଗୁଣ୍ଡିଚା ବିଜେ' ସମ୍ବନ୍ଧରେ ଗ୍ରନ୍ଥ ରଚନା କରିଥିବାରୁ ଦୁହିଁଙ୍କ ମଧ୍ୟରେ ପ୍ରତିଯୋଗୀତା ଥିବାର ମନେହୁଏ । କବିରାଜ ଭଗବାନ ଚକ୍ରପାଣିଙ୍କ ପରି ଗଞ୍ଜାମବାସୀ ଥିଲେ ଏବଂ ତାଙ୍କର ବଂଶଧର-ମାନେ ଏ ପର୍ଯ୍ୟନ୍ତ ଅଗ୍ରକୋଟ ଅଞ୍ଚଳରେ ବାସ କରୁଛନ୍ତି । କବିଙ୍କ ପାଣ୍ଡିତ୍ୟ ଓ ରଚନାପାଟବ ସମ୍ବନ୍ଧରେ ମନୋରମା ପତ୍ରିକାରେ ପ୍ରକାଶିତ ଗ୍ରନ୍ଥାଲୋଚନା ଦ୍ରଷ୍ଟବ୍ୟ ।

## ଯୋଗୀ ପ୍ରହରାଜ ମହାପାତ୍ର –

ଯୋଗୀ ପ୍ରହରାଜ ମହାପାତ୍ର ବୀରକେଶରୀ ଯୁଗର ଜଣେ ପ୍ରତିଭାଶାଳୀ ପଣ୍ଡିତ ଥିଲେ । ସେ ଓଡ଼ିଶାର ପ୍ରସିଦ୍ଧ ବତ୍ସସଗୋତ୍ର ପଣ୍ଡିତ ପରିବାରରେ ଜନ୍ମଗ୍ରହଣ କରି-ଥିଲେ । ତାଙ୍କ ପିତା ନନ୍ଦପୁର ବା ଜୟପୁର ରାଜ୍ୟର ଅଧିପତି ବିକ୍ରମଦେବଙ୍କ ସଭା ମଣ୍ଡନ କରୁଥିବା ଯୋଗୀ ପ୍ରହରାଜ ବିରଚିତ 'ବୈଦ୍ୟହୃଦୟାନନ୍ଦ' ଗ୍ରନ୍ଥରୁ ଜଣାଯାଏ । ଯଥା—

"ଯତ୍ତାତଃ ପ୍ରହରାଜ ଜ୍ୟୋତିଷରବିଃ ଶ୍ରୀ ନୀଲକଣ୍ଠଃ ସୁଧୀଃ
ଶ୍ରୀମନ୍ନନ୍ଦପୁରେଶ ବିକ୍ରମ ନୃପ ଶ୍ରୀ ପଟ୍ଟରାଜ୍ଞୀଗୁରୁଃ ।"

ବିକ୍ରମଦେବ ୧୭୫୮ରୁ ୧୭୮୧ ପର୍ଯ୍ୟନ୍ତ ରାଜତ୍ୱ କରୁଥିଲେ । ତେଣୁ ଯୋଗୀ ପ୍ରହରାଜ ଏହି ସମୟ ମଧ୍ୟରେ 'ବୈଦ୍ୟହୃଦୟାନନ୍ଦ' ଗ୍ରନ୍ଥ ରଚନା କରିଥିଲେ । ଏ ଗ୍ରନ୍ଥଟି ଅତି ଉପାଦେୟ ଓ ଲୋଲିମ୍ବରାଜ କୃତ ପ୍ରସିଦ୍ଧ 'ବୈଦ୍ୟଜୀବନ' ଗ୍ରନ୍ଥର ସମକକ୍ଷ ହୋଇଥିବାରୁ ୧୯୫୧ ମସିହାରେ ମାନ୍ଦ୍ରାଜ ସରକାର ଓଡ଼ିଆ ପଣ୍ଡିତଙ୍କ ଏହି ଅମର କୃତିକୁ ପ୍ରକାଶ କରିଛନ୍ତି (୬୪) ଯୋଗୀ ପ୍ରହରାଜ 'ସ୍ମୃତି ଦର୍ପଣ' ନାମକ ଅନ୍ୟ ଏକ ଗ୍ରନ୍ଥର ପ୍ରଣେତା । ସମୁଦାୟ ଗ୍ରନ୍ଥଟି କଳାହାଣ୍ଡିରେ ପ୍ରତ୍ନତତ୍ତ୍ୱ ବିଭାଗର ଅଧ୍ୟକ୍ଷ ଥିବା ସମୟରେ ପରୀକ୍ଷା କରିବାର ସୁଯୋଗ ମିଳିଥିଲା । ଏହି ଗ୍ରନ୍ଥର ଶେଷରେ ନନ୍ଦପୁର ବଂଶର ବର୍ଣ୍ଣନା ଥିବାରୁ ଗବେଷଣାଦୃଷ୍ଟିରୁ ଏହା ଅତ୍ୟନ୍ତ ଉପାଦେୟ ।

---

୬୪ । Published by the Oriental Manuscripts Library, Madras Vol IV No. 1 pp 1-45, 1952

ଏଥିରେ 'ଗଦାଧର ପଦ୍ଧତି' ଗ୍ରନ୍ଥରୁ ବହୁ ଶ୍ଳୋକ ଉଦ୍ଧୃତ ହୋଇଥିବାର ଦେଖାଯାଏ । ଯୋଗୀ ପ୍ରହରାଜ କବିବର ପଦବୀ ପ୍ରାପ୍ତ ହୋଇଥିବା ବୈଦ୍ୟହୃଦୟାନନ୍ଦର ପ୍ରତ୍ୟେକ ପ୍ରକାଶ ଶେଷରେ ଥିବା ପୁଷ୍ପିକାରୁ ଜଣାଯାଏ । ଯଥା —

" ଇତି ଶ୍ରୀ କବିବର ଯୋଗୀ ପ୍ରହରାଜ ମହାପାତ୍ର ବିରଚିତେ ବୈଦ୍ୟହୃଦୟାନନ୍ଦେ······ପ୍ରକାଶଃ ।" ତେଣୁ ସେ ଉପରୋକ୍ତ ଦୁଇଖଣ୍ଡ ଗ୍ରନ୍ଥ ବ୍ୟତୀତ ଅନ୍ୟ କେତେକ ଗ୍ରନ୍ଥ ଲେଖିଥିବାର ଅନୁମାନ କରାଯାଏ । କିନ୍ତୁ ସେଗୁଡ଼ିକର ନାମ ଏ ପର୍ଯ୍ୟନ୍ତ ଜଣା ଯାଇନାହିଁ । (୭୫)

## ମହାମହୋପାଧ୍ୟାୟ କବିକୋବିଦ କୃଷ୍ଣମିଶ୍ର —

କବି କୋବିଦ କୃଷ୍ଣ ମିଶ୍ର ଅଷ୍ଟାଦଶ ଶତାବ୍ଦୀର ଜଣେ ନାନା ଶାସ୍ତ୍ର ବିଶାରଦ ପ୍ରଖ୍ୟାତନାମା ପ୍ରତିଭାଶାଳୀ ପଣ୍ଡିତ ଥିଲେ । ସେ ବୀରକେଶରୀଦେବଙ୍କ ରାଜତ୍ୱର ପ୍ରଥମ ଭାଗରେ ସାହିତ୍ୟ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିଲେ । ବହୁ ଗ୍ରନ୍ଥ ପ୍ରଣେତା ମନ୍ତ୍ରୀବର ରାଜଗୁରୁ ଗୋଦାବରୀ ମିଶ୍ର (୧୫୧୦–୧୫୪୦) ଅଷ୍ଟାଦଶ ସ୍ମୃତି ରଚୟିତା ମହାମହୋପାଧ୍ୟାୟ ବାଜପେୟୀ ନରସିଂହ ମିଶ୍ର (୧୫୬୦–୧୫୯୦)ଙ୍କ ପରି ସେ କୌଶିକକୁଳ ସମ୍ଭୂତ ଥିଲେ । ତାଙ୍କ ପାଣ୍ଡିତ୍ୟର ପ୍ରଶସ୍ତି ସ୍ୱକୃତ 'କାଳସର୍ବସ୍ୱ' ଗ୍ରନ୍ଥର ପୁଷ୍ପିକାରୁ ମିଳେ । । ଯଥାଃ "ଇତି ଶ୍ରୀମତ୍ କୌଶିକକୁଳକୈରବଶରନ୍ନିଶାକର ନ୍ୟାୟ ବୈଶେଷିକ-ମୀମାଂସା-ଶେଷଭାଷ୍ୟାଦି ଶାସ୍ତ୍ରାକୂପାରପାରଙ୍ଗମ ସାହିତ୍ୟ-ସଙ୍ଗୀତଚ୍ଛନ୍ଦଃ-ପ୍ରାକୃତ ଜ୍ୟୋତିଃ-ପାଟୀବୀଜାଦିକବିତ୍ୱଗର୍ବସର୍ବଙ୍କଷ ମହାମହୋପାଧ୍ୟାୟ କବିକୋବିଦ-କୃଷ୍ଣମିଶ୍ର ବିରଚିତେ କାଳସର୍ବସ୍ୱ"—କୃଷ୍ଣମିଶ୍ର 'ସାହିତ୍ୟ ରତ୍ନାକର' ନାମକ ଅଳଂକାର ଗ୍ରନ୍ଥର ସୁଧାକର ନାମ୍ନୀ ଟୀକା ମଧ୍ୟ ରଚନା କରିଥିଲେ । ସେଥିରେ ମଧ୍ୟ ଉପରଲିଖିତ ପୁଷ୍ପିକା ଦେଖାଯାଏ । ଏହା ପାଠକଲେ ଜଣାଯାଏ ଯେ କୃଷ୍ଣମିଶ୍ର ନ୍ୟାୟ ବୈଶେଷିକ ମୀମାଂସା ପ୍ରଭୃତି ଦର୍ଶନ ସାହିତ୍ୟ, ସଂଗୀତ, ଛନ୍ଦ, ପ୍ରାକୃତ, ଜ୍ୟୋତିଷ, ଆଗମ ପାଟୀ-ଗଣିତ ପ୍ରଭୃତି ବିଦ୍ୟାରେ ଅଶେଷ ପାଣ୍ଡିତ୍ୟ ଓ ପାରଦର୍ଶିତା ଲାଭ କରିଥିଲେ । ସେ ପ୍ରତ୍ୟେକ ବିଦ୍ୟା ସମ୍ବନ୍ଧରେ ଗ୍ରନ୍ଥ ଲେଖିଥିବାର ମନେହୁଏ । କିନ୍ତୁ ଏ ପର୍ଯ୍ୟନ୍ତ ତାଙ୍କ କୃତ ବ୍ୟାକରଣ ଗ୍ରନ୍ଥ ମିଳିଅଛି ; ତାହାର ନାମ 'କୃଷ୍ଣମିଶ୍ର ପ୍ରକ୍ରିୟା' । ସେ 'ଶୁଦ୍ଧି ସର୍ବସ୍ୱ' ନାମକ ଅନ୍ୟ ଏକ ଧର୍ମଶାସ୍ତ୍ର ରଚନା କରିଥିବା ତାଙ୍କ କୃତ 'କାଳସର୍ବସ୍ୱ'ରେ ଉଲ୍ଲେଖ ମିଳେ । ଯଥା—'ଉପବାସଂତନ୍ତ୍ର ଶୁଦ୍ଧିସର୍ବସ୍ୱେ ବକ୍ଷ୍ୟାମଃ । 'ବିଦ୍ୟା ପଦ୍ଧତି' ନାମକ ଆଗମ ବା ତନ୍ତ୍ର ଗ୍ରନ୍ଥ ଜନୈକ କୃଷ୍ଣମିଶ୍ରଙ୍କ ଦ୍ୱାରା ରଚିତ । ଯଥା—

---

୭୫ । ଯୋଗୀ ପ୍ରହରାଜଙ୍କ ସମ୍ବନ୍ଧରେ ବିସ୍ତୃତ ଆଲୋଚନା O.H R. Journal Vol II No. 2. July 1953 ସଂଖ୍ୟାରେ ମୋ ପ୍ରବନ୍ଧରେ କରାଯାଇଛି ।

"ଜ୍ଞାନାର୍ଣ୍ଣବ ମତୈର୍ନୈବ କୌଳିକାନାଂ ତୁଷ୍ଟୟେ
ମିଶ୍ରେଣ କୃଷ୍ଣ ସଙ୍ଜ୍ଞେନ ଶ୍ରୀ ବିଦ୍ୟାପଦ୍ଧତିଃ କୃତଃ ।"

ଏହି ଗ୍ରନ୍ଥର ରଚୟିତା କୃଷ୍ଣ ମିଶ୍ର ଓ କାଳସର୍ବସ୍ୱ ପ୍ରଣେତା 'କୃଷ୍ଣ ମିଶ୍ର' ଏକ ଓ ଅଭିନ୍ନ ବୋଲି ଜଣାଯାଏ । ତାଙ୍କ କୃତ ଅନ୍ୟ ଗ୍ରନ୍ଥମାନଙ୍କର ନାମ ଏ ପର୍ଯ୍ୟନ୍ତ ଜଣାଯାଇ ନାହିଁ ।

ତାଙ୍କ ସମ୍ବନ୍ଧରେ ବିସ୍ତୃତ ଆଲୋଚନା ମୋ ଦ୍ୱାରା ଏକ ପ୍ରବନ୍ଧରେ କରାଯାଇଛି । (୭୬) ତେଣୁ ଏଠାରେ ପୁନରୁକ୍ତି ଅନାବଶ୍ୟକ । ଗବେଷଣା ଫଳରେ ତାଙ୍କର ନିମ୍ନଲିଖିତ ବଂଶଲତା ସଙ୍କଳିତ ହୋଇଛି ।

ମୃତ୍ୟୁଞ୍ଜୟ ମିଶ୍ର
|
ରାମଚନ୍ଦ୍ର ମିଶ୍ର
|
ପରମାନନ୍ଦ ମିଶ୍ର
|
କୃଷ୍ଣ ମିଶ୍ର

ତାଙ୍କର ପିତାମହ ରାମଚନ୍ଦ୍ର ମିଶ୍ର ଜଣେ ବିଖ୍ୟାତ ପଣ୍ଡିତ ଥିଲେ ଏବଂ କୃଷ୍ଣାନନ୍ଦ ସାନ୍ଧିବିଗ୍ରହିକ ମହାପାତ୍ର (୧୩୫୦-୧୩୮୫) କୃତ 'ସହୃଦୟାନନ୍ଦ' ମହାକାବ୍ୟର 'ବୁଧନନ୍ଦିନୀ' ନାମକ ଟୀକା ରଚନା କରିଥିଲେ । କୃଷ୍ଣ ମିଶ୍ରଙ୍କ ଆବିର୍ଭାବ ସମୟକୁ ଓଡ଼ିଶାରେ ରାଧା-କୃଷ୍ଣ ପୂଜାର ବହୁଳ ପ୍ରଚଳନ ହୋଇଥିବାରୁ ସେ ସ୍ମାର୍ତ୍ତ ହେଲେ ମଧ୍ୟ ସମାଜରେ କ୍ରମବର୍ଦ୍ଧମାନ ରାଧା-କୃଷ୍ଣ ପୂଜକମାନଙ୍କ ସନ୍ତୋଷ ବିଧାନ ନିମିତ୍ତ ସ୍ୱକୃତ 'କାଳସର୍ବସ୍ୱ' ନାମକ ଧର୍ମଶାସ୍ତ୍ରରେ ଲଳିତା ସପ୍ତମୀ, ରାଧାଷ୍ଟମୀ, ବୈଷ୍ଣବ-ଏକାଦଶୀ ପ୍ରଭୃତି ବ୍ରତ ସମ୍ବନ୍ଧରେ ଆଲୋଚନା କରିଛନ୍ତି । ଓଡ଼ିଶାରେ ରାଧା-କୃଷ୍ଣ ଉପାସନାର ପ୍ରଚଳନ ଓ ପ୍ରସାର ସମ୍ବନ୍ଧରେ ଆଲୋଚନା କରିବା ପାଇଁ ଏହି ଗ୍ରନ୍ଥରୁ ବହୁ ବିଶ୍ୱାସଯୋଗ୍ୟ ଉପାଦାନ ମିଳେ । କିନ୍ତୁ ଅତ୍ୟନ୍ତ ଦୁଃଖର ବିଷୟ ଉକ୍ତ ଗ୍ରନ୍ଥଟି ଏ ପର୍ଯ୍ୟନ୍ତ ଅପ୍ରକାଶିତ ।

**କବି ନୀଳକଣ୍ଠ ମିଶ୍ର—**

କବି ନୀଳକଣ୍ଠ ମିଶ୍ର 'ଭଞ୍ଜ ମହୋଦୟମ୍' ନାମକ ନାଟକର ରଚୟିତା । ନାଟକଟି ୧୦ ଅଙ୍କରେ ବିଭକ୍ତ । ବାସୁଦେବ ରଥ ସୋମଯାଜୀ କୃତ 'ଗଙ୍ଗବଂଶାନୁଚରିତ

୭୬ । Orissa Historical Research Journal Vol VI. April, 1957 P. 60-68.

ଚମ୍ପୂ'ରେ ବିଦ୍ୟାର୍ଣ୍ଣବ ଓ ଲୀଳାବତୀଙ୍କ ମଧ୍ୟରେ କଥୋପକଥନ ଛଳରେ ଗଙ୍ଗବଂଶର ଇତିହାସ ବର୍ଣ୍ଣିତ ହେଲାପରି ଉକ୍ତ ନାଟକରେ ଅନଙ୍ଗ କଳେବର ଓ ପ୍ରିୟମ୍ବଦା ନାମକ ଦୁଇଟି ଯକ୍ଷଙ୍କ କଥୋପକଥନ ରୂପରେ କେନ୍ଦୁଝର ରାଜ୍ୟର ଭଞ୍ଜବଂଶୀ ରାଜାମାନଙ୍କ ଇତିବୃତ୍ତ ବର୍ଣ୍ଣିତ ହୋଇଅଛି । ତେଣୁ ଏହି ନାଟକର ନାମ ରଖାଯାଇଛି 'ଭଞ୍ଜ-ମହୋଦୟମ୍' । କେନ୍ଦୁଝର ରାଜ୍ୟର ବିଭିନ୍ନ ସାମନ୍ତ ରାଜା, ଦୁର୍ଗ,ନଦୀ, ପର୍ବତ,ସୈନ୍ୟ ସଂଖ୍ୟା ଓ କର୍ମଚାରୀମାନଙ୍କ ବିବରଣୀ ଏଥିରେ ପ୍ରଦତ୍ତ ହୋଇଥିବାରୁ ଏହି ଗ୍ରନ୍ଥର ଯଥେଷ୍ଟ ଐତିହାସିକ ମୂଲ୍ୟ ରହିଛି । ଏଥିରେ ପ୍ରଦତ୍ତ ବନ୍ୟାଙ୍ଗନା (ଜୁଆଙ୍ଗ ରମଣୀ) ମାନଙ୍କ ନୃତ୍ୟ ବର୍ଣ୍ଣନା ଅତ୍ୟନ୍ତ ଉପଭୋଗ୍ୟ । ଗ୍ରନ୍ଥଟି ଅଷ୍ଟାଦଶ ଶତାବ୍ଦୀର ଶେଷ ପାଦରେ ରଚିତ ହୋଇଥିଲା ଏବଂ ଏହା ପଣ୍ଡିତ ବାନାମ୍ବର ଆଚାର୍ଯ୍ୟଙ୍କ ଦ୍ୱାରା ସମ୍ପାଦିତ ହୋଇ ମୁଦ୍ରିତ ହୋଇଅଛି । ଗ୍ରନ୍ଥର ପ୍ରଣେତା ନୀଳକଣ୍ଠ ନରସିଂହପୁରଶାସନ ନିବାସୀ ପଣ୍ଡିତ ଦିବ୍ୟସିଂହଙ୍କ ଔରସରେ ସୁବର୍ଣ୍ଣୀ ଦେବୀଙ୍କ ଗର୍ଭରୁ ଜନ୍ମଲାଭ କରି-ଥିଲେ ଏବଂ ଦୁର୍ଗା ଉପାସକ ଥିଲେ । କବିଙ୍କ ବାସସ୍ଥାନ କେନ୍ଦୁଝର ଅନ୍ତର୍ଗତ ନରସିଂହପୁର ନହୋଇ ସତ୍ୟବାଦୀ ନିକଟବର୍ତ୍ତୀ ବୀରନରସିଂହପୁର ହେବା ଅଧିକ ସମ୍ଭବପର । କାରଣ ପୁରୀ ଅଞ୍ଚଳର ପଣ୍ଡିତମାନେ ଉତ୍କଳର ଚତୁ-ର୍ଦ୍ଦିଗରେ ବ୍ୟାପିଯାଇ ଥିବାର ଜଣାଯାଏ ।

ଖୋର୍ଦ୍ଧାର ରାଜା ଗଜପତି ବଳଭଦ୍ରଦେବ (୧୬୫୯-୧୬୮୯)ଙ୍କ ରାଜତ୍ୱ କାଳରେ 'ଭଞ୍ଜ ମହୋଦୟମ୍' ନାଟକ ରଚିତ ହେବାର ପ୍ରାୟ ୧୫୦ ବର୍ଷ ପରେ ଏହା ରଚିତ ହୋଇଥିଲା । ଏହି ଦୃଷ୍ଟିରୁ ବିଚାର କଲେ ସ୍ପଷ୍ଟ ଜଣାଯାଏ ଯେ ନର-ସିଂହ ମିଶ୍ରଙ୍କ ଗ୍ରନ୍ଥର ଅନୁକରଣରେ ପରବର୍ତ୍ତୀ କାଳରେ ନୀଳକଣ୍ଠ ମିଶ୍ର ଏହି ଗ୍ରନ୍ଥଟି ରଚନା କରିଥିଲେ ।

**କବି ଲକ୍ଷ୍ମଣ—**

ପୁରୁଷୋତ୍ତମ କ୍ଷେତ୍ରବାସୀ ଲକ୍ଷ୍ମଣ ଭଞ୍ଜ କବିରାଜ ଜୟଦେବ କୃତ ସୁପ୍ରସିଦ୍ଧ 'ଗୀତ ଗୋବିନ୍ଦ'ର 'ରସିକରଙ୍ଗଦା' ନାମକ ଟୀକା ପ୍ରଣୟନ କରିଥିଲେ । ଏ ଟୀକାଟି ଏ ପର୍ଯ୍ୟନ୍ତ ଅପ୍ରକାଶିତ ରହିଛି । ବୀରକେଶରୀ ଦେବଙ୍କ ରାଜତ୍ୱ କାଳରେ ଶ୍ରୀ ରାଧାକୃଷ୍ଣ ଉପାସନାର ଲୋକପ୍ରିୟତା ବୃଦ୍ଧିପାଇବାରୁ ଏବଂ କବି ନିଜେ ଶ୍ରୀ ଚୈତନ୍ୟମତାବଲମ୍ବୀ ଥିବାରୁ ମଙ୍ଗଳ.ଚରଣର ପ୍ରଥମ ଶ୍ଳୋକରେ ଶ୍ରୀରାଧା ମଦନମୋହନଙ୍କୁ ସ୍ତୁତି କରି ଗ୍ରନ୍ଥ ଆରମ୍ଭ କରିଛନ୍ତି । ଶ୍ରୀ ରାଧାକୃଷ୍ଣଙ୍କ ପରେ କବି ଓଡ଼ିଶାର ପ୍ରଧାନ ଆରାଧ୍ୟ ଦେବତା ଜଗନ୍ନାଥ ମହାପ୍ରଭୁ ଓ ଚୈତନ୍ୟଙ୍କ ସ୍ତୁତିଗାନ କରିଛନ୍ତି । ଯଥା—

ପ୍ରାରମ୍ଭ "ଅନ୍ୟୋନ୍ୟ ପ୍ରେମପୀୟୂଷା ସ୍ୱାଦନାତୃପ୍ତମାନସୌ
ସ୍ଫୁରତାଂହୃଦମେ ନିତ୍ୟଂ ରାଧାମଦନମୋହନୌ ।

ମଦ୍‌ବଧଦୁର୍ବିଧବନ୍ଧୁଃ ସ ଜୟତି ନୀଳାଚଳେନ୍ଦୁ ପୂର୍ଣ୍ଣେନ୍ଦୁଃ
ଯେନାହଂ ବନ୍ଧୁକୃପୟା ନିଜାଙ୍ଘ୍ରିସେବାମୃତୈଃ ପୁଷ୍ଟଃ ।
ସଂସାରତାପସନ୍ତପ୍ତଂ ସ୍ୱପ୍ରେମରସବର୍ଷଣୈଃ
ବିଶ୍ୱମାପ୍ୟାୟିତଂ ଯେନ ତଂ ଚୈତନ୍ୟଘନଂନୁମଃ ।
ଇୟଂ ଶ୍ରୀ ଗୀତଗୋବିନ୍ଦଟୀକା ରସିକରଙ୍ଗଦା
ମୟା ସଂଗୃହ୍ୟତେ ତତ୍ତ୍ୱଭକ୍ତବଲୁବ୍‌ଧେ ନ କେନଚିତ୍ ।
ପୂର୍ବୈ ର୍ବିରଚିତା ଯାସ୍ତୁ ଟୀକା ସର୍ବାର୍ଥବୋଧିକାଃ
ତାଭ୍ୟଃ ସାରଂ ସମାକୃଷ୍ୟ ଗ୍ରଥ୍ନାମ୍ୟତ୍ରଯଥାରୁଚିଃ ।"

ଶେଷ—"ଯେ ଶ୍ରୀ ମୁକୁନ୍ଦଭଜନ କମଲୁବ୍‌ଧ ଦୀକ୍ଷାଃ
ନର୍ମିହ୍ରଗାଃ ରସବିଦବଚନ ସାଧୁଶିକ୍ଷାଃ ।
ସିଗ୍‌ଧାଶାୟଃ ସହୃଦୟାଃ ସଦୟାଃ ସଦୈବ
ତେ ଘାରନ୍ଥଂ ପରମିମାଂ ପରିଶୀଳୟନ୍ତୁ ।
ଶକାବ୍ଦେ ଷୋଡ଼ଶଶତେ ଚତୁଃଷଷ୍ଟ୍ୟଧିକଗତେ
ଗ୍ରଥିତା ଲକ୍ଷ୍ମଣେନାସୌ ଟୀକା **ଶ୍ରୀପୁରୁଷୋତ୍ତମେ** ।"

ଗ୍ରନ୍ଥର ଶେଷ ଶ୍ଳୋକରୁ ଜଣାଯାଏ ଲକ୍ଷ୍ମଣ କବି ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ୧୬୬୪ ଶକାବ୍ଦ ବା ୧୭୪୨ ଖ୍ରୀଷ୍ଟାବ୍ଦରେ ଏହି ଟୀକା ବୀରକେଶରୀ ଦେବଙ୍କ ରାଜତ୍ୱ ପ୍ରାରମ୍ଭରେ ରଚନା କରିଥିଲେ ।

## ଜ୍ୟୋତିର୍ବିଦ ମାଗୁଣି ପାଠୀ—

ସେ କୃଚନାଗୃର୍ଯ୍ୟ କୃତ 'ଗ୍ରହଚନ୍ଦ୍ର' ନାମକ ଜ୍ୟୋତିଷ ଗ୍ରନ୍ଥର ଟୀକା ରଚନା କରିଥିଲେ । ସେ ପାଠୀ କୁଳରେ ଜାତ ହୋଇଥିଲେ ଏବଂ ଭରଦ୍ୱାଜ ଗୋତ୍ର ମାର୍କଣ୍ଡେୟ ପାଠୀଙ୍କ ପୁତ୍ର ଥିଲେ । ୧୬୭୬ ଶକାବ୍ଦ ବା ୧୭୫୪ ଖ୍ରୀଷ୍ଟାବ୍ଦରେ ଏହି ଟୀକା ସମାପ୍ତ ହୋଇଥିଲା । ଯଥା—

ପ୍ରାରମ୍ଭ "ନାନାବନାରଂ ପୁ ରୁଷଂ ପୁରାଣଂ
ଦ୍ୱିଜେନ୍ଦ୍ରୁ ପାଠୀକୁଳ ମାଗୁଣିସ୍ତୁ
ଶ୍ରୀନନ୍ଦସୂନୁଂ କରୁଣୈକନାଥଂ
ପ୍ରଣମ୍ୟ ଚନ୍ଦ୍ରେ ଗ୍ରହଚନ୍ଦ୍ରଟୀକାଂ ।"

ପୁଷ୍ପିକା—କାଲାଙ୍କ ଭୂପଶାକନ ୧୬୭୬ ଜ୍ୟେଷ୍ଠେମାସିଶିତେ ହିନ
ଗ୍ରହଚନ୍ଦ୍ରସ୍ୟ ବିବୃତିଃ ସଂପୂର୍ଣ୍ଣାଭୂତ୍ ଯଥାର୍ଥକଃ ।

ଇତି ଭରଦ୍ୱାଜକୁଳସଂଭୂତୋ ମାର୍କଣ୍ଡେୟାତ୍ମଜ ମାଗୁଣୀ ପାଠୀ ନିର୍ମିତ ଗ୍ରହଚନ୍ଦ ଟୀକା ସମାପ୍ତା ।

ଶ୍ରୀପୁରୁଷୋତ୍ତମାଭିଧ ମହାରାଜାଙ୍କ ଆଜ୍ଞାରେ ମାଗୁଣି ପାଠୀ ଭାସ୍କରାଚାର୍ଯ୍ୟ କୃତ **ବୀଜଗଣିତର ମନ୍ଦାର୍ଥ ବୋଧିନୀ ଟୀକା** ମଧ୍ୟ ଓଡ଼ିଆ ଭାଷାରେ ରଚନା କରିଥିଲେ ।

ଏହାର ମଙ୍ଗଳାଚରଣରେ ଗଣେଶଙ୍କୁ ସ୍ତୁତି କରାଯାଇଛି । ଯଥା—

"ଶ୍ରୀପୁରୁଷୋତ୍ତମାଭିଧ ମହାରାଜାଜ୍ଞୟା ପ୍ରେରିତ
ସନ୍ ବ୍ୟାଖ୍ୟାଂ ବିରଚୟାମି ନିର୍ମଳପଦାଂ ଶ୍ରୀ ମାଗୁଣି ପାଠ୍ୟହଂ ।
ଶ୍ରୀ ବୀଜଗଣିତବ୍ୟାଖ୍ୟା ମାଗୁଣି ପାଠୀ ନିର୍ମିତା
ମନ୍ଦାର୍ଥବୋଧିକା ନାମ୍ନା ରାଜତେ **ଚୋଡ଼ଭାଷୟା** ।"

କବିଙ୍କ ପୃଷ୍ଠପୋଷକ ମହାରାଜା ପୁରୁଷୋତ୍ତମ ଦେବ୍ ସୂର୍ଯ୍ୟବଂଶୀ ଗଜପତି ବା ଖୁର୍ଦ୍ଧାର ଭୋଇ ବଂଶୀୟ ଗଜପତି ନୁହନ୍ତି । କାରଣ ଗ୍ରନ୍ଥ ଶେଷରେ ଥିବା ପୁଷ୍ପିକାରେ ଏହା ୧୬୭୩ ଶକାବ୍ଦ ବା ୧୭୫୧ ଖ୍ରୀଷ୍ଟାବ୍ଦରେ ସମାପ୍ତ ହୋଇଥିବାର ଲେଖାଯାଇଛି । ତେଣୁ ସେ ସମୟରେ ଖେମୁଣ୍ଡି ରାଜ୍ୟରେ ରାଜତ୍ୱ କରୁଥିବା ପ୍ରଖ୍ୟାତ ଗଙ୍ଗବଂଶୀୟ ଗଜପତି ପୁରୁଷୋତ୍ତମ ଅନଙ୍ଗଭୀମ ଦେବଙ୍କ ସହିତ ତାଙ୍କୁ ଚିହ୍ନିତ କରାଯାଇପାରେ । ଗ୍ରନ୍ଥର ପୁଷ୍ପିକାରେ ଗ୍ରନ୍ଥକାରଙ୍କ ପରିଚୟ ଓ ଗ୍ରନ୍ଥରଚନା କାଳ ନିମ୍ନଲିଖିତ ମତେ ଦିଆଯାଇଛି । ଯଥା—

ପୁଷ୍ପିକା—"ଭରଦ୍ୱାଜ କୁଳାମ୍ବୁଧୌ ମହତି ଯଃ ସଂପୂର୍ଣ୍ଣ ଶୁଭ୍ରାଂଶୁବତ୍
ମାର୍କଣ୍ଡେୟ ଇତି ପ୍ରସିଦ୍ଧ ଉଦଭୂତୋ ଦୈବଜ୍ଞ ଚୂଡ଼ାମଣିଃ ॥
ପାଟୀବୀଜ ଯୁଗୋପପତ୍ତି ବଶତଃ ସିଦ୍ଧାନ୍ତ ସିଦ୍ଧାନ୍ତବିତ୍
ତତ୍ପୁତ୍ରୋ ବିଦଧେ ହିତାୟ ବିଦୁଷାଂ ବ୍ୟାଖ୍ୟାମିମାଂ ଭାଷୟା
ଶାକେଽଗ୍ନ୍ୟଙ୍ଗାଙ୍ଗ ଭୂତୁଲ୍ୟେ ୧୬୭୩ ଶ୍ରାବଣେ ଶୁକ୍ଳପକ୍ଷକେ
ପ୍ରାରମ୍ଭୋ ବୀଜବୃତ୍ତେଃ ସଂପୂର୍ଣ୍ଣୋଽଭୂଚ୍ଚତୁର୍ଦ୍ଦିନେ ।"

ଅର୍ଥାତ୍ ଦୈବଜ୍ଞଚୂଡ଼ାମଣି ଭରଦ୍ୱାଜକୁଳ ସମ୍ଭୂତ ମାର୍କଣ୍ଡେୟଙ୍କ ପୁତ୍ର ମାଗୁଣି ପାଠୀ ଦେଶଭାଷାରେ ବୀଜଗଣିତର ଟୀକା ରଚନା କରିଥିଲେ । ଉକ୍ତ ବା ଅଗ୍ନି (୩) ଅଙ୍ଗ (୬) ଅଙ୍ଗ (୬) ଭୂ (୧) ବା ୧୬୭୩ ଶକାବ୍ଦ ବା ୧୭୫୧ ଖ୍ରୀଷ୍ଟାବ୍ଦ ଶ୍ରାବଣ ଶୁକ୍ଳ ପକ୍ଷରେ ଏହି ଟୀକା ରଚନା ସମାପ୍ତ ହୋଇଥିଲା । ମାଗୁଣି ପାଠୀ ଖୁବ୍ ସମ୍ଭବତଃ ଗଞ୍ଜାମ ଜିଲାର ଅଧିବାସୀ ଥିଲେ ।

## ଜ୍ୟୋତିର୍ବିଦ୍ ନୀମଦେବ —

ନୀମଦେବ ପ୍ରସିଦ୍ଧ ଓ ଜଟିଳ 'ସୂର୍ଯ୍ୟସିଦ୍ଧାନ୍ତ' ଗ୍ରନ୍ଥର ଟୀକା ଓଡ଼ିଆ ଗଦ୍ୟରେ ରଚନା କରିଥିଲେ । ଏହି ଟୀକାର ନାମ ସର୍ବବୋଧିନୀ । ସେ ଓଡ଼ିଆ ଭାଷାକୁ ନିଜ ଭାଷା (ତଦ୍‌ବ୍ୟାଖ୍ୟାଂ ନିଜ ଭାଷୟା) ବୋଲି କହିଥିବାରୁ ସେ ନିଶ୍ଚୟ ଓଡ଼ିଆ ଥିଲେ । ତାଙ୍କ ବାସସ୍ଥାନ, ବଂଶପରିଚୟ ଗ୍ରନ୍ଥପାଠରୁ ଜଣାଯାଏ ନାହିଁ ଓ ଗ୍ରନ୍ଥ ଶେଷରେ କେବଳ ସେ ଗ୍ରନ୍ଥ ରଚନାର ସମୟ ଦେଇଛନ୍ତି । ଯଥା—

ପୁଷ୍ପିକା— ଶକାବ୍ଦେ ଗତେ ବହ୍ନିବେଦର୍ତ୍ତୁଚନ୍ଦ୍ରୈଃ ୧୬୪୩ ।
କୃତାମାର୍ଗେ କୃଷ୍ଣାଷ୍ଟମ୍ୟାହ୍ନେ ମଦ୍ୟେଦୃଶଂ ହିତା ସର୍ବବୋଧିନୀ ଭଖ୍ୟାଽଖିଳେଭ୍ୟଃ
କଥାବୋଧିତା ସୂର୍ଯ୍ୟସିଦ୍ଧାନ୍ତ ଟୀକା ବିପ୍ର ନିମାଖ୍ୟସ୍ତତଃ ତଦ୍‌ବ୍ୟାଖ୍ୟାଂ
ନିଜଭାଷୟାଽକୃଷି ।

ଅର୍ଥାତ୍ ବହ୍ନି (୩) ବେଦ (୪) ଋତୁ (୬) ଚନ୍ଦ୍ର (୧) ଅର୍ଥାତ୍ ୧୬୪୩ ଶକାବ୍ଦ (ବା ୧୭୨୧ ଖ୍ରୀଷ୍ଟାବ୍ଦ) ମାର୍ଗଶୀର କୃଷ୍ଣ ଅଷ୍ଟମୀ ଦିନ ସୂର୍ଯ୍ୟସିଦ୍ଧାନ୍ତର ସର୍ବ-ବୋଧିନୀ ଟୀକା ରଚିତ ହୋଇଥିଲା । ବିପ୍ର ନିମଦେବ ବୀରକେଶରୀ ଦେବଙ୍କ ରାଜତ୍ୱର ୧୫ ବର୍ଷ ପୂର୍ବରୁ ଗ୍ରନ୍ଥ ଲେଖିଥିଲେ ମଧ୍ୟ ଓଡ଼ିଆ ଗଦ୍ୟ ଭାଷାରେ ଗଣିତ ଓ ଜ୍ୟୋତିଷର ଅନୁବାଦ ସମ୍ପର୍କରେ ତୁଳନାତ୍ମକ ଆଲୋଚନା ପାଇଁ ଏଠାରେ ସନ୍ନିବିଷ୍ଟ କରାଗଲା ।

ମଙ୍ଗଳାଚରଣ —

"ଅଚିନ୍ତ୍ୟାବ୍ୟକ୍ତରୂପାୟ ନିର୍ଗୁଣାୟ ଗୁଣାତ୍ମନେ
ସମସ୍ତ ଜଗଦାଧାରମୂର୍ତ୍ତୟେ ବ୍ରହ୍ମଣେ ନମଃ ।

ଓଡ଼ିଆଟୀକା—ଯେ ବ୍ରହ୍ମ, ଯେ ବେଦାନ୍ତ ପ୍ରତିପାଦ୍ୟ, ଯେ ବାସୁଦେବ ତାଙ୍କୁ ନମସ୍କାର । ଅଚିନ୍ତ୍ୟାବ୍ୟକ୍ତରୂପାୟ, ଅଚିନ୍ତ୍ୟ ବୋଇଲେ ମନବୁଦ୍ଧ୍ୟାଦିରେ ଅଜ୍ଞେୟ ଅଟନ୍ତି । ଅବ୍ୟକ୍ତ ବୋଇଲେ ଅପ୍ରକାଶିତ ରୂପ ଯାହାଙ୍କର ଏମନ୍ତ ଅଟନ୍ତି ପୁଣି କେମନ୍ତ ଅଟନ୍ତି ଇତ୍ୟାଦି ।"

## ଜ୍ୟୋତିର୍ବିଦ ଚନ୍ଦ୍ରଶେଖର ପଟ୍ଟନାୟକ —

ଚନ୍ଦ୍ରଶେଖର ପଟ୍ଟନାୟକ ବଡ଼ମ୍ବାଗଡ଼ର ଭଟ୍ଟାରିକା ଦେବୀ ଓ ଜଗନ୍ନାଥଙ୍କୁ ସ୍ତୁତି କରି ଶ୍ରୀ ଭାସ୍କରାଚାର୍ଯ୍ୟକୃତ 'ଲୀଳାବତୀ' ଗ୍ରନ୍ଥର ଟୀକା ରଚନା କରିଥିଲେ ।

"ଯଚ୍ଚୋର୍ତ୍ତ୍ରୀ ଜଗଦମ୍ବିକାଭଗବତୀ ବର୍ତ୍ତତେ ଭଟ୍ଟାରିକା,
ତସ୍ମିନ୍ ବୃହଦାମ୍ବଦୁର୍ଗକଲିତ ପ୍ରୋଦ୍ୟଦ୍ଧିରିଣ୍ୟାଶ୍ରମଃ ।

ସୋଽୟଂକୃତବାନ୍ ଚନ୍ଦ୍ରଶେଖର କୃତୀ କାଳାନ୍ତ୍ୟକାଳୋଽବଳାନ୍ ।
ଶ୍ରୀ ନୀଳାଚଳଚନ୍ଦ୍ରମସ୍ତରଣୟୋ ସ୍ମୃତ୍ୱା ଚିରଂ ଚେତସା ॥"

ଗ୍ରନ୍ଥକାର ନିଜର ବଂଶ ପରିଚୟ ନିମ୍ନଲିଖିତ ଶ୍ଳୋକମାନଙ୍କରେ ପ୍ରଦାନ କରିଛନ୍ତି ।

"ଯସ୍ୟ ଶ୍ରୀଳ **ଭଗୀରଥୋ ଜନୟିତା** ସୋଽୟଂ ପ୍ରତିଷ୍ଠୋଚଳଂ
ଜାୟାର୍ତ୍ତ ସଂପ୍ରତି ଚନ୍ଦ୍ରଶେଖର କୃତୀ ଶ୍ରୀ ଗୌତମୀଽମ୍ବାସୃତଃ
ଯେନ ଶ୍ୟାମଳଶୈଳନାଥପଦୟୋ ସ୍ମୃତ୍ୱା ସୁବୋଧାପ୍ତୟେ
ବାଳାନାଂ ନିରଟଙ୍କି ନିର୍ମଳତରୋ ଲୀଳାବତୀବିସ୍ତରଃ ॥
ମୁଦ୍ରାଳଙ୍କଂଶବଂଶୀମାବନଦ୍ଧଂସମୂର୍ତ୍ତିଃ
କଂସାରକୀର୍ତ୍ତିଧବଳିତ ଶ୍ରବଣାଽବତଂସଃ ।
**କଂସପ୍ରମୋଦ** ମକରୋତ୍ସ୍ୱଗିରସଧୀରେ ।
ସ ଚନ୍ଦ୍ରଶେଖର ଇତି ପ୍ରଥିତଃ ପୃଥିବ୍ୟାଂ ॥
ସଶ୍ରୀମନ୍ନରବଦ୍ୟ-ହୃଦ୍ୟ-ଭଗବତ୍ପଦ୍ୟୋନ୍ମତାନ୍ତଃସଦା ।
ସଦ୍‌ବିଦ୍ୟାନିଧିରେଷ ରାଜତିତରାଂ ଶ୍ରୀଲୋକନାଥକୃତିଃ ॥
ବନ୍ଧୁ ବନ୍ଧୁବିବନ୍ଧ୍ୟତାଜନିପଟୁ ଭ୍ରାତ୍ ଯତ୍ ପିତୃବ୍ୟା ଭଜ ।
ନାଽସ୍ତେଽଧିକ୍ଷିତିଚନ୍ଦ୍ରଶେଖର କବିଃ ଶ୍ରୀ ନୀଳଶୈଳାଧିପଂ ।

× × × ×

ଇତି ଶ୍ରୀ ଚନ୍ଦ୍ରଶେଖର ପଟ୍ଟନାୟକ ପରିଗୁମ୍ଫିତ 'ଲୀଳାବତୀ ବିସ୍ତରଃ' ସମାପ୍ତଃ ।

ବାଣାବ୍ଧି ଦନ୍ତ ବେଦ ପ୍ରମିତେଽବ୍ଦକେ ପ୍ରବନ୍ଧା ଚେଲିଖିତା । ଉପରେ ଉଦ୍ଧୃତ ଶ୍ଳୋକମାନଙ୍କରୁ ଜଣାଯାଏ ଯେ ଶ୍ରୀ ଭଗୀରଥ ପଟ୍ଟନାୟକଙ୍କ ଔରସରେ ଶ୍ରୀ ଗୌତମୀଙ୍କ ଗର୍ଭରୁ ଚନ୍ଦ୍ରଶେଖର ଜନ୍ମଗ୍ରହଣ କରିଥିଲେ । ସେ 'କଂସପ୍ରମୋଦ'ନାମକ ଅନ୍ୟ ଏକ ଗ୍ରନ୍ଥ ମଧ୍ୟ ରଚନା କରିଥିଲେ । ତାଙ୍କ ପିତୃବ୍ୟ ଲୋକନାଥ ପଟ୍ଟନାୟକ ମଧ୍ୟ ଜଣେ ପଣ୍ଡିତ ଥିଲେ । ସେ ବାଣ (୫) ଅବ୍ଧି (୪) ଦନ୍ତ (୮) ଓ ବେଦ (୪) ବା ୪୮୪୫ କଳ୍ୟବ୍ଦ ବା ୧୭୪୪ ଖ୍ରୀଷ୍ଟାବ୍ଦରେ ଲୀଳାବତୀ ଟୀକା ସମାପ୍ତ କରିଥିଲେ ।

ଚନ୍ଦ୍ରଶେଖରଙ୍କ ବଂଶ ସମ୍ବନ୍ଧରେ ତାଙ୍କ ପୁତ୍ରର କରୁଣାକର ପଟ୍ଟନାୟକ କୃତ 'କୃଷ୍ଣରସାମୃତ' ନାମକ ଅପ୍ରକାଶିତ ଓଡ଼ିଆ କାବ୍ୟରୁ ନିମ୍ନୋକ୍ତ ତଥ୍ୟ ମିଳେ । (୬୭)

'ବୃନ୍ଦାବନଦୁର୍ଗ ବ୍ୟବହର୍ତ୍ତା ଭଗୀରଥ ସୁପଟ୍ଟନାୟକ
କରଣ-କୁଳ-କୁମୁଦ-ସୁଧାକର ସକଳ ଶୁଭଶଂସାପୂରକ (୧୯)

---

୬୭ । ଦୈନିକ ଆଶା, ପ୍ରାଚୀନ କବି ପରିଚୟ ୩-୬-୧୯୪୫

ତାହାଙ୍କ କନିଷ୍ଠ ପୁନ ଗଦାଧର ପଟ୍ଟନାୟକ ବିଖ୍ୟାତ
କରୁଣାକର ନାମଧେୟ ମୋହନ୍ତ ଏହାଙ୍କ କନିଷ୍ଠ ସୁତ' । (୨୦)

ତେଣୁ ଚନ୍ଦ୍ରଶେଖରଙ୍କ ବଂଶଲତା ନିମ୍ନୋକ୍ତ ପ୍ରକାରରେ ସଂକଳିତ ହୋଇପାରେ ।

ବଡମ୍ବା ଦୁର୍ଗର ବେବର୍ତ୍ତା ଭାଗୀରଥି ପଟ୍ଟନାୟକ — ଘାଲ ଶ୍ରୀ ଲୋକନାଥ ପଟ୍ଟନାୟକ
ସ୍ତ୍ରୀ ଗୌତମୀ

- କବି ଚନ୍ଦ୍ରଶେଖର ପଟ୍ଟନାୟକ 'କଂସପ୍ରମୋଦ' ଓ 'ଲୀଳାବତୀ ବିହାର' ପ୍ରଣେତା
- ଗଦାଧର ପଟ୍ଟନାୟକ
  - କରୁଣାକର ପଟ୍ଟନାୟକ 'କୃଷ୍ଣରସାମୃତ' ଗ୍ରନ୍ଥର ପ୍ରଣେତା

**ନେହାନନ୍ଦ ସାହିତ୍ୟ ପଞ୍ଚାନନ —**

ସେ 'କ୍ରମରଦର୍ପଣ' ନାମକ ସଂସ୍କୃତ ବ୍ୟାକରଣର ପ୍ରଣେତା । ଏହାର ଦୁଇ ଖଣ୍ଡ ପୋଥି ମିଉଜିୟମରେ ସଂରକ୍ଷିତ । ପ୍ରଥମ ଖଣ୍ଡରେ 'କାରକ ଓ ସମାସ' ଓ ଅନ୍ୟଟିରେ 'କୃଦନ୍ତ' ଓ 'ତଦ୍ଧିତ' ଆଲୋଚିତ ହୋଇଅଛି । କ୍ରମରନନ୍ଦୀକୃତ ବ୍ୟାକରଣର ଓଡ଼ିଆରେ ବିଶେଷ ଲୋକପ୍ରିୟତା ଥିବାରୁ ନେହାନନ୍ଦ ଏହାର ଏକ **ଟୀକା** ରଚନା କରିଥିଲେ । ତାଙ୍କ ପିତାମହ ବିଶ୍ୱମ୍ଭର ସାହିତ୍ୟ ପଞ୍ଚାନନ ମଧ୍ୟ ଜଣେ ଖ୍ୟାତନାମା ପଣ୍ଡିତ ଥିଲେ । "ଇତି ଶ୍ରୀ ବନକୁଣ୍ଡ ପ୍ରଭୁ-ଚରଣାରବିନ୍ଦ-ଦ୍ୱନ୍ଦ୍ୱ-ମକରନ୍ଦ ପାନ-ସାନନ୍ଦ-ହୃଦୟେନ ପାଠକଗଣ ଜ୍ଞାନୋଦୟପ୍ରଦେନ **ଶ୍ରୀମତ୍ ବିଶ୍ୱମ୍ଭର ପଣ୍ଡିତ ସାହିତ୍ୟ ପଞ୍ଚାନନ ସୁତତନୟେନ** × × ନେହାନନ୍ଦ ସାହିତ୍ୟ ପଞ୍ଚାନନ ବିରଚିତେ କ୍ରମରଦର୍ପଣେ । ନେହାନନ୍ଦ ସୁରଙ୍ଗୀ ରାଜା ଶ୍ରୀ ନୀଳାଦ୍ରିନାଥଙ୍କ ଅଧ୍ୟାପକ ଥିଲେ । ଯଥା— ସୁରଙ୍ଗୀଦେଶାଧିନାଥ ଶ୍ରୀ ନୀଳାଦ୍ରିଚନ୍ଦ୍ରରାଜାଧ୍ୟାପକ × × × ନେହାନନ୍ଦ ସାହିତ୍ୟ ପଞ୍ଚାନନେନ ବିରଚିତେ କ୍ରମରଦର୍ପଣେ ।"

ଗ୍ରନ୍ଥ ରଚନା ସମୟ ନିମ୍ନଲିଖିତ ଶ୍ଳୋକଦ୍ୱାରା ପ୍ରକାଶିତ ହୋଇଛି ।

" ସମ୍ବତ୍ସରେ ରୌଦ୍ରେ ନାମ୍ନି ମାର୍ଗଶୀର୍ଷେ ବାସରେ
ଏକାଦଶ୍ୟାଂ ସିତେ ପକ୍ଷେ ପୂର୍ଣ୍ଣୋ କ୍ରମରଦର୍ପଣଃ ।"

ଦାକ୍ଷିଣାତ୍ୟରେ ୧୭୨୦ ଓ ୧୭୭୯ ରୌଦ୍ର ସମ୍ବତ୍ସର ପଡ଼ିଥିଲା । ୧୭୫୫ରେ ଧାନକୁଣ୍ଡ ହରିଚନ୍ଦନ ଓ ତତ୍ପୂର୍ବରୁ କେଶବରାଜ ହରିଚନ୍ଦନ ସୁରଙ୍ଗୀର ରାଜାଥିବାରୁ ୧୭୭୯ରେ ନୀଳାଦ୍ରିଚନ୍ଦ୍ରଙ୍କୁ ତଥା ତାଙ୍କର ଅଧ୍ୟାପକ ନେହାନନ୍ଦଙ୍କୁ ଅବସ୍ଥାପିତ କରାଯାଇ ପାରେ ।

# ଗଜପତି ବୀରକେଶରୀଦେବଙ୍କ ସମୟର ଅଭିଲେଖ ସମୂହ

(୧)

## ଖୁର୍ଦ୍ଧା ରାଜା ପଦ୍ମନାଭଦେବଙ୍କ ରାଜତ୍ୱକାଳର ଦାନପତ୍ର (୬୮)

ଗଜପତି ରାମଚନ୍ଦ୍ରଦେବଙ୍କୁ ବିତାଡ଼ନ କରି ମୁର୍ଶିଦକୁଲି ଖାଁଙ୍କ ଦେଓୟାନ୍ ମୀର ହବିବ ପଦ୍ମନାଭ ଦେବଙ୍କୁ ଖୁର୍ଦ୍ଧା ରାଜ୍ୟ ସିଂହାସନରେ ବସାଇଥିଲେ । ତାଙ୍କ ସମୟରେ ଏହି ଦାନ ପତ୍ରଟି କାଗଜ ଦେହରେ ପାର୍ସୀ ଓ ଓଡ଼ିଆ ଭାଷାରେ ଲେଖା ହୋଇଥିଲା । ଏହା ବର୍ତ୍ତମାନ ଓଡ଼ିଶା ରାଜ୍ୟ ଅଭିଲେଖାଗାର (**Archives**)ରେ ସଂରକ୍ଷିତ ।

୧ମ ଧାଡ଼ି—ଶ୍ରୀ ପଦ୍ମନ(ନା)ଭ ଦେବ ମହାରାଜାଙ୍କ ବିଜେ ରାଯେ (ବିଜୟରାଜ୍ୟେ)
୨ୟ ,, ସମସ୍ତ ଅଙ୍କ ମିନ (ମୀନ) ଦି ୧୦ନ ପୁରୁସୋ(ଷୋ)ତ(ତ୍ତ)ମ ଛେ(କ୍ଷେ)ତ୍ର
୩ୟ ,, ଦଖି(କ୍ଷି)ଣ ପାରୁସ(ପାର୍ଶ୍ୱ)ମହନ୍ତ ହରେକୃଷ୍ଣ ଦାସ ଗୋ
୪ର୍ଥ ,, ସ୍ୱାମୀରେ ଏହି ଖେ(କ୍ଷେ)ତ୍ର ବାସକ ସାଲ(ହି)ରେ ରହଣି
୫ମ ,, ରାମଚନ୍ଦ୍ର ଦତ(ତ୍ତ) ଦେଲା ଅମୃତମନୋହି ପତ୍ର •
୬ଷ୍ଠ ,, ଏ ନିମନ୍ତେ ପତ୍ର ଲେଖିଦେଲୁ ଆମ୍ଭ ରାହାଙ୍ଗ ଖ୍ୟା (ପ୍ରଗନା)
୭ମ ,, **ସମଗ୍ଂ(ଙ୍ଗ)** ଗ୍ରାମ ସମ୍ପ୍ରମଗ୍ଂ(ଙ୍ଗ)ଲାଙ୍କ କୂଲରେଂ
୮ମ ,, ତୋଷା ଗୋଟି(ଟି)କୁ ମା ୧୨ଣ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ
୯ମ ,, ଅମୃତମନୋହି କା(କ) ଆପଣଙ୍କ ମଠ ତଳେ ଦେଲୁ
୧୦ମ ,, ଆଜ ଦିନ ଅଦ(ଦ୍ୟ)ଠାରୁ ବଗିଚ୍ଚ କରି ଫୁଲ ତୁଳସୀ
୧୧ଶ ,, ଲଗାଇ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ସେବାରେ
୧୨ଶ ,, ଲଗାଇ ଜ(ଯା)ବତ ଚନ୍ଦ୍ରାକେ(ର୍କେ) ଅମଲ କରିବ
୧୩ଶ ,, ଏ ପତ୍ର ରାମଚନ୍ଦ୍ର ଦତ(ତ୍ତ)ର ସମତ(ସମ୍ମତ)

ଟିପ୍ପଣୀ—ପୁରୀ ରେଲଷ୍ଟେସନଠାରୁ ଦୁଇମାଇଲ ଦୂରରେ **'ସମଙ୍ଗ'** ଗ୍ରାମ ଅବସ୍ଥିତ । ରାହାଙ୍ଗ ପୁରୀ ନିକଟବର୍ତ୍ତୀ ଏକ ବଡ଼ ପରଗଣା । ବାଟପଦା ମିତ୍ରକପୁରରେ ଥିବା ତମ୍ବାପଟାରୁ ଜଣାଯାଏ ଯେ ବୀରକେଶରୀଦେବ ୫ଅଙ୍କ ତୁଳ ଦିନ ବା ୬-୧୦-୧୭୩୯ ତାରିଖ ବେଳକୁ ଖୁର୍ଦ୍ଧା ସିଂହାସନରେ ଅଧିଷ୍ଠିତ ଥିଲେ । ତେଣୁ ଏହି ଦାନ ପତ୍ରଟି ତାହାପୂର୍ବରୁ ଲିଖିତ ହୋଇଥିଲା ।

---

୬୮ । Orissa Historical Research Journal Vol III p. 42

(୨)

## ବାରପଦା ମିଉଜିୟୁମର ଦ୍ୱିଭାଷୀ ତମ୍ବାପଣ୍ଟା

ଆଲୋଚ୍ୟ ତମ୍ବାପଣ୍ଟାଟି ପୁରୀ ରାଜା ସ୍ୱର୍ଗୀୟ ରାମଚନ୍ଦ୍ର ଦେବଙ୍କ ଠାରୁ ଶ୍ରୀଯୁକ୍ତ ପରମାନନ୍ଦ ଆଚାର୍ଯ୍ୟ ସଂଗ୍ରହ କରିଥିଲେ ଏବଂ ଏହା ବର୍ତ୍ତମାନ ବାରପଦା ମିଉଜିୟମରେ ସଂରକ୍ଷିତ । ମୋଗଲ ରାଜତ୍ୱ କାଳରୁ ଓଡ଼ିଶାର ମେଦିନୀପୁରଠାରୁ ଚିଲିକା ପର୍ଯ୍ୟନ୍ତ ଉପକୂଳ ଅଞ୍ଚଳରେ ରାଜକୀୟ ଭାଷା ରୂପେ ପାର୍ସୀ ଭାଷାର ପ୍ରଚଳନ ଯୋଗୁଁ ଏଥିରେ ଓଡ଼ିଆ ଓ ପାର୍ସୀ ଉଭୟ ଭାଷାର ବ୍ୟବହାର ଦେଖାଯାଏ । ତମ୍ବାପଣ୍ଟାର ଗୋଲକାର ସିଲ୍ ବା ମୋହର ମଧ୍ୟରେ ଓ ମୋହର ତଳେ ଥିବା ମୃଣ-ଧାଡ଼ିରେ ପାର୍ସୀ ଭାଷା ବ୍ୟବହାର କରାଯାଇଛି । ପାର୍ସୀ ଲେଖା ତଳକୁ ୭ ଧାଡ଼ି ଓ ଡାହାଣ କଡ଼ରେ ୫ ଧାଡ଼ି ଓଡ଼ିଆ ଲେଖା ରହିଛି । ଓଡ଼ିଆ ଲେଖାର ପାଠ ନିମ୍ନରେ ପ୍ରଦତ୍ତ ହେଲା ।



ଏ ପ୍ରମାଣ
ଗୋଲ ମୋହର ମଧ୍ୟରେ ପାର୍ସୀ ଲେଖା ।
ମୋହର ତଳେ ୪ ଧାଡ଼ି ପାର୍ସୀ ଲେଖା ।

### ପାର୍ସୀ ଲେଖା ତଳେ ଥିବା ସାତ ଧାଡ଼ି

୧ମ ଧାଡ଼ି—ପଶ୍ଚିମ ଦ୍ୱାର ପଞ୍ଚୋ ବୃନ୍ଦାବନ କୁଅର ଗୁରୁ
୨ୟ „ —ମାହାପାତ୍ରଙ୍କୁ ଶ୍ରୀହସ୍ତ ତମ୍ବପାଟିଆ, ଗୁମୁସର
୩ୟ „ —ଟକାପାଦୁମାଳରେ ଅନୁଗୁଳ ମାଳରେ ଅ—
୪ର୍ଥ „ —ସମୟରେ ମାହାସ୍ରମ କାର୍ଯ୍ୟ କଲାରୁ ଯେ ଦରିଡ଼ା
୫ମ „ —ମଡ଼ାଗଡ଼ ସବାହାନ୍ତ ଚକଡ଼ା ଭୂମନ୍ତୁ ଉତନ
୬ଷ୍ଠ „ —କରି ଆଗ୍ୟାଂ ଦେଲୁ, ଏ ଗଡ଼ ଅଭିମାନ୍ତ କରି ଗ
୭ମ „ —ଛ ମାଛ ହାଟଘାଟଣୀ ଓଗେର ଯାବତ ଚନ୍ଦ୍ରାର୍କେ

### ପାର୍ସୀ ଲେଖା କଡ଼ରେ ଥିବା ପାଞ୍ଚ ଧାଡ଼ି

୧ମ ଧାଡ଼ି—ଉତନ ଭୋଗେ ପୁରୁଷ ପୁରୁଷାନ୍ତର କରି ଭୋଗ କରିବ, ଆମ୍ଭ ବଂସଜମାନେ ଏହି ତମ୍ବାପାର୍ଟୀୟା ମାନିକେ ଏ ଉତନ ଅମ—
୨ୟ „ —ଲ କରାଉଥିବେ । ନାମ୍ଭେ ଏହା ନ ମାନି ହରଣ କରିବେ ସେ ଆମ୍ଭ ବଂସ ରଜାମାନଙ୍କୁ ଲ୍କ କରିବେ, ତୁମ୍ଭ ବଂସମାନେ ଉପ—
୩ୟ „ —ର ହୋଇଥିବେ, ଆଉ ଯେ ହରଣ କରିବ ତାହା ବଂସମାନେ ତଳ ହୋଇଥିବେ; ଏହା ନ ମାନିବେ ତେବେ ଶ୍ରୀ ଜଗନ୍ନାଥ ମା—

୪ର୍ଥ ଧାଡ଼ି—ମହାପ୍ରଭୁଙ୍କ ଅମଣିମାଠରେ ବନ୍ଧ ଧୁଆଇବାର ହୋଇବେ, ଏ-ଘ-ଠଙ୍କୀଂ
ଟଙ୍କା ୧ ଏ ଲେଖାଏ ଦୁଇଘ କା ୨୨୫ ହାଣି ଦେଉଥି—

୫ମ „ —ବ, ଅଧିକ ନ ହେବ ଯେ କହୁ ହରଣ ସବୁ ଗ୍ରୁଡ଼
୫ ଅଙ୍କ ତୁଳ ଦ ୪ ନ ର ୬୦

ଗୋଲ ମୋହର ମଧ୍ୟରେ ସେହି ପାର୍ସୀରେ ବୀରକିଶୋର ଦେଓ ବୋଲି ଲେଖାଯାଇଛି । (୭୯)

## ଟିପ୍ପଣୀ

ଏହି ତମ୍ବା ପଟ୍ଟରେ କ, ବ, ନ, ଶ୍ରୀ, ଜ, ଛ, ଲ, ପ୍ରଭୃତି କରଣୀ ଅକ୍ଷର ବ୍ୟବହୃତ ହୋଇଅଛି । ମୋଗଲ ରାଜତ୍ୱ କାଳରେ ଓଡ଼ିଶାରେ କାଗଜର ପ୍ରଚଳନ ପରେ ଶୀଘ୍ର ଲେଖିବା ପାଇଁ କରଣୀ ଅକ୍ଷର ପ୍ରଚଳିତ ହୋଇଥିବାର ଜଣାଯାଏ । ଲିପିର ଭାଷା ପ୍ରତି ଦୃଷ୍ଟିପାତ କଲେ ଜଣାଯାଏ ଯେ ଏଥିରେ ଉତନ, ଓଳଗର, ମାଗିଂକେ, ଏଓତନ, ଅମଳ ପ୍ରଭୃତି ପାର୍ସୀ ଶବ୍ଦ ବ୍ୟବହୃତ ହୋଇଅଛି । ଲେଖାପାଠରୁ ଜଣାଯାଏ ଯେ ସେ ସମୟରେ ଟଙ୍କା ଓ କଉଡ଼ି ଉଭୟ ଚଳୁଥିଲା ।

ଏଥିରେ ପ୍ରଦତ୍ତ ସ୍ଥାନମାନଙ୍କ ମଧ୍ୟରୁ ହରଡ଼ାମଡ଼ାଗଡ଼ଟି ବର୍ତ୍ତମାନ ଖୋର୍ଦ୍ଧା ସବ୍‌ଡିଭିଜନର ଚନ୍ଦକା ଥାନା ଅନ୍ତର୍ଗତ ହରଡ଼ାମଡ଼ା ଗ୍ରାମ ସହିତ ନିଃସନ୍ଦେହରେ ଚିହ୍ନିତ ହୋଇପାରେ । ଏହି ଗ୍ରାମ ସୀମାରୁ ବାଙ୍କୀ ଥାନା ଆରମ୍ଭ ହୋଇଅଛି । ଏହାର ପଶ୍ଚିମକୁ ବାରହାପିଠା ଅଟନ ଜଙ୍ଗଲ ଓ ଅଳ୍ପ ଦୂରରେ ଡେଉସ ଗ୍ରାମ ଅବସ୍ଥିତ । ଏହି ଗଡ଼ର ଧ୍ୱଂସାବଶେଷ ଜଙ୍ଗଲ ମଧ୍ୟରେ ଥିବାର ଲୋକେ କହନ୍ତି । ଗୁମୁସର ରାଜ୍ୟରେ ଚକାପାଦୁମାଳ ଅବସ୍ଥିତ । ବୀରକେଶରୀ ଦେବ ମୀରହବବଙ୍କ ଦ୍ୱାରା ବିତାଡ଼ିତ ହୋଇ ପ୍ରଥମେ ଘୁମୁସର ରାଜ୍ୟ ଅନ୍ତର୍ଗତ ଚକାପାଦୁମାଳରେ ଆଶ୍ରୟ ନେଇଥିଲେ । ସେ ଘନ ଭଞ୍ଜଙ୍କ ଠାରୁ ସୈନ୍ୟ ସାହାଯ୍ୟ ପାଇ ଅନୁଗୁଳ ଆଡ଼କୁ ଅଗ୍ରସର ହେଲେ । ପଟ୍ଟା ବର୍ଣ୍ଣିତ ଅନୁଗୁଳ ମାଳ ପ୍ରାଚୀନ ଅନଗୁଳ ରାଜ୍ୟ ଓ ଆଧୁନିକ ଅନଗୁଳ ସବ୍‌ଡିଭିଜନ ମଧ୍ୟରେ ଅବସ୍ଥିତ ଥିଲା । ବର୍ତ୍ତମାନ ତମ୍ବାପଟ୍ଟାର ଗ୍ରହୀତା ଓ ଦାନର କାରଣ ସମ୍ବନ୍ଧରେ ଆଲୋଚନା ଆବଶ୍ୟକ । ପ୍ରାଚୀ ସମିତି ଦ୍ୱାରା ପ୍ରକାଶିତ ମାଦଳାପାଞ୍ଜିରେ ବୀରକେଶରୀ ଦେବଙ୍କ ରାଜତ୍ୱ ବିବରଣରେ ପଟ୍ଟାଗ୍ରହୀତା ବୃନ୍ଦାବନ କୁଅର ଗୁରୁ ମହାପାତ୍ରଙ୍କ ବିଶେଷ ଉଲ୍ଲେଖ ଦେଖାଯାଏ ।

---

(୭୯) ଏହି ତମ୍ବାପଟ୍ଟାଟି ମୋ ଦ୍ୱାରା ପଠିତ ହୋଇ, ଝଙ୍କାର ୧୦ମ ବର୍ଷ ପ୍ରଥମ ସଂଖ୍ୟାରେ ପ୍ରକାଶିତ ହୋଇଥିଲା ।

ସେ ବୀରକେଶରୀ ଦେବଙ୍କ ଅତ୍ୟନ୍ତ ବିଶ୍ୱସ୍ତ କର୍ମଚାରୀ ଥିଲେ ଓ ପରେ ତାଙ୍କର କାର୍ଯ୍ୟଦକ୍ଷତା, ବିଚକ୍ଷଣ ବୁଦ୍ଧି ଓ ପ୍ରଗାଢ଼ ପ୍ରଭୁଭକ୍ତି ଯୋଗୁଁ ଦେଓ୍ୱାନ ରୂପେ ନିଯୁକ୍ତ ହୋଇଥିଲେ ।

୧୭୩୫-୩୬ରେ ରାମଚନ୍ଦ୍ର ଦେବଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ବୀରକେଶରୀ ଦେବ ମୀର ହବିବଙ୍କ ଦ୍ୱାରା ଗାଦିଚ୍ୟୁତ ହୋଇ ଘୁମୁସର ମାଳ ଓ ଅନୁଗୁଳ ମାଳରେ ଆଶ୍ରୟ ନେଇଥିଲେ ଏବଂ ପଟିଆ ରାଜା ପଦ୍ମନାଭ ଦେବ ତିନିବର୍ଷକାଳ ଖୋରଧାର ରାଜା ହୋଇଥିଲେ । ଅତଏବ ୧୭୩୬-୧୭୩୯ ମସିହା ମଧ୍ୟରେ କୌଣସି ସମୟରେ ବୃନ୍ଦାବନ କୁଅଁର ଗୁରୁ ମହାପାତ୍ର ବୀରକେଶରୀଦେବଙ୍କୁ ସାହାଯ୍ୟ ଦେଇଥିବାରୁ ସେ ଗାଦି ପାଇବା ପରେ ପ୍ରଭୁଭକ୍ତିର ପୁରସ୍କାର ସ୍ୱରୂପ ୧୭୩୯ ମସିହା ଅକ୍ଟୋବର ୭ ତାରିଖ ଦିନ ତାଙ୍କୁ ହରିଡ଼ାମଡ଼ା ଗଡ଼ର ଅଧିକାର ପ୍ରଦାନ କରିଥିଲେ ।

(୩)

## ବୀରକେଶରୀ ଦେବଙ୍କ ସମୟର ସୋନପୁର ତମ୍ବାପଟା (୭୦)

ଏହି ତମ୍ବାପଟାଟି ସୋନପୁର ରାଜବାଟୀ ନିକଟରେ ଥିବା ପୋଖରୀରୁ ମିଳିଥିଲା । ଏହାକୁ ସୋନପୁର ମହାରାଜା ପାଟଣା ମିଉଜିୟମକୁ ଉପହାର ଦେଇ ଦେଲେ ।

### ଉପର ପାଖ

୧ମ ଧାଡ଼ି — ବୀର ଶ୍ରୀ ବୀରକେଶରୀ ଦେବ ମହାରାଜାଙ୍କର ସ
୨ୟ ,, ମସ୍ତ ୯ ଅଙ୍କ ଜ୍ୟେଷ୍ଠ କୃଷ୍ଣ ଏକାଦଶୀ ସୋମବାରେ
ସୁପୁର (ସୁନପୁର) ସୁ
୩ୟ ,, ଥାନେ ରହଣି ପାଟଣଦଳ ଲୋକଙ୍କର ଲିପୁରୁସି ଗାଁରେ
୪ର୍ଥ ,, ଗାଳିଡ଼ାହାଳ ମଧ୍ୟ ହନୁମନ୍ତ ଦଅଁର ପାଣି ପ୍ରସାଦ ଦେଲା ପାଣି
୫ମ ,, ପାତ୍ର । ଆମ୍ଭେ ସେ ବାସିଦାସଙ୍କୁ ପାଣି ପାତ୍ର ଲେକ (ଖି) ଦେଲୁ ମାତ

### ତଳପାଖ

୬ଷ୍ଠ ,, କଲୁ । ହନୁମନ୍ତ ଦଅଁର ତାର (ତ୍ର) ଚକୁଳିକ ଢିଅ ଦଶ ତାମ୍ବି *
ଓଡ଼ିଳ ଦେଉ ଖଣ୍ଡି

(70) J. B. O. R. S. Vol. VI, pt. IV, p 570-71.
* ଏକତାମ୍ବି = ୧୪୦ ତୋଳା ।

୭ମ ଧାଡ଼ି—ମୁଣ୍ଡି ଦୁଲବଶା, ଛଣ ପାଟକୁ ତିନି ଟଙ୍କା କାଠପଣ ଧମେତ ସେତେକ ବାଗୁଡ଼ି

୮ମ ,, ପ୍ରମାଣେ ଦେବ, ତୁମ୍ଭର ପୁଅ ନାତି ସମେତ ଗାଁ ଭୁଞ୍ଜୁଥିବ । ଏହା ଚଳାଇବ

୯ମ ,, ଏହା ଚଳାଇଲେ ଜାବତ ଚନ୍ଦ୍ରାର୍କେ ଭୁଞ୍ଜୁଥିବ । ଗଛ କାଟି ଗଛ ରୋଇବ, କୃଶପତ୍ରା ଭିତରେ ଯେ

୧୦ମ ,, ଅନ୍ୟାୟ କହିବ ତାହାର ଜନ୍ମ ଷି(ଛି) ହେବ । ପାଞ୍ଚଶଦେଲ ଲୋକଙ୍କର ସବୁର ସମ୍ମତ ।

୧୧ଶ ,, ଅଷ୍ଟ ଲୋକପାଳ ଧର୍ମ ସାକ୍ଷୀ । ହନୁମନ୍ତ ଦେବତା ସାକ୍ଷୀ ଏଥିକ ।

## ଟିପ୍ପଣୀ

ସୋନପୁର ରାଜ୍ୟର ବନାକା ତେହସିଲରେ ଜୟପୁରସିଂଘା ଗ୍ରାମ ଅବସ୍ଥିତ । ସେଠାରେ ବିଜେ କରିଥିବା ହନୁମନ୍ତ ଠାକୁରଙ୍କ ଚକୁଳି ଭୋଗ ପାଇଁ ସୁନପୁର ବାସୀ ପାଞ୍ଚଶଦେଲ ଲୋକ ଘାସି ଦାସଙ୍କ ନାମରେ ଜମି ଖଞ୍ଜି ଥିଲେ । ଖଞ୍ଜାର ପରିମାଣ ହେଉଛି ବଂଅ ଦଶତାମ୍ବି (ବାଲେଶ୍ୱର ସେ ୧୭୨) ଗୁଉଳ ଦେଡ଼ ଖଣ୍ଡି ବା ୩୦ ତାମ୍ବି (ବାଲେଶ୍ୱର ୫୨୨ ସେର) ଗୁଡ଼ି ଦୁଇ ବିଶା ଛଣ ପାଇଁ ତିନିଟଙ୍କା, ଯଥେଷ୍ଟ ପରିମାଣରେ କାଠପଣ । ଏହି ଦାନ ପତ୍ର ଗଜପତି ବୀରକେଶରୀ ଦେବଙ୍କ ସମସ୍ତ ୯ ଅଙ୍କ ଜ୍ୟେଷ୍ଠ କୃଷ୍ଣ ଏକାଦଶୀ ସୋମବାର ଦିନ ଦିଆଯାଇଥିଲା । ଜ୍ୟୋତିଷ ଗଣନା ଅନୁସାରେ ତାଙ୍କ ନଅ ଅଙ୍କରେ ତା ୯-୫-୧୭୨୩ ଜ୍ୟେଷ୍ଠ କୃଷ୍ଣ ଏକାଦଶୀ ସୋମବାର ପଡ଼ିଥିଲା ।

(୪)

## କଳନ୍ତର ରାଜା ମଧୁସୂଦନ ଛୋଟରାୟଙ୍କ ତମ୍ବାପଟା

ଓଡ଼ିଶାରୁ ବିଛିନ୍ନ କଳନ୍ତର ରାଜ୍ୟରୁ ଏହି ତମ୍ବାପଟା (୭½"×୪½")ଟି ମିଳିଥିଲା । ଏହାର ଗୋଟିଏ ପାଖରେ ଥିବା ୧୭ ଧାଡ଼ି ନିମ୍ନରେ ଉଦ୍ଧାର କରାଗଲା ।

୧ମ ଧାଡ଼ି—ବୀରଶ୍ରୀ ବୀରକେଶର ଦେବ ମ

୨ୟ ,, ହାରାଜାଙ୍କର ସମସ୍ତ ଶୁଭ ରାଜ୍ୟେ

୩ୟ ,, ୨୩ ଅଙ୍କେ

୪ର୍ଥ ,, ଅଙ୍ଗୀରସ ନାମ ସମ୍ବତ୍ସରେ ମକର ୧୨ ଦିନେ ମାଘ

୫ମ ,, ଶୁକ୍ଳ ସପ୍ତି ସୋମବାରେ ଶ୍ରୀ ଶ୍ରୀ ଶ୍ରୀ ମଧୁସୋଦ

୬ଷ୍ଠ ଧାଡ଼ି ମା ଚ୍ଛୋଟରାଏଦେଭ୍ଭ, ଦଦା ଜାମାଲ ବଡ଼ ଜେନା ସା
୭ମ ,, ମନ୍ତୁ ଦେବାର ପଟା ନାର୍ତ୍ତ୍ପୁ କ ବୋଲ
୮ମ ,, ଲେ ଚଳଦ୍ଧନରେ ଅରଖପଦା ଗ୍ରାମ ବଣ ନାମତେ୍ୟ
୯ମ ,, ଧିଲଣ୍ଡ ଗ୍ରାମକୁ ପ୍ରତ୍ତବଧଂ ବଢ଼େଇସ ୧୦ ବାଢ଼ସ ୪
୧୦ମ ,, ସନଉ ମିସ ୧୨ ମୁଦୈ୍ରପଇସ ୧୦ ବାଟେ ୧ କାଦୁ
୧୧ଶ ,, ଓବ ନାଦୁକର ଯେ୍ସୁ ରୂପେ ଦେଇ ଆଗ୍ୟାଂ ଅବଧାନ କଲୁ
୧୨ଶ ,, .ଜେ, ଆଜ ଢବାଦାରୁ ଏ ଗ୍ରାମ ସନ୍ଧିସିମାନ୍ତ ଫଦର ପ(ଙ୍କା)ଲ, ଜ
୧୩ଶ ,, ଲ ଗଛ ମାଛ ସମେତରେ ସୁଖେ ଭୁମ୍ନେ ଭୁମ୍ନ ପୁଦ୍ର ପୌତ୍ର
୧୪ଶ ,, ସାଦ ପରଜନ୍ତେ ଜାବତଚନ୍ଦ୍ରାର୍କେ ସୁଖ ଅନୁଭୋବ
୧୫ଶ ,, କରୁଥିବ, ଯେ ସ୍ୱିଧିରେଜ ଆନ କରାଇବ ଯାଗ-
୧୬ଶ ,, ରେ ଗୋହତ୍ୟା, ବ୍ରହ୍ମହତ୍ୟା, ମାତୃହତ୍ୟା କଲ ଦୋଷ ପାଇ
୧୭ଶ ,, ବ, ସେୁଥିରେ ଆନ ଅବଣ ନାହିଁ ୩ ଏ ମୋର ପ୍ରମାଣ । (୭୧)

ଟିପ୍ପଣୀ —

ଓଡ଼ିଶାର ଦକ୍ଷିଣ ସୀମାରେ ଜଳନ୍ତର ଏକ କ୍ଷୁଦ୍ର ଅଥଚ ପ୍ରସିଦ୍ଧ ରାଜ୍ୟ ଥିଲା। ଏହାର ରାଜାମାନେ ଓଡ଼ିଶା ରାଜାଙ୍କଠାରୁ 'ଚ୍ଛୋଟରାୟ' ପଦବୀ ପାଇଥିଲେ । ଉକ୍ତ ରାଜବଂଶରେ ଜନାର୍ଦ୍ଦନ, ଭଗବାନ, ରାମଚନ୍ଦ୍ର, ମଧୁସୂଦନ, କଣେଶ୍ୱରଚନ୍ଦ୍ର, ନାରାୟଣ, ପୁରୁଷୋତ୍ତମ ଓ ରାମକୃଷ୍ଣ ପ୍ରଭୃତି ରାଜା ଥିଲେ । ମଧୁସୂଦନ ଚ୍ଛୋଟରାୟ ଅଙ୍ଗୀରସ ସମ୍ବତ୍ସରରେ ବୀରକେଶରୀ ଦେବଙ୍କ ୨୩ ଅଙ୍କ ? ମକର ୧୨, ମାଘ ଶୁକ୍ଳ ସପ୍ତମୀ ସୋମବାର ଦିନ ତାଙ୍କ ଦାଦା ଜମାଇ ବଢ଼ଯେନା ମାମନ୍ତଙ୍କୁ ଅରଖପଦା ଗ୍ରାମ ଦାନ କରିଥିଲେ । ପାଠରେ ଭୁଲ ଥିବାରୁ ସମୟ ନିରୂପଣ ହୋଇପାରୁ ନାହିଁ ।

## ବୀରକେଶରୀଦେବଙ୍କ ଲଳତାପାଟପୁର ଶିଳାଲେଖ (୭୨)

ଶ୍ରୀରାମଚନ୍ଦ୍ରନୃପତେର୍ମହିଷୀ ମୁକୁନ୍ଦକ୍ଷୌଣୀନ୍ଦ୍ରସୂନୁ ହରେକୃଷ୍ଣନୃପସ୍ତ୍ରଷାଚ ।
ଶ୍ରୀବୀରକେଶରୀ ମହୀପତି ଶୀତରଶ୍ମି ର୍ଯସ୍ୟାଃ ସୁତଃ ସୁତପସଃ ଫଳମାବିରାସୀତ୍ । ୧
ଧର୍ମୈମିନ୍ନିର୍ମଳମତି ର୍ଲଳତେତି ନାମ୍ନା ଯାତେ ନବାଷ୍ଟ ରତୁରୂପମିତେ ଶକାବ୍ଦେ ।
ଅଙ୍କେ ସୂତସ୍ୟ ଚ ଗତେ ନବବହ୍ନିମାନେ ସୌଧଂ ହରେ ରକୃତ ସା ସୁକୃତା —
ଉତ୍ତାରେ । ୨

---

71 J A. H R. S ciety Vol XII. p. 234-235

୭୨ ! ଏହି ଶିଳାଲେଖଟି ପଣ୍ଡିତ ବାଜାମ୍ବର ଆଚାର୍ଯ୍ୟଙ୍କ ଦ୍ୱାରା ପଠିତ ଓ ପ୍ରକାଶିତ ହୋଇଥିଲା ।

ଅର୍ଥାତ୍ ଗଜପତି ମୁକୁନ୍ଦଙ୍କ ପୁତ୍ର ହରିକୃଷ୍ଣ ଦେବଙ୍କ ବନ୍ଧୁ ଗଜପତି ରାମଚନ୍ଦ୍ର ଦେବଙ୍କ ମହିଷୀ, ଶ୍ରୀ ବୀରକେଶରୀ ଦେବଙ୍କ ମାତା ଲଳିତା ପାଟ ମହାଦେବୀ ନବ(୯) ଅଷ୍ଟ(୮) ଋତୁ (୬) ରୂପ (୧) ବା ୧୬୮୯ ଶକାବ୍ଦ ବା ୧୭୬୭ ଖ୍ରୀଷ୍ଟାବ୍ଦରେ ବୀରକେଶରୀ ଦେବଙ୍କ ନବ(୯) ବହ୍ନି(୩) ବା ୩୯ ଅଙ୍କରେ ସ୍ୱକୃତ ଲଳିତାପାଟପୁର ନାମକ ଅଗ୍ରହାର ବା ବ୍ରାହ୍ମଣ ଶାସନରେ ହରିଙ୍କ ପାଇଁ ଏକ ମନ୍ଦିର ନିର୍ମାଣ କରିଥିଲେ । ତାଙ୍କର ୩୯ ଅଙ୍କ ୫-୯-୧୭୬୭ରୁ ୨୩-୯-୧୭୬୮ ପର୍ଯ୍ୟନ୍ତ ଚାଲିଥିଲା ।

## ଶ୍ରୀକୃଷ୍ଣ ମନ୍ଦିର ଶିଳାଲେଖ

ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରସ୍ଥ ମାର୍କଣ୍ଡେୟ ସରୋବର ନିକଟରେ ଥିବା ଶ୍ରୀକୃଷ୍ଣ ମନ୍ଦିରରେ ବୀରକେଶରୀ ଦେବଙ୍କ ରାଜତ୍ୱକାଳର ଏକ ଶିଳାଲେଖ ବିଦ୍ୟମାନ :—

ଶ୍ରୀରସ୍ତୁ ଶକାବ୍ଦ ୧୬୬୩ । ଶ୍ରୀକୃଷ୍ଣ, ଶକାବ୍ଦେଽଗ୍ନି ରସର୍ତ୍ତୁ ଚନ୍ଦ୍ରରଶ୍ମି ରବ୍ଦେ ବ୍ୟଧାପମ୍ୱତ ମାର୍କଣ୍ଡେୟ ହ୍ରଦାନ୍ତ ପଙ୍କୋଦ୍ଧାରଂ ସୋପାନମଣ୍ଡପୋ ହରେକୃଷ୍ଣେନ ସିଂହେନ କୀର୍ତ୍ତିଚନ୍ଦ୍ର କୃତ ପସଃ ?

ଅର୍ଥାତ୍ ହରେକୃଷ୍ଣ ସିଂହ କୀର୍ତ୍ତିଚନ୍ଦ୍ର ଅଗ୍ନି (୩) ରସ (୬) ଋତୁ(୬) ଉଗ୍ର ରଶ୍ମି (୧) ବା ୧୬୬୩ ଶକାବ୍ଦରେ ବା ୧୭୪୧ ଖ୍ରୀଷ୍ଟାବ୍ଦରେ ମାର୍କଣ୍ଡେୟ ହ୍ରଦରୁ ପଙ୍କୋଦ୍ଧାର କରି ତାହାର ସୋପାନଶ୍ରେଣୀ ଓ ଏକ ମଣ୍ଡପ ନିର୍ମାଣ କରିଥିଲେ । ମାଦଳାପାଞ୍ଜିରେ ମଧ୍ୟ ଏ ଘଟଣା ବର୍ଣ୍ଣିତ ହୋଇଛି । ବର୍ତ୍ତମାନ କୀର୍ତ୍ତିଚନ୍ଦ୍ରମା ମାର୍କଣ୍ଡରେ ପଥର ବନ୍ଧାଇଲେ । (ପୃଷ୍ଠା ୮୦)

ବୀରକେଶରୀ ଦେବଙ୍କ ରାଜତ୍ୱରେ ଲିଖିତ ଓ ଅଦ୍ୟାବଧି ପ୍ରକାଶିତ ଦୁଇଟି ଶିଳାଲେଖ, ତିନୋଟି ତମ୍ବାପଟା, ଗୋଟିଏ ଦାନକ୍ଷେପ ଏବଂ ଡ. ରଙ୍ଗାଚାର୍ଯ୍ୟଙ୍କ ଦ୍ୱାରା ପ୍ରକାଶିତ ଗଞ୍ଜାମର ଦାନପତ୍ର ସମୂହ ଓ ଅନେକ ତାଳପତ୍ର ପୋଥିର ପୁଷ୍ପିକାରୁ ଉପାଦାନ ସଂଗ୍ରହ କରାଯାଇ ନିମ୍ନରେ ଆଲୋଚନା କରାଯାଇଛି । ଡ଼ଃ ରଙ୍ଗାଚାର୍ଯ୍ୟ ତାମିଲ ଭାଷୀ ହୋଇଥିବାରୁ ଓଡ଼ିଆରେ ଲିଖିତ ଗଞ୍ଜାମର ଦାନପତ୍ରମାନଙ୍କ ପାଠରେ ସ୍ଥାନେ ସ୍ଥାନେ ତ୍ରୁଟି ରହିଛି । ଲିପିକାର ପ୍ରମାଦ ଓ ଗଣନାରେ ଭ୍ରମ ମଧ୍ୟ କେତେକ ଦାନପତ୍ରରେ ପରିଦୃଷ୍ଟ ହୁଏ । ତଥାପି ରଙ୍ଗାଚାର୍ଯ୍ୟଙ୍କ ଟିପ୍ପଣୀ ଗୁଡ଼ିକ ଅତ୍ୟନ୍ତ ଉପାଦେୟ ଓ ଆଲୋଚନା ପାଇଁ ଅପରିହାର୍ଯ୍ୟ । ଏଥିରେ ଥିବା ତ୍ରୁଟି ଯଥାସ୍ଥାନରେ ପ୍ରଦର୍ଶିତ ହୋଇଅଛି ।

# ଗଜପତି ବୀରକେଶରୀଦେବଙ୍କ ଦାନପତ୍ର ସମୂହ

| କ୍ରମିକ ସଂଖ୍ୟା | ଦାନପତ୍ରରେ ଦିଆଯାଇଥିବା ଅଙ୍କ, ବାର, ତିଥି | ଦାତା, ଗ୍ରହୀତା ଓ ଦାନର ବିବରଣ | ଖ୍ରୀଷ୍ଟାବ୍ଦରେ ପ୍ରତ୍ୟେକର ସମୟ ନିର୍ଣ୍ଣୟ |
|---|---|---|---|
| (୧) ୧୧୭ | ସମସ୍ତ ୨ଅଙ୍କ, କର୍କଟକ ୨୫, ଶ୍ରାବଣ ବହୁଳ ୩୦, ଶୁକ୍ରବାର | ବୀରକେଶରୀଦେବ ମୁକୁନ୍ଦ ନାମକ ବ୍ରାହ୍ମଣଙ୍କୁ ଭୂମିଦାନ କରିଥିଲେ । | ୧୫-୭-୧୭୩୭ ରେ ଶ୍ରାବଣ ବହୁଳ ୩୦, ଶୁକ୍ରବାର କର୍କଟ ୧୫ ହୋଇଥିଲା । ଭୁଲରେ ୧୫ ସ୍ଥାନରେ ୨୫ ପଢ଼ାଯାଇଛି । ଏହା ତାଙ୍କ ରାଜତ୍ୱର ସର୍ବ ପ୍ରଥମ ଦାନପତ୍ର । |
| (୨) ୫୭ | ସମସ୍ତ ୪ଅଙ୍କ, କର୍କଟକ ୧୨, ଶ୍ରାବଣ ବହୁଳ ୫ ଶୁକ୍ରବାର | ବାମଦେବ ଆଚାର୍ଯ୍ୟଙ୍କ ନାତି ତ୍ରିଲୋଚନ ଆଚାର୍ଯ୍ୟଙ୍କ ପୁଅ ମାର୍କଣ୍ଡ ଆଚାର୍ଯ୍ୟ ପ୍ରହରାଜଙ୍କୁ ସେରଗଡ଼ ରାଜା କୃପାସିନ୍ଧୁ ଦେବରାଜ ସୁବର୍ଣ୍ଣଦେବୀପୁର ଗ୍ରାମ ଦାନ କରିଥିଲେ । | ୧୫-୭-୧୭୩୯ କର୍କଟ ୧୨, ଶ୍ରାବଣ, କୃଷ୍ଣ ଚତୁର୍ଥୀ ଶୁକ୍ରବାର; ତିଥିରେ ଦିନକର ପାର୍ଥକ୍ୟ ଓଡ଼ିଶା ପାଞ୍ଜି ଅନୁସାରେ ସମ୍ଭବପର । |
| (୩) | ୫ ଅଙ୍କ, ତୁଳ ୪ ଦିନ* (ବାରିପଦା ମିଉଜିୟମ ତମ୍ବାପଟା) | ବୀରକେଶରୀଦେବ ପଶ୍ଚିମ ଦ୍ୱାର ପରିଛା ବୃନ୍ଦାବନ କୁଅଁର ଗୁରୁ ମହାପାତ୍ରଙ୍କୁ ପୁରସ୍କାର ସ୍ୱରୂପ ହରିନାମତୀ ଗଡ଼ ପ୍ରଦାନ କରିଥିଲେ । | ୭-୧୦-୧୭୩୯, ଶନିବାର କାର୍ତ୍ତିକ, କୃଷ୍ଣ ପ୍ରତିପଦ । |
| (୪) ୨୮୧ | ୫ ଅଙ୍କ, ବିଛା ୧୯, ମାର୍ଗଶିର, ବହୁଳ ୩୦ ସୋମବାର | ଆଠଗଡ଼ ରାଜା ଜଗନ୍ନାଥ ହରିଚନ୍ଦନ ଜଗଦେବ ଶ୍ରୀନିବାସ ରଥ ଦୀକ୍ଷିତଙ୍କ ନାତି ଗୋବିନ୍ଦ ରଥ ଦୀକ୍ଷିତଙ୍କ ପୁଅ ବାସୁରଥ ରାଜଗୁରୁଙ୍କୁ ଛତିନା ଜଗନ୍ନାଥପୁର ଗ୍ରାମରେ ୧୦୦ ଭରଣ ଭୂମିଦାନ କରିଥିଲେ । | ୧୯-୧୧-୧୭୩୯ରେ ମାର୍ଗ, ବ, ୩୦, ସୋମବାର, ବିଛା ୧୮ ଦିନ ହୋଇଥିଲା । ତମ୍ବାପଟାରେ ଭୁଲରେ ୧୯ ଲେଖାଯାଇଛି । |
| (୫) ୨୮୬ | ୫ ଅଙ୍କ, ମକର ୩, ପୌଷ ଶୁକ୍ଳ ୧୫, ଚନ୍ଦ୍ର ଗ୍ରହଣ | ଆଠଗଡ଼ ରାଣୀ ପ୍ରାଣଦେବୀ ଧର୍ମ ମହିମଗୁରୁଙ୍କୁ ପ୍ରାଣଦେବୀ ଶାସନ ଦାନ କରିଥିଲେ । | ୨-୧-୧୭୪୦, ବୁଧବାର ପୌଷ ପୂର୍ଣ୍ଣିମୀ ଦିନ ଚନ୍ଦ୍ର ଗ୍ରହଣ ହୋଇଥିଲା । |

* ଭବିଷ୍ୟତରେ ଅଧିକ ଗବେଷଣାର ସୁବିଧା ପାଇଁ ପ୍ରତ୍ୟେକ କ୍ରମିକ ସଂଖ୍ୟା ତଳେ ଡ଼. ରଙ୍ଗାଚାର୍ଯ୍ୟଙ୍କ ପୁସ୍ତକର ଗଞ୍ଜାମ ଜିଲା ସଂଖ୍ୟା ଦିଆଯାଇଛି ।

| କ୍ରମିକ ସଂଖ୍ୟା | ଦାନପତ୍ରରେ ଦିଆଯାଇଥିବା ଅଙ୍କ, ବାର ତିଥି | ଦାତା, ଗ୍ରହୀତା ଓ ଦାନର ବିବରଣ | ଖ୍ରୀଷ୍ଟାବ୍ଦରେ ପ୍ରତ୍ୟେକର ସମୟ ନିର୍ଣ୍ଣୟ |
|---|---|---|---|
| [୬] ୯୯ | ୫ ଅଙ୍କ, କୁମ୍ଭ, ୫ ଦିନ | ଖୁମା ରାଜ୍ୟାଧିପତି ସାମନ୍ତରା ମହାପାତ୍ରଙ୍କ ଦୀନବନ୍ଧୁ ସେତୁ ରାଓଙ୍କୁ ଭୂମି ଦାନ । | ୨-୨-୧୭୪୦ କୁମ୍ଭ ୫, ଫାଲ୍‌ଗୁନ, କୃଷ୍ଣ ପ୍ରତିପଦା । |
| [୭] | ବୀରକେଶରୀଦେବଙ୍କ ସମୟର ସୋନପୁର ତାମ୍ର ଶାସନ ୯ ଅଙ୍କ, ଜ୍ୟେଷ୍ଠ କୃଷ୍ଣ ୧୧ ସୋମବାର | ସୋନପୁରରେ ରହୁଥିବା ପାଞ୍ଚଶ ଦଳ ଲୋକ ଲପୁର ସିଂ ଗ୍ରାମରେ ବନେ ହୋଇଥିବା ହନୁମାନ ଠାକୁରଙ୍କ ଭୋଗପାଇଁ ଗ୍ରାମ ଖଣ୍ଡ କରିଥିଲେ । | ୯-୫-୧୭୪୩ ରେ ଜ୍ୟେଷ୍ଠ, କୃଷ୍ଣ ଏକାଦଶୀ ସୋମବାର ହୋଇଥିଲା । ମାସ, ଦିନ, ବାର ତିଥି ସବୁ ମିଳି ଯାଉଛି । |
| [୮] ୨୨୮ | ମେଷ ୧୮, ବୈଶାଖ ପୂର୍ଣ୍ଣିମା, ରବିବାର ଚନ୍ଦ୍ରଗ୍ରହଣ, ଅଙ୍କ ପଢ଼ା ଯାଉନାହିଁ । ୧୦ ଅଙ୍କ ହେବ । | ଗଜପତି ଗୌଡ଼େଶ୍ୱର କର୍ଣ୍ଣାଟ କଲବର୍ଗେଶ୍ୱର ଇନ୍ଦ୍ରଦ୍ୟୁମ୍ନାବତାର ମହାବୀର, ମନ୍ତ୍ରପ୍ରକାଶ ବୀରକେଶରୀ ଦେବଙ୍କ ଅନୁମତିରେ ଚକଡି ରାଜା କୁଳମଣି ରାଜେନ୍ଦ୍ର ଦେବ କୌଶିକସଗୋତ୍ର ଋକ୍-ବେଦ-କାଣ୍ୱ ଶାଖାଧ୍ୟାୟୀ ବଣ୍ଡାଗାର ଗଙ୍ଗାରାମଙ୍କୁ କୁଳମଣିପୁର ଗ୍ରାମ ଦାନ କରିଥିଲେ । | ୧୫-୪-୧୭୪୪ ତାରିଖରେ ମେଷ ୧୮, ବୈଶାଖ ପୂର୍ଣ୍ଣିମା ରବିବାର ଦିନ ଚନ୍ଦ୍ରଗ୍ରହଣ ହୋଇଥିଲା । ତାଙ୍କ ରାଜତ୍ୱରେ ରବିବାର ଦିନ ଚନ୍ଦ୍ରଗ୍ରହଣ ଏହି ଥରକ ମାତ୍ର ପଡ଼ିଥିଲା । |
| [୯] ୧୦୨ | ୧୧ ଅଙ୍କ କନ୍ୟା ୩ ଦିନ [୧୦ ଅଙ୍କ ହେବ] | ଖୁମା ରାଜା ସାମନ୍ତରାୟମହାପାତ୍ର ବଳଭଦ୍ର ପଣ୍ଡାଙ୍କୁ ୧୦ ଭରଣ ଭୂମି ଦାନ କରିଥିଲେ । | ସିଂହ ୨୭ ଦିନ ୨୭-୮-୧୭୪୫ ରେ ୧୧ ଅଙ୍କ ଆରମ୍ଭ ହୋଇ ଥିବାରୁ କନ୍ୟା ୩ ଦିନ ପଡ଼ିନଥିଲା ତେଣୁ ଏହା ୧୦ ଅଙ୍କ ହେବ ୪-୯-୧୭୪୪ । |
| [୧୦] ୨୦୯ | ୧୧ ଅଙ୍କ, ମେଷ ୨୦, ବୈଶାଖ ବହୁଳ ୦ ସୋମବାର ସୂର୍ଯ୍ୟ ପରାଗ | ଆଠଗଡ଼ ରାଜ୍ୟାଧିପତି ଜଗନ୍ନାଥ ହରିଚନ୍ଦନ ଦେବ ନନ୍ଦଦାସ ଓ ଅନ୍ୟମାନଙ୍କୁ ଚନ୍ଦ୍ରମାଦେଈପୁର ଗ୍ରାମଦାନ କରିଥିଲେ । | ଅଙ୍କ ଗଣନାରେ ଭୁଲ ଅଛି । ବୈଶାଖ, ଅମାବାସ୍ୟା, ସୋମବାର ସୂର୍ଯ୍ୟପରାଗ ବୀରକେଶରୀ ଦେବଙ୍କ ରାଜତ୍ୱରେ ଜଗନ୍ନାଥ ହରିଚନ୍ଦନଙ୍କ ଜୀବନକାଳରେ ପଡ଼ିନଥିଲା । ୨୨-୪-୧୭୫୪ରେ ରାମଚନ୍ଦ୍ର ଦେବଙ୍କ ୧୦ ଅଙ୍କରେ ଏପରି ଘଟିଥିଲା । |

| କ୍ରମିକ ନମ୍ବର | ଦାନପତ୍ରରେ ଦିଆଯାଇଥିବା ଅଙ୍କ, ବାର ତିଥି | ଦାତା, ଗ୍ରହୀତା ଓ ଦାନର ବିବରଣ | ଖ୍ରୀଷ୍ଟାବ୍ଦରେ ପ୍ରତ୍ୟେକର ସମୟ ନିର୍ଣ୍ଣୟ |
|---|---|---|---|
| [୧୧] ୨୭୭ | ୧୨ ଅଙ୍କ, ମେଷ ୨୦, ବୈଶାଖ ଶୁକ୍ଳ ୮, ଶୁକ୍ରବାର । | ପୂର୍ବୋକ୍ତ ଜଗନ୍ନାଥ ହରିଚନ୍ଦନ ରଘୁନାଥ ସାମନ୍ତରାୟ ମହାପାତ୍ରଙ୍କୁ ବୀର ଜଗନ୍ନାଥପୁର ଗ୍ରାମଦାନ କରିଥିଲେ । | ୧୮-୪-୧୭୪୭ରେ ମେଷ ୨୦, ବୈଶାଖ, ଶୁକ୍ଳ ୯ ସୋମବାର ତିଥିରେ ଦିନକର ପାର୍ଥକ୍ୟ ଧର୍ତ୍ତବ୍ୟ ନୁହେ । |
| [୧୨] ୫୪ | ୧୭ ଅଙ୍କ ଧନୁ ୧୮, ରବିବାର | ହୁମାରାଜ୍ୟାଧିପତି ସୁର ଶ୍ରୀ ସାମନ୍ତ ରାୟ ମହାପାତ୍ର ବାସୁଦେବ ଭଟ୍ଟଙ୍କୁ ଆମ୍ବତୋଟା ଦାନ କରିଥିଲେ । | ୧୭-୧୨-୧୭୪୯ ରବିବାର ଦିନ ଧନୁ ୧୮ ନହୋଇ ୧୭ ହେବ । ଗଣନାରେ ଏହି ପାର୍ଥକ୍ୟ ଧର୍ତ୍ତବ୍ୟ ନୁହେ । |
| [୧୩] ୧୨୦ | ୧୬ ଅ[ଙ୍କ], କର୍କଟକ ୩୨ ଭୁଲ, ଶ୍ରାବଣ, ବହୁଳ, ୩୦ ମଙ୍ଗଳବାର । | ବୀରକେଶରୀ ଦେବ ଯୋଗୀମଲ୍ଲିକଙ୍କୁ ରମ୍ଭା ଗ୍ରାମରେ ଭୂମିଦାନ କରିଥିଲେ । | ୨୪-୭-୧୭୩୯, ୨୦-୭-୧୭୪୨ ୨୭-୭-୧୭୫୭ରେ ଶ୍ରାବଣ ଅମାବାସ୍ୟା, ମଙ୍ଗଳବାର ଓ କର୍କଟକ ମାସରେ ପଡ଼ିଥିବାରୁ ଅଙ୍କ ଗଣନାରେ ଭୁଲ ଅଛି । |
| [୧୪] ୩୬ | ୧୮ ଅଙ୍କ, ମେଷ ୧୨, ବୈଶାଖ ବହୁଳ ୧୦, ବୁଧବାର । | ଧରାକୋଟ ରାଜା ହରିକୃଷ୍ଣ ସିଂହ ଦେବ ନିତ୍ୟାନନ୍ଦ ଭଟ୍ଟ ମିଶ୍ରଙ୍କୁ ହରିକୃଷ୍ଣପୁର ଗ୍ରାମ ଦାନ କରିଥିଲେ । | ୧୦-୪-୧୭୫୧ ମେଷ, ୧୨, ବୈଶାଖ, କୃଷ୍ଣ ଦଶମୀ, ବୁଧବାର ସବୁ ମିଳିଯାଉଛି । |
| [୧୫] ୫୫ | ୧୮ ଅଙ୍କ, ସିଂହ ୨ ଭାଦ୍ରବ ୯ ରବିବାର | ପୂର୍ବୋକ୍ତ ହରିକୃଷ୍ଣ ସିଂହ ମାଙ୍ଗୁଣି ସାମନ୍ତରାୟଙ୍କୁ ରାମକୃଷ୍ଣପୁରରେ ୮୦ ଭରଣ ଭୂମିଦାନ କରିଥିଲେ । | ୪-୮-୧୭୫୧ ରେ ସିଂହ ୩ ଭାଦ୍ର କୃଷ୍ଣ ନବମୀ ରବିବାର ପଡ଼ିଥିଲା । ଦାନପତ୍ରରେ ଭୁଲରେ ସିଂହ ୨ ପଡ଼ିଛି । |
| [୧୬] ୧୧୯ | ୨୧ ଅ[ଙ୍କ], ମେଷ ୨୪, ବୈଶାଖ ବହୁଳ ୨ ବୁଧବାର | ବୀରକେଶରୀ ଦେବ ନରସିଂହ ପଣ୍ଡାଙ୍କୁ ଭୂମିଦାନ କରିଥିଲେ । | ୨୨ ଅଙ୍କରେ ୨୪-୪-୧୭୫୪ରେ ବୈଶାଖ, ଶୁକ୍ଳ ଦ୍ୱିତୀୟା ବୁଧବାର ଦିନ ପଡ଼ୁଥିଲା । ତେଣୁ ଏହା ବହୁଳ ୨ ନୁହେଁ । |

| କ୍ରମିକ ସଂଖ୍ୟା | ଦାନପତ୍ରରେ ଦିଆଯାଇଥିବା ଅଙ୍କ, ବାର ତିଥି | ଦାତା, ଗ୍ରହୀତା ଓ ଦାନର ବିବରଣ | ଖ୍ରୀଷ୍ଟାବ୍ଦରେ ପ୍ରତ୍ୟେକର ସମୟ ନିର୍ଣ୍ଣୟ |
|---|---|---|---|
| (୧୭) | ୨୩ ଅଙ୍କ ଅଙ୍ଗିରସ ସମ୍ବତ୍ସର, ମକର ୧୨ ଦିନ, ମାଘ ଶୁକ୍ଳ ସପ୍ତମୀ ସୋମବାର। | ଜଳନ୍ତର ରାଜା ମଧୁସୂଦନ ଶ୍ରେଷ୍ଠରାୟ ଅରଖପଦା ଗ୍ରାମରେ ଦାଦାଜାମାଇ ବଡ଼ସେନା ସାମନ୍ତଙ୍କୁ ଭୂମି ଦାନ କରିଥିଲେ। | ୧୩-୧-୧୭୫୨ରେ ସୋମବାର, ମକର ୧୪ ଦିନ, ମାଘ, ଶୁକ୍ଳ, ଅଷ୍ଟମୀ ପଡ଼ିଥିଲା। ସେ ବର୍ଷ ୨୩ ଅଙ୍କ ନ ହୋଇ ୨୧ ଅଙ୍କ ହୋଇଥିଲା। ୨୯-୮-୫୩ରୁ ଅଙ୍ଗୀରସ ସମ୍ବତ୍ସର ପଡ଼ିଲା। ତେଣୁ ଲିପିକାର ପ୍ରମାଦ ତଥା ପାଠରେ ଭୁଲ ରହିଛି। |
| (୧୮) ୨୭୭ | ୨୫ ଅଙ୍କ, କର୍କଟ, ଶ୍ରାବଣ ଶୁକ୍ଳ ୧୫, ଶନିବାର ଚନ୍ଦ୍ରଗ୍ରହଣ। (କକଡ଼ା ୧୯ ଦିନ ଭୁଲରେ ଛୁଟି ଯାଇଛନ୍ତି | ଆଠଗଡ଼ ରାଜା ମଧୁସୂଦନ ହରିଚନ୍ଦନ ଜଗଦେବ କେତେକ ଲୋକଙ୍କୁ ବଗଡ଼ ମଧୁସୂଦନପୁର ଗ୍ରାମ ଦାନ କରିଥିଲେ। | ୩୦-୭-୧୭୫୭, କକଡ଼ା ୧୯, ବୈଶାଖ. ପୂର୍ଣ୍ଣମୀ; ଶନିବାର, ଚନ୍ଦ୍ରଗ୍ରହଣ (ସବୁ ମେଳଖାଉଛି)। |
| (୧୯) ୪୧ | ୩୧ ଅଙ୍କ ମିଥୁନ ୯ ଆଷାଢ଼, ବହୁଳ ୧୪, ଶୁକ୍ରବାର। | ଧରାକୋଟ ରାଜା ହରେକୃଷ୍ଣ ସିଂହ ଦେବ ନିତ୍ୟାନନ୍ଦ ଭଞ୍ଜ ମିଶ୍ରଙ୍କୁ କମଳାଦେବୀପୁରରେ ଭୂମି ଦାନ କରିଥିଲେ। | ୧୯-୭-୧୭୭୧ରେ ୩୧ ଅଙ୍କରେ ମିଥୁନ ୯ ଦିନ, ଶୁକ୍ରବାର ପଡ଼ିଥିଲା। ଆଷାଢ଼ କୃଷ୍ଣ ୧୪ନ ହୋଇ ଦ୍ୱିତୀୟା ହୋଇଥିଲା। ଲିପିକାର ପ୍ରମାଦ ବା ପାଠରେ ଭୁଲ ଅଛି। |
| (୨୦) ୧୧୧ | ୩୨ ଅଙ୍କ ମେଷ ୩, ବୈଶାଖ ଶୁକ୍ଳ ୧୫ ଶନିବାର। | ଗଜପତି ଗୌଡ଼େଶ୍ୱର ବୀରକେଶରୀଦେବଙ୍କ ପୁରୁଷୋତ୍ତମପୁର ବାସୀ ଜନୈକ ବ୍ୟକ୍ତିଙ୍କୁ ଚରଣପୁର ଗ୍ରାମରେ ଦାନ। | ୮-୫-୧୭୭୨ରେ ବୈଶାଖ ପୂର୍ଣ୍ଣମୀ ସୋମବାର ଦିନ ପଡ଼ିଥିଲା। କିନ୍ତୁ ମେଷ ୩ ନୁହେଁ ୩୦ ହେବ। |
| (୨୧) ୧୧୫ | ୩୨ ଅଙ୍କ, ବୃଷ ୨୯, ଜ୍ୟେଷ୍ଠ ବହୁଳ ୧, ସୋମବାର ଜ୍ୟେଷ୍ଠ ନ ହୋଇ ପ୍ରକୃତରେ ଆଷାଢ଼ ହେବ। | ବୀରକେଶରୀ ଦେବଙ୍କ ଜଣେ ବ୍ରାହ୍ମଣଙ୍କୁ ଦାନ— | ଆଷାଢ଼, କୃଷ୍ଣ ପ୍ରତିପଦ ଦିନ ସୋମବାର, ବୃଷ ୨୯ ହୋଇପାରେ ୭-୬-୧୭୭୨ । |

| କ୍ରମିକ ସଂଖ୍ୟା | ଦାନପତ୍ରରେ ଦିଆଯାଇଥିବା ଅଙ୍କ, ବାର, ତିଥି | ଦାତା, ଗ୍ରହୀତା ଓ ଦାନର ବିବରଣ | ଖ୍ରୀଷ୍ଟାବ୍ଦରେ ପ୍ରତ୍ୟେକର ସମୟ ନିର୍ଣ୍ଣୟ |
|---|---|---|---|
| [୨୨] | ୭ ଅଙ୍କ ସିଂହ ୧୪ ଭାଦ୍ର ଶୁକ୍ଳ ୧୫, ୪୫ ଶୁକ୍ରବାର । | ବୃନ୍ଦାବନ ଠାକୁରଙ୍କ ସମ୍ମୁଖରେ କରି ଥାଇ ଅଗ୍ରହାରକୁ ପୁରୁଷୋତ୍ତମ ମହାପାତ୍ରଙ୍କୁ ୫୨୨୦ । ରେ ବିକ୍ରୟ । | ୩୦—୮—୧୭୭୫ ଭାଦ୍ର ପୂର୍ଣ୍ଣିମୀ ଶୁକ୍ରବାର ଚନ୍ଦ୍ରଗ୍ରହଣ ହୋଇଥିଲା । କିନ୍ତୁ ସିଂହ ୧୪ ନ ହୋଇ ୧୭ ବା ୧୮ ହେବ । |
| [୨ ] | ୩୭ ଅଙ୍କ ମକର ୧, ମାଘ, ବହୁଳ ୩୦, ୪୭ ଶୁକ୍ରବାର । | ଧରାକୋଟ ରାଜା ରାଜେନ୍ଦ୍ର ସିଂହ ମଧୁ ପ୍ରହରାଜଙ୍କୁ ଭୂମିଦାନ କରିଥିଲେ । | ୧୦-୧-୧୭୭୭ ସବୁ ମେଳ ଖାଉଛି । |
| [୨୪] | ୩୭ ଅଙ୍କ, କୁମ୍ଭ ୧୭, ଫାଲ୍‌ଗୁନ, ୫୭ ଶୁକ୍ଳ ୧୫, ସୋମବାର । | ସର୍ବବାହନ ପାଢ଼ୀ ଓ କୃଷ୍ଣ ପଣ୍ଡାଙ୍କୁ ଜମି ବିକ୍ରୀ । | ୨୪-୨—୧୭୭୭ ସବୁ ମେଳ ଖାଉଛି । କିନ୍ତୁ କୁମ୍ଭ ୧୭ ନ ହୋଇ ୧୨ ହେବ । |
| [୨୫] | ୩୮ ଅଙ୍କ, ତୁଳ ୧ ଆଶ୍ୱିନ, ଶୁକ୍ଳ ୧୧ ୨୫ ମଙ୍ଗଳବାର । | ଧରାକୋଟ ରାଜା ରାଜେନ୍ଦ୍ର ସିଂହ ଦେବ କେତେକ ଜଙ୍ଗଲ ସଫା କରିବାପାଇଁ ଦେଇଥିଲେ । | ୧୪—୧୦-୧୭୭୭ ସବୁ ମେଳ ଖାଉଛି । |
| [୨୬] | ମଙ୍ଗଳବାର ତୁଳ ୨ ୩୩ | କେତେକ ଜମି ବିକ୍ରୀ | ୧୪-୧୦—୧୭୭୭ ତୁଳ ୨ ନ ହୋଇ ୧ ହେବ । |
| [୨୭] | ୩୮ ଅଙ୍କ, ତୁଳ ୨, ଆଶ୍ୱିନ, ବହୁଳ ୨୮ ୧୮ ମଙ୍ଗଳବାର । | ଧରାକୋଟ ରାଜା ରାଜେନ୍ଦ୍ର ସିଂହଙ୍କ ଅନୁମତିରେ ଘଟ ଗୋପାଳକୃଷ୍ଣ ପାତ୍ରଙ୍କୁ ୫୩୩୪୫୧ ଟଙ୍କାରେ ଜମି ବିକ୍ରୀ । | ୧୪-୧୦—୧୭୭୭ ଶୁକ୍ଳ ୧୧ ସ୍ଥାନରେ ଲିପିକାର ଭୁଲରେ ବହୁଳ ୧୦ ଲେଖିଛି । କାରଣ ୨୫।୨୬ ଓ ୨୭ ସଂଖ୍ୟକ ଦାନପତ୍ର ଏକାଦିନରେ ଲେଖା ଯାଇଛି । |
| [୨୮] | ୩୯ ଅଙ୍କ ସିଂହ ୨୧ ଦିନ । ୨୭୨ | ଚିକିଟି ରାଜା କୁଳମଣି ରାଜେନ୍ଦ୍ରଦେବଙ୍କ ଅମଳେଶ୍ୱର ଭଟ୍ଟଙ୍କୁ ଦାନ । | ୨—୯—୧୭୭୮ |
| (୨୯) | ୪୧ ଅଙ୍କ, ମେଷ ୯୦, ବୈଶାଖ, ୪୮ ଶୁକ୍ଳ ଶନିବାର । | ଧରାକୋଟ ରାଜା ରାଜେନ୍ଦ୍ର ସିଂହଙ୍କ ନାରାୟଣ ଭଟ୍ଟ ? ଓ ଅନ୍ୟ ଡିନିଜଣଙ୍କୁ ରାଜେନ୍ଦ୍ରପୁର ଗ୍ରାମ ଦାନ । | ୮—୫—୧୭୭୯ରେ ବୈଶାଖ, ଶୁକ୍ଳ ତୃତୀୟା ମେଷ ୨୯/୩୦ ହେଉଛି । କିନ୍ତୁ ଶନିବାର ନ ହୋଇ ସୋମବାର ହେବ । ପାଠରେ ଭ୍ରମ ଅଛି । |

| କ୍ରମିକ ସଂଖ୍ୟା | ଦାନପତ୍ରରେ ଦିଆଯାଇ ଥିବା ଅଙ୍କ, ବାର ତିଥି | ଦାତା, ଗ୍ରହୀତା ଓ ଦାନର ବିବରଣ | ଖ୍ରୀଷ୍ଟାବ୍ଦରେ ପ୍ରତେ୍ୟକର ସମୟ ନିର୍ଣ୍ଣୟ |
|---|---|---|---|
| (୩୦) ୧୬୧ | ୪୮ ଅଙ୍କ, ବୃଷ ୬, ବୈଶାଖ, ୧୨ ବୁଧବାର । | ନାରାୟଣ ପଣ୍ଡାଙ୍କୁ ଭୂମି ଦାନ | ୧୦–୫-୧୭୭୫ ବୃଷ ୬, ବୈଶାଖ, ଶୁକ୍ଳ ଦ୍ୱାଦଶୀ ଶୁକ୍ର-ବାର (ବୁଧବାର ନୁହେଁ) । |
| (୩୧) ୯୬ | ୫୧ ଅଙ୍କ, ମୀନ ୧୦, ଫାଲ୍‌ଗୁନ, ଶୁକ୍ଳ ଦଶମୀ ବୁଧ-ବାର । | କୁମାରାଜା ଶ୍ରୀ ରାମଚନ୍ଦ୍ର ସାମନ୍ତ-ରାୟ ମହାପାତ୍ର କୁମା ରାଜ୍ୟରେ ଟ ୯୬୫୧ ଟଙ୍କାରେ ୧୦୦ ଭରଣ ଭୂମି ବିକ୍ରୟ କରିଥିଲେ । | ୧୯–୩–୧୭୭୭ ଦିନ ଦଶମୀ ସ୍ଥାନରେ ଏକାଦଶୀ ହେଉଛି । ତିଥିର ଏହି ପାର୍ଥକ୍ୟ ସମ୍ଭବପର । |
| (୩୨) ୧୧୪ | ୫୬ ଅଙ୍କ, ବୃଷ ୫, ଜ୍ୟେଷ୍ଠ ବହୁଳ ୧୪ ଶୁକ୍ରବାର । | ବୀରକେଶରୀ ଦେବ ଗୋଦାବରୀ ସ୍ନାନ ଯୋଗୁଁ ଜଣକୁ ରମ୍ଭା ଅଞ୍ଚ-ଳରେ ଭୂମି ଦାନ କରିଥିଲେ । | ୧୫–୬-୧୭୭୮ ବୃଷ ୫, ଜ୍ୟେଷ୍ଠ, କୃଷ୍ଣ ତ୍ରୟୋଦଶୀ ଶୁକ୍ରବାର ଲିପିକାର ପ୍ରମାଦ ବା ପାଠର ଭ୍ରମ ଯୋଗୁଁ ୩ ଜାଗାରେ ୧୪ ପଢ଼ାଯାଇଛି । |
| (୩୩) ୮୩ | ୫୬ ଅଙ୍କ, ମିଥୁନ ୧୦, ଆଷାଢ଼ ବହୁଳ ୧୦ ରବିବାର । | ମହାରଥୀ ମହାପାତ୍ରଙ୍କ ସମ୍ମତିରେ ଗଙ୍ଗତିଆ ମହନ୍ତ ବଳରାମଦାସଙ୍କୁ ଦାନ । | ୨୧–୬-୧୭୭୮ ରବିବାର ଦିନ, ମିଥୁନ, ୧୧, ଆଷାଢ଼ କୃଷ୍ଣ ଏକାଦଶୀ ହେଉଛି । ତିଥିରେ ଏକ ଦିନର ପାର୍ଥକ୍ୟ ସମ୍ଭବ-ପର । |
| (୩୪) ୨୭୯ | ୫୩ ଅଙ୍କ କାର୍ତ୍ତିକ, ପ୍ରକୃତରେ କର୍କଟକ ହେବ ୧୦, ଶ୍ରାବଣ ଶୁଦ୍ଧ ୧୧ ଶନିବାର । | ଶାଣ୍ଡିଲ୍ୟ ସଗୋତ୍ର ଯଜୁର୍ବେଦୀ ଅପ୍‌ପ୍ରିକନ୍ତଲ କାମୟା ଭୂକ୍ତାଙ୍କୁ ଚିକିଟି ରାଜା ଶ୍ରୀକୃଷ୍ଣଚନ୍ଦ୍ର ରାଜେନ୍ଦ୍ର ଦେବଙ୍କ ସମ୍ମତିରେ ଘର ଓ ଜମି ଦାନ । | ୨୪–୭-୧୭୭୯ରେ ଶ୍ରାବଣ, ଶୁକ୍ଳ ଏକାଦଶୀ ଶନିବାର । କିନ୍ତୁ କର୍କଟକ ୧୦ ନ ହୋଇ ୧୧ ହେବ । |
| (୩୫) ୧୬ | ୫୪ ଅଙ୍କ ? ମେଷ ୧୦ ବୈଶାଖ ଶୁଦ୍ଧ ୩, ସୋମବାର । | ବୀରକେଶରୀ ଦେବଙ୍କ ପାଟରାଣୀ ମରକତ ଦେବୀ ବିଦ୍ୟାକର ଦାସଙ୍କୁ ମରକତ ଦେବୀପୁର ଦାନ କରି-ଥିଲେ । ଏହା ଆସିକା ଅଞ୍ଚଳରେ ଅବସ୍ଥିତ । | ୧୯–୪–୧୭୭୯ ପ୍ରକୃତରେ ୫୪ ଅଙ୍କ ନ ହୋଇ ୫[illegible] ଅଙ୍କ ହେବ । |
| [୩୬] ୫୪ | ୫୪ ଅଙ୍କ ? ମାଘ ଶୁଦ୍ଧ ୧୫ ବୁଧ-ବାର । | ଧରାକୋଟ ରାଜା ରାଜେନ୍ଦ୍ର ସିଂହ ରାଜେନ୍ଦ୍ରସିଂହପୁରକୁ କେତେକ ବ୍ରାହ୍ମଣଙ୍କୁ ଦାନ କରିଥିଲେ । | ୧୯-୨–୧୭୭୮ ତାରିଖରେ ମାଘ ପୂର୍ଣ୍ଣିମା ବୁଧବାର ଦିନ ପଡ଼ୁଥିବାରୁ ପ୍ରକୃତରେ ଏହା ୫୨ ଅଙ୍କ ହେବ । |

| କ୍ରମିକ ନମ୍ବର | ଦାନପତ୍ରରେ ଦିଆଯାଇ- ଥିବା ଅଙ୍କ, ବାର ତଥ | ଦାତା, ଗ୍ରହୀତା ଓ ଦାନର ବିବରଣ | ଖ୍ରୀଷ୍ଟାବ୍ଦରେ ପ୍ରତ୍ୟେକର ସମୟ ନିର୍ଣ୍ଣୟ |
|---|---|---|---|
| [୩୭] ୧୦୪ | ୫୫ ଅଙ୍କ ? ବିକାରି ସମ୍ବତ୍ସର କୁମ୍ଭ ୧୩, ମାଘ, ଶୁକ୍ଳ ୧୫ ରବିବାର । | ପୁରୁଷୋତ୍ତମପୁରଙ୍କ ରାଣୀ କମଳା ଦେବୀ ମହାଦେବୀ ନଗରମ୍ ପଲ୍ଲି ଭେଙ୍କେୟା ଭଟ୍ଟଲଙ୍କୁ ନାରାୟଣପୁର ଗ୍ରାମ ଦାନ କରିଥିଲେ । | ୨୦-୨-୧୭୮୦ ବିକାରି ସମ୍ବତ୍ସର, କୁମ୍ଭ ୧୨, ମାଘ ପୂର୍ଣ୍ଣିମା ରବିବାର ପ୍ରକୃତରେ ୫୪ ଅଙ୍କ । |
| [୩୮] ୮୮ | ୫୫ ଅଙ୍କ, କନ୍ୟା ୨୭, ଆଶ୍ୱିନ, ବହୁଳ, ୯ ରବିବାର (ଭୁଲରେ ଶୁକ୍ଳ ଜାଗାରେ ବହୁଳ ପାଢ଼ଯାଇଛି) | ବାଲୁକେଶ୍ୱର ମହାରଥୀ ମହାପାତ୍ର ନୀଳ ପଣ୍ଡାଙ୍କୁ ଭୂମି ଦାନ କରିଥିଲେ । | ୮-୧୦-୧୭୮୦, କନ୍ୟା ୨୭, ଆଶ୍ୱିନ, ଶୁକ୍ଳ ୯ ରବିବାର । |
| [୩୯] ୧୭୦ | ୫୫ ଅଙ୍କ ଧନୁ ୨୭, ପୌଷ ଶୁକ୍ଳ ୧୧, ରବିବାର । | ଚକଟି ରାଜା ଶ୍ରୀ କୃଷ୍ଣଚନ୍ଦ୍ର ରାଜେନ୍ଦ୍ର ଦେବ ବିଶ୍ୱାବଧାନୀ ଶବର୍ଣ ଭଟ୍ଟଲୁଙ୍କୁ ଭୂମିଦାନ କରିଥିଲେ । | ୭-୧-୧୭୮୧ ଧନୁ ୨୭, ପୌଷ ଶୁକ୍ଳ ୧୨, ରବିବାର । ତିଥି ଗଣନାରେ ପାର୍ଥକ୍ୟ ସମ୍ଭବପର । |
| [୪୦] ୧୭୧ | ୮୮ ଅଙ୍କ, (ପ୍ରକୃତରେ ୫୮ ଅଙ୍କ ହେବ) ମିଥୁନ ୨୦ | ଶ୍ରୀ କୃଷ୍ଣଚନ୍ଦ୍ର ରାଜେନ୍ଦ୍ର ଦେବ ଶ୍ରୀ ମଲ୍ଲେଶ୍ୱର ଭଟ୍ଟଙ୍କୁ ଭୂମି ଦାନ କରିଥିଲେ । | ୧-୭-୧୭୮[illegible], ମିଥୁନ, ୨୦ ଆଷାଢ଼, ଶୁକ୍ଳ ଦ୍ୱିତୀୟା (ଶ୍ରୀଗୁଣ୍ଡିଚା) ମଙ୍ଗଳବାର । |
| [୪୧] ୧୦୫ | ୫୮ ଅଙ୍କ (ପ୍ରକୃତରେ ୫୫ ଅଙ୍କ ହେବ) ଶାର୍ବରୀ ସମ୍ବତ୍ସର, କାର୍ତ୍ତିକ ଶୁକ୍ଳ ୨ (ପ୍ରକୃତରେ ୧୫ ହେବ) ଚନ୍ଦ୍ର-ଗ୍ରହଣ ରବିବାର । | ତରଲା ରାଜା କୃଷ୍ଣଶୂର ହରିଚନ୍ଦନଦେବ ଜଗନ୍ନାଥ ମହାପାତ୍ରଙ୍କୁ କେଶପୁର ଗ୍ରାମ ଦାନ କରିଥିଲେ । | ୧୧-୧୨-୧୭୮୦ ଶାର୍ବରୀ ସମ୍ବତ୍ସର, କାର୍ତ୍ତିକ ପୂର୍ଣ୍ଣିମା, ରବିବାର, ଚନ୍ଦ୍ରଗ୍ରହଣ । |
| [୪୨] | ୫୮ ଅଙ୍କ, ମୀନ ୭, ଫାଲ୍‌ଗୁନ, ଶୁକ୍ଳ ୧[illegible], ସୋମବାର । | ଧରାକୋଟ ରାଜା କୃଷ୍ଣ ସିଂହଙ୍କ ଭାଇଗ ମହାପାତ୍ରଙ୍କୁ ଦାନ । | ୧୭-[illegible]-୧୭୮[illegible] ମୀନ ୭, ଫାଲ୍‌ଗୁନ, ଶୁ ୧୪, ସୋମବାର । |

| କ୍ରମିକ ସଂଖ୍ୟା | ଦାନପତ୍ରରେ ଦିଆଯାଇଥିବା ଅଙ୍କ, ବାର, ତିଥି | ଦାତା, ଗ୍ରହୀତା ଓ ଦାନର ବିବରଣ | ଖ୍ରୀଷ୍ଟାବ୍ଦରେ ପ୍ରତ୍ୟେକର ସମୟ ନିର୍ଣ୍ଣୟ |
|---|---|---|---|
| (୪୩) ୧୩୩. | ୫୯ ଅଙ୍କ, ମେଷ ୪ ? ବୈଶାଖ ଶୁକ୍ଳ ୭, ସୋମବାର । | ବୀରକେଶରୀ ଦେବଙ୍କ ସମ୍ମୁଖରେ ପିଣ୍ଡିକ ଷଡ଼ସୂଡ଼ୁ (ଢଆଡ଼ୀଙ୍କୁ ମହାରଥା ମହାପାତ୍ର ଭୂମିଦାନ କରିଥିଲେ । | ୨୭–୮–୧୭୮୪ ବୈଶାଖ, ଶୁକ୍ଳ ୭, ସୋମବାର ପ୍ରକୃତରେ ମେଷ ୧୭ ହେବ । |
| (୪୪) ୨୯ | ୬୧ ଅଙ୍କ, ମୀନ ୨୮ ? ଅଧିକ ଚୈତ୍ର ବହୁଳ ୭ ଶୁକ୍ରବାର | ଆଠଗଡ଼ ରାଜ୍ୟର ଧାରା ଦେଇ ପୁରବାସୀ ନରହରି ଦାସଙ୍କ ଦ୍ୱାରା ଭୂମି ବିକ୍ରୀ । | ୧–୪–୧୭୮୫ ଅଧିକ ଚୈତ୍ର, ବହୁଳ ୭, ଶୁକ୍ରବାର, ମୀନ ୨୩ ଦିନ ଭୁଲରେ ୨୮ ଦିନ ପଢ଼ାଯାଇଛି) । |
| (୪୫) ୧୭ | ୬୪ ଅଙ୍କ, ମୀନ ୮, ଫାଲ୍‌ଗୁନ, ଶୁକ୍ଳ ୧୦, ସୋମବାର । | ଧରାକୋଟ ରାଜା କୃଷ୍ଣ ସିଂହଙ୍କ ରାଣୀ ଚନ୍ଦ୍ରମାଦେଈପୁର ଶାସନକୁ ଲୋକନାଥ ଓ ଅନ୍ୟ ୫ ଜଣଙ୍କୁ ଦାନ କରିଥିଲେ । | ୧୭–୩–୧୭୮୮ (ସବୁ ମେଳ ଖାଉଛି) । |
| (୪୬) ୪୩ | ୬୮ ଅଙ୍କ ତୁଳ ୯, ଆଶ୍ୱିନ ଶୁକ୍ଳ ୧୫, ଶୁକ୍ରବାର । | ବୀରକେଶରୀ ଦେବଙ୍କ ଆନନ୍ଦ ସାନ୍ତରାଙ୍କୁ ଦାନ । | ୨୨–୧୦–୧୭୯୦ (ସବୁ ମେଳ ଖାଉଛି) । |
| (୪୭) ୩୧ | ୭୧ ଅଙ୍କ ପ୍ରମାଦ, ମେଷ ୪ ବୈଶାଖ ଶୁକ୍ଳ ୨, ଶୁକ୍ରବାର (ମେଷ ୩ ହେବ) | ଧରାକୋଟ ନାରାୟଣପୁରର ମହାଜନ ସିଂହରଥ କୃଷ୍ଣମ୍ ପାତ୍ରୁଲୁଙ୍କୁ ଭୂମି ବିକ୍ରୀ କରିଥିଲେ । | ୧୨-୪–୧୭୯୩ ( ସବୁ ମେଳ ଖାଉଛି । |
| (୪୮) ୨୭ | ,, | ବୀରକେଶରୀ ଦେବ ଘଣ୍ଟ ଗୋପାଳକୃଷ୍ଣ ପାତ୍ରୁଲୁଙ୍କୁ ଭୂମି ଦାନ କରିଥିଲେ । | ୧୨–୪–୧୭୯୩ |
| (୪୯) ୧୦୭ | ଅଙ୍କ (୨) ପ୍ରକୃତରେ ୭୧ ପ୍ରମାଦ, ମକର ୨୫ ? ମାଘ ଶୁକ୍ଳ ୧୫ ରବିବାର ପାଠ ଭୁଲ । | ଖରଲା ରାଜା କୃଷ୍ଣସୁର ହରିଚନ୍ଦନ କୌଣ୍ଡିନ୍ୟ ସଗୋତ୍ର ଯଜୁର୍ବେଦୀ ନାରାୟଣପୁର ? ନାରାୟଣପୁର ଗ୍ରାମଦାନ କରିଥିଲେ । | ୨୭-୧–୧୭୯୩ ମାଘ, ପୂର୍ଣ୍ଣିମୀ ରବିବାର ପ୍ରକୃତରେ ମକର ୧୮ |

| କ୍ରମିକ ସଂଖ୍ୟା | ଦାନପତ୍ରରେ ଦିଆଯାଇଥିବା ଅଙ୍କ, ବାର ତିଥି | ଦାତା, ଗ୍ରହୀତା ଓ ଦାନର ବିବରଣ | ଖ୍ରୀଷ୍ଟାବ୍ଦରେ ପ୍ରତ୍ୟେକର ସମୟ ନିର୍ଣ୍ଣୟ |
|---|---|---|---|
| (୫୦) ୧୨୮ | ୭୧ ଅଙ୍କ ଭୁଲ ୧୧ ଦିନ | ରମ୍ଭା ଗ୍ରାମରେ ବାଲବେଙ୍କଟେଶ୍ୱର ସ୍ୱାମୀଙ୍କ ପାଇଁ ପୃଥ୍ୱୀ ପଣ୍ଡାଙ୍କୁ ମହାରଥୀ ମହାପାତ୍ରଙ୍କ ଦାନ | ୨୩-୧୦-୧୭୯୨ |
| (୫୧) ୧୨୫ | ୭୦ ଅଙ୍କ (୭୦ ଅଙ୍କ ଗଣାଯାଏ ନାହିଁ ପ୍ରକୃତରେ ୭୯ ଅଙ୍କ କର୍କଟ ୮, ଶ୍ରାବଣ ଶୁକ୍ଳ ୧, ଶୁକ୍ରବାର | ରମ୍ଭା ଗ୍ରାମରେ ଥିବା ବାଲବେଙ୍କଟେଶ୍ୱର ସ୍ୱାମୀଙ୍କୁ ଦାନ | ୨୦-୭-୧୭୯୨ କର୍କଟ ୮, ଶ୍ରାବଣ, ଶୁକ୍ଳ ୧, ଶୁକ୍ରବାର ହୋଇଥିଲା |

ବୀରକେଶରୀ ଦେବଙ୍କ ରାଜତ୍ୱର ଆରମ୍ଭ ଓ ଶେଷ ସମୟ ସମ୍ବନ୍ଧରେ ଷ୍ଟର୍ଲିଙ୍ଗ, ହଣ୍ଟର, ଚକ୍ରବର୍ତ୍ତୀ, ରାଖାଲଦାସ ବାନର୍ଜୀ, ଜଗବନ୍ଧୁ ସିଂହ, କୃପାସିନ୍ଧୁ ମିଶ୍ର ଓ ଡକ୍ଟର ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ ପ୍ରଭୃତି ଐତିହାସିକମାନେ ଭିନ୍ନ ଭିନ୍ନ ମତ ଦେଇଥିବାରୁ ଓଡ଼ିଶା ଇତିହାସର ଗବେଷକମାନେ ସର୍ବଦା ସନ୍ଦେହରେ ପଡ଼ନ୍ତି । ତେଣୁ ପାଠକ ଓ ଗବେଷକମାନଙ୍କ ସନ୍ଦେହମୋଚନ ନିମିତ୍ତ ବର୍ଷ ଛଅମାସର ପରିଶ୍ରମ ଫଳରେ ଉପର ଲିଖିତ ସମୟ ନିର୍ଣ୍ଣୟ ପ୍ରସ୍ତୁତ କରାଗଲା । ୧୫-୭-୧୭୩୭ ତାରିଖକୁ ବୀରକେଶରୀଙ୍କ ୨ଅଙ୍କ ଚଳୁଥିବାରୁ ଏହାର କିଛିଦିନ ପୂର୍ବରୁ ସେ ରାଜତ୍ୱ ଆରମ୍ଭ କରିଥିବା ସୁନିଶ୍ଚିତ । ସେହିପରି ୧୨-୪-୧୭୯୩ ତାରିଖରେ ତାଙ୍କ ୭୧ ଅଙ୍କରେ ଦୁଇଖଣ୍ଡ ଦାନପତ୍ର ଲେଖା ହୋଇଥିବାରୁ ସେ ପର୍ଯ୍ୟନ୍ତ ତାଙ୍କ ରାଜତ୍ୱ ଚଳିଥିଲା । ତେଣୁ ତାଙ୍କ ରାଜତ୍ୱ କାଳ ୧୭୩୬ରୁ ୧୭୯୩ ପର୍ଯ୍ୟନ୍ତ ନିଃସନ୍ଦେହରେ ସ୍ଥିର କରାଯାଇ ପାରେ । କାରଣ ୫-୯-୧୭୩୬ ତାରିଖରେ ପଡ଼ିଥିବା ସୁନିଆର କେତେଦିନ ପରେ ତାଙ୍କ ୨ଅଙ୍କ ଆରମ୍ଭ ହୋଇ ୨୭-୮-୧୭୩୭ ତାରିଖ ସୁନିଆଁ ପର୍ଯ୍ୟନ୍ତ ଗଣାଗଲା ।

## ପ୍ରାଚୀନ ପୋଥିଗୁଡ଼ିକରେ ବୀରକେଶରୀ ଦେବଙ୍କ ଅଙ୍କ ଗଣନା

ଗଜପତି ବୀରକେଶରୀ ଦେବଙ୍କ ଦୀର୍ଘ ରାଜତ୍ୱକାଳରେ ଓଡ଼ିଆ ଓ ସଂସ୍କୃତ ଭାଷାରେ ବହୁ ବହୁ ଗ୍ରନ୍ଥ ଲିଖିତ ହୋଇଥିଲା । ତାଙ୍କ ରାଜତ୍ୱରେ ନକଲ ହୋଇଥିବା ବହୁସଂଖ୍ୟକ ପୋଥି ପ୍ରାଦେଶିକ ମିଉଜିୟମରେ ସୁରକ୍ଷିତ । ସେଥିମଧ୍ୟରୁ ପୋଥିଗୁଡ଼ିକରେ

ଶକାବ୍ଦ, ମାସ, ତିଥି, ବାର, ନକ୍ଷତ୍ର ଇତ୍ୟାଦି ପ୍ରାପ୍ତ ଠିକ ଭାବରେ ଦିଆଯାଇଛି । ସେଗୁଡ଼ିକ ତାଙ୍କ ଅଙ୍କ ଗଣନା ପାଇଁ ବିଶେଷ ଉପଯୋଗୀ ଥିବାରୁ ନିମ୍ନରେ ସାମାନ୍ୟ ଆଲୋଚନା କରାଗଲା ।

(୧) କବି ଦିବାକର ଦାସଙ୍କ 'ବୈଷ୍ଣବାମୃତ ସଂଗ୍ରହର ରଚନା ସମୟ —

"**ଷୋଳଶ ଛଷଠି ସମ୍ବତ୍, ଶକାବ୍ଦ** ହୋନ୍ତେ ଉପଗତ, ଶ୍ରୀ ବୀର-କେଶରୀ ଦେବଙ୍କ, ହୁଅନ୍ତେ **ଏକାଦଶ ଅଙ୍କ,ପୁଷ ଶୁକ୍ଳ ଦ୍ୱାଦଶୀରେ, ମୃଗ-ଶିର ସ ନକ୍ଷତ୍ରରେ,** ମିଥୁନ ଚନ୍ଦ୍ର ଶୁକ୍ରବାରେ ବ୍ରହ୍ମା ନାମଧେୟ ଜ୍ୟୋତିରେ ୧୭୪୫ ମସିହା, ଜାନୁୟାରୀ, ୪ତାରିଖ ଶୁକ୍ରବାର ଦିନ ମକର ୭, ପୌଷ, ଶୁକ୍ଳ ଦ୍ୱାଦଶୀ, ମୃଗଶିର ନକ୍ଷତ୍ର ପଡ଼ିଥିଲା । ଦିନ, ବାର, ତିଥି ନକ୍ଷତ୍ର ପ୍ରଭୃତି ପୂରାପୂରି ମିଳି-ଯାଉଥିବାରୁ ୭-୯-୧୭୪୪ ନୂଆ ଦିନରୁ ବୀରକେଶରୀଙ୍କ ୧୧ ଅଙ୍କ ହେଲାଥିବା ସୁନିଶ୍ଚିତ । ଏହି ଦିନଠାରୁ ଗଣିଗଲେ ୧୭୩୬-୩୭ ରେ ତାଙ୍କ ରାଜତ୍ୱ ଆରମ୍ଭ ହୋଇଥିଲା ।

(୨) ହଂସଦୂତ ଟୀକାର ନକଲ ସମୟ—ବୀରକେଶରୀଦେବସ୍ୟ ନୃପତେଃ ପଂଚବିଂଶତ୍ୟଙ୍କେ ମାର୍ଗଶୀର୍ଷେମାସି ଶୁକ୍ଳପକ୍ଷେ ପଞ୍ଚମ୍ୟାଂ ଭୃଗୁବାସରେ ନରହରିଦାସେନ ଲିଖିତମିଦଂ ପୁସ୍ତକଂ ସମାପ୍ତଂ :—

୨୭-୧୧-୧୭୫୭ରେ ମାର୍ଗଶୀର ଶୁକ୍ଳ ପଂଚମୀ ଶୁକ୍ରବାର ପଡ଼ିଥିଲା । ସେବର୍ଷ ୫-୯-୧୭୫୭ ନୂଆ ଦିନରୁ ବୀରକେଶରୀଦେବଙ୍କ ୨୫ ଅଙ୍କ ଗଣାଗଲା ।

(୩) ଶିଶୁ ରାମଦାସ କୃତ 'ଦେଉଳତୋଳା'ର ନକଲ ସମୟ ୩୩ ଅଙ୍କ ଆଷାଢ଼, ଶୁକ୍ଳ ତୃତୀୟା ବୁଧବାର ମିଥୁନ ୩୧ ଦିନ, ୧୩-୭-୧୭୬୩ରେ ବୁଧବାର ଆଷାଢ଼ ଶୁକ୍ଳ ତୃତୀୟା କିନ୍ତୁ ମିଥୁନ ୩୧ ଦିନ ନହୋଇ କର୍କଟକ ୧ମ ଦିନ ହୋଇଥିଲା । ସୌରମାସ ଦିନ ଗଣନାରେ ଏକଦିନର ପାର୍ଥକ୍ୟ ଓଡ଼ିଶାରେ ପ୍ରାୟ ଦେଖାଯାଏ ।

(୪) ବଳରାମ ଦାସଙ୍କ ଅଷ୍ଟାଦଶାଧ୍ୟାୟ ଗୀତା ନକଲ ସମୟ –

ବୀରକେଶରୀଦେବଙ୍କ ୨୭ ଅଙ୍କ ତୁଳ ୨୯ କାର୍ତ୍ତିକ କୃଷ୍ଣ ଅମାବାସ୍ୟା ଶୁକ୍ର-ବାର ଦିନ ୧୧-୧୧-୧୭୫୭ ତାରିଖ ହୋଇଥିଲା । କିନ୍ତୁ ପିଲାଇ ତୁଳ ୩୦ ଲେଖିଲା-ବେଳେ ଓଡ଼ିଆ ନକଲକାର ତୁଳ ୨୯ ଦିନ ଲେଖିଛନ୍ତି । ପୂର୍ବପରି ଏଠାରେ ମଧ୍ୟ ସୌରମାସ ଗଣନାରେ ଦିନକର ପାର୍ଥକ୍ୟ ରହୁଛି ।

(୫) ସର୍ବାଙ୍ଗସୁନ୍ଦରୀ ନକଲ ସମୟ ଗୋଟିଏ ପୋଥିରେ ଦିଆଯାଇଛି । ବୀରକେଶରୀ ଦେବଙ୍କ ୪୮ଅଙ୍କ, ତୁଳ ଦିନ, ଅଗିଣ ଶୁକ୍ଳ ଦ୍ୱାଦଶୀ ରବିବାର ।

୨୦-୧୦-୧୭୭୧ରେ ଭୁଲ ୭ଦିନ, ରବିବାର ଆଶ୍ୱିନ ଶୁକ୍ଳ ଦ୍ୱାଦଶୀ ହୋଇଥିଲା । ଅତଏବ ୪୪ ଅଙ୍କ ୨୦-୯-୧୭୭୧ ସୁନିଆ ଦିନଠାରୁ ଆରମ୍ଭ ହୋଇଥିଲା ।

ଗୀତଗୋବିନ୍ଦର ଶ୍ରୁତି ରଞ୍ଜିନୀ ଟୀକା ନକଲ ସମୟ — ବୀରକେଶରୀ ଦେବଙ୍କ, ୧୩ଅଙ୍କ ମୀନ ୧୮ ମଲ ଚୈତ୍ର କୃଷ୍ଣ ସୋମବାର ଚନ୍ଦ୍ରାକନ୍ୟ ରାଶିରେ ଧାତା ସମ୍ବତ୍ସର ୧୬୬୮ ଶକାବ୍ଦ ପାଇକପଡ଼ା ଦୁର୍ଗମରେ (କୋରାପୁଟ ଜିଲ୍ଲା) ।

ଅଙ୍କଗଣନା ପାଇଁ ଏହି ପୁଷ୍ପିକା ଏକ ଅମୂଲ୍ୟ ଉପାଦାନ । କାରଣ ଏଥିରେ ଶକାବ୍ଦ, ଦିନ ବାର, ତିଥି ସବୁ ଦିଆ ଯାଇଛି । ଗଣନାନୁସାରେ ୧୬-୩-୧୭୪୭ ତାରିଖରେ ମଲଚୈତ୍ର, କୃଷ୍ଣ ପ୍ରତିପଦ୍ ସୋମବାର ଚନ୍ଦ୍ରାକନ୍ୟ ରାଶି ୧୬୬୮ ଶକାବ୍ଦ ହୋଇଥିଲା । କେବଳ ସୌରମାସ ଗଣନାରେ ଦିନକର ପାର୍ଥକ୍ୟ ରହିଛି । ଲେଖନ-କାର ମୀନ ୧୮ ଲେଖିଲାବେଳକୁ ପିଲାଇ ମୀନ ୧୭ ଗଣିଛନ୍ତି ।

(୭) ମେଦିନୀପୁର ଅଞ୍ଚଳରୁ ପ୍ରାପ୍ତ ପୁରୁଣା କାଗଜରେ ନକଲ ହୋଇଥିବା କବି ଦୀନକୃଷ୍ଣ ଦାସଙ୍କ ଏକ ରସକଲ୍ଲୋଳ ବହିରେ ଗ୍ରନ୍ଥ ସମାପ୍ତି ସମୟ ଦିଆଯାଇଛି ।

"ସନ ଏଗାରଶ ଅନସ୍ୱତରେ    ବୀରକେଶରୀଙ୍କ ଅଣସ୍ତୁରୀରେ ।"

ବୀରକେଶରୀଦେବଙ୍କ ୬୯ ଅଙ୍କ (୯-୯-୧୭୯୧ରୁ ୨୯-୮-୧୭୯୨)ରେ ସନ ୧୧୯୯ ଚଳୁଥିଲା ।

## ଗଜପତି ବୀରକେଶରୀଦେବଙ୍କ ଅଙ୍କଗଣନା

| ସୁନିଆ ତାରିଖ | ଅଙ୍କ | ସୁନିଆ ତାରିଖ | ଅଙ୍କ |
|---|---|---|---|
| ୫-୯-୧୭୩୬ରୁ | ୨ ,, | ୧୬-୮-୧୭୪୬ରୁ | ୧୩ ,, |
| ୨୬-୮-୧୭୩୭ରୁ | ୩ ,, | ୪-୯-୧୭୪୭ରୁ | ୧୪ ,, |
| ୧୫-୮-୧୭୩୮ରୁ | ୪ ,, | ୨୪-୮-୧୭୪୮ରୁ | ୧୫ ,, |
| ୩-୯-୧୭୩୯ରୁ | ୫ ,, | ୧୨-୯-୧୭୪୯ରୁ | ୧୭ ,, |
| ୨୩-୮-୧୭୪୦ରୁ | ୭ ,, | ୨-୯-୧୭୫୦ରୁ | ୧୮ ,, |
| ୧୧-୯-୧୭୪୧ରୁ | ୮ ,, | ୨୨-୮-୧୭୫୧ରୁ | ୧୯ ,, |
| ୩୧-୮-୧୭୪୨ରୁ | ୯ ,, | ୨୦-୯-୧୭୫୨ରୁ | ୨୧ ,, |
| ୨୦-୮-୧୭୪୩ରୁ | ୧୦ ,, | ୯-୯-୧୭୫୩ରୁ | ୨୨ ,, |
| ୭-୯-୧୭୪୪ରୁ | ୧୧ ,, | ୨୯-[illegible]-୧୭୫୪ରୁ | ୨୩ ,, |
| ୨୭-୮-୧୭୪୫ରୁ | ୧୨ ,, | ୧୭-୯-୧୭୫୫ରୁ | ୨୪ ,, |

| ସୁନିଆ ତାରିଖ | ଅଙ୍କ | ସୁନିଆ ତାରିଖ | ଅଙ୍କ |
|---|---|---|---|
| ୫-୯-୧୭୫୬ରୁ | ୨୫ ,, | ୬ ୯-୧୭୭୫ରୁ | ୪୯ ,, |
| ୨୬-୮-୧୭୫୭ରୁ | ୨୭ ,, | ୨୪-୯-୧୭୭୬ରୁ | ୫୧ ,, |
| ୧୪-୯-୧୭୫୮ରୁ | ୨୮ ,, | ୧୪ ୯-୧୭୭୭ରୁ | ୫୨ ,, |
| ୪-୯-୧୭୫୯ରୁ | ୨୯ ,, | ୩-୯-୧୭୭୮ରୁ | ୫୩ ,, |
| ୨୨-୯-୧୭୬୦ରୁ | ୩୧ ,, | ୨୨-୯-୧୭୭୯ରୁ | ୫୪ ,, |
| ୧୧-୯-୧୭୬୧ରୁ | ୩୨ ,, | ୧୦-୯-୧୭୮୦ରୁ | ୫୫ ,, |
| ୩୧-୮-୧୭୬୨ରୁ | ୩୩ ,, | ୩୦-୮-୧୭୮୧ରୁ | ୫୭ ,, |
| ୧୮-୯-୧୭୬୩ରୁ | ୩୪ ,, | ୧୮-୯ ୧୭୮୨ରୁ | ୫୮ ,, |
| ୭-୯-୧୭୬୪ରୁ | ୩୫ ,, | ୮-୯-୧୭୮୩ରୁ | ୫୯ ,, |
| ୨୭-୮-୧୭୬୫ରୁ | ୩୭ ,, | ୨୭-୮-୧୭୮୪ରୁ | ୬୧ ,, |
| ୧୫-୯-୧୭୬୬ରୁ | ୩୮ ,, | ୧୫-୯-୧୭୮୫ରୁ | ୬୨ ,, |
| ୫-୯ ୧୭୬୭ରୁ | ୩୯ ,, | ୫-୯-୧୭୮୬ରୁ | ୬୩ ,, |
| ୨୩ ୯ ୧୭୬୮ରୁ | ୪୧ ,, | ୨୪-୯-୧୭୮୭ରୁ | ୬୪ ,, |
| ୧୨-୯ ୧୭୬୯ରୁ | ୪୨ ,, | ୧୨-୯-୧୭୮୮ରୁ | ୬୫ ,, |
| ୧ ୯-୧୭୭୦ରୁ | ୪୩ ,, | ୧-୯-୧୭୮୯ରୁ | ୬୭ ,, |
| ୨୦-୯-୧୭୭୧ରୁ | ୪୪ ,, | ୨୦-୯-୧୭୯୦ରୁ | ୬୮ ,, |
| ୮-୯ ୧୭୭୨ରୁ | ୪୫ ,, | ୯-୯-୧୭୯୧ରୁ | ୬୯ ,, |
| ୨୯-୮-୧୭୭୩ରୁ | ୪୭ ,, | ୨୯-୮-୧୭୯୨ରୁ | ୭୧ ,, |
| ୧୭-୯-୧୭୭୪ରୁ | ୪୮ ,, | ୧୭-୯-୧୭୯୩ରେ ୭୧ ଅଙ୍କ ଶେଷ | |

ଏହି ୭୧ ଅଙ୍କରେ ତାଙ୍କର ମୃତ୍ୟୁ ଘଟିଥିବାର ଜଣାଯାଏ ।



# ନବମ ଅଧ୍ୟାୟ

# ଗଜପତି ଦିବ୍ୟସିଂହ ଦେବ

( ୧୭୯୩–୧୭୯୮ ଖ୍ରୀଷ୍ଟାବ୍ଦ )



## ସିଂହାସନ ପ୍ରାପ୍ତି

ରାଜାରାମ ପଣ୍ଡିତ ( ୧୭୭୮-୧୭୮୧ ) ଓଡ଼ିଶାର ମରହଟ୍ଟା ସୁବାଦାର ଥିବା ସମୟରେ ବୀରକେଶରୀ ଦେବ ପାଗଳ ହୋଇ ଆପଣାର ପୁତ୍ରମାନଙ୍କୁ ହତ୍ୟାକରି ରାଜ୍ୟମଧ୍ୟରେ ଘୋର ଅଶାନ୍ତି ସୃଷ୍ଟି କଲେ । ମାଦଳାପାଞ୍ଜିରେ ବୀର-କେଶରୀ ଦେବଙ୍କ ପୁତ୍ରହତ୍ୟା ବିଷୟରେ କୌଣସି ଉଲ୍ଲେଖ ନାହିଁ । କିନ୍ତୁ କଟକର କଲେକ୍ଟର ୧୧-୧୦-୧୮୦୪ ତାରିଖରେ କମିସନରଙ୍କ ନିକଟକୁ ଲେଖିଥିବା ଖୁରୁଧା ରାଜବଂଶ ସମ୍ବନ୍ଧୀୟ ୧୮୦୪ ନମ୍ବର ପତ୍ରରୁ ଜଣାଯାଏ ଯେ ବୀରକେଶରୀ ଦେବ ନିଜ ପୁତ୍ର ଜଗନ୍ନାଥ ରାୟ ଓ ବଳଭଦ୍ର ରାୟଙ୍କ ହତ୍ୟା କରିବାରୁ ମରହଟ୍ଟା ଶାସକଙ୍କ ଦ୍ୱାରା ବାରବାଟୀ ଦୁର୍ଗରେ ବନ୍ଦୀ ହୋଇଥିଲେ ଏବଂ ଜଗନ୍ନାଥ ରାୟଙ୍କ ପୁତ୍ର ଦିବ୍ୟସିଂହ ଦେବ ରାଜଗାଦିରେ ବସିଥିଲେ । (୧) ବୀରକେଶରୀ ଦେବଙ୍କ ରାଜତ୍ୱର ଅଙ୍କଗଣନା ତାଙ୍କ ମୃତ୍ୟୁପର୍ଯ୍ୟନ୍ତ (୧୭୯୩) ଚାଲିଥିଲେ ମଧ୍ୟ ଦିବ୍ୟସିଂହ ଦେବ ପ୍ରକୃତରେ ୧୭୮୧ ଖ୍ରୀଷ୍ଟାବ୍ଦରେ ଖୁରୁଧାର ରାଜପଦ ପ୍ରାପ୍ତ ହୋଇଥିଲେ । ସେ ମରହଟ୍ଟା-ମାନଙ୍କୁ ବାର୍ଷିକ ୧୦ ହଜାର ଟଙ୍କା ପେସକସ ଦେବାର ଚୁକ୍ତି କରି ବାଣପୁର, ଖୁରୁଧା ଓ ଲେମ୍ବାଇର ଅଧିକାର ପ୍ରାପ୍ତ ହୋଇଥିଲେ ।

## ଖୁରୁଧା ରାଜ୍ୟର ପତନ—

ଗଜପତି ଦ୍ୱିତୀୟ ରାମଚନ୍ଦ୍ର ଦେବଙ୍କ ରାଜତ୍ୱ କାଳରେ ୧୭୫୦ ଖ୍ରୀଷ୍ଟାବ୍ଦରେ ଖୁରୁଧା ରାଜାଙ୍କ ଅଧୀନରେ ଥିବା ଗଞ୍ଜାମର ୮ଟି ଜମିଦାରୀ ଯଥା ଘୁମୁସର, ଅଠଗଡ଼, ସେରଗଡ଼, ଖଲିକୋଟ, ମହୁରି, ପାଲୁର, ଚିକିଟି ଓ ଟିକାଲି ରଘୁନାଥପୁର ହାଇଦରାବାଦର ନିଜାମଙ୍କ ଅଧିକାରଭୁକ୍ତ ହେବାରୁ ଖୁରୁଧା ରାଜ୍ୟର ପତନ ଆରମ୍ଭ

(୧) O. H R J Vol III p 44

ହୋଇଥିଲା । ପାରଳାଖେମୁଣ୍ଡି ରାଜା ଜଗନ୍ନାଥ ନାରାୟଣ ଦେବଙ୍କ ଆକ୍ରମଣ (୧୭୬୦)ରୁ ମରହଟ୍ଟା ସୁବାଦାର ଶିବରାମ ଭଟ୍ଟ ସାଠେ ଖୁର୍ଦ୍ଧା ରାଜ୍ୟ ରକ୍ଷା କରିଥିବାରୁ ଯୁଦ୍ଧବ୍ୟୟ ନିମିତ୍ତ ଖୁର୍ଦ୍ଧା ରାଜ୍ୟର ଉତ୍କୃଷ୍ଟ ପ୍ରଗନା ରହାଙ୍ଗ, ଲେମ୍ବାଇ, ସିରାଇ ଓ ଚବିଶ କୁଦ ଏବଂ ଖୁର୍ଦ୍ଧା ରାଜାଙ୍କ ଅଧୀନସ୍ଥ ଚଉଦଟି ଗଡ଼ଜାତ ରାଜ୍ୟର ମାଲିକସତ୍ତ୍ୱ ପାଇଲେ ।

ବୀରକେଶରୀ ଦେବ ଶେଷଜୀବନ ବନ୍ଦୀଭାବରେ କଟାଇଥିବାରୁ ଖୁର୍ଦ୍ଧା ରାଜବଂଶର ସମ୍ମାନ ଓ ପ୍ରତିପତ୍ତି କ୍ଷୁଣ୍ଣ ହୋଇଗଲା । ଦିବ୍ୟସିଂହ ଦେବ ରାଜ୍ୟର ପ୍ରକୃତ ଅଧିକାରୀ ହୋଇ ଅଙ୍କ ଚଳାଇଲେ ବେଳକୁ (୧୭୯୩) ପୂର୍ବ ଖୁର୍ଦ୍ଧା ରାଜ୍ୟର ଆୟତନ ଓ ଆୟ ବିଶେଷ ହ୍ରାସଲାଭ କରିଥିବାରୁ ସେ ଭାଗ୍ୟ ବିପର୍ଯ୍ୟୟରେ ପଡ଼ି ମରହଟ୍ଟାମାନଙ୍କ ପ୍ରତି ଆନୁଗତ୍ୟ ପ୍ରକାଶ କରିବାକୁ ବାଧ୍ୟ ହୋଇଥିଲେ ।

## ରାଜତ୍ୱର ଘଟଣାବଳୀ—

ମାଦଳାପାଞ୍ଜିର ବିବରଣ ଅନୁସାରେ ଦିବ୍ୟସିଂହ ଦେବ କଲ୍ପଣେଇ ପଥର ଖୋଲରେ ସାତୀନାମକ ଗଡ଼ ଭରି ରହିଲେ । ଏହାଙ୍କ ଅର୍ଦ୍ଧ ରାଜତ୍ୱକାଳ ଶାନ୍ତିମୟ ଥିବାରୁ ସେ ଶ୍ରୀ ଜଗନ୍ନାଥଙ୍କ ମନ୍ଦିରର ଉନ୍ନତି ପାଇଁ ବିଶେଷ ଧ୍ୟାନ ଦେଇଥିଲେ । 'ସେ ବଡ଼ଦେଉଳକୁ ଚୂନ ଦେଲେ । କୋଣାର୍କ କ୍ଷେତ୍ରରୁ ମୁଗୁନି ପଥରର ଖମ୍ବ ଆଣି ସିଂହଦ୍ୱାର ଚକଡ଼ାରେ ଠିଆଇଲେ । ଏହା ବର୍ତ୍ତମାନ ସିଂହଦ୍ୱାର ନିକଟରେ ଥିବା କୋଣାର୍କର ପ୍ରସିଦ୍ଧ ଅରୁଣ ସ୍ତମ୍ଭ । "ରତ୍ନସିଂହାସନ ପଥରକାନ୍ଥ ବସାଇଲେ । ଏଥିରୁ ଶଙ୍କରାଚାର୍ଯ୍ୟଙ୍କୁ ପଦ୍ମାଚାର୍ଯ୍ୟଙ୍କୁ ବାହାରକରି ଦକ୍ଷିଣଘରେ ରଖିଲେ । ପୁନଶ୍ଚ କେତେଦିନ ଉତ୍ତାରୁ ଏହାଙ୍କୁ ନେଇ ସିଂହାସନେ ବିଜେ କରାଇଲେ । ବୈଷ୍ଣବେ ଭାଙ୍ଗିଲେ ।"

ପାଞ୍ଜିବର୍ଣ୍ଣିତ ଉକ୍ତ ଘଟଣାଟି ଶ୍ରୀ ଜଗନ୍ନାଥ ପୀଠ ଇତିହାସରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଅଦ୍ୱୈତବାଦର ପ୍ରତିଷ୍ଠାତା ଭଗବାନ ଶ୍ରୀ ଶଙ୍କରାଚାର୍ଯ୍ୟ ବୌଦ୍ଧ ପଣ୍ଡିତମାନଙ୍କୁ ନିଜର ଅକାଟ୍ୟ ଯୁକ୍ତିବଳରେ ପରାସ୍ତ କରି ଶ୍ରୀ ଜଗନ୍ନାଥ ଓ ଭଗବଦ୍‌ଗୀତାର ପୁରୁଷୋତ୍ତମଙ୍କ ଅଭେଦତ୍ୱ ପ୍ରତିପାଦନ କରିଥିଲେ । ସେ ବ୍ରାହ୍ମଣ୍ୟ ଧର୍ମର ପ୍ରତିପତ୍ତି ଓ ପ୍ରସାର ବୃଦ୍ଧି ନିମିତ୍ତ ପୁରୀରେ ଗୋବର୍ଦ୍ଧନ ପୀଠ ପ୍ରତିଷ୍ଠା କରି ତାଙ୍କର ପ୍ରିୟ ଶିଷ୍ୟ ପଦ୍ମପାଦାଚାର୍ଯ୍ୟଙ୍କୁ ଏହାର ପ୍ରଥମ ପୀଠାଧୀଶ ରୂପେ ନିଯୁକ୍ତ କରିଥିଲେ । ତେଣୁ ଶ୍ରୀ ଶଙ୍କରଙ୍କ ସମୟରୁ (୭୮୮-୮୨୦ ଖ୍ରୀଷ୍ଟାବ୍ଦ) ଜଗନ୍ନାଥଙ୍କ ରତ୍ନସିଂହାସନରେ ଶ୍ରୀ ଶଙ୍କରାଚାର୍ଯ୍ୟ ଓ ତାଙ୍କ ଶିଷ୍ୟ ପଦ୍ମପାଦାଚାର୍ଯ୍ୟଙ୍କ ବିଗ୍ରହଦ୍ୱୟ ସେହି ଐତିହାସିକ ଘଟଣାର ସ୍ମାରକ ସ୍ୱରୂପ ପ୍ରତିଷ୍ଠିତ ଥିଲା । ବୀରକେଶରୀ ଦେବଙ୍କ ରାଜତ୍ୱ କାଳରେ ରାଜଦରବାରରେ

ଶ୍ରୀଚୈତନ୍ୟମତାବଲମ୍ବୀ ମହନ୍ତମାନଙ୍କ ପ୍ରଭାବ ଓ ପ୍ରତିପତ୍ତି ଯଥେଷ୍ଟ ବୃଦ୍ଧି ଲାଭ କରିଥିଲା । ଗଜପତି ବୀରକିଶୋର ଦେବ ତଥା ତତ୍କାଳୀନ ମରହଟ୍ଟା ଶାସକ ମଧ୍ୟ ଉକ୍ତ ଧର୍ମମତର ପ୍ରଧାନ ପୃଷ୍ଠପୋଷକ ଥିଲେ । ତେଣୁ ବୈଷ୍ଣବ ମହନ୍ତମାନଙ୍କ ପ୍ରଭାବରେ ରତ୍ନସିଂହାସନରୁ ଶ୍ରୀ ଶଙ୍କର ଓ ପଦ୍ମପାଦଙ୍କ ବିଗ୍ରହ ଦ୍ଵୟ ଅପସାରିତ ହୋଇ ପ୍ରଥମେ ଦକ୍ଷିଣ ଘରେ ରକ୍ଷିତ ହେଲେ । ପରେ ବୈଷ୍ଣବମାନେ ପ୍ରତିମା ଦୁଇଟିକୁ ଭାଙ୍ଗି ଦେଲେ । ଏହା ବୈଷ୍ଣବମାନଙ୍କର ଅସହିଷ୍ଣୁତାର ପରିଚାୟକ ।

ଦିବ୍ୟସିଂହ ଦେବଙ୍କ ରାଜତ୍ଵରେ ପୁରୀରେ ଶ୍ରୀ ରାଧାକୃଷ୍ଣଙ୍କ ଝୁଲଣଯାତ୍ରା ପ୍ରଥମେ ଅନୁଷ୍ଠିତ ହେଲା । ଅଷ୍ଟାଦଶଶତାବ୍ଦୀରେ ପ୍ରଣୀତ ଓ ପ୍ରଚଳିତ ଶ୍ରୀ ଗଦାଧର ରାଜଗୁରୁଙ୍କ 'କାଳସାର' ଓ କୃଷ୍ଣମିଶ୍ରଙ୍କ 'କାଳସର୍ବସ୍ଵ' ଗ୍ରନ୍ଥରେ ଉକ୍ତ ଯାତ୍ରାର ଉଲ୍ଲେଖ ଦେଖାଯାଏ ନାହିଁ । ତେଣୁ ଏହା ଉକ୍ତ ଶତାବ୍ଦୀର ଶେଷପାଦରେ ପ୍ରବର୍ତ୍ତିତ ହୋଇ କ୍ରମଶଃ ସମଗ୍ର ଉତ୍କଳରେ ଲୋକପ୍ରିୟତା ଅର୍ଜନ କରିଥିଲା ।

## ଗଜପତି ମୁକୁନ୍ଦଦେବ

(୧୭୯୮-୧୮୧୭ ଖ୍ରୀଷ୍ଟାବ୍ଦ)

ଦିବ୍ୟସିଂହ ଦେବଙ୍କ ମୃତ୍ୟୁ ପରେ ଖୁର୍ଦ୍ଧା ସିଂହାସନ ଅଧିକାରପାଇଁ ବୀରକିଶୋର ଦେବଙ୍କ ଦ୍ଵିତୀୟ ପୁତ୍ର ଶ୍ୟାମସୁନ୍ଦର ଦେବ ଓ ଦିବ୍ୟସିଂହଙ୍କ ପୁତ୍ର ମୁକୁନ୍ଦଙ୍କ ମଧ୍ୟରେ ବିବାଦ ଉପସ୍ଥିତ ହେଲା । ଦିବ୍ୟସିଂହ ଦେବଙ୍କ ରାଜତ୍ଵ କାଳରେ ଶ୍ୟାମସୁନ୍ଦର ଦେବ କଟକରେ ଅବସ୍ଥାନ କରୁଥିଲେ । ତାଙ୍କ ମୃତ୍ୟୁ ପରେ ସେ ଦକ୍ଷିଣକୁ ପଳାଇଯାଇ ଜଣେ କ ଜମିଦାରଙ୍କ ଆଶ୍ରୟ ନେଲେ । ସେ ଜଣେ ବ୍ରିଟିଶ ଅଫିସରଙ୍କ ଠାରୁ କେତେକ ସୈନ୍ୟ ସାହାଯ୍ୟ ପାଇ ଚିକାକୋଲ ପର୍ଯ୍ୟନ୍ତ ଅଗ୍ରସର ହେଲେ ଏବଂ ଖୁର୍ଦ୍ଧା ଆକ୍ରମଣ କରି ବଳପୂର୍ବକ ସିଂହାସନ ଅଧିକାର କରିବାପାଇଁ ଆୟୋଜନ କଲେ । କଟକର ମରହଟ୍ଟା ସୁବାଦାର ସଦାଶିବ ରାଓ ଏ ସଂବାଦ ପାଇ ଜଣେ ପଳାତକଙ୍କୁ ମରହଟ୍ଟା ରାଜ୍ୟ ଆକ୍ରମଣ ପାଇଁ ସାହାଯ୍ୟ ଦିଆଯାଉଥିବାରୁ ବଙ୍ଗଳା ସରକାରଙ୍କ ନିକଟରେ ଶ୍ରୀଷଣ ପ୍ରତିବାଦ ଜଣାଇଲେ । ଫଳରେ ବ୍ରିଟିଶ ସରକାର ଏଥିରୁ ନିବୃତ୍ତ ହେଲେ ଏବଂ ଶ୍ୟାମସୁନ୍ଦରଙ୍କ ଯୋଜନା ପଣ୍ଡ ହୋଇଗଲା । ମୁକୁନ୍ଦ ଦେବ ନିରାପଦରେ ସିଂହାସନରେ ବସିଲେ । Translation of Persian Records No. 398, 6th September, 1798) (୨)

---

(୨) Orissa under the Marathas, by Dr. B. C, Ray, p. 59

## ଇଂରେଜମାନଙ୍କ ଓଡ଼ିଶା ଅଧିକାର ଉଦ୍ୟମ—

୧୭୫୭ରେ ପଲାସି ଯୁଦ୍ଧରେ ଜୟଲାଭ କରିବା ପରେ ବଙ୍ଗ, ବିହାର ଓ ଓଡ଼ିଶା (ମେଦିନୀପୁର ଜିଲ୍ଲା)ରେ ଇଂରେଜ ଆଧିପତ୍ୟ ପ୍ରତିଷ୍ଠିତ ହେଲା । ୧୭୬୫ ଖ୍ରୀଷ୍ଟାବ୍ଦରେ କମ୍ପାନୀ ଉତ୍ତର ସରକାର ଗୁଡ଼ିକର ଅଧିକାର ପାଇବାରୁ ଦକ୍ଷିଣରେ ଇଂରେଜ ରାଜ୍ୟ ଖୋର୍ଦ୍ଧା ରାଜ୍ୟ ସୀମାପାଏ ବ୍ୟାପିଗଲା । ଚିଲିକା ଉଭୟ ରାଜ୍ୟର ସୀମାରେ ରହିଲା । ଏହାପରେ ଇଂରେଜମାନେ ଚିଲିକା ଓ ସୁବର୍ଣ୍ଣରେଖା ମଧ୍ୟବର୍ତ୍ତୀ ମରହଟ୍ଟା ରାଜ୍ୟ ତଥା ଖୋର୍ଦ୍ଧା ଆକ୍ରମଣ ଉଦ୍ଦେଶ୍ୟରେ ଗଞ୍ଜାମଠାରେ ୧୭୬୮ରେ ଏକ ସୁଦୃଢ଼ ଦୁର୍ଗ ନିର୍ମାଣ କରି ସେଠାରେ ବହୁ ସୈନ୍ୟ ରଖିଲେ । ୧୭୬୬ରୁ ୧୮୦୨ ମଧ୍ୟରେ କଲିକତାସ୍ଥ କମ୍ପାନୀ ସରକାର କଟକ ପ୍ରଦେଶ (ମରହଟ୍ଟା ଅଧିକୃତ ଓଡ଼ିଶା) ଅଧିକାର କରିବାପାଇଁ ବହୁ କୂଟନୈତିକ ଉଦ୍ୟମ କରିଥିଲେ । କିନ୍ତୁ ସେଗୁଡ଼ିକ ବିଫଳ ହୋଇଗଲା । ଶେଷରେ ଇଂରେଜମାନେ ଓଡ଼ିଶା ଆକ୍ରମଣ ଓ ଅଧିକାର କରିବାପାଇଁ ଆୟୋଜନ କଲେ ।

## ଦ୍ୱିତୀୟ ମରହଟ୍ଟା ସମର ଓ ଓଡ଼ିଶା ଆକ୍ରମଣ—

୧୮୦୨ ଖ୍ରୀଷ୍ଟାବ୍ଦରେ ଦ୍ୱିତୀୟ ମରହଟ୍ଟା ସମର ଆରମ୍ଭ ହେବା ପୂର୍ବରୁ ଇଂରେଜ ସେନାପତି ଲେଫଟନାଣ୍ଟ କର୍ଣ୍ଣେଲ କ୍ୟାମ୍ପବେଲ ଗଞ୍ଜାମ ଦୁର୍ଗରେ ଏକ ଦଳ ସୈନ୍ୟସହ ଦକ୍ଷିଣରୁ ଓଡ଼ିଶା ଆକ୍ରମଣ କରିବାପାଇଁ ପ୍ରସ୍ତୁତ ହୋଇ ରହିଲେ । ଏହି ଦଳରେ ୫୪୫ଜଣ ଗୋରା ସୈନ୍ୟ, ୨୨୮୦ ଦେଶୀ ସିପାହୀ ଏବଂ ୫୦ଜଣ ଘୋଡ଼ାସବାର ଥିଲେ ।

ଆକ୍ରମଣ ସମୟରେ ବର୍ତ୍ତିଶ ପକ୍ଷପାତୀ ଲୋକ ଓ ଜଗନ୍ନାଥଙ୍କ ତୀର୍ଥଯାତ୍ରୀ-ମାନଙ୍କୁ ସମସ୍ତପ୍ରକାର ସାହାଯ୍ୟ ଦେବାପାଇଁ ଏବଂ ଦେବତା, ବ୍ରାହ୍ମଣ, ମଠ ମନ୍ଦିର, ପ୍ରଭୃତିରେ କୌଣସି ପ୍ରକାରେ ହସ୍ତକ୍ଷେପ ନକରିବା ନିମିତ୍ତ କ୍ୟାମ୍ପବେଲଙ୍କୁ ଗୁପ୍ତ ନିର୍ଦ୍ଦେଶ ଦିଆଯାଇଥିଲା । କଟକ, ବାଲେଶ୍ୱର ପ୍ରଭୃତି ସ୍ଥାନରେ କାର୍ଯ୍ୟ କରୁଥିବା ବିଶିଷ୍ଟ ମରହଟ୍ଟା ସେନାପତି ଓ କର୍ମଚାରୀମାନଙ୍କୁ ହସ୍ତଗତ କରିନେବା ପାଇଁ ଗୁପ୍ତ ପତ୍ର ପ୍ରେରିତ ହୋଇଥିଲା ଏବଂ ସେମାନଙ୍କୁ ପ୍ରଭୂତ ଅର୍ଥ ପ୍ରଦାନ ଦ୍ୱାରା ବଶୀଭୂତ କରାଯାଇଥିଲା । ରାଜ୍ୟଜୟ ପରେ ଓଡ଼ିଶା ପ୍ରଦେଶର ଶାସନପାଇଁ ମଧ୍ୟ ଯୋଜନା ପ୍ରସ୍ତୁତ ହୋଇଗଲା । କ୍ୟାମ୍ପବେଲ ଗୁରୁତର ଭାବରେ ପୀଡ଼ିତ ହେବାରୁ ତାଙ୍କ ସେହେତୁ ଲେଫଟନାଣ୍ଟ କର୍ଣ୍ଣେଲ ହାରକୋର୍ଟ ୧୮୦୩ ମସିହା ମାର୍ଚ୍ଚ ୧୧ତାରିଖରେ ଗଞ୍ଜାମରେ ସେନାପତି ଭାବରେ ଯୋଗଦେଲେ ।

## ଖୁରୁଧା ରାଜାଙ୍କ ସହିତ ଗୁପ୍ତ ଚୁକ୍ତି—

ଇଂରେଜମାନଙ୍କ ଓଡ଼ିଶା ଆକ୍ରମଣ ସମୟରୁ ଖୁରୁଧା ରାଜା ମୁକୁନ୍ଦଦେବ (ଦ୍ୱିତୀୟ) ନାବାଳକ ଥିଲେ । ଏବଂ ଦେଓ୍ୱାନ ଜୟକୃଷ୍ଣ ରାଜଗୁରୁ ରାଜ୍ୟର ସର୍ବେସର୍ବା ଥିଲେ । ଜୟକୃଷ୍ଣ ରାଜଗୁରୁ 'ଗଦାଧର ପଦ୍ଧତି' ନାମକ ପ୍ରସିଦ୍ଧ ସ୍ମୃତିଗ୍ରନ୍ଥ ପ୍ରଣେତା ବୀର ହରେକୃଷ୍ଣ ଶାସନବାସୀ ସ୍ୱନାମଧନ୍ୟ କୌଶିକ ବାଜପେୟୀ ଗଦାଧର ରାଜଗୁରୁଙ୍କ ପୌତ୍ର ଥିଲେ । ପ୍ରଗାଢ଼ ଧର୍ମନିଷ୍ଠା, ଅସାଧାରଣ ପାଣ୍ଡିତ୍ୟ ଓ ଉତ୍କଳରେ ସ୍ମାର୍ତ୍ତମତର ପୁନଃପ୍ରତିଷ୍ଠା ପାଇଁ ଖ୍ୟାତି ଓ ସମ୍ମାନଲାଭ କରିଥିବା ଏକ ପ୍ରଖ୍ୟାତ ପଣ୍ଡିତ ପରିବାରର ଦାୟାଦ ଥିବାରୁ ଜୟି ରାଜଗୁରୁ ଅତ୍ୟନ୍ତ ଗର୍ବୀ ଥିଲେ । କର୍ଣ୍ଣେଲ ହାରକୋର୍ଟ ଖୁରୁଧା ରାଜାଙ୍କ ଉକିଲଙ୍କୁ ଗଞ୍ଜାମଠାରେ ଭେଟି ତାଙ୍କ ହାତରେ ଖୁରୁଧା ରାଜାଙ୍କ ନିକଟକୁ ଏକ ଗୁପ୍ତ ପତ୍ର ପ୍ରେରଣ କରିଥିଲେ । ଏଥିରେ ଖୁରୁଧା ରାଜାଙ୍କ ତାଙ୍କ ରାଜ୍ୟମଧ୍ୟରେ ବିନା ବାଧାରେ ସୈନ୍ୟଚାଳନା କରିବା ଅନୁମତି ପ୍ରାର୍ଥନା ଏବଂ ମରହଟ୍ଟା ପରିବର୍ତ୍ତେ ବ୍ରିଟିଶମାନଙ୍କ ପ୍ରଭୁତ୍ୱ ସ୍ୱୀକାର ପାଇଁ ଅନୁରୋଧ କରାଯାଇଥିଲା । ଖୁରୁଧା ରାଜା ଦୁଇଟି ସର୍ତ୍ତରେ ଉକ୍ତ ଅନୁରୋଧ ରକ୍ଷାକରିବାପାଇଁ ସ୍ୱୀକୃତି ପ୍ରଦାନ କରିଥିଲେ । (୧)ବ୍ରିଟିଶମାନେ କଟକ ଅଧିକାର ପରେ ରାଜାଙ୍କୁ ନଗଦ ଏକଲକ୍ଷ ଟଙ୍କା ପ୍ରଦାନ କରିବେ (୨) ଏବଂ ମରହଟ୍ଟା ସରକାରଂକ ଦ୍ୱାରା ତାଂକଠାରୁ ନିଆଯାଇଥିବା ପୁରୁଷୋତ୍ତମ, ରହାଙ୍ଗ, ଲେମ୍ବାଇ, ସିରାଇ ଓ ଚଉବିଶକୁଦ ପ୍ରଗନାର ଅଧିକାର ରାଜାଙ୍କୁ ପ୍ରତ୍ୟର୍ପଣ କରିବେ । କର୍ଣ୍ଣେଲ ହାରକୋର୍ଟ ଓ ଗଞ୍ଜାମର ମାଜିଷ୍ଟ୍ରେଟ ଉକ୍ତ ଦୁଇଟି ସର୍ତ୍ତ ଗ୍ରହଣ କରିବାର ପ୍ରତିଶ୍ରୁତି ଦେଇଥିଲେ । ଏହିପରି ସାମରିକ, କୂଟନୈତିକ ଓ ପ୍ରଶାସନିକ ସମସ୍ତ ବ୍ୟବସ୍ଥା ଅତି ନିପୁଣ ଭାବରେ ସଂପୂର୍ଣ୍ଣ ହେବା ପରେ ଇଂରେଜ ସେନା ଅତର୍କିତ ଭାବରେ ତିନିଦିଗରୁ ଓଡ଼ିଶା ଆକ୍ରମଣ କରିଦେଲେ ।

## ପୁରୀ ଅଧିକାର

କର୍ଣ୍ଣେଲ ହାରକୋର୍ଟ ୧୮୦୩ ମସିହା ସେପ୍ଟେମ୍ବର ୧୮ ତାରିଖରେ ଗଞ୍ଜାମ ଆଡୁ ଅଭିଯାନ ଚଳାଇ ପ୍ରଥମେ ମାଣିକପାଟଣା ଅଧିକାର କରିନେଲେ । ସେଠାରୁ ସେ ଜଗନ୍ନାଥଙ୍କ ସେବକମାନଙ୍କ ନିକଟକୁ ନାନାପ୍ରକାର ଆଶ୍ୱାସନା ପୂର୍ଣ୍ଣ ଏକ ପତ୍ର ପଠାଇଲେ । ସେମାନଙ୍କଠାରୁ ଅନୁକୂଳ ଉତ୍ତର ପାଇ ଇଂରେଜ ସେନା ପୁରୀ ଆଡ଼କୁ ଅଗ୍ରସର ହେଲେ ଏବଂ ବିନା ପ୍ରତିରୋଧରେ ସେପ୍ଟେମ୍ବର ୧୮ ତାରିଖରେ ପୁରୀ ଅଧିକୃତ ହେଲା । ଏହା ପରେ ଇଂରେଜ ସେନା କଟକ ଆଡ଼କୁ ଯାତ୍ରା କରି ସାମାନ୍ୟ ପ୍ରତିରୋଧ ପରେ ଅକ୍ଟୋବର ୧୪ ତାରିଖରେ ବାରବାଟୀ ଦୁର୍ଗ ଅଧିକାର କଲେ । ଏହାର କିଛିଦିନ ପରେ ବାଲେଶ୍ୱର ଓ ସୋର ଅଧିକୃତ ହେଲା । ବାରବାଟୀର ପତନ ପରେ ଅବଶିଷ୍ଟ ମରହଟ୍ଟା ସୈନ୍ୟ କ୍ଷିପ୍ର ଗତିରେ ସ୍ୱଦେଶକୁ

ପଳାଇଗଲେ । ଖୋର୍ଦ୍ଧା ମରହଟ୍ଟା ଆକ୍ରମଣର ପ୍ରତିରୋଧ ପାଇଁ କର୍ଣ୍ଣେଲ ହାରକୋର୍ଟ କଟକ ରାଜ୍ୟର ପ୍ରବେଶ ଦ୍ୱାର ସ୍ୱରୂପ ବଡ଼ମୂଳ ଘାଟି ଜଗିବା ପାଇଁ ଦଳେ ଇଂରେଜ ସୈନ୍ୟ ପଠାଇ ଦେଲେ ।

## ଜୟୀ ରାଜଗୁରୁଙ୍କ ବିରୋଧ

ଖ୍ରୀଷ୍ଟାନ୍ ଧର୍ମାବଲମ୍ବୀ ଇଂରେଜମାନେ ପୁରୀ ଅଧିକାର କରିନେବାରୁ ରକ୍ଷଣଶୀଳ ହିନ୍ଦୁ ସମାଜର ନେତା ଜୟି ରାଜଗୁରୁ ହିନ୍ଦୁଧର୍ମ ତଥା ଖୁରୁଧା ରାଜାଙ୍କ ପ୍ରତି ବିପଦର ଆଶଙ୍କା କଲେ । ସେ ସମୟରେ ନାଗପୁରର ଭୋନ୍‌ସଲା ପୁନର୍ବାର ଓଡ଼ିଶା ଦଖଲ କରିବା ପାଇଁ ଷଡ଼ଯନ୍ତ୍ର ଚଳାଇଥିଲେ ଏବଂ ଖୁରୁଧା ରାଜା ମୁକୁନ୍ଦଦେବଙ୍କ ନିକଟକୁ ଆନ୍ଧାଜୀ ନାଇକ ନାମକ ଗୁପ୍ତଚରକୁ ପଠାଇଥିଲେ । ସେ ପ୍ରଥମେ ଦେଓ୍ୱାନ ଜୟି ରାଜଗୁରୁଙ୍କ ସଙ୍ଗେ ପରାମର୍ଶ କରି ମୁକୁନ୍ଦଦେବଙ୍କୁ ସାକ୍ଷାତ୍ କରିଥିଲେ । ଏହି ଗୁପ୍ତଚର ଫେରିଲାବେଳେ ବାଟରେ ଧରା ପଡ଼ିବାରୁ ଜୟୀରାଜଗୁରୁଙ୍କ ସଙ୍ଗେ ତାଙ୍କ ସାକ୍ଷାତ୍ ବିଷୟ ପ୍ରକାଶ କରିଦେଲା । ଏଥିରେ ଇଂରେଜ ସରକାର ରାଜଗୁରୁଙ୍କ ପ୍ରତି ବିରକ୍ତ ହୋଇ ତାଙ୍କୁ ଉପଯୁକ୍ତ ଶାସ୍ତି ଦେବା ପାଇଁ ସୁଯୋଗ ଅପେକ୍ଷାରେ ରହିଲେ ।

ଇଂରେଜମାନେ ଓଡ଼ିଶା ଅଧିକାର ପରେ ନିଜର ଆଧିପତ୍ୟକୁ ସୁଦୃଢ଼ କରିବା ଉଦ୍ଦେଶ୍ୟରେ ଖୁରୁଧା, ମୟୂରଭଞ୍ଜ, ଅନୁଗୁଳ ପ୍ରଭୃତି ଦେଶୀୟ ରାଜ୍ୟର ଅଧିପତି ମାନଙ୍କୁ ଏକ ଏକ ଚୁକ୍ତିରେ ଆବଦ୍ଧ କରିବା ଉଦ୍ୟମ କଲେ । ଏହି ଚୁକ୍ତିର ମର୍ମ ଅନୁଯାୟୀ ସେମାନେ ବ୍ରିଟିଶ ଆଧିପତ୍ୟକୁ ସ୍ୱୀକାର କରି ବାର୍ଷିକ ନିର୍ଦ୍ଧିଷ୍ଟ ପେସକସ ଦେବେ; ଆବଶ୍ୟକ ହେଲେ କମ୍ପାନୀକୁ ସାହାଯ୍ୟ କରିବା ପାଇଁ ସୈନ୍ୟ ପଠାଇବେ ଏବଂ ପୁଲିସ ମାନଙ୍କ ଜଗିପାଳି ବ୍ୟବସ୍ଥା ଏବଂ କମ୍ପାନୀ ଅଧିକୃତ ରାଜ୍ୟରୁ ରାଜସ୍ୱ ଆଦାୟ ବିଷୟରେ ସହଯୋଗ କରିବେ । ବ୍ରିଟିଶ ସରକାର ନିର୍ଦ୍ଧିଷ୍ଟ ପେସକସ ଅପେକ୍ଷା ଅଧିକ ଆଦାୟ ନ କରିବା ପାଇଁ ମଧ୍ୟ ଚୁକ୍ତିରେ ଏକ ସର୍ତ୍ତ ରହିଲା ।

ପ୍ରଥମେ ଇଂରେଜମାନେ ଓଡ଼ିଶାରେ ବିଶେଷ ପ୍ରଭାବ ଓ ପ୍ରତିପତ୍ତି ଥିବା ଖୁରୁଧା ରାଜାଙ୍କ ନିକଟକୁ ୧୮୦୩ ଡିସେମ୍ବର ମାସରେ ଉକ୍ତ ଚୁକ୍ତିପତ୍ର ପଠାଇଥିଲେ । ଏଥିରେ ଦସ୍ତଖତ କଲେ ରାଜାଙ୍କର ସମସ୍ତ କ୍ଷମତା ଲୋପ ପାଇବାର ଆଶଙ୍କା କରି ଜୟି ରାଜଗୁରୁ ଏହା ଗ୍ରହଣ ନକରିବା ପାଇଁ ରାଜାଙ୍କୁ ପରାମର୍ଶ ଦେଇଥିଲେ । ଏହି ସମ୍ବାଦ ପାଇ କମିସନରଙ୍କ ତାଙ୍କ ନିକଟକୁ ଜୟି ରାଜଗୁରୁଙ୍କୁ ପଠାଇବା ପାଇଁ ରାଜାଙ୍କୁ ଖବର ପଠାଇଲେ । କମିସନର ନିର୍ଦ୍ଦେଶରେ ଷଡ଼ଯନ୍ତ୍ର ଆଶଙ୍କା କରି ରାଜଗୁରୁ ସେମାନଙ୍କ ନିକଟକୁ ଯାଇ ନଥିଲେ ।

ଏହାପରେ ଖୁର୍ଦ୍ଧା ରାଜାଙ୍କ ସମ୍ପନ୍ନ ଗୁପ୍ତ ଚୁକ୍ତି ଅନୁଯାୟୀ ପ୍ରତିଶ୍ରୁତ ଏକଲକ୍ଷ ଟଙ୍କା ମଧ୍ୟରୁ କେତେକାଂଶ ନଗଦ ଟଙ୍କା ଆକାରରେ ଜୟୀ ରାଜଗୁରୁଙ୍କୁ ଦିଆଯାଇଥିଲା । ସେ ଉକ୍ତ ଟଙ୍କା ରାଜାଙ୍କୁ ନଦେଇ ପାଇକମାନଙ୍କ ବେତନ ବାବଦରେ ଖର୍ଚ୍ଚ କରିଦେଲେ । ଚୁକ୍ତିର ଅନ୍ୟ ସର୍ତ୍ତ ଅନୁଯାୟୀ ଖୁର୍ଦ୍ଧା ରାଜା ରାହାଙ୍ଗ, ଲେମ୍ବାଇ, ସିରାଇ ଓ ଚବିଶକୁଦ ପ୍ରଗଣା ଗୁଡ଼ିକ ତାଙ୍କୁ ଦଖଲ ଦେବା ଦାବୀ କରିଥିଲେ । ଇଂରେଜ କମିସନର ଯୁକ୍ତି କଲେ ଯେ ଏହି ପ୍ରଗଣା ଗୁଡ଼ିକ ବହୁ ପୂର୍ବରୁ ମରହଟ୍ଟା ରାଜ୍ୟଭୁକ୍ତ ହୋଇଥିବାରୁ ସେମାନଙ୍କ ବିତାଡ଼ନ ପରେ ଇଂରେଜ ସରକାର ଆଇନ ଅନୁଯାୟୀ ଉତ୍ତରାଧିକାରୀ ସୂତ୍ରରେ ସେଗୁଡ଼ିକର ଅଧିକାର ପ୍ରାପ୍ତ ହୋଇଛନ୍ତି । ଖୁର୍ଦ୍ଧା ରାଜା ପୂର୍ବରୁ ସେଗୁଡ଼ିକର ଦଖଲକାର ନ ଥିବାରୁ ସେଗୁଡ଼ିକ ତାଙ୍କୁ ଫେରାଇବା ପାଇଁ କୌଣସି ଯୁକ୍ତିଯୁକ୍ତ କାରଣ ନାହିଁ ।

ଇଂରେଜମାନଙ୍କ ଏହି ଚୁକ୍ତିଭଙ୍ଗରେ ରାଜାଙ୍କ ଅଭିଭାବକ ଜୟୀ ରାଜଗୁରୁ ଅତ୍ୟନ୍ତ ଉତ୍କ୍ଷିପ୍ତ ହୋଇ ପଡ଼ିଲେ । ସେ ବଳପୂର୍ବକ ଏଗୁଡ଼ିକ ଦଖଲ କରିବା ପାଇଁ ଉଦ୍ୟମ କଲେ । ୧୮୦୪ ମସିହା ଅକ୍ଟୋବର ମାସରେ ଖୁର୍ଦ୍ଧା ରାଜାଙ୍କ ଦଳେ ପାଇକ ପିପିଲି ଆକ୍ରମଣ କଲେ । ଏଥି ପୂର୍ବରୁ ରାଜା ଏହି ଚାରି ପ୍ରଗଣାର ଖଜଣା ଆଦାୟ କରିବା ପାଇଁ ଲୋକ ପଠାଇଥିଲେ । ଖୁର୍ଦ୍ଧା ରାଜାଙ୍କ ଏଇ ବିଦ୍ରୋହ ଆଶଙ୍କାରେ ଇଂରେଜ ସରକାର ବିଚଳିତ ହୋଇପଡ଼ିଲେ । ସେ ସମୟରେ ନାଗପୁରର ଭୋନ୍‌ସଲା ରାଜା ପୁନର୍ବାର ଓଡ଼ିଶା ଆକ୍ରମଣ କରିବେ ବୋଲି ଗୁଜବ ଚାରିଆଡ଼େ ବ୍ୟାପିଗଲା । କମିସନରମାନେ ପରିସ୍ଥିତି ଗୁରୁତର ହେବା ପୂର୍ବରୁ ଏହି ବିଦ୍ରୋହକୁ ଦୃଢ଼ ହସ୍ତରେ ଦମନ କରିବା ପାଇଁ ସ୍ଥିର କଲେ । ଅତିଶୀଘ୍ର ଗଞ୍ଜାମ ଓ କଟକରୁ ସୈନ୍ୟ ଅଣାଯାଇ ଖୁର୍ଦ୍ଧା ଦୁର୍ଗର ଆକ୍ରମଣ ପାଇଁ ପ୍ରେରିତ ହେଲେ । ୧୮୦୪ ମସିହା ଡିସେମ୍ବର ମାସ ୫ ତାରିଖରେ ମୁକୁନ୍ଦଦେବ ବିଦ୍ରୋହୀ ବୋଲି ଘୋଷିତ ହେଲେ ଏବଂ ତାଙ୍କୁ ଖୁର୍ଦ୍ଧା ରାଜଗାଦି ଛାଡ଼ିବା ପାଇଁ ଆଦେଶ ଦିଆଗଲା । ଏହାପରେ ଖୁର୍ଦ୍ଧା ଦୁର୍ଗ ଆକ୍ରମଣ ପାଇଁ ୨୦୦୦ ସୈନ୍ୟ ମୁକୁନ୍ଦପ୍ରସାଦ ଗ୍ରାମ ନିକଟରେ ଛାଉଣୀ ପକାଇଲେ ।

ଖୁର୍ଦ୍ଧା ରାଜା ଇଂରେଜମାନେ ଏତେ ସୈନ୍ୟ ସହ ଏପରି ଅତର୍କିତ ଓ ପ୍ରବଳ ଆକ୍ରମଣ କରିବେ ବୋଲି ପୂର୍ବରୁ କଳ୍ପନା କରି ନ ଥିଲେ । ତେଣୁ ସେ ଯୁଦ୍ଧ ପାଇଁ ପୂର୍ବରୁ ଯଥେଷ୍ଟ ରସଦ ସଂଗ୍ରହ କରିନଥିଲେ କିମ୍ବା ପାଇକମାନଙ୍କୁ ଶୃଙ୍ଖଳାବଦ୍ଧ ଓ ସୁସଜ୍ଜିତ କରିନଥିଲେ । ତଥାପି ଶହ ଶହ ରଣୋନ୍ମତ୍ତ ସାହସୀ ପାଇକ ସୁଗଠିତ, ସୁନିୟନ୍ତ୍ରିତ ଓ ବିଚକ୍ଷଣ ସେନାପତିଙ୍କ ଦ୍ୱାରା ପରିଚାଳିତ କମ୍ପାନୀର ଫୌଜକୁ ଦୁର୍ଗ ମଧ୍ୟରେ ରହି ପ୍ରବଳ ପ୍ରତିରୋଧ କରିଥିଲେ । ପାଇକମାନେ ଏତେକାଳ ଆତ୍ମରକ୍ଷା ନ କରି ଯଦି ମୁକୁନ୍ଦପ୍ରସାଦଠାରେ ଡେରା ପକାଇଥିବା କମ୍ପାନୀ ଫୌଜକୁ ପ୍ରଥମରୁ ହଠାତ୍

ଆକ୍ରମଣ କରିଥାନ୍ତେ ତେବେ ଯୁଦ୍ଧର ଗତି ଭିନ୍ନ ଆକାର ଧାରଣ କରିଥାନ୍ତା । କିନ୍ତୁ ସେ ଦୂରଦୃଷ୍ଟି ମୁକୁନ୍ଦଦେବ ବା ଜୟୀ ରାଜଗୁରୁଙ୍କ ନଥିଲା । କଂପାନୀ ଫୌଜ ନିଜକୁ ସଂପୂର୍ଣ୍ଣରୂପେ ପ୍ରସ୍ତୁତ କରି ଭୀଷଣ ଆକ୍ରମଣ ଚଳାଇଲେ ଏବଂ ତୋପ ମାଡ଼ରେ ଖୁର୍ଦ୍ଧା ଦୁର୍ଗକୁ ଧୂଳିସାତ୍ କରିଦେଲେ । ଅନାହାରକ୍ଲିଷ୍ଟ ରଣୋନ୍ମତ ପାଇକମାନେ ପ୍ରାଣମୂର୍ଚ୍ଛା ସଂଗ୍ରାମ ଚଳାଇ ମଧ୍ୟ ଶତ ଶତ ସଂଖ୍ୟାରେ ରଣାଙ୍ଗନରେ ପ୍ରାଣତ୍ୟାଗ କଲେ । ପରାଜୟ ସୁନିଶ୍ଚିତ ଜାଣି ମୁକୁନ୍ଦଦେବ ପ୍ରାଣରକ୍ଷା ନିମିତ୍ତ ଦୁର୍ଗ ଭିତରୁ ଲୁଚିକରି ପଳାଇଗଲେ । କିନ୍ତୁ ପରେ ଧରାପଡ଼ି ଆତ୍ମସମର୍ପଣ କଲେ ଏବଂ ବାରବାଟି ଦୁର୍ଗରେ ବନ୍ଦୀ ହେଲେ । ଖୁରୁଧା ରାଜ୍ୟରେ ଇଂରେଜ ଆଧିପତ୍ୟ ପ୍ରତିଷ୍ଠାର ଘୋର ବିରୋଧୀ ଜୟୀ ରାଜଗୁରୁ ଶେଷ ପର୍ଯ୍ୟନ୍ତ ଯୁଦ୍ଧ ଚଳାଇ ଶେଷରେ ପରାଜିତ ଓ ବନ୍ଦୀ ହେଲେ । ଇଂରେଜମାନଙ୍କ ତାଙ୍କ ଉପରେ ପୂର୍ବରୁ ଆକ୍ରୋଶ ଥିବାରୁ ତାଙ୍କୁ ସର୍ବସାଧାରଣଙ୍କ ସମକ୍ଷରେ ଏକ ବର-ଗଛରେ ଫାଶୀ ଦିଆଗଲା । ତାଙ୍କର ମୃତ୍ୟୁ ସଙ୍ଗେ ସଙ୍ଗେ ଖୁରୁଧା ସ୍ୱାଧୀନତା ଯୁଦ୍ଧର ଦୀପ୍ତିମନ୍ତ ଅଗ୍ନିଶିଖା ଲିଭିଗଲା । ମୋଗଲ ଓ ମରହଟ୍ଟା ଶକ୍ତିକୁ ବାରମ୍ବାର ପ୍ରତିରୋଧ କରିଥିବା ସୁଦୃଢ଼ ଖୁରୁଧା ଦୁର୍ଗର (୧୫୬୦-୧୮୦୪) ପତନ ପରେ ଖୁରୁଧା ରାଜ୍ୟର ଗୌରବ ରବି ଅସ୍ତମିତ ହୋଇଗଲା । ମୁକୁନ୍ଦ ଦେବଙ୍କୁ ଓଡ଼ିଶାରେ ରଖିଲେ କାଳେ ପୁନର୍ବାର ବିଦ୍ରୋହ ହେବ ଏହି ଆଶଙ୍କାରେ ୧୮୦୪ରେ ତାଙ୍କୁ ସୁଦୂର ମେଦିନୀପୁରରେ ରଖାଗଲା ।

୧୮୦୭ ଖ୍ରୀଷ୍ଟାବ୍ଦରେ ମୁକୁନ୍ଦଦେବଙ୍କୁ ମୁକ୍ତି ଦିଆଗଲା । ସେ ପୁରୀର ବାଲି-ସାହିରେ ଥିବା 'ନଅର'ରେ ବାସ କରିବାକୁ ଆଦିଷ୍ଟ ହେଲେ । ବାଲିସାହି ନଅର ବର୍ତ୍ତମାନ ଭାଙ୍ଗିଯାଇଛି । ତଥାପି ତାହା ଅଦ୍ୟାପି 'ପୁରୁଣା ନଅର' ନାମରେ ପରିଚିତ ଏବଂ ରାଜାମାନଙ୍କ ଅଭିଷେକ ସେହି ପୁରୁଣା ନଅରରେ ହେଉଅଛି । ୧୮୦୯ର ୪ ନମ୍ବର ରେଗୁଲେସନ ଦ୍ୱାରା ତାଙ୍କୁ ପୁରୀ ଜଗନ୍ନାଥ ମନ୍ଦିରର ସୁପରିଂଟେଣ୍ଡେଣ୍ଟ ବା ତତ୍ତ୍ୱାବଧାରକ ରୂପେ ନିଯୁକ୍ତ କରାଗଲା କିନ୍ତୁ ତାଙ୍କ ଖୁରୁଧା ରାଜ୍ୟ ଇଂରେଜଙ୍କ ଖାସ-ମାହାଲ ହେଲା । ପୁରୀ ରାଜା ଓ ତାଙ୍କର ବଂଶଧରମାନେ ମାଲିକନା ସ୍ୱରୂପ ମାସିକ ଟ ୨୧୩୩।/୪ ପାଉଥିଲା ପାଇବା ଧାର୍ଯ୍ୟ ହେଲା । ମ୍ୟାଜର ଫ୍ଲେଚରଙ୍କ ହସ୍ତରେ ଖୁରୁଧା ଖାସମାହାଲ ପରିଚାଳନା ଭାର ନ୍ୟସ୍ତ ହେଲା ।

## ପାଇକ ବିଦ୍ରୋହ

ମ୍ୟାଜର ଫ୍ଲେଚରେ ଖୁରୁଧାରେ ସରକାରୀ କଚେରୀ ନିର୍ମାଣ କରିଥିଲେ । ସେ ପାଇକମାନଙ୍କ ନିଷ୍କର ଜାଗିରୀ ସବୁ ଉଚ୍ଛେଦ କରି ଖାସମାହାଲ ସଙ୍ଗେ ସାମିଲ କଲେ ଏବଂ ସେହି ଜମି ଉପରେ ଖଜଣା ଧାର୍ଯ୍ୟ କରାଗଲା । ଏଥିରେ ପାଇକମାନେ ବିଶେଷ ଅସନ୍ତୁଷ୍ଟ ହେଲେ । ସରବରାକାରମାନଙ୍କଦ୍ୱାରା କଠୋର ଭାବରେ ରାଜସ୍ୱ ଆଦାୟ, ପୁଲିସ

କର୍ମଚାରୀମାନଙ୍କ ଅତ୍ୟାଚାର, ରାଜ୍ୟର ପ୍ରକୃତ ଶାସନ ଚଳାଉଥିବା ଅଧସ୍ତନ ବଙ୍ଗାଳୀ କର୍ମଚାରୀମାନଙ୍କର ଜୁଲୁମ, ପ୍ରାଚୀନ କାଳରୁ ଚଳିଆସୁଥିବା କଉଡ଼ି ପରିବର୍ତ୍ତରେ ଟଙ୍କାରେ ରାଜସ୍ୱ ଆଦାୟ ପ୍ରଭୃତି ଯୋଗୁଁ ପାଇକମାନଙ୍କ ଦୁଃଖ ଦୁର୍ଦ୍ଦଶାର ସୀମା ରହିଲା ନାହିଁ । ସରକାରଙ୍କ କଠୋର ଲୁଣକର ମଧ୍ୟରେ ଲୁଣ ବ୍ୟବସାୟ ବନ୍ଦ ହୋଇଯିବାରୁ ଚିଲିକା ଓ ସମୁଦ୍ର କୂଳବର୍ତ୍ତୀ ଯେଉଁ ପାଇକମାନେ ବର୍ଷରେ ଛମାସ କାଳ ଲୁଣ ମାରି ପେଟ ପୋଷୁଥିଲେ ସେମାନଙ୍କ ପୈତୃକ ଜୀବିକା ବୁଡ଼ିଗଲା । ଏହା ଫଳରେ ସେମାନଙ୍କ ଆର୍ଥିକ ଅବସ୍ଥା ମଧ୍ୟ ଶୋଚନୀୟ ହୋଇ ପଡ଼ିଲା । ଏହି ସମସ୍ତ କାରଣରୁ ନବପ୍ରତିଷ୍ଠିତ ଶୋଷଣମୂଳକ ଇଂରେଜ ଶାସନ ବିରୁଦ୍ଧରେ ସେମାନଙ୍କ ହୃଦୟରେ ବିଦ୍ରୋହ ବହ୍ନି ଜ୍ୱଳୁଥିଲା ।

## ବକ୍ସି ଜଗବନ୍ଧୁ—

ଏହି ବିଦ୍ରୋହର ନେତୃତ୍ୱ ନେଇଥିଲେ ଖୋର୍ଦ୍ଧା ରାଜବଂଶର ବକ୍ସି ବା ସେନାପତି ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ଭ୍ରମରବର ରାୟ । ବକ୍ସି ଜଗବନ୍ଧୁ ପୁରୁଷାନୁକ୍ରମେ ଚିଲିକା ନିକଟବର୍ତ୍ତୀ ରୋଡ଼ଙ୍ଗ କିଲ୍ଲାର ମାଲିକ ଥିଲେ । କର୍ଣ୍ଣେଲ ହାର୍-କୋର୍ଟ ସେହିବାଟେ ପୁରୀକୁ ଅଭିଯାନ ଚଳାଇବା ସମୟରେ ଜଗବନ୍ଧୁ ତାଙ୍କୁ ସାହାଯ୍ୟ ଦେଇଥିଲେ । ଓଡ଼ିଶା ଅଧିକାରପରେ ୧୮୦୪ରେ ରୋଡ଼ଙ୍ଗ କିଲ୍ଲା ନିମନ୍ତେ ବକ୍ସି ଜଗ-ବନ୍ଧୁଙ୍କ ସଙ୍ଗେ ଇଂରେଜ ସରକାରଙ୍କର ବନ୍ଦୋବସ୍ତ ମଧ୍ୟ ହୋଇଥିଲା । କିନ୍ତୁ କଲିକତା ନିକଟବର୍ତ୍ତୀ ପାଇକପଡ଼ାବାସୀ କଲେକ୍ଟରଙ୍କ ବଙ୍ଗାଳୀ ଦେଓ୍ୱାନ୍ କୃଷ୍ଣଚନ୍ଦ୍ର ସିଂହଙ୍କ ଚକ୍ରାନ୍ତରେ ସେ ପୈତୃକ ରୋଡ଼ଙ୍ଗ କିଲ୍ଲା ଅଧିକାରରୁ ବଞ୍ଚିତ ହେଲେ । ବକ୍ସି ସର-କାରଙ୍କ ଠାରେ ବହୁ ଆପତ୍ତି ଅଭିଯୋଗ କଲେ ମଧ୍ୟ ନ୍ୟାୟ ବିଚାର ପାଇଲେ ନାହିଁ । ସରକାରଙ୍କ ଅନ୍ୟାୟ ବିଚାର ଯୋଗୁଁ ଖୋର୍ଦ୍ଧା ଗଜପତିଙ୍କ ପୁରୁଷାନୁକ୍ରମିକ ବକ୍ସି ପଥର ଭିକ୍ଷୁକ ହେବାରୁ ସେ ଇଂରେଜ ଶାସନ ବିରୁଦ୍ଧରେ ବିଦ୍ରୋହ ଆରମ୍ଭ କଲେ ।

## ବିଦ୍ରୋହ ଆରମ୍ଭ :—

୧୮୧୦ରେ ମହୁରୀ ଜମିଦାରୀର ଅନ୍ୟାୟ ନିଲାମ ଓ ୧୮୧୨ରେ ଘୁମୁସର ରାଜା ଧନଞ୍ଜୟ ଭଞ୍ଜଙ୍କ କାରାବାସ ଯୋଗୁଁ ଗଞ୍ଜାମରେ ବ୍ରିଟିଶ ଶାସନ ବିରୁଦ୍ଧରେ ପ୍ରବଳ ଅସନ୍ତୋଷ ବ୍ୟାପିଗଲା । ଧନଞ୍ଜୟ ଭଞ୍ଜଙ୍କ ପିତା ଶ୍ରୀକର ଭଞ୍ଜ ଏହି ବିଦ୍ରୋହର ନେତା ଥିଲେ । ୧୮୧୭ ମସିହା ମାର୍ଚ୍ଚ ମାସରେ ଘୁମୁସର ଅଞ୍ଚଳରୁ ୪୦୦ କନ୍ଧ ଖୋର୍ଦ୍ଧା ରାଜ୍ୟରେ ପଶି ବିଦ୍ରୋହ କଲେ । ବକ୍ସିଙ୍କ ନେତୃତ୍ୱରେ ହିନ୍ଦୁ ହିନ୍ଦୁ ପାଇକ ଏହି ବିଦ୍ରୋହରେ ଯୋଗଦେଲେ । ପ୍ରଥମେ ବିଦ୍ରୋହୀମାନେ ବାଣପୁରରେ ପୁଲିସଥାନା ଓ ସରକାରୀ କଚେରୀ ଆକ୍ରମଣ ଓ ଲୁଣ୍ଠନ କରିଥିଲେ । ଏହାପରେ ସେମାନେ ବିଜୟୋ-ନ୍ମତ ଭାବରେ ଖୋର୍ଦ୍ଧା ଆକ୍ରମଣ କରି ସରକାରୀ କଚେରୀ ଓ ଘରମାନ ଭାଙ୍ଗିଦେଲେ

ଏବଂ ଖଜଣାଖାନା ଲୁଣ୍ଠନ କଲେ । ଏହି ସମୟରେ ଅତ୍ୟାଗୃହୀ ତହସିଲଦାର ଚରଣ ପଟ୍ଟନାୟକ ବିଦ୍ରୋହୀମାନଙ୍କ ଦ୍ୱାରା ନିହତ ହେଲେ । କମ୍ପାନୀର ସିପାହୀମାନେ ଗଙ୍ଗପଡ଼ାଠାରେ ପରାସ୍ତ ହେଲେ । ବାଲକାଟିଠାରେ ମାଜିଷ୍ଟ୍ରେଟଙ୍କ ଦ୍ୱାରା ପ୍ରେରିତ ସିପାହୀମାନେ ପରାସ୍ତ ହୋଇ ପ୍ରାଣଭୟରେ କଟକ ପଳାଇଗଲେ । ଅବସ୍ଥା କ୍ରମଶଃ ଗୁରୁତର ହେଲା । ବକ୍‌ସି ବିଦ୍ରୋହୀ ପାଇକମାନଙ୍କ ସାହାଯ୍ୟରେ ମୁକୁନ୍ଦଦେବଙ୍କୁ ପୁନ-ର୍ବାର ଖୁର୍ଦ୍ଧା ଗାଦିରେ ବସାଇବା ସମ୍ବାଦ ସର୍ବତ୍ର ପ୍ରଚାରିତ ହୋଇଗଲା । ଏହାପରେ ପାଇକମାନେ ପିପିଲିଠାରେ କମ୍ପାନୀର ସିପାହୀଙ୍କୁ ହଟାଇ ଦେଲେ । ଏପ୍ରିଲ ୧୩ତାରି-ଖରେ ପୁରୀରେ ବିଦ୍ରୋହ ଅଗ୍ନି ଜଳି ଉଠିଲା । ବିଦ୍ରୋହୀ ପାଇକମାନଙ୍କ ସଙ୍ଗେ ରାଜ ଭକ୍ତ ସେବକ, ମନ୍ଦିରର କର୍ମଚାରୀ ଓ ସହରବାସୀ ସହଯୋଗ କରିବାରୁ ଇଂରେଜ ସୈନ୍ୟ ଓ କର୍ମଚାରୀ ପୁରୀ ଛାଡ଼ି କଟକ ପଳାଇଗଲେ ( ଏପ୍ରିଲ ୧୮ ) । ଏଠାରେ ବିଦ୍ରୋହ ଚରମ ସୀମାରେ ପହଞ୍ଚିଗଲା ।

## ବିଦ୍ରୋହ ଦମନ —

କ୍ୟାପଟେନ ଲେ ଫେଭରେ (Le Ferve) ନାମକ ଦୁର୍ଦ୍ଦାନ୍ତ ଇଂରେଜ ସେନାପତି (ଏପ୍ରିଲ ୧୮) ଖୁର୍ଦ୍ଧା ଅଧିକାର କରି ପାଇକମାନଙ୍କୁ ଧ୍ୱଂସ କରିଦେଲେ । ଠିକ୍ ସେହିଦିନ ସେ ପୁରୀରେ ପହଞ୍ଚି ବିଦ୍ରୋହୀମାନଙ୍କୁ ପରାସ୍ତ କରି ରାଜା ମୁକୁନ୍ଦଦେବଙ୍କୁ ବନ୍ଦୀ କଲେ । ଇତି ମଧ୍ୟରେ ମ୍ୟାଜର ହାମିଲଟନ ପୁରୀରେ ପହଞ୍ଚି ଏହା ଦଖଲ କଲେ । କ୍ୟାପଟେନ୍ ଲେ ଫେଭରେ ଖୁର୍ଦ୍ଧା ରାଜାଙ୍କୁ ନେଇ କଟକ ଗଲାବେଳେ ବାଟରେ ରାଜଭକ୍ତ ପାଇକମାନେ ତାଙ୍କୁ ଉଦ୍ଧାର କରିବା ପାଇଁ ଆକ୍ରମଣ ଚଳାଇଥିଲେ । କିନ୍ତୁ କ୍ୟାପଟେନ ଆର୍ମଷ୍ଟ୍ରଙ୍ଗ ବିଦ୍ରୋହୀ ପାଇକମାନଙ୍କୁ ଛିନ୍ନଭିନ୍ନ କରିଦେଲେ । ଖୁର୍ଦ୍ଧା ରାଜା ବନ୍ଦୀ ହେବା ପରେ ବିଦ୍ରୋହାଗ୍ନି କ୍ରମଶଃ କ୍ଷୀଣ ହୋଇଗଲା ।

## ବକ୍‌ସି ଜଗବନ୍ଧୁଙ୍କ ଶେଷ ଜୀବନ – (୩)

ଖୁର୍ଦ୍ଧାର ପାଇକ ବିଦ୍ରୋହ ଦମିତ ହେଲେ ମଧ୍ୟ ବିଦ୍ରୋହର ନେତା ବକ୍‌ସି ଜଗବନ୍ଧୁ, ତାଙ୍କ ପୁଅ କୃଷ୍ଣଚନ୍ଦ୍ର, ଭ୍ରମରବର ଓ ତାଙ୍କ ଅନୁଗାମୀ ପନ୍ଦର ଜଣ ବିଦ୍ରୋହୀ ସର୍ଦ୍ଦାରଙ୍କୁ ଇଂରେଜ ସେନାପତିଗଣ, କମ୍ପା ଗଞ୍ଜାମର କଲେକ୍ଟର ଏବଂ ସମ୍ବଲପୁରରେ ଅବସ୍ଥାପିତ ମ୍ୟାଜର ରଫ୍‌ସେଜ୍ (Roughsedge) ଧରିବାକୁ ସମର୍ଥ ହୋଇ ନଥିଲେ । ସେମାନେ ଆଠବର୍ଷ କାଳ ଇଂରେଜବିରୋଧୀ ଲୋକମାନଙ୍କ ସାହା-ଯ୍ୟରେ ନାନା ଉପଦ୍ରବ ଚଳାଇଥିଲେ । ସେମାନଙ୍କୁ ଧରାଇ ଦେବା ପାଇଁ ପୁରସ୍କାର

---

୩ । O H. R J. Vol. I.ରେ ପ୍ରକାଶିତ ଶ୍ରୀ ସୁଧାକର ପଟ୍ଟନାୟକଙ୍କ ପ୍ରବନ୍ଧ ଦ୍ରଷ୍ଟବ୍ୟ ।

ଘୋଷିତ ହୋଇଥିଲା । ଯଥା ଜଗବନ୍ଧୁଙ୍କପାଇଁ ୫୦୦୦ ପାଞ୍ଚ ହଜାର, କୃଷ୍ଣଚନ୍ଦ୍ରଙ୍କ ପାଇଁ ୨୦୦୦ (ଦୁଇହଜାର) ଏବଂ ଅନ୍ୟ ପନ୍ଦର ଜଣଙ୍କ ମଧ୍ୟରୁ ପ୍ରତି ବିଦ୍ରୋହୀଙ୍କ ପାଇଁ ଏକ ହଜାର ଟଙ୍କା । କିନ୍ତୁ ଏହି ପୁରସ୍କାର ପ୍ରାପ୍ତି ଆଶାରେ କେହି ବିଦ୍ରୋହୀମାନଙ୍କୁ ଇଂରେଜ ସରକାର ହାତରେ ଧରାଇ ଦେଇ ନଥିଲେ । ୧୮୧୯ ଏପ୍ରିଲ ମାସରେ କମିସନର କେର ବକ୍ସିଙ୍କ ସହିତ ସମାଧାନ ପ୍ରସ୍ତାବ ଘୋଷଣା କଲେ । ଏହା ଫଳପ୍ରସୂ ନ ହେବାରୁ ଉକ୍ତ ବର୍ଷ ଅକ୍ଟୋବର, ନଭେମ୍ବର ମାସରେ ଗଞ୍ଜାମ ଜିଲାର ବିଭିନ୍ନ ସ୍ଥାନରେ ବାସକରୁଥିବା ଜଗବନ୍ଧୁଙ୍କ ପରିବାର, ଗୁମାସ୍ତା, ଚାକର ପ୍ରଭୃତି ୨୪ ଜଣ ଧରା ହୋଇ ଖୁରୁଧାରେ ରଖାଗଲେ ଏବଂ ସେମାନଙ୍କ ମଧ୍ୟରୁ ସାତଜଣଙ୍କୁ ବାରବାଟୀ ଦୁର୍ଗରେ ବନ୍ଦୀ କରାଗଲା । ତଥାପି ବୀର ଜଗବନ୍ଧୁ ଆତ୍ମସମର୍ପଣ କରିନଥିଲେ । ସେମାନଙ୍କୁ ବର୍ଷେ କାଳ ନଜର ବନ୍ଦୀରେ ରଖିବା ପରେ ଛାଡ଼ି ଦିଆଗଲା । ଏହିପରି ନାନା ଉପାୟ ସତ୍ତ୍ୱେ, ବକ୍ସି ଇଂରେଜ ସରକାରଙ୍କ ଶରଣାପନ୍ନ ହୋଇନଥିଲେ ।

ଶେଷରେ ୧୮୨୫ ମସିହାରେ ଖୁରୁଧାର ଜଏଣ୍ଟ ମାଜିଷ୍ଟ୍ରେଟ୍ ମିଷ୍ଟର ୱିଲକିନସନଙ୍କ ଚେଷ୍ଟାରେ ନୟାଗଡ଼ର ବୈବର୍ତ୍ତୀ ବରଜୁ ପାଇକରାୟଙ୍କ ମଧ୍ୟସ୍ଥତାରେ ବକ୍ସିଙ୍କ ସହିତ ସମାଧାନ ହୋଇଥିଲା । ବକ୍ସି ଆତ୍ମସମର୍ପଣ କଲେ ସରକାର ତାଙ୍କ ପ୍ରତି କୌଣସି ପ୍ରକାର ଶାସ୍ତିବିଧାନ କରାଯିବ ନାହିଁ ବୋଲି ନିର୍ଭର ପ୍ରତିଶ୍ରୁତି ଦେଇଥିଲେ ।

ଓଡ଼ିଶା ଗଡ଼ଜାତଗୁଡ଼ିକର ସୁପରିଂଟେଣ୍ଡେଣ୍ଟଙ୍କ ଅଫିସର ସିରସ୍ତାଦାର ଓ୍ୱାଜ ମହମ୍ମଦ ବକ୍ସିଙ୍କୁ ନୟାଗଡ଼ ସୀମାସ୍ଥ ଏକ ଗ୍ରାମରୁ ସମ୍ମାନରେ ଆଣି ୧୮୨୫ ମେ ମାସ ୨୭ ତାରିଖରେ କଟକରେ ପହଞ୍ଚାଇ ଦେଲେ । ବକ୍ସି ମାସିକ ୧୫୦ ଟଙ୍କା ପେନସନ୍ ପାଇ କଟକରେ ଅବସ୍ଥାନ କଲେ । କମିସନରଙ୍କ ବିନାନୁମତିରେ ନିଜର ବାସସ୍ଥାନରୁ ଅନ୍ୟତ୍ର ଯିବାପାଇଁ ନିଷିଦ୍ଧ ହୋଇଥିଲା । କଟକରେ ତାଙ୍କର ବାସସ୍ଥାନ ଏ ପର୍ଯ୍ୟନ୍ତ ବକ୍ସି-ବଜାର ଏବଂ ତାଙ୍କ ଗାଧୁଆ ପୋଖରୀ ବକ୍ସିଙ୍କ ପୋଖରୀ ନାମରେ ଖ୍ୟାତ । ଏହି ବିପ୍ଳବୀ ବୀର ନିଜର ଶେଷ ଜୀବନ ଏପରି ଦୁଃଖ କଷ୍ଟରେ କଟାଇ ୧୮୨୯ ମସିହା ଜାନୁୟାରୀ ୨୪ ତାରିଖ ଶନିବାର ଦିନ ପ୍ରାଣତ୍ୟାଗ କଲେ ।

## ଗଜପତି ମୁକୁନ୍ଦଦେବଙ୍କ ବନ୍ଦୀ ଜୀବନ —

ଗଜପତି ମୁକୁନ୍ଦଦେବ କଟକରେ ଅଟକ ଥିବା ସମୟରେ ନୀଳାଦ୍ରି ବିହାରୀ ଜଗନ୍ନାଥଙ୍କୁ ନିଜର ଦୁଃଖ ଜଣାଇ ଏକ ହୃଦୟସ୍ପର୍ଶୀ ଜଣାଣ ରଚନା କରିଥିଲେ । ପଣ୍ଡିତ ଶ୍ରୀ ସୂର୍ଯ୍ୟ ନାରାୟଣ ଦାଶଙ୍କ ଦ୍ୱାରା ସଂଗୃହୀତ ଏହି ଐତିହାସିକ ରଚନାଟି ନିମ୍ନରେ ଉଦ୍ଧାର କରାଗଲା ।

"ଆହେ ମାଳାଦ୍ରିବିହାରୀ

କଟକେ ଅଟକ ହେବାରୁ ମୋ ଧନ
ସରୁନାହିଁ ଝୁରି ଝୁରି । ୦ ।

ବାବୁ ଚିନ୍ତାମଣି ଚରିକ ନ ଜାଣି
ରାମଚନ୍ଦ୍ରଙ୍କୁ ଆଣିଲେ

ରାଜାଧି ପଣ୍ଡିତ କୈବଲ୍ୟ ଲଙ୍ଘିଣ
ବାରବାଟି ଧରାଇଲେ । ୧ ।

ଚକାଆମ୍ବ ଠାରୁ ବିକାସାଇ ଯାଏ
ଝାଡ଼ ଜଙ୍ଗଲ ବୁଲିଲି

ତୁମ୍ଭର ଶ୍ରୀମୁଖ ଦର୍ଶନ ନ ପାଇ
କଟକେ ଅଟକ ହେଲି । ୨ ।

ବାବୁ ହରିହର ସୁପାନ ମୋହର
ବାରେ ମୋତେ ଦୟା କର

ଭଣ୍ଡାରରୁ ଖଣ୍ଡା ବାହାର କରିଣ
ପ୍ରଭୁ ! ଓଡ଼ିଶା ଶତ୍ରୁ ନିବାର । ୩ ।

କେଉଁ କର୍ମହୀନ କରୁଛି ଜଣାଣ
କିମ୍ପା ନ ଶୁଣ ଗୁହାରି

ଶ୍ରୀ ଚରଣ ତଳେ ଶରଣ ପଶୁଛି
ଓଡ଼ିଶା ନବକିଶୋରୀ ହେ । ୪ ।"

ଉଦ୍ଧୃତ ଜଣାଣରୁ ଜଣାଯାଏ ଯେ ଇଂରେଜ ସୈନ୍ୟଙ୍କ ଖୁର୍ଦ୍ଧା ଦୁର୍ଗ ଅଧିକାର ପରେ ରାଜା ମୁକୁନ୍ଦଦେବ ସେଠାରୁ ପଳାଇଯାଇ ଚକାଆମ୍ବ ଠାରୁ 'ବିକାସାଇ' ଯାଏ ବିସ୍ତୃତ ଝାଡ ଜଙ୍ଗଲରେ ବୁଲିଲେ, ତାଙ୍କର କୌଣସି କର୍ମଚାରୀ ଚିନ୍ତାମଣି ବ୍ରିଟିଶମାନଙ୍କ କପଟ ଛଳ ବୁଝି ନପାରି ରାମଚନ୍ଦ୍ର(ମୁକୁନ୍ଦଦେବଙ୍କ ପୁତ୍ର)ଙ୍କୁ ଆଣିଲେ । କିନ୍ତୁ ରାଜାଧି ପଣ୍ଡିତ ନାମକ ମରହଟ୍ଟା କର୍ମଚାରୀ କୈବଲ୍ୟ ଲଙ୍ଘିବା ବିଶ୍ୱାସଘାତକତା କରି ଇଂରେଜମାନଙ୍କ ହସ୍ତରେ ରାଜାଙ୍କୁ ଧରାଇ ଦେବାରୁ ତାଙ୍କୁ ବାର-ବାଟୀରେ ବନ୍ଦୀ କରାଗଲା । ସେ ସୁପାନ ହରିହରଙ୍କୁ ସ୍ମରଣ କରୁଛନ୍ତି ଏବଂ ପ୍ରଭୁ ଜଗନ୍ନାଥଙ୍କୁ ଭଣ୍ଡାରରୁ ଖଣ୍ଡା ବାହାର କରି ଓଡ଼ିଶା ଶତ୍ରୁ ଇଂରେଜମାନଙ୍କୁ ସଂହାର କରିବା ପାଇଁ ପ୍ରାଣ ବିକଳରେ ନିବେଦନ କରୁଅଛନ୍ତି । କିନ୍ତୁ ତାଙ୍କ ବିକଳ ଅନୁରୋଧ ପ୍ରଭୁ ଶୁଣିଲେ ନାହିଁ । ଇଂରେଜମାନେ ବିପଦର ଆଶଙ୍କା କରି ମୁକୁନ୍ଦଦେବଙ୍କୁ ମେଦିନୀପୁରକୁ ନେଇ ସେଠାରେ ୧୮୦୭ ପର୍ଯ୍ୟନ୍ତ ଅଟକ

ରଖିଥିଲେ । ପାଇକ ବିଦ୍ରୋହ ଦମନ ସମୟରେ ସେ ବିଦ୍ରୋହରେ ଲିପ୍ତଥିବା ଅଭି-
ଯୋଗରେ ପୁନର୍ବାର ମୃତ୍ୟୁ ପର୍ଯ୍ୟନ୍ତ ବାରବାଟୀ ଦୁର୍ଗରେ ବନ୍ଦୀ ହୋଇ ରହିଲେ
ଏବଂ ବାରବାଟୀ ଦୁର୍ଗ ମଧ୍ୟରେ ତାଙ୍କ ପୁତ୍ର ରାମଚନ୍ଦ୍ର ଦେବଙ୍କ ଅଭିଷେକ ହୋଇଥିଲା ।

ବନ୍ଦୀଶାଳାରେ ମୁକୁନ୍ଦ ଦେବଙ୍କ ମୃତ୍ୟୁ ସଙ୍ଗେ ସଙ୍ଗେ ଖୁରୁଧା ରାଜ୍ୟର ବୀରତ୍ୱରଞ୍ଜିତ ଗୌରବମୟ ଇତିହାସରେ ଯବନିକା ପାତ ଘଟିଲା । ତାଙ୍କ ପରବର୍ତ୍ତୀ ବଂଶଧର ଗଣ ଅଦ୍ୟାପି ପୂର୍ବ ପୁରୁଷଙ୍କ ଐତିହ୍ୟମଣ୍ଡିତ ରାଜା ଉପାଧିରେ ଭୂଷିତ ହେଉଥିଲେ ମଧ୍ୟ ଇଂରେଜ ସରକାର ଓ ସ୍ୱାଧୀନ ଭାରତ ସରକାରଙ୍କ ବୃତ୍ତିଧାରୀ ରୂପେ ଶ୍ରୀ ଜଗନ୍ନାଥ ମନ୍ଦିର ପରିଚାଳନା କରୁଛନ୍ତି ।

